# ନିଃସଂଗ ପଦାତିକ

( ପ୍ରଥମ ଖଣ୍ଡ )



ଓଡ଼ିଶା ବୁକ୍ ଷ୍ଟୋର

# ନିଃସଙ୍ଗ ପଦାତିକ

( ପ୍ରଥମ ଖଣ୍ଡ )

ଲେଖକ :
ରବି ସିଂ

•

ପ୍ରକାଶକ :
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦ ବିହାରୀ, କଟକ-୭୫୩୦୦୨

•

ପ୍ରଚ୍ଛଦ :
ଶ୍ରୀ ଅସୀମ ବସୁ

•

ପ୍ରଥମ ପ୍ରକାଶ :
ମହାବିଷୁବ ସଂକ୍ରାନ୍ତି-୧୯୮୫

•

ମୁଦ୍ରଣ :
ବିଶ୍ୱଶ୍ରୀ ପ୍ରେସ୍
ଫକୀରମୋହନ ସେନାପତି ରୋଡ
ବାଲେଶ୍ୱର-୩

•

ମୂଲ୍ୟ :
ଟ୩୫ଙ୍କା (ଶୋଭନ)
ଟ୩୦ଙ୍କା (ସାଧାରଣ)

## NISANGA PADATIKA

( An Auto-Biography of Poet Rabi Singh. First part )

•



•

Published by :
Orissa Book Store
Binod Bihari
Cuttack-753002

•

Cover by :
Shree Asim Basu

•

First Edition :
Maha Bisuva Sankranti, 1985

•

Printed at :
Bishwashree Press,
Balasore-3

•

Price :
Rs. 35-00

# ଉତ୍ସର୍ଗ

ଚିର କଳଂକିନୀ ଅକଳଂକିତା

ରାଧା ମାଉସୀଙ୍କୁ

ବିନମ୍ର ପ୍ରଣତି ସହ ..

ସ୍ନେହର

**ରଞ୍ଜ**

ଭ୍ରମ ସଂଶୋଧନ :

୨ୟ ପୃଷ୍ଠାର ବଂଶୀଚକ୍ରରେ ଶିବା ଜନ୍ମ ମର୍ଷିକା ୧୯୪୩ ସ୍ଥାନରେ ୧୯୩୪ ପଢ଼ିବାକୁ ଅନୁରୋଧ ।

# ପଦାତିକର ପଦେ

୧୯୬୮ ମସିହାରେ ଜନତାପରବାରଙ୍କ ଅମଳରେ ମୋର ନିର୍ଭୀକ ସାମ୍ବାଦିକତା ପାଇଁ କଟକର ତତ୍କାଳୀନ ଏସ୍. ପି. ଏବଂ ଯୁବଜନତାର ଜଣେ ନେତା ତଥା ତାଙ୍କର ଅସାମାଜିକ ଦଳବଳ ଏବଂ ମୋର ସାହିତ୍ୟିକ ଶତ୍ରୁମାନଙ୍କ ଦ୍ୱାରା ମୋତେ ଓ ମୋର ପରିବାରକୁ ଧରାପୃଷ୍ଠରୁ ନିଶ୍ଚିହ୍ନ କରି ଦେବା ପାଇଁ ଲଗାତାର ହତ୍ୟା ଷଡ଼ଯନ୍ତ୍ର ସହିତ ବାରବାର ରକ୍ତାକ୍ତ ଆକ୍ରମଣରେ ଘଟଣା ଯେତେବେଳେ କେବଳ ପ୍ରାଦେଶିକ ସ୍ତରରେ ନୁହେଁ ଜାତୀୟ ସ୍ତରରେ ଆଲୋଡ଼ନ ସୃଷ୍ଟି କରିଥିଲା । ସେଥିରୁ ଦୈବାତ୍ ବର୍ତ୍ତି ଯାଇ କଟକ ରାଜାବଗିଚା ଲେନର କଲୋନି ଛାଡ଼ିକରି ମୁଁ କଟକ ଶିଳ୍ପାଞ୍ଚଳ ସନ୍ନିକଟ ନୂଆପଡ଼ା ଲେନର କଲୋନୀରେ ଆସ୍ଥାନ ଜମାଇଲା ପରେ ୧୯୭୯ର ପ୍ରାରମ୍ଭରେ ଦିନେ କବିବନ୍ଧୁ ଶ୍ରୀ ବ୍ରଜନାଥ ରଥ ଆଲୋଚନା ପ୍ରସଙ୍ଗରେ ମୋତେ ପ୍ରସ୍ତାବ ଦେଇ ବସିଲେ ମୋର ଜୀବନ ବୃତ୍ତାନ୍ତ ମୁଁ ବିସ୍ତାରିତ ଭାବେ ଲେଖି, ତାକୁ ଧାରାବାହିକ ଭାବେ କୌଣସି ଓଡ଼ିଆ ମାସିକ ପତ୍ରିକାରେ ପ୍ରକାଶ କଲେ ତାହା ଦ୍ୱାରା ଭବିଷ୍ୟତର ସାରସ୍ୱତ ଅନୁରକ୍ତ ତଥା ପ୍ରଗତିଶୀଳ ସାହିତ୍ୟ-ସେବକ ମାନଙ୍କର ବହୁ ଉପକାର ସାଧିତ ହେବ । ବନ୍ଧୁ ରଥଙ୍କର ପ୍ରସ୍ତାବକୁ ଉପଲବ୍ଧି କଲେ ମଧ୍ୟ ମନରେ ଆଶଙ୍କା ଜନ୍ମିଲା, ମୋ ପରି ଜଣେ ଦୁର୍ମୁଖ, ଗୋଠଛଡ଼ା ଓ ଛନ୍ନଛଡ଼ା ମଣିଷର ଆତ୍ମକାହାଣୀକୁ କେଉଁ ମାସିକ-ପତ୍ର ଧାରାବାହିକ ଭାବେ ପ୍ରକାଶ କରି ଦୁଃସାହସିକତାର ପରିଚୟ ଦେବ ? ଯଦିବା କେହି ତାହା କରେ, ତା ପରେ ତା ଉପରେ ଯୋଉ ପ୍ରଚଣ୍ଡ ଝଡ଼ ସୃଷ୍ଟି ହେବ, ତାକୁ ସେ ସମ୍ଭାଳି ପାରିବ ତ ? ତେଣୁ କବିବନ୍ଧୁ ଶ୍ରୀ ରଥ କଲିକତାରୁ ପ୍ରକାଶିତ ଓଡ଼ିଆ ମାସିକ "ଅଦନ୍ୟାକାଲି"ର ତତ୍କାଳୀନ ସମ୍ପାଦକ ଶ୍ରୀଯୁକ୍ତ ଶ୍ରୀକାନ୍ତ ପଣ୍ଡାଙ୍କ ସହିତ ଯୋଗାଯୋଗ କଲେ । ସମ୍ପାଦକ ଶ୍ରୀ ପଣ୍ଡା ଦୃଢ଼ ଅଙ୍ଗୀକାରବଦ୍ଧ ହେଲେ, ଅବସ୍ଥା ଯାହା ହେଉନା କାହିଁକି, ସେ ମୋର ଆତ୍ମଜୀବନୀକୁ ଧାରାବାହିକ ଭାବେ ପ୍ରକାଶ କରିବେ ।

ତେଣୁ ୧୯୭୯ ମସିହା ଜୁନ ମାସରୁ "ଆସନ୍ତାକାଲି" ପୃଷ୍ଠାରେ "ନିଃସଙ୍ଗ ପଦାତିକ" ଆତ୍ମପ୍ରକାଶ କରିବାକୁ ଆରମ୍ଭକଲା । ମଝିରେ ଶ୍ରୀଯୁକ୍ତ ଶ୍ରୀକାନ୍ତ ପଣ୍ଡା "ଆସନ୍ତାକାଲି" ସମ୍ପାଦନାରୁ ଓହରି ଯିବାରୁ ବନ୍ଧୁ କାଳୀଚରଣ ଦାସଙ୍କ ଉପରେ ସଂପାଦନା ଭାର ନ୍ୟସ୍ତ ହେବା ପରେ ମଧ୍ୟ ସେ ତାଙ୍କ ପୂର୍ବସୂରି ଶ୍ରୀ ପଣ୍ଡାଙ୍କ ଅଙ୍ଗୀକାରକୁ ଏ ଯାବତ୍ ପାଳନ କରି ଚାଲିଛନ୍ତି । ଏଥି ମଧ୍ୟରେ ଦୀର୍ଘ ଛ'ଟା ବର୍ଷ ଅତିବାହିତ ହୋଇ ଗଲଣି । "ନିଃସଙ୍ଗ ପଦାତିକ"ର ପ୍ରକାଶନକୁ ବନ୍ଦ କରିବା ପାଇଁ ନାନା ହୀନ ପ୍ରଚେଷ୍ଟା, "ଆସନ୍ତାକାଲି" ଉପରେ ନାନା ଧରଣର ଚାପ ସୃଷ୍ଟି କେବଳ ହୋଇନାହିଁ, ତାହା କ୍ରମବର୍ଦ୍ଧିତ ହେବାରେ ଲାଗିଛି । ସବୁସତ୍ତ୍ୱେ "ଆସନ୍ତାକାଲି" ଅବିଚଳ, ଏକନିଷ୍ଠ । ଏହା କମ୍ କଥା ନୁହେଁ ! ସେଥିପାଇଁ ବ୍ୟକ୍ତିଗତ ଭାବେ ମୁଁ "ଆସନ୍ତାକାଲି" ଓ ତାର ସମ୍ପାଦନା ମଣ୍ଡଳୀଙ୍କୁ ବଧାଇ ଜଣାଉଛି ।

ଏ ଖଣ୍ଡଟି ହେଉଛି "ନିଃସଙ୍ଗ ପଦାତିକ"ର ପ୍ରଥମ ଖଣ୍ଡ । ଏଥିରେ ବର୍ଣ୍ଣିତ ଘଟଣାବଳୀ ୧୯୩୪ ଠାରୁ ୧୯୫୯ ମସିହା ପର୍ଯ୍ୟନ୍ତ । ସ୍ୱାପରେ ଦ୍ୱିତୀୟ ଖଣ୍ଡଟି ଯେତେବେଳେ ପ୍ରକାଶିତ ହେବ, ସେତେବେଳେ ପାଠକେ ମୋର ସାଂସ୍କୃତି ତଥା କାବ୍ୟିକ ଏବଂ ବୈପ୍ଳବିକ ଅଭ୍ୟୁଦୟ ସମ୍ପର୍କରେ ବିସ୍ତାରିତ ଜାଣିବାକୁ ପାଇବେ ।

ମୋର ଜୀବନକାହାଣୀ ରୈଖିକ ଓ ସରଳ ନୁହେଁ—ତାହା ଭଂଗୁର, ବର୍ତ୍ତିମ, ସଂଗ୍ରାମ-ସଂଘାତ ତଥା ଏକ ନିସ୍ତାନ୍ତ ପଥଯାତ୍ରୀର କାହିବ ଦଲିଲ୍ । ଏ ସମ୍ପର୍କରେ ମୋର ବିଶେଷ କିଛି କହିବାର ନାହିଁ । ଏ ଗ୍ରନ୍ଥହିଁ ତା ନିଜର କଥକ ।

ପରିଶେଷରେ ପ୍ରକାଶନ ସଂସ୍ଥାକୁ ମଧ୍ୟ ଧନ୍ୟବାଦ ।

'ନିଃସଙ୍ଗ ନିବାସ'
ନୂଆପଡ଼ା : ମଧୁପାଟଣା
କଟକ—୭୫୩୦୧୦

# ଗ୍ରଂଥ ସୂଚୀ

## ॥ ପ୍ରଥମ ଅଧ୍ୟାୟ ॥

## ॥ ଦ୍ୱିତୀୟ ଅଧ୍ୟାୟ ॥





# ପ୍ରଥମ ଅଧ୍ୟାୟ

# ଅବାକ୍ ପୃଥିବୀ

ବିଂଶ ଶତାବ୍ଦୀକୁ ୭୯ ବର୍ଷ ବିତିଲାଣି ବର୍ତ୍ତମାନ ।

ମୋତେ କେତେ ଠିକ୍ କେତେବର୍ଷ ହେଲା ତାହା ମୁଁ ସଠିକ୍ ଭାବରେ ଜାଣେନା—ଜାଣିବାର ଉପାୟ ମଧ୍ୟ ନାହିଁ । କାରଣ ବାପା-ମା, ସମଗ୍ର ପରିବାରର ଅଧିକାଂଶ ସଦସ୍ୟ ସନ୍ଧ କଲ୍ ଭଲ ଆଗ-ପଛ ହୋଇ ପୃଥିବୀରୁ ଯେତେବେଳେ ଚିରକାଳ ପାଇଁ ବିଦାୟ ନେଲେ; ମୋର ଜୀବନଟା ହୋଇ ଉଠିଥିଲା ନାଗଅଇଗ୍ରର ଘଞ୍ଚ ଜଙ୍ଗଲ—ବୋଉଷରେ କୌଣସି ଦରକାର ପଡ଼ିଲା ନାହିଁ । ପିଲାଦିନରୁ ମୋର ଜନ୍ମପତ୍ରିକା ବା ଜାତକ ତିଆରି ହୋଇ ନ ଥିଲା ; ଯେଉଁଥିରେ କି ମୋର ଅନାଗତ ଜୀବନର ମାନଚିତ୍ର କପରି ହେବ ତା'ର ମୋଟାମୋଟି ଏକ ନକ୍ସା ତିଆରି କରିଥାନ୍ତେ ପଞ୍ଜିକା-ବ୍ରାହ୍ମଣ ବା ଜ୍ୟୋତିଷ । ମୋର ସ୍ୱର୍ଗତ ପିତା ସେ ସବୁରେ ବିଶ୍ୱାସ କରୁ ନ ଥିଲେ । ମୁଁ ମଧ୍ୟ ଆଜି ଯେ ସେଥିରେ ବିଶ୍ୱାସୀ, ତା ମଧ୍ୟ ନୁହେଁ । ତେବେ ୧୯୭୧ ମସିହାରେ ମୋର ଜଣେ ବଙ୍ଗୀୟ କବିବନ୍ଧୁ, ଯିଏକି ସୌଖୀନ ଭାବରେ ଏହି ଜନ୍ମ-ଜାତକ ତଥା ହସ୍ତରେଖା ବିଜ୍ଞାନ ସମ୍ପର୍କରେ କଟକରେ ରହି ଗବେଷଣା କରୁଥିଲେ; ସେ ହେଉଛନ୍ତି ଶ୍ରୀଯୁକ୍ତ ପ୍ରେମମୟ ଦାସଗୁପ୍ତ । ସେ ମୋର ଜୀବନ କାହାଣୀ ସମ୍ପର୍କରେ କେବଳ ଅନୁସନ୍ଧିତ୍ସୁ ନ ଥିଲେ, ମୋର ପ୍ରତିଭା ଏବଂ କାବ୍ୟ କବିତାର ସେ ଥିଲେ ଜଣେ ନୀରବ ବନ୍ଧୁ ଓ ଦରଦୀ । ଅତି ଅଳ୍ପକାଳ ମଧ୍ୟରେ ତାଙ୍କ ସହିତ ମୋର ସମ୍ପର୍କ ବେଶ୍ ନିବିଡ଼ ହୋଇଥିଲା । ଭଦ୍ରଲୋକ ... କେତେ କଟକରେ ମୁଦ୍ରଣଶିଳ୍ପ ବ୍ୟବସାୟ, ବନ୍ଧୁ ବାନ୍ଧବଙ୍କ ପ୍ରତିଷ୍ଠାନ, ପରିଶେଷରେ ନାନା ଗ୍ରେଟଗ୍ରେଟ ବ୍ୟବସାୟରେ ନିମଜ୍ଜିତ ରହି ସ୍ୱତନ୍ତ୍ର ବ୍ୟବସାୟିକ ଭିତ୍ତିରେ ଜ୍ୟୋତିଷୀ ବ୍ୟବସାୟ ମଧ୍ୟ କରିଥିଲେ । ସେ ପ୍ରାୟ

ଦୀର୍ଘ ୧ ବର୍ଷ କାଳରୁ ଅଧିକ ସମୟ ଅନୁସନ୍ଧାନ ତଥା ପରୀକ୍ଷାନିରୀକ୍ଷା କରି ବହୁ ପରିଶ୍ରମ ସହକାରେ ମୋର ଏକ ଜାତକ ତିଆରି କରିଥିଲେ । ସେହିଟି ନିମ୍ନରେ ଉଦ୍ଧାର କରୁଛି :—

Moon 28°

Sun 13°
Mars 19°
Mer 28°

Ketu

27
12

Rahu Sat 27°
Lagna Venus 15°

Jup 1°
(R)

Birth : 1943
Feb. 18th
ଭୋର

ମୋର ଜୀବନାଲେଖ୍ୟ ଭବିଷ୍ୟତରେ କେବେ କାହାର ଦରକାରରେ ଆସିବ ସେ କଥା ବିନ୍ଦୁମାତ୍ର ଯଦି କେବେ ଆଗରୁ ମୋର ଧାରଣା ହୋଇଥାନ୍ତା ତାହେଲେ ପ୍ରତିନିୟତ ଘଟିଥିବା ଘଟଣାବଳୀକୁ କାଳ-କଲମରେ ଲିପିବଦ୍ଧ କରି ରଖିଥାନ୍ତି । ଆଜ ଯେତେବେଳେ ଓଡ଼ିଶାର ଦରଦୀ ସାହିତ୍ୟପାଠକ ଏବଂ ମୋର ଅସଂଖ୍ୟ ନୀରବ ବନ୍ଧୁ ମୋତେ ମୋର ଜୀବନ କାହାଣୀକୁ କାଳବିଳମ୍ବ ନ କରି ପୂର୍ଣ୍ଣାଙ୍ଗ କରିବା ପାଇଁ ଘଣି ଘଣି ଅନୁରୋଧ କରୁଛନ୍ତି, ସେତେବେଳେ ମୁଁ ସିଂହାବଲୋକନ କରୁଛି ମୋର ଅଦ୍ଭୁତ ତଥା ବୀଭତ୍ସ ଅଗ୍ନିଦଗ୍ଧ କରୁଣ ଅତୀତକୁ । ମୋର ସ୍ମୃତିକୋଷ ଭିତରୁ ବହୁ ରୋମାଞ୍ଚକର ସ୍ମୃତି ବିଲୁପ୍ତ

ହୋଇଗଲାଣି । ମୋର ସ୍ମୃତିକୋଷରେ ସଞ୍ଚିତ ସଦ୍ୟସ୍ମୃତିମାନଙ୍କର ଅସମ୍ଭବ ସାଂଦ୍ରତା ବା ସମାଗମ । ହେଲେ ବି ଅନୁରୋଧ-ନିବେଦନର ତାଡ଼ନା କିଛି କମ୍ ନୁହେଁ ! ସେଥିପାଇଁ ମୋତେ ସୁଦୂର ଅତୀତକୁ ଫେରିବାକୁ ପଡ଼ିବ । ପ୍ରକାଶଥାଉକି, ଗତ କେତେ ବର୍ଷ ତଳେ ଶ୍ରୀମାନ୍ ପ୍ରସନ୍ନ କୁମାର ପାଣିଗ୍ରାହୀଙ୍କ ସମ୍ପାଦନାରେ ପ୍ରକାଶିତ "ବେଳା" ପତ୍ରିକାର କେତୋଟି ସଂଖ୍ୟାରେ ଯେତେବେଳେ ଏହି କାହାଣୀର କିୟଦଂଶ ପ୍ରକାଶିତ ହୁଏ, ସେତେବେଳେ ତା'ର ପ୍ରତିଧ୍ୱନି ପାଠକ ମହଲରୁ ଘନଘନ ଆସି ମୋ ପାଖରେ ପହଞ୍ଚିଲା । ତତ୍ସହିତ ଶହଶହ ଚିଠିରେ କେତେଜଣ ଜଣା-ଅଜଣା ପାଠକ-ପାଠିକା ତାଙ୍କୁ ପଢ଼ି ଅଶ୍ରୁବିସର୍ଜନ କରିଥିବା କଥା ଲେଖିଥିଲେ । 'ବେଳା' ପ୍ରକାଶନ ବନ୍ଦ ହୋଇଗଲା ପରେ ଏ କାହାଣୀ ଲେଖିବାରେ ମୁଁ ଆଉ ପ୍ରୟାସୀ ହେଲି ନାହିଁ ଏବଂ ଅବସର ମଧ୍ୟ ନ ଥିଲା । ଯେଉଁ ତଥ୍ୟ ଏଥିପାଇଁ ବିଭିନ୍ନ ସ୍ତରରେ ପ୍ରୟୋଜନ ତାଙ୍କୁ କିଛିଟା ସଂଗ୍ରହ କରିଥିଲି । କିନ୍ତୁ ଜରୁରୀ ପରିସ୍ଥିତି ପୂର୍ବରୁ ମୋର ବାସଗୃହ ଘନଘନ ପୁଲିସ କର୍ତ୍ତୃକ ନକ୍ସଲପନ୍ଥୀ କାର୍ଯ୍ୟକଳାପ ସନ୍ଦେହରେ ତଲାସ ହେବା ଫଳରେ ଏବଂ ୧୯୭୫ ମସିହାରେ ଜରୁରୀ ପରିସ୍ଥିତି ଜାରି ହେବା ପରେ ମୋର ଆତ୍ମଗୋପନ ଏବଂ କାରାବାସ ଯୋଗୁଁ ତାହା ବିପର୍ଯ୍ୟସ୍ତ ହୋଇଗଲା ।

ଯାହା ବା ଅବଶିଷ୍ଟ ଥିଲା, ଗତ ୧୯୭୮ ମସିହା ଜୁନ୍ ୨୧ ତାରିଖରୁ ଅକ୍ଟୋବର ୩୧ ତାରିଖ ମଧ୍ୟରେ ସବୁତକ ଗଲା । କାରଣ ଏହି ସମୟ ମଧ୍ୟରେ ଏକ ଭୀଷଣ ସାମାଜିକ ଷଡ଼ଯନ୍ତ୍ରର ଶୀକାର ହୋଇଥିଲା ମୋର ଜୀବନ, ପ୍ରତିଭା, ଲେଖନୀ ଏବଂ ମୋର ନିରପରାଧ ପରିବାର । ଏହି ସମୟ ମଧ୍ୟରେ ମୋତେ ହତ୍ୟା କରିବା ପାଇଁ ଜଣେ ଆଇ: ପି: ଏସ: ଅଫିସରଙ୍କୁ ନିଯୁକ୍ତ କରାଯାଇ ପ୍ରକାଶ୍ୟ ଦିବାଲୋକରେ ଶହ ଶହ ଭଡ଼ାଟିଆ ଗୁଣ୍ଡାଙ୍କ ସହାୟତାରେ ମୋତେ କ୍ଷତବିକ୍ଷତ ଏବଂ ରକ୍ତାକ୍ତ କରାଯାଇଥିଲା । ସେଥିପାଇଁ ମୋର ଉର୍ଦ୍ଧ ୧୩ ବର୍ଷର ନାନା ସ୍ମୃତି ବିଜଡ଼ିତ ରାଜାବଗିଚ୍ଛ ଲେବର କଲୋନିର ସେହି ବିଖ୍ୟାତ ସି-୪ନଂ କ୍ୱାର୍ଟରର ଭିତରେ ମୋର ଲାଇବ୍ରେରୀଟିକୁ ରଖି ଦେଇ ପ୍ରାଣ ରକ୍ଷା ଲାଗି ମୋତେ ସପରିବାର ଅନ୍ୟତ୍ର ରହିବାକୁ ପଡ଼ିଥିଲା । ୧୯୭୮ ସାଲ ଅକ୍ଟୋବର ମାସରେ ଓଡ଼ିଶାର ଉଚ୍ଚ ପୁଲିସ କର୍ତ୍ତୃପକ୍ଷଙ୍କ ପରାମର୍ଶରେ, ଯେତେବେଳେ ମୁଁ ମୋର ପୂର୍ବ ସି-୪ନଂ କ୍ୱାର୍ଟରକୁ ସପରିବାର ଫେରି ଆସେ ଯେତେବେଳେ ଅର୍ଥାତ ଅକ୍ଟୋବର ତା ୩୧ରିଖ ଦୀପାବଳୀ ଉତ୍ସବର ରାତିରେ,

ଆମେ ନିର୍ଘୋଡ଼ ନିଦରେ ଅଚେତନ ଥିଲାବେଳେ ଜଣେ ପୂର୍ବତନ ପାର୍ଲାମେଣ୍ଟ ସଭ୍ୟ ଓ ନାମଜାଦା ଆଇନଜୀବୀଙ୍କ ପୁଅଙ୍କ ନେତୃତ୍ୱରେ ପ୍ରାୟ ୩୦।୪୦ ଜଣ ମଦ୍ୟପ ଗୁଣ୍ଡା ବାହାରୁ ମୋ ବାସଗୃହ ଉପରେ ଆକ୍ରମଣ କରି କବାଟ ଝରକା ସବୁ ଭାଙ୍ଗି କେବଳ ଏକାକାର କଲେ ନାହିଁ, ମୋର ନିଦ୍ରିତ ପୁତ୍ର-କନ୍ୟାଙ୍କ ଉପରେ ସେମାନେ ଆକ୍ରମଣ କଲେ ଓ ମୋର ସ୍ତ୍ରୀଙ୍କୁ ମଧ୍ୟ ସେମାନେ ଅତ୍ୟନ୍ତ ଅଶ୍ଳୀଳ ଆଚରଣ ପ୍ରଦର୍ଶନ କଲେ । ମୋତେ ସେଦିନ ରାତିରେ ସପରିବାର ଲାଲବାଗ ପୁଲିସ ଥାନାରେ ଆଶ୍ରୟ ନେବାକୁ ପଡ଼ିଥିଲା ଏବଂ ତହିଁଆର ଦିନ ଓଡ଼ିଶାର ତତ୍କାଳୀନ ପୁଲିସ ଆଇ. ଜି. ଶ୍ରୀ ବିଜନକୃଷ୍ଣ ରାୟଙ୍କ ଦ୍ୱାରସ୍ଥ ହେବା ପରେ ଗିରଫଦାରୀ ଆରମ୍ଭ ହୋଇଥିଲା । ୧୯୭୮ ଡିସେମ୍ବର ତା ୧୦ ରିଖ ପର୍ଯ୍ୟନ୍ତ ୫ ଜଣ ସଶସ୍ତ୍ର ଏ: ପି: ଆର ମୋର ରାଜା ବଗିଚା ଲେବର କଲୋନୀସ୍ଥ ସି-୪ ନଂ କ୍ୱାର୍ଟରର ସାମ୍ନାରେ ତମ୍ବୁ ପକାଇ ମୋର ନିରାପତ୍ତା ରକ୍ଷା କରିଥିଲେ । ଆଜି ପର୍ଯ୍ୟନ୍ତ ମଧ୍ୟ ମୋର ଜଣେ ସ୍ୱତନ୍ତ୍ର ଦେହରକ୍ଷୀ ମୁତୟନ ଅଛି । ଆଇ. ଜି. ଏବଂ କେନ୍ଦ୍ରାଞ୍ଚଳ ଡି: ଆଇ: ଜି: ଶ୍ରୀଯୁକ୍ତ ଡି: ଏନ. ସିଂ ଯଦି ମୋ ନିରାପତ୍ତାର ଏହି ବ୍ୟବସ୍ଥା ନ କରିଥାନ୍ତେ ତା'ହେଲେ ମୋର ଅସ୍ତିତ୍ୱ ଆଜି ନଥାନ୍ତା । ଯୋଜନା ଥିଲା, ମୋ ସ୍ତ୍ରୀ ଏବଂ କନ୍ୟା ମନୀଷାଙ୍କୁ ବାଦ୍ ଦେଇ ମୋତେ ଏବଂ ମୋର ଦୁଇପୁଅଙ୍କୁ ଜୀବନରୁ ମାରି ଦିଆଯିବ । ଏ ଯୋଜନାର ଜାଲ ଅତ୍ୟନ୍ତ ସତର୍କତାର ସହ ବୁଣିଥିଲେ ମୋର ସାହିତ୍ୟିକ ତଥା ରାଜନୈତିକ ବିରୋଧୀ ଗୋଷ୍ଠୀ, ଯେଉଁମାନେ କି ବିଗତ ଚଉଠ ଶତାବ୍ଦୀ ଧରି ମୋର କଲମକୁ ସ୍ତବ୍ଧ କରିବାକୁ ନାନା ଚେଷ୍ଟାକରି ବିଫଳ ହୋଇଥିଲେ, ମୋତେ ପଦାନତ କରିବା ପାଇଁ ବ୍ୟର୍ଥ ହୋଇଥିଲେ ଏବଂ ମୋର ଲେଖା, ଭାଷଣ, ସମାଲୋଚନା ତଥା ନିର୍ଭୀକ-ସାମ୍ବାଦିକତାରେ ଜର୍ଜରିତ ହୋଇଥିଲେ । ସେମାନଙ୍କ ସହିତ ଆସି ଯୋଗ ଦେଇଥିଲେ କଣ୍ଟ୍ରାକ୍ଟର, ବସ୍ତିର ଭଡ଼ାଟିଆ ଗୁଣ୍ଡା, ମଦ ଭାଟିର ମାଲିକ, ସ୍ଥାନୀୟ ଦୁର୍ନୀତିଖୋର ନେତା, ରାଜକୁମାର, ସି. ପି. ଆଇ:, କଂଗ୍ରେସ, ଜନତା ଦଳର କେତେକ ଲୋକ, ସମ୍ବାଦପତ୍ରର ମାଲିକ, ଭୂତମନ୍ତ୍ରୀ ତଥା ମୁଖ୍ୟମନ୍ତ୍ରୀଙ୍କ ଲୋକମାନେ । ଏତେବଡ଼ ନାରକୀୟ ଘଟଣା ବାରମ୍ବାର କଟକ ସହରର ଛାତିରେ ଘଟାଯାଇଥିଲେ ମଧ୍ୟ ଓଡ଼ିଆ ଦୈନିକ ସମ୍ବାଦପତ୍ର ତଥା ବୁଦ୍ଧିଜୀବୀ ମଣ୍ଡଳ ଥିଲେ ଈଶ୍ୱରବତ୍ ମୂକ । ଯେଉଁ କବି-ସାହିତ୍ୟିକ-ସାମ୍ବାଦିକମାନେ ଏ ଘଟଣାର ବିପଜ୍ଜନକ ପ୍ରତିବାଦ କରିବାକୁ ଆଗେଇ ଆସିଥିଲେ ସେମାନଙ୍କର ସେ କଣ୍ଠସ୍ୱରକୁ ଓଡ଼ିଆ ସମ୍ବାଦପତ୍ରମାନେ ଜାଣିଶୁଣି ରୁଦ୍ଧ କରି ଦେଇଥିଲେ । କିନ୍ତୁ ବମ୍ବେର ବହୁଳ ପ୍ରଚାରିତ ସାପ୍ତାହିକ "ବ୍ଲିଜ୍"

"ଅମୃତବଜାର ପତ୍ରିକା" ଦିଲ୍ଲୀର "ମାନବିକ ଅଧିକାର" ବୁଲେଟିନ, ଏବଂ କେତେଜଣ ପାର୍ଲାମେଣ୍ଟ ସଭ୍ୟ ଏ ଘଟଣାର ତୀବ୍ର ପ୍ରତିକ୍ରିୟା ପ୍ରକାଶ କରିଥିଲେ ।

ଏ ଘଟଣାକୁ ଏଠି ସଂକ୍ଷିପ୍ତ ଭାବରେ ଉଲ୍ଲେଖ କରିବାର କାରଣ ହେଲା ମୋର ସାଧନାର ବେଦିକୁ ନିର୍ମମ ଭାବରେ ଧ୍ୱସ୍ତ ବିଧ୍ୱସ୍ତ କରାଯାଇଛି—ମୋ ଭିତରର ମଦନ-ମନୋହର କାବ୍ୟପୁରୁଷ ତଥା ଅନ୍ତର୍ମନୀଷୀଙ୍କୁ ଏପରି ଭାବରେ ଆହତ କରାଯାଇଛି ଯେ; ଆଜି ପର୍ଯ୍ୟନ୍ତ ମନର ତୁଙ୍ଗ ଶିଖରରୁ ବହୁଛି ତାଜା-ରକ୍ତର ଝରଣା । ମୁଁ ଆଜି ପ୍ରାୟ ଏକପ୍ରକାର ନିର୍ବାସିତ । କଟକସହର ଠାରୁ ଦୂରରେ ନୂଆପଡ଼ା ଲେବରକଲୋନୀର ଏଲ୍-୫ କ୍ୱାର୍ଟରରେ ବସି କଲମ ଉଠାଇଛି ବିଗତ, ବିଗତ ଦିନର ଇତିହାସ ରଚନା ପାଇଁ । ଯେଉଁ ମୃତ୍ୟୁର ଗିରିସଙ୍କଟ ମୁଁ ଅତିକ୍ରମ କରି ଆସିଲି ତାହା ମୋର ସାଧନାର ଧାରାବାହିକତାକୁ କେବଳ ଛିନ୍ନ କରିନାହିଁ—ସାଧନା ଓ ସୃଷ୍ଟି ପଥରେ ଆଣିଦେଇଛି ଏକ ଦୁଃସହ ଦୀର୍ଘ ବିରତି । ମୋର ସମଧର୍ମୀ ବଙ୍ଗଳାର ସ୍ୱର୍ଗତ କବି ସୁକାନ୍ତ ଭଟ୍ଟାଚାର୍ଯ୍ୟଙ୍କ ଭାଷାରେ ଓଡ଼ିଆ ଜାତିକୁ ମୁଁ ସଲାମ୍ କରୁଛି ।

"ଏ ଦେଶେ ଜନ୍ମେ ପଦାଘାତ ଇ ସୁଧୁ ପେଲାମ୍
ଅବାକ୍ ପୃଥିବୀ, ସେଲାମ୍ ତୋମାକେ ସେଲାମ୍ ।"

ତଥାପି ସେଇ ତାରିଖ-କଣ୍ଟକିତ ପଥରୁ ବିଚ୍ୟୁତ ହୋଇ ମୋତେ ଆଜି ମୁହଁ ଫେରାଇବାକୁ ହେବ ସୁଦୂର ଅତୀତକୁ । ମୋର ସ୍ୱର୍ଗତା ଜନନୀ ଠାରୁ ଶୁଣିଥିବା ମୋ ଜନ୍ମ ହେବା ବେଳର ପରିବେଶ, ହେତୁ ପାଇବା ଦିନ ଠାରୁ ନାନା ସଂକଟ, ବିଦ୍ରୂପର ଜ୍ୱଳନ୍ତ ସରଣୀ ମଧ୍ୟ ଦେଇ ଏ ଯାବତ୍ ଆସିବା ଭିତରେ ଏ ଜରାସନ୍ଧ ସମାଜଟାକୁ ମୁଁ ଯେପରି ଭାବରେ ଚିହ୍ନିଛି, ରକ୍ତ ଓ ଜୀବନ ଚିନ୍ମୟରେ ଅନୁଭବ କରିଛି, ସମସ୍ତ ପ୍ରତିକୂଳତା ଭିତରେ ଯେପରି ନିଜର ବିକାଶ ଘଟାଇଛି, ତା'ର ଛବିକୁ ଆଙ୍କିବାକୁ ଚେଷ୍ଟାକରିବି ।

ପଛରେ କିଏ କାନ୍ଦୁଛି ?

ଦୂରାଗତ ବଂଶୀସ୍ୱନ ପରି ସେ କାନ୍ଦଣା ଅବିରାମ ଆସି ଆଜି ବାଜୁଛି ମୋର ହୃଦୟର ଅନ୍ତରତମ ପ୍ରଦେଶରେ । କାନ୍ଦୁଛି ତା'ହେଲେ କିଏ ?

ବହୁବାର କାନପାତି ଶୁଣିବାକୁ ଚେଷ୍ଟା କରିଛି—ଅତ୍ୟନ୍ତ ପରିଚିତ କଣ୍ଠର ସେ କାନ୍ଦଣା । ମୋର ଉଦାସୀନ-ଏକାକୀତ୍ୱକୁ ବହୁବାର ପଚାରିଛି ତା'ର ପରିଚୟ । ଉତ୍ତର ପାଇଛି : ସେ କ୍ରନ୍ଦନ ଧ୍ୱନି ଆଉ କାହାର ନୁହେଁ, ମୋ ସକରୁଣ ଶୈଶବର, ଅନାଦୃତ କୈଶୋରର, ଉପେକ୍ଷିତ, ଅପମାନିତ ତଥା ଅବହେଳିତ ବିଦ୍ରୋହୀ ଯୌବନର ।

ମୋ ଶୈଶବ, କୈଶୋର ଏବଂ ଯୌବନ—ଏମାନେ ସମସ୍ତେ ମିଶି ତା'ହେଲେ କାନ୍ଦୁଛନ୍ତି କାହିଁକି ?

ଆଖି ଆଗରେ ଅଜ୍ଞାତ ଏବଂ ରହସ୍ୟାବୃତ ଭବିଷ୍ୟତର ପରଦା ପଛରେ ଦୁଃଖଦାୟୀ ଅତୀତ ଅଛି । ଏହାର ମଧ୍ୟଭାଗରେ ଯନ୍ତ୍ରଣାକର 'ବର୍ତ୍ତମାନ' ହିଁ ଏକମାତ୍ର ସାହା-ଭରସା, ଚଲାବାଟର ସାଥୀ··· । ଜୀବନ ସମ୍ପର୍କରେ ପ୍ରତି ପଦକ୍ଷେପରେ, ପ୍ରତିଟି ମୁହୂର୍ତ୍ତରେ ଭାବିଛି : 'କ'ଣ ଏଇଟି ?'

ମୋ ପଛରୁ ସତେ ଯେପରି କିଏ କ୍ରମାଗତ ଏକ ବିଳମ୍ବିତ ଉତ୍ତର ଦେଉଛି । ଜୀବନ ହେଉଛି ଗୋଟାଏ ଅସୀମ କୌତୁହଳର ପାଗଳ ଗାରଦ, "ଜୀଇଁ ରହିବାଟା ଗୋଟାଏ ବନ୍ଧନ, ଗୋଟାଏ Punishment ।"

ଜୀବନ ସମ୍ପର୍କରେ ଏ ଅପ୍ରୀତିକର ବିଶ୍ଳେଷଣ ହୋଇପାରେ ମୋର ବିତୃଷ୍ଣ ଅବଚେତନ ମାନସର ଏକ ବିକାର ; କିନ୍ତୁ ମୋର ସଚେତନ ମାନସକୁ ମଧ୍ୟ ନାନା ସମୟରେ, ନାନା ଭାବରେ 'ଜୀବନ' ସମ୍ପର୍କରେ ମୁଁ ନାନା ପ୍ରଶ୍ନ କରିବାକୁ ଛାଡ଼ି ନାହିଁ । ହେଲେ ବି ମୋ ଅବଚେତନ ମାନସର ଜୀବନ ବିଶ୍ଳେଷଣ ସହିତ ପୂର୍ଣ୍ଣ ଏକମତ ହୋଇଛି ମୋର ସଚେତନ ମାନସ ।

ଯେଉଁ ପରିବେଶ କୋଳରେ ଲାଳିତ ପାଳିତ ମୋର ଅସହାୟ ଦାରିଦ୍ର୍ୟ ଜର୍ଜରିତ ଶୈଶବ, ଅନାଦୃତ କୈଶୋର ଏବଂ ଅପମାନିତ ବିଦ୍ରୋହୀ ଯୌବନ ପାଠକମାନଙ୍କର ଏବଂ ମୋର ଦୁର୍ଭାଗ୍ୟ 'ମଣିଷ' ନାମଧାରୀ ଯେଉଁ ଦ୍ୱିପଦ-ମାନଙ୍କୁ ମୁଁ ପ୍ରତିନିୟତ ମୋ ଯାତ୍ରାପଥରେ ଭେଟିଆସିଛି, ସେଥିରେ ଜୀବନ ସମ୍ପର୍କରେ ଉକ୍ତ ବିଶ୍ଳେଷଣହିଁ ମୋ ପକ୍ଷରେ ଏକାନ୍ତ ସ୍ୱାଭାବିକ ଏବଂ

ଆନ୍ପ୍ରୋପ୍ରିଏଟ୍ । କଏ ସିନା ମରଣର ଆତଙ୍କରେ ଜୀବନକୁ ଜାବୁଡ଼ି ଧରେ ମୁଁ କିନ୍ତୁ ଜୀବନର ଆତଙ୍କରେ ମରଣକୁ ପ୍ରାଣପଣେ ଜାବୁଡ଼ି ଧରିବାକୁ ଚେଷ୍ଟା କରି ଆସିଛି, ଆସୁଛି ।

କାଲ୍ଗୁନିକ ସୂର୍ଯ୍ୟୋଦୟର ଦୁଃସହ ପ୍ରତୀକ୍ଷାରେ ଜୀବନର ଚିରଫଳକଟରେ ଗୃହଳଥିଲି, ଯୌବନ ଆସି ଉତ୍ତୀର୍ଣ୍ଣ ହେଲାଣି, ତଥାପି ନିଶାବସାନର କୌଣସି ସୂଚନା ମଧ୍ୟ ନାହିଁ । ବେଳୁବେଳ ଆହୁରି ଘନୀଭୂତ ଅନ୍ଧକାର, ଏଭଳି ନରକର ଗହ୍ୱର, ଯନ୍ତ୍ରଣାର ସୁଦୀର୍ଘ ସରଣୀ । ବାଧ୍ୟତାମୂଳକ ପ୍ରତିରୋଧ ସଗ୍ରାମ, ଜଣା-ଅଜଣା ହୀନତମ ଶତ୍ରୁମାନଙ୍କ ସହିତ ।

ସୁଦୀର୍ଘ ପାଞ୍ଚଦିନର ଉପବାସ ପରେ ପୁଳାଏ ସଜନାପତ୍ର ସିଝା ଗୋଟିଏ ଡାଟିଆରେ ଧରିବସିଥିଲି ମା । ତା'ର ଗୋରା ତକତକ୍ ନଚେହ୍ନ ମୁହଁର ହନୁହାଡ଼ ଉପର ଦେଇ ଦୁଇଟି ଲୋତକର ଶୁଷ୍କ ଧାର । ତାର ଠିକ୍ ସାମ୍ନାରେ ବସିଥିଲି ମୁଁ । ସିଝା ସଜନାପତ୍ରରୁ କିଛି ମୋତେ ଖୁଆଇ ଦେଉ ଦେଉ ମୁଁ ତାକୁ ପଚାରିଥିଲି "ମା, ବାପା କେତେବେଳେ ଆସିବେ ?"

"ମୁଁ କେମିତି କହିବିରେ ବାବା ?" ବାସ୍ ଏତିକ । ଆହୁରି କାନ୍ଦ, ଆହୁରି ଲୁହ ।

ବାପା ସେ ଦିନକୁ ମିଶାଇ କୋଡ଼ିଏ ଦିନ ଧରି ଘରେ ଅନୁପସ୍ଥିତ । ମା ଦେହରେ ଜରର ଖଇଫୁଟା ତାତି । ତା'ର ପାଞ୍ଚଦିନ ଉପବାସ ପରେ ସେଇ ସିଝା ସଜନାଶାଗ ଥିଲା ତାର ପଥ୍ୟ ଆଉ ପ୍ରଥମ ଆହାର । ମୁଁ କିନ୍ତୁ ସେଇ ପାଞ୍ଚଦିନ ଭିତରେ ଦୁଇଟା ପୋଡ଼ା ଆଳୁ; ଦି' ପଇସାର ମୁଡି ଏବଂ କିଛି ପାଣି ଗଳାଧଃକରଣ କରିଥିଲି । ଏତିକ ମୋତେ ଦେଇଥିଲା କୁଣିଆଦାଦାର ସ୍ତ୍ରୀ କଙ୍କିଖୁଡ଼ୀ ଦୟାପରବଶ ହୋଇ । ( କୁଣିଆଦାଦା—ଓରଫ୍ କୃଷ୍ଣଚନ୍ଦ୍ର ନାୟକ, ଜାତିରେ ପଞ୍ଜିକା ବ୍ରାହ୍ମଣ ଅର୍ଥାତ୍ ଅବଧାନ । ସେ ସର୍ବମୋଟ ତିନୋଟି ମହିଳାଙ୍କୁ ବିବାହ କରିଥିଲେ । ତିନୋଟିଯାକ ସ୍ତ୍ରୀ କେହି ବଞ୍ଚିଲେ ନାହିଁ । ଶେଷ ସ୍ତ୍ରୀର ଗୋଟିଏ ପୁତ୍ର ସନ୍ତାନକୁ ଛାଡ଼ି କୁଣିଆଦାଦା ମଧ୍ୟ ଇହଧାମ ତ୍ୟାଗ କରିଥିଲେ । )

ବାପା ମାସରେ ଦୁଇ ତିନି ଦିନ ଘରକୁ ଆସନ୍ତି । ତା ପରେ ପୁଣି ସେ କୁଆଡ଼େ ଅନ୍ତର୍ଦ୍ଧାନ ହୁଅନ୍ତି, ତା ସେତେବେଳେ ମୁଁ ବୁଝିପାରେ ନା । ମୋର ବୟସ ସେତେବେଳେ ୫।୬ ବର୍ଷ ହେବ । ଆଗକୁ ପେଟଟି ବାହାରି ପଡ଼ିଥାଏ । ଠିକ୍ ଆଜି ଗେଧା ହୋଇ ମୁଁ ଗାଁ ଦାଣ୍ଡରେ ସାଙ୍ଗପିଲାଙ୍କ ସହିତ ଖେଳି ଖେଳି ଘରକୁ ଫେରି ସେତେବେଳେ ମା'କୁ ଆସି କହେ "ଭୋକ ହେଲାଣି—ଖାଇବାକୁ ଦେ—" ସେତେବେଳେ ମା' ମୋ ମୁହଁକୁ ଅବାକ୍ ଚାହାଣୀରେ ଦୀର୍ଘ ସମୟ ଧରି ଚାହିଁରହେ । ମୁଁ ତାର ସେ ଅବାକ୍ ଚାହାଣୀର ଭାଷା ବା ବୁଝିବି କାହିଁ । ସ୍ୱାର୍ଥପର ଶିଶୁର ଯାହା ସଚରାଚର ଧର୍ମ, ତାକୁହିଁ ମୁଁ ସେତେବେଳେ କଡ଼ାକଡ଼ି ପାଳନ କରୁଥିଲି, ଅର୍ଥାତ୍ ଖାଇବାକୁ ନ ମିଳିଲେ ବା ଡେରି ହେଲେ ମା ଉପରେ ଆରମ୍ଭ ହେଉଥିଲା ମୋର ଶିଳାବୃଷ୍ଟି । ମାଟି, ଗୋବର ଇତ୍ୟାଦି ହାତ ପାଖରେ ଯାହା ପାଉଥିଲି ତା ଉଠାଇ ଫିଙ୍ଗୁଥିଲି ମା ଉପରକୁ । କିନ୍ତୁ ମା' ମୋ ଲୌହଗର୍ଭା, ବନାନୀବିଭୂଷା, ସାଗରମେଖଳା ଧରିତ୍ରୀବତ୍ ସର୍ବଂସହା ! କ୍ରମାଗତ ଅନାହାର, ଦାରିଦ୍ର୍ୟର ଅଟ୍ଟହାସ ଏବଂ ଶୋଷଣ-ନିପୀଡ଼ନ ଯନ୍ତ୍ରରେ ସେତେବେଳେ ପ୍ରତିନିୟତ ପେଷି ହେଉଥିବା ମୋର ସେହି ନିରପରାଧା ଜନନୀଙ୍କୁ ସହାନୁଭୂତି ଜଣାଇବା ପାଇଁ କେହି ଆଗେଇ ଆସିଥିବାର ମୋ ମନେ ପଡ଼ୁନାହିଁ ।

ନିର୍ଜନ, ଗହୀର ସେହି ପଲ୍ଲୀ ଗାଁର ରାତିରେ ମୋତେ କୋଳରେ ପୂରାଇ ମା' ମୋ ଜନ୍ମବେଳର କଥାମାନ ଯେପରି ଭାବରେ ଯେପରି ଭଙ୍ଗୀରେ ବର୍ଣ୍ଣନା କରୁଥିଲା ସେଥିରେ ମୁଁ ପ୍ରାୟ ବିହ୍ୱଳ ହୋଇ ଭୋକଶୋଷ ଭୁଲି ଶୋଇ ପଡ଼ୁଥିଲି । କଟକ ଜିଲ୍ଲା ଜଗତସିଂହପୁର ଥାନର ନବାପାଟଣା ଗାଁରେ ସମ୍ପ୍ରତି ଭଗ୍ନସ୍ତୂପରେ ପରିଣତ ହୋଇଥିବା ମୋର ପୈତୃକ ବାସଗୃହଟିର ଯଦି ହୃତପିଣ୍ଡ ଥା'ନ୍ତା, ତା'ହେଲେ ତାହା ସ୍ପନ୍ଦିତ ହୋଇଉଠି ଆଜି କହି ବସନ୍ତା ମୋର ବଂଶର ଆତ୍ମତ୍ୟାଗ ତଥା ବୈପ୍ଳବିକ ଇତିହାସର କାହାଣୀ ।

ମୋର ସେହି ସ୍ନେହମୟୀ ଜନନୀର ଦେହାନ୍ତ ହୋଇଥିଲା, କହିବାକୁ ଗଲେ ଏକପ୍ରକାର ଅନାହାରରେ । ତା' ଚିତାର ସେହି ଧୂମପୁଞ୍ଜର ଲେଲିହାନ ଜିହ୍ୱା ଏବଂ ଆଲୋକ ମୋତେ ମୋର ଅଜାଣତରେ ଏକଦା ଆଲିଙ୍ଗନ କରିବାକୁ ଧାଇଁ ଆସିଥିଲା । ପରେ ଚେତନଶୀଳ ହୋଇ ଅନୁଭବ କରିଛି ଯେ,

ମାତୃଚିତ୍ତର ସେହି ସ୍ନେହାର୍ଦ୍ର ଆଲୋକ କମ୍ ଆଲୋକିତ କରିନାହିଁ ମୋର ଏ ବାରବୁଲା ଜୀବନ, ବିଦ୍ରୋହୀ ପୌରୁଷ ଓ ବିପ୍ଳବୀ କବିତ୍ୱକୁ !

କେତେ ସାଲ—ଠିକ୍ କରି କହିପାରିବ ନାହିଁ । କୁଆଡ଼େ ଏକ ପ୍ରଳୟଙ୍କରୀ ଝଡ଼ ପୂର୍ବ ରାତିରେ ବହି ଯାଇଥିଲା ନବାପାଟଣା ଗାଁ ଉପର ଦେଇ । ରାତି ପାହିଲା ବେଳକୁ ସରସ୍ୱତୀ ପୂଜାର ଧୂମ୍ ଆରମ୍ଭ ହୋଇ ଯାଇଥିଲା ସାରା ଗାଁ'ଟିରେ । ଏହି ଅବସରରେ ଆମ ଘର ସେତେବେଳେ ଥିଲା ସଶସ୍ତ୍ର ପୋଲିସ ପରିବେଷ୍ଟିତ । ଇଂରେଜ ସରକାରର ନିର୍ଦ୍ଦେଶରେ ପୁଲିସ-ବାହିନୀ ଆମ ଘରର ଦରଜାମାନଙ୍କରେ ବଡ଼ ବଡ଼ ତାଲା ଝୁଲାଇ ଘରଟିକୁ ଘେରି ରହିଥିଲେ ଘରଟିକୁ ପୂର୍ବରୁ ( କୁଆଡ଼େ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ଆନ୍ଦୋଳନ ସମ୍ପର୍କୀୟ ଆପତ୍ତି ଜନକ କାଗଜପତ୍ରମାନ ଆମ ଘରେ ଗଚ୍ଛିତ ଅଛି ବୋଲି ପୁଲିସ ଖବର୍ ପାଇଥିଲା । ) ଫଳରେ ପଡ଼ୋଶୀ ହରିଆ ଦାଦା ବା ହରି ସାହୁ ଘରେ ମା' ଯାଇ ଆଶ୍ରୟ ନେବାକୁ ବାଧ୍ୟ ହୋଇଥିଲା ।

ବସନ୍ତ ପଞ୍ଚମୀର ପୂର୍ବଦିନ ରାତିରେ ଅସମ୍ଭବ ପ୍ରସବ ଯନ୍ତ୍ରଣା ଏବଂ ବସନ୍ତପଞ୍ଚମୀର ଅତି ପ୍ରତ୍ୟୁଷରୁ ଆମ ଘରର ବାରିପଟେ ଥିବା ବିରାଟ "କାଳି ଆମ୍ବଗଛ" ମୂଳେ ମୋର ଜନ୍ମ—ବାପା ସେତେବେଳେ ରାଜଦ୍ରୋହ ଅପରାଧରେ ସୁଦୂର ପାଟଣା କ୍ୟାମ୍ପ୍ ଜେଲରେ ବନ୍ଦୀ ।



# ନିର୍ଝରର ଉପଭୂମି

ଆମ ଗାଁର ଅନ୍ୟତମ ନାମ ହେଲା 'ସିଂହାରପୁର' । ଏ ନାମକରଣଟି କେଉଁଥିପାଇଁ ହୋଇଥିଲା, କିଏ ଏ ନାମକରଣ କରିଥିଲା, ତା'ର କୌଣସି ଇତିହାସ ଏ ଯାବତ୍ ମୋର ହସ୍ତଗତ ହୋଇନାହିଁ । ତା ଛଡ଼ା ନବାପାଟଣା ବା ସିଂହାରପୁର ଗାଁକୁ ଆମର ପରିବାର, ମୋର ପୂର୍ବପୁରୁଷ କିପରି, କେବେ, କେଉଁ ଭାବରେ ଆସି ବସତି ସ୍ଥାପନ କଲେ ତାହା ମଧ୍ୟ ମୋତେ ଅଜ୍ଞାତ । ଶୁଣିଛି ସୁଦୂର ରାଜପୁତାନାରୁ କାହିଁ କେଉଁ ଅତୀତ କାଳରେ ପ୍ରଥମେ ଆମର ପୂର୍ବପୁରୁଷ ନବାପାଟଣା ଗାଁକୁ ଆସି ବସତି ସ୍ଥାପନ କରିଥିଲେ । ସେହି-ଦିନ ଠାରୁ ନବାପାଟଣା ଗାଁର ନାମ ହୋଇଥିଲା 'ସିଂହାରପୁର' ।

ବିରାଟ ଆମର ଗାଁ । ବିଭିନ୍ନ ସଂପ୍ରଦାୟର ଲୋକେ ଗ୍ରାମର ବାସିନ୍ଦା । ଯଥା : ତନ୍ତୀ, ତେଲି, ତାମିଳ, ଶୁଣ୍ଢୀ, ବ୍ରାହ୍ମଣ, ଗୁଡ଼ିଆ, ବଣିଆ, ହାଡ଼ି, ପାଣ, ମୁସଲମାନ, ଖୋଡ଼ିଆ, ପାଟରା, କେଉଟ, ନାପିତ, ଚଷା ଇତ୍ୟାଦି ସଂପ୍ରଦାୟରେ ଗାଁଟି ପରିପୂର୍ଣ୍ଣ । ସେମାନଙ୍କର ଜୀବିକା ମଧ୍ୟ ବହୁବିଧ । ନାନା-ଧରଣର ବ୍ୟବସାୟରେ ସେମାନେ ସର୍ବଦା ଲିପ୍ତ । ଏମାନଙ୍କ ମଧ୍ୟରେ ଅତ୍ୟନ୍ତ ଧନଶାଳୀ ଓ ଅତ୍ୟାଚାରୀ ଜମିଦାର ହେଲେ ବଣିଆ ସାହୁବଂଶ । ସେତେବେଳେ ତ ଇଂରାଜ ସରକାରର ଜମିଦାରମାନେ ଥିଲେ କୋଳପୁଅ । ଏହି ସାହୁବଂଶ ଏକଦା ଏପରି ଅତ୍ୟାଚାରୀ ଥିଲେ ଯେ, ସେମାନଙ୍କ ଅତ୍ୟାଚାରକୁ ସାଧାରଣ ଲୋକ ଭାଗ୍ୟର ଲିଖନ ବୋଲି ଧରି ନେଇ ତାକୁ ନୀରବରେ ବରଣ କରୁଥିଲେ । ଏପରିକି ଗାଁର କୌଣସି ପରିବାରରେ ସ୍ୱାମୀ-ସ୍ତ୍ରୀ ଭିତରେ ମନୋମାଳିନ୍ୟ ହେଲେ, ଜମିଦାର ସାହୁବଂଶର ଦରବାରରେ ଯାଇ ଫେରାଦ ହେବାକୁ ପଡ଼ୁଥିଲା । ସାହୁବଂଶର ରାୟ ଥିଲା ସେ କ୍ଷେତ୍ରରେ ସର୍ବଶେଷ ରାୟ । ଯାହାକୁ ଯେତେବେଳେ ଇଚ୍ଛା ହେଉଥିଲା, ସିଏ ପୁରୁଷ ହେଉ ବା ସ୍ତ୍ରୀ ହେଉ, ତାକୁ ଜମିଦାର ସାହୁବଂଶର ପିଆଦା ଓ ଲୋକ ଧରିଆଣି ପ୍ରକାଶ୍ୟ ଦିବାଲୋକରେ ନଡ଼ିଆଗଛରେ ବାନ୍ଧି ପିଟୁଥିଲେ ନିଷ୍ଠୁର । ପ୍ରତିରୋଧ ତ ଦୂରର କଥା,

ସାମାନ୍ୟତମ ପ୍ରତିବାଦ ମଧ୍ୟ କରିବା ପାଇଁ ଲୋକଙ୍କ ମନରେ ଭାଷା ନଥିଲା ୧୯୪୭ ମସିହା ପର୍ଯ୍ୟନ୍ତ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଆଉ ଏକ "ସମାନ୍ତରାଳ ଜମିଦାରୀ" ଥିଲା ମୋ ବାପା ୰ ରାମଚନ୍ଦ୍ର ସିଂହଙ୍କର । ସେ "ଜମିଦାରୀ" ଥିଲା ଅତ୍ୟାଚାରୀ ସାହୁକାର ଜମିଦାରୀ ଚରିତ୍ରର ସମ୍ପୂର୍ଣ୍ଣ ବିପରୀତ । ବାପା ନିର୍ଦ୍ଦିଷ୍ଟ ଭାବରେ ଅତ୍ୟାଚାର କରୁଥିଲେ ସାହୁକାର ଉପରେ । ଏପରିକି ସେମାନଙ୍କ ମଧ୍ୟରୁ ଅନେକଙ୍କୁ ସେ ନଡ଼ିଆ ଗଛରେ ବାନ୍ଧି ମାଡ଼ ଦେଉଥିଲେ । ଆମ ଘର ପାଖରେ ଥିବା ସେମାନଙ୍କ ନଡ଼ିଆ ବଗିଚାରେ ସେମାନଙ୍କୁ ପୁରାଇ ଦେଉନଥିଲେ । ବାପାଙ୍କୁ ଦେଖିବା ମାତ୍ରେ ଜମିଦାର ପରିବାରର ଲୋକେ ଅଦୃଶ୍ୟ ହେଉଥିଲେ । ପ୍ରକୃତରେ ବାପା ଥିଲେ ଜଣେ କ୍ରୁଦ୍ଧ ସିଂହର ଚରିତ୍ରଧାରୀ ମଣିଷ । ଶତ୍ରୁ ପ୍ରତି ସେ ଯେତିକି ନିର୍ମମ ଥିଲେ; ଦରିଦ୍ର, ଅସହାୟ, ନିପୀଡ଼ିତ ଶ୍ରେଣୀ ପ୍ରତି ଥିଲେ ସେତିକି ସହାୟ । ସେ ଥିଲେ ସେତେବେଳେ ମନରେ, ପ୍ରାଣରେ ଅତ୍ୟନ୍ତ "ରେଡ଼ିକ୍ୟାଲ"—ଜାତିଭେଦ, ମୂର୍ତ୍ତିପୂଜାର ଘୋର ବିରୋଧୀ । ବାରାନ୍ତରେ ତାହା ଆଲୋଚିତ ହେବ ।

ମୋର ବାପା ସ୍ୱର୍ଗତ ରାମଚନ୍ଦ୍ର ସିଂହ ୧୯୨୧ ମସିହା ପୂର୍ବରୁ ଥିଲେ ସେଟଲମେଣ୍ଟ ବିଭାଗର ଜଣେ କର୍ମଚାରୀ । ସିଂହାରପୁର ଗାଁରେ ଆମ ପରିବାର ଥିଲା ଉଚ୍ଚ-ମଧ୍ୟବିତ୍ତ ପରିବାର । ଗଚ୍ଛିତ ଅର୍ଥ ସହିତ ଥିଲା ୨୫ ଏକର ପର୍ଯ୍ୟନ୍ତ ଜଳସେଚିତ ଧାନଜମି । ପରିବାରରେ ମୋର ବାପା ଥିଲେ ସମସ୍ତଙ୍କ ଠାରୁ ବଡ଼ । ତାଙ୍କ ତଳ ଭାଇ ଅର୍ଥାତ୍ ମୋର ମଝିଆଁ ଦାଦା—ତାଙ୍କ ନାମ ହେଲା ଶ୍ରୀ ଯଦୁମଣି ସିଂହ । ସବା ସାନଭାଇ ଅର୍ଥାତ୍ ମୋର ସାନଦାଦା ହେଲେ ଶ୍ରୀ ସାଧୁଚରଣ ସିଂହ । ବାପାଙ୍କର ଥିଲେ ଦୁଇଟି, ଭଉଣୀ ଅର୍ଥାତ୍ ମୋର ପିଉସୀ—ଜଣଙ୍କର ନାଁ ମୁଁ ଜାଣେନା । ଅନ୍ୟ ଜଣଙ୍କର ନାଁ ହେଲା ଦୁର୍ଗା, ଯିଏ କି ତାର ଏକମାତ୍ର କନ୍ୟା 'ନଣା'ର ଜନ୍ମ ପରେ ହୋଇଥିଲା ବିଧବା । ପରିଶେଷରେ 'ନଣା'କୁ ସେ ବିବାହ ଦେଇଥିଲା । ତା'ର କିଛି ଦିନ ପରେ 'ନଣା' ମଧ୍ୟ ମୃତ୍ୟୁବରଣ କଲା । ଫଳରେ ଦୁର୍ଗା ପିଉସୀ ତାର କନ୍ୟା ଶୋକରେ ହରାଇ ବସିଥିଲା ନିଜର ଶ୍ରବଣ ଶକ୍ତି । ସେହି ଦୁର୍ଗା ପିଉସୀ ଥିଲା ମୋ ଜନ୍ମଲଗ୍ନର ପ୍ରତ୍ୟକ୍ଷ ସାକ୍ଷୀ—ସେହି ହିଁ ମୋତେ ଆମ ବାରିପଟ 'କାଳିଆମ୍ବ ଗଛ' ମୂଳ ଖତ-ଗଦାରୁ ଗୋଟେଇ ହରିଆ ଦାଦା ଘରକୁ ଆଣିଥିଲା ।

୧୯୨୧ ସାଲରେ ମହାତ୍ମାଗାନ୍ଧୀଙ୍କ ଓଡ଼ିଶା ଆଗମନ କାଳରେ ସେଟଲମେଣ୍ଟ ଚାକିରୀ ଛାଡ଼ି ବାପା ଯୋଗଦେଇ ଥିଲେ ଜାତୀୟ କଂଗ୍ରେସରେ । ତାଙ୍କର ଦୁଇ ସାନଭାଇଙ୍କୁ ସେ ନିଜ ହାତରେ ମଣିଷ କରିଥିଲେ ପୁଅ ପରି । ମୋର ସେହି ଅନାମିକା ପିଉସୀ, ଯାହାର ମୃତ୍ୟୁ ଘଟିଥିଲା ଗୋଟିଏ ପୁତ୍ର ସନ୍ତାନ ବଂଶୀଧରକୁ ପୃଥିବୀରେ ଛାଡ଼ିଦେଇ, ସେହି ବଂଶୀଧରର ଯେତେବେଳେ ମାତ୍ର ୬ମାସ ବୟସ, ବାପା ତାକୁ ଆଣି ପାଳିଥିଲେ ଆଉ ସମସ୍ତ ସ୍ନେହଶ୍ରଦ୍ଧା ଅଜାଡ଼ି ଦେଇଥିଲେ ତା ଉପରେ । ପରେ ସେହି ବଂଶୀଧର ଅର୍ଥାତ୍ ମୋର 'ବଇଁଶୀ ଭାଇ' ବାପାଙ୍କ ରାଜନୈତିକ ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ସଂଗ୍ରାମର ବହ୍ନିଶିଖା ଭିତରକୁ ଲମ୍ଫଦାନ କରିଥିଲା ।

ମୋର ବାପା ୰ ରାମଚନ୍ଦ୍ର ସିଂହ ଥିଲେ ସେ କାଳର ଜଣେ ବିଖ୍ୟାତ ଉଗ୍ର ସ୍ୱାଧୀନତାକାମୀ ବେପରୁଆ ମଣିଷ । ମୋର ପିଲାଦିନେ ମୁଁ ନିଜ ଆଖିରେ ଦେଖିଛି, ଯେତେବେଳେ ଛୁଆଁ ଅଛୁଆଁ ଭେଦଭାବ ଏପରି ଉତ୍କଟ ଓ ପ୍ରବଳ ଥିଲା ଯେ, କୌଣସି ଅଜିର 'ହରିଜନ' ଗାଁ ଦାଣ୍ଡରେ ଚାଲିଗଲେ ଗାଁ ଦାଣ୍ଡ 'ଅପବିତ୍ର' ହୋଇଯିବା ହେତୁ ତା ପଛରେ ପଡ଼ୁଥିଲା ଗୋବର ପାଣି । ଏହିପରି ଏକ ଅନ୍ଧକାର ଯୁଗରେ ବାପା ଥିଲେ ଜାତିଭେଦ ପ୍ରଥାର ଏକାନ୍ତ ବିରୋଧୀ । ସେଥିପାଇଁ ତାଙ୍କୁ ଚରମ ତ୍ୟାଗ ମଧ୍ୟ କରିବାକୁ ପଡ଼ିଥିଲା । 'ହରିଜନ' ମାନଙ୍କ ଘରକୁ ଯାଇ ସମସ୍ତଙ୍କ ଗୋଚରରେ ତାଙ୍କ ସହିତ ମିଶିବା, ସେମାନଙ୍କ ଘରୁ ପାଣି ମାଗି ପିଇବା, ସେମାନଙ୍କୁ ନିଜ ଘରକୁ ଖାଇବାକୁ ଡାକି ତାଙ୍କ ଅଇଁଠାପତ୍ରକୁ ନିଜେ ଉଠାଇ ଫିଙ୍ଗିବା ଇତ୍ୟାଦି କାର୍ଯ୍ୟ ଯୋଗୁଁ ସେ ଥିଲେ 'ଅଜାତିଆ', ଓ ଗାଁ'ରୁ ହୋଇଥିଲେ ବାସନ୍ଦ । ବାପା କିନ୍ତୁ ନାସ୍ତିକ ନ ଥିଲେ । ସେ ଥିଲେ ଈଶ୍ୱରଙ୍କ ସତ୍ତାରେ ବିଶ୍ୱାସୀ । ହେଲେ ବି ମୂର୍ତ୍ତିପୂଜା ଏବଂ ବ୍ରାହ୍ମଣ୍ୟ ଧର୍ମର ଘୋର ବିରୋଧ କରିବା ଥିଲା ତାଙ୍କ ଜୀବନର ଏକ ନିତ୍ୟକର୍ମ । ମୂର୍ତ୍ତିପୂଜାକୁ ସେ କହୁଥିଲେ ଏକ "ଧର୍ମୀୟ ଭଣ୍ଡାମି" । ସେ ଥିଲେ ମହର୍ଷି ଦୟାନନ୍ଦ ସରସ୍ୱତୀଙ୍କ ପ୍ରବର୍ତ୍ତିତ ଆର୍ଯ୍ୟସମାଜର ସମର୍ଥକ । ମହର୍ଷି ଦୟାନନ୍ଦଙ୍କ ଲିଖିତ ବିଖ୍ୟାତ ଗ୍ରନ୍ଥ "ସତ୍ୟାର୍ଥ ପ୍ରକାଶ" ଥିଲା ତାଙ୍କ ମୁହଁରେ । ତା'ର ପ୍ରତିଟି ସମୁଲ୍ଲାସ (ଅଧ୍ୟାୟ)କୁ ସେ ନିଜ ଭାଷଣମାନଙ୍କରେ ଅନର୍ଗଳ ଉଦ୍ଧାର କରୁଥିଲେ । ଦେବ-ଦେବୀ, ଭୂତ-ପ୍ରେତ, ଜଡ଼ି-ବୁଟି, ମନ୍ତ୍ର-ତନ୍ତ୍ର ଆଦି ବ୍ୟବସାୟରେ ଲିପ୍ତ ଲୋକମାନଙ୍କୁ

ବୈଦେଶିକ ଆକ୍ରମଣ କରିବା ପାଇଁ ମଧ୍ୟ ସେ କୁଣ୍ଠା କରୁ ନଥିଲେ କେବଳ ନୁହେଁ, ସୁଯୋଗ ପାଇଲେ ରାସ୍ତାକଡ଼ର ଗଛମୂଳେ ଥିବା ଠାକୁରାଣୀ ମୂର୍ତ୍ତିମାନଙ୍କୁ ନେଇ ସେ ଅନ୍ୟତ୍ର ଫିଙ୍ଗି ଦେଉଥିଲେ । ତାଙ୍କର ପରିଧାନ ଥିଲା ଆଣ୍ଠୁ ଲୁଚୁ ନ ଥିବା ଖଣ୍ଡେ ଅତ୍ୟନ୍ତ ଶୁଭ୍ର ଖଦଡ଼ ଲୁଗା । ସେ ପ୍ରତିଦିନ ଅରଟ ବା ତାକୁଡ଼ିରେ କିଛି ସୂତା କାଟୁଥିଲେ । ବାଡିରେ ନିଜ ହାତରେ କରିଥିଲେ କପାଗଛ । ଘରେ ପକାଇଥିଲେ ଲୁଗାବୁଣା ତନ୍ତ । ମା' ମଧ୍ୟ ଘରେ ଅରଟରେ ସୂତା କାଟୁଥିଲ । ବାପା ନିଜେ ଭଲ ଖଦଡ଼ଲୁଗା ବୁଣୁଥିଲେ । ମା' ମୋତେ ଏବଂ ବାପାଙ୍କର ଲୁଗା କିଣିବାକୁ ପଡ଼ୁ ନ ଥିଲା । ବାପା ଦେଖିବାକୁ ଥିଲେ ଠିକ୍ ମହାତ୍ମାଗାନ୍ଧୀଙ୍କ ପରି । ଖୋଲା ଦେହରେ ଧଳା ଖଦଡ଼ ଚଦର, ବାଁ ହାତରେ ଖଦଡ଼ର ଏକ ବ୍ୟାଗ, ଏବଂ ବ୍ୟାଗ ଭିତରେ ଥାଏ 'ଭଗବତ୍ ଗୀତା', 'ସତ୍ୟାର୍ଥ ପ୍ରକାଶ', କିଛି ଜୁଳାର ବଳଣା, ଓ ଟକଲିଟିଏ । ସର୍ବଦା ମୁଣ୍ଡିତ ମୁଣ୍ଡ, ଦେହରେ ଧଳା ଚକ ଚକ ପଇତା । ପ୍ରତି ରବିବାର ଦିନ ସେ ନିଜହାତରେ ହୋମ କରନ୍ତି । ଭୀଷଣ କ୍ରୋଧୀ, ଯୁକ୍ତିବାଦୀ, ସ୍ୱଳ୍ପଭାଷୀ, ଏବଂ ସର୍ବଦା କର୍ମଠ ରହିବା ଥିଲା ତାଙ୍କର ସହଜାତ ଗୁଣ । ତାଙ୍କର ପ୍ରତାପ ଏବଂ ବ୍ୟକ୍ତିତ୍ୱ ଏପରି ଥିଲା ଯେ, ଘୋର ଇଂରେଜ ରାଜତ୍ୱ ବେଳେ ଯେଉଁଠି ଆମ ଅଞ୍ଚଳର ପ୍ରତାପଶାଳୀ ଜମିଦାର, ସାହୁବଂଶର ନାଁ ଶୁଣିଦେଲେ ଲୋକେ ଆତଙ୍କିତ ହେଉଥିଲେ, ସେତେବେଳେ ବାପାଙ୍କ ନାମ ଥିଲା ସାହୁବଂଶ ପକ୍ଷରେ ଆତଙ୍କ । ସାଧାରଣ ଲୋକେ ତାଙ୍କୁ ଏପରି ସମ୍ମାନ କରୁଥିଲେ ଯେ, ସେ ଘର ବାରଣ୍ଡାରେ ବସି ସୂତା କାଟୁଥିବା ବେଳେ ବା ପଢୁଥିବା ବେଳେ ଦାଣ୍ଡରେ ଲୋକ ଆଡେଇ ହୋଇ ଯିବା ଆସିବା କରୁଥିଲେ । ମୋଟାମୋଟି କହିବାକୁ ଗଲେ ସେହି ପ୍ରତିକ୍ରିୟାଶୀଳ ସାମନ୍ତବାଦୀ ଅନ୍ଧକାର ଯୁଗରେ ସେ ଥିଲେ ପ୍ରଗତି ଏବଂ ବିଦ୍ରୋହର ଏକ ଆଗ୍ନେୟ ଶଳାକା ।

ଆମର ସମସ୍ତ ଭୂ-ସମ୍ପତ୍ତିର ମାଲିକ ଥିଲେ ବାପା । ତାଙ୍କର ଗୃହତ୍ୟାଗ, ଜାତୀୟ କଂଗ୍ରେସରେ ଯୋଗଦାନ ଓ ୧୯୨୧ରେ ପ୍ରଥମ କାରାବରଣ ପରେ ତାଙ୍କର ସାନଭାଇ ଦୁହେଁ ଅନାଗତ ସରକାରୀ ଆକ୍ରମଣ ଆଶଙ୍କାରେ ସଦାତ ସନ୍ତ୍ରସ୍ତ ହୋଇ ପଡ଼ିଥିଲେ ତଥାପି ସେମାନେ ବାପାଙ୍କ କାମରେ ବାଧା ଦେବାର ସାହସ ପୋଷଣ କରି ନ ଥିଲେ ।

ମା' ମୁହଁରୁ ଶୁଣିଛି, ମୋର ବୟସ ସେତେବେଳେ ମାତ୍ର ୬ମାସ ବାପା ସେତେବେଳେ ଖଲାସ ହେଲେ ପାଟଣା କ୍ୟାଂପ ଜେଲରୁ । ଘରେ ଆସି ପାଦ ନ ଦେଉଣୁ ସେ କୁଆଡ଼େ ମା'କୁ ପଚାରିଥିଲେ "ଆରେ ! ଏ ଛୁଆଟା ( ଅର୍ଥାତ୍ ମୁଁ ) ବଞ୍ଚିଛି ଆଜଯାଏ !!" ବାସ୍ତବରେ ସେତେବେଳର ଅବସ୍ଥା ଥିଲା ଠିକ୍ ସେହିପରି । ସେତେବେଳକୁ ବାପାଙ୍କର ସାନଭାଇ ଦୁହେଁ ସରକାରୀ ଆକ୍ରମଣ ଭୟରେ ପୃଥକ୍ ବା ଭିନ୍ନେ ହୋଇ ଯାଇଥିଲେ । ସଂପତ୍ତି କିନ୍ତୁ ପୃଥକ୍ ହୋଇ ନଥିଲା । ତା' ସତ୍ତ୍ୱେ ଦାରିଦ୍ର୍ୟର ଚରମ ବିଭୀଷିକା ଚରମ ଭାବରେ ସ୍ପର୍ଶ କରିଥିଲା ମା'କୁ ଓ ମୋର ବାଲ୍ୟଜୀବନକୁ ।

ଆମ ଘର ଥିଲା ସେତେବେଳେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଏକ ଗୋପନ ଘାଟି । ସେଥିପାଇଁ ଗୁପ୍ତଚରର ତୀକ୍ଷ୍ଣ ଦୃଷ୍ଟି ସର୍ବଦା ନିବଦ୍ଧ ଥିଲା ଆମ ଘର ଉପରେ । ଆମ ଘରକୁ ଯେଉଁମାନେ ଯିବାଆସିବା କରିବାର ମୁଁ ଦେଖିଛି ସେମାନଙ୍କ ମଧ୍ୟରୁ ଅନ୍ୟତମ ହେଲେ ୰ ପ୍ରାଣକୃଷ୍ଣ ପଡ଼ିଆରୀ, ୰ ଗୋପବନ୍ଧୁ ଚୌଧୁରୀ,ଜାତୀୟ କବି ବୀରକିଶୋର ଦାସ ଏବଂ ଶ୍ରୀମତୀ ସରଳା ଦେବୀ ପ୍ରମୁଖ । ଏମାନଙ୍କ ସହିତ ବାପା ବହୁବାର କାରାବାସରେ କଟାଇଛନ୍ତି ।



# ପାଇଛୁ କି ତାରେ ଅବିକଳ ?

ଶ୍ରୀ ମନମୋହନ ମିଶ୍ରଙ୍କ ଗୋଟିଏ ବିଖ୍ୟାତ ଗୀତିକବିତାରୁ ଉକ୍ତ ଶିରୋନାମାଟି ଉଦ୍ଧୃତ । ଯାହାକୁ ଉଦ୍ଧାର କରିବାର ତାତ୍ପର୍ଯ୍ୟ ହେଲା ଏହି ଯେ, ଭାରତବର୍ଷ ଇଂରେଜ ଉପନିବେଶ କବଳରୁ ମୁକ୍ତହେଲା········ସ୍ୱାଧୀନତା ଆସିଲା ବୋଲି କୁହାଯାଉଛି । କିନ୍ତୁ କୋଟି କୋଟି ନିରନ୍ନ ମଣିଷ ପାଇଲା କ'ଣ ? ଏକଦା ଏଇ ପ୍ରଶ୍ନ କରିଥିଲେ ସମ୍ପୃକ୍ତ ଗୀତି-କବିତାରେ ମନମୋହନ ବାବୁ । ତାର ପ୍ରଥମ ଛନ୍ଦ ହେଲା :

"ତୋର ମୁକତିର ସୂର୍ଯ୍ୟ ଯେବେ ଉଇଁଲା···
ଆଖି ତୋର କିଆଁ ଛଳ ଛଳ ?
ଯାହା ପାଇଁ ଲଢ଼ିଲୁ ତୁ
କାରାଗାରେ ପଶିଲୁ ତୁ
ଫାଶୀ ମଂଚେ ଚଢ଼ିଲୁ···
ପାଇଛୁ କି ତା'ରେ ଅବିକଳ ?"

ନାଃ ! କେହି କିଛି ପାଇ ନାହାନ୍ତି । ଆସିଛି ଅଧିକ ଅନ୍ଧକାର, ଶୋଷଣର ଅବାଧ ସ୍ୱାଧୀନତା । ଯେଉଁ ମୁକ୍ତିଯୋଦ୍ଧାମାନେ ସ୍ୱାଧୀନତାକୁ ଆଣିବାକୁ ଯାଇ ଉଚ୍ଛନ୍ନ ହୋଇଛନ୍ତି, ବିଲୁପ୍ତ ହୋଇଛି ସେମାନଙ୍କର ବଂଶ, ଯିଏ ଜୀବିତ ସେମାନେ ଆଜି କେବଳ ବିସ୍ମୃତ ନୁହନ୍ତି, ଅବହେଳିତ, ଅପମାନିତ ଏବଂ ଅନାଦୃତ ମଧ୍ୟ । ଅବଶ୍ୟ ମୁକ୍ତିଯୋଦ୍ଧା ଯେତେବେଳେ ତା'ର ଶ୍ରେଷ୍ଠ ଶପଥ ନେଇଥିଲା ଭାରତ ଭୂଇଁରୁ ବିଦେଶୀ ଶାସନର ଶେଷ କଳଙ୍କଚିହ୍ନଟା ଥିବା ପର୍ଯ୍ୟନ୍ତ ତାର ବିଶ୍ରାମ ନାହିଁ, ସେତେବେଳେ ସେ ତା'ର କୌଣସି ପ୍ରତିଦାନ ଆଶା କରି ନ ଥିଲା । ବିପ୍ଳବୀ କେବେ ବିପ୍ଳବର ଫଳ ଭୋଗ କରିପାରେନା ; ଏହା ଇତିହାସର ଏକ ନିଷ୍ଠୁର ସତ୍ୟ ସଙ୍କେତ । କିନ୍ତୁ ସ୍ୱାଧୀନତା ବା ମୁକ୍ତି ପରେ ପ୍ରତିଷ୍ଠିତ ଜାତୀୟ ସରକାର ସେମାନଙ୍କ ସ୍ମୃତିକୁ ଅବହେଳା କଲେ, ସେମାନଙ୍କୁ ଦୟାର ପାତ୍ର ବୋଲି ମନେ କଲେ ଜାତିର ନୈତିକ ମେରୁଦଣ୍ଡରେ ଦୌର୍ବଲ୍ୟ ଦେଖାଦିଏ—ଯାହା ଆମ ଦେଶରେ ଦେଖା ଦେଇଛି ।

୧୯୭୨ ମସିହା ଅଗଷ୍ଟ ମାସ ୧୫ ତାରିଖରୁ ଭାରତ ସରକାର ସେମାନଙ୍କର ତ୍ୟାଗ ତପସ୍ୟା ପାଇଁ ମାସିକ କିଛି କିଛି ଭତ୍ତା ଦେବାର ସିଦ୍ଧାନ୍ତ ଘୋଷଣା କରିଥିଲେ । ଏ ଘୋଷଣା ପରେ ପରେ ଦୁର୍ନୀତିର ନବ ବୃନ୍ଦାବନ "ସ୍ୱାଧୀନ ଭାରତ" (?)ରେ ଏଇ ଭତ୍ତା ପାଇବା ପାଇଁ ମିଥ୍ୟା ଜାଲ୍ ଫିସାଦର ଆଶ୍ରୟ ନେବା ଠାରୁ ଆରମ୍ଭ କରି ନାନା ପ୍ରିୟାପ୍ରୀତି ତୋଷଣ ଚାଲିଲା । ଏହି ଭତ୍ତା ପାଇବାକୁ ଯେଉଁମାନେ ଯୋଗ୍ୟ ବିବେଚିତ ହେବେ ତାହା ନିମ୍ନରେ ସରକାରୀ ବିଜ୍ଞପ୍ତିରୁ ଉଦ୍ଧାର କଲେ ଦେଖାଯିବ :

"(କ) ସ୍ୱାଧୀନତା ସଂଗ୍ରାମୀ ଭାରତ ସ୍ୱାଧୀନତା ପାଇବାର ପ୍ରାକ୍‌କାଳରେ ସଂଗ୍ରାମରେ ଯୋଗଦାନ କରି ଅନ୍ୟୂନ ୬ମାସ କାରାବରଣ କରିଥିବେ ।

(ଖ) ସ୍ୱାଧୀନତା ସଂଗ୍ରାମରେ ଶହୀଦ୍ ହୋଇଥିବା ବ୍ୟକ୍ତି ବା ଉପରୋକ୍ତ ଯୋଗ୍ୟତା ଥିବା ମୃତ ସ୍ୱାଧୀନତା ସଂଗ୍ରାମୀଙ୍କର ନିର୍ଭରଶୀଳ ପରିବାରବର୍ଗଙ୍କ ମଧ୍ୟରୁ ଯେ କୌଣସି ଏକ ଜଣଙ୍କୁ ଏ ଭତ୍ତା ମିଳିପାରିବ ।

(ଗ) ଶହୀଦ୍ ବା ମୃତ ସ୍ୱାଧୀନତା ସଂଗ୍ରାମୀମାନଙ୍କର ବିଧବା ପତ୍ନୀ; ଅବିବାହିତା କନ୍ୟା, ମାତା ଓ ନାବାଳକ ପୁତ୍ରମାନେ ସେମାନଙ୍କ ପରିବାରର ବ୍ୟକ୍ତି ବୋଲି ପରିଗଣିତ ହେବେ ।

(ଘ) ଯେଉଁ ସାବାଳକ ପୁତ୍ରମାନେ ତାଙ୍କର ସ୍ୱାଧୀନତା ସଂଗ୍ରାମୀ ପିତାଙ୍କର କାରାବାସ ବା ଶହୀଦ୍ ହେବା କାରଣରୁ ଜୀବନରେ ପ୍ରତିଷ୍ଠିତ ହେବାର ସୁବିଧାରୁ ବଞ୍ଚିତ ହୋଇଥିବେ ଏବଂ ଉକ୍ତ ବିଷୟରେ ନିର୍ଭର ଯୋଗ୍ୟ ପ୍ରମାଣ ଦାଖଲ କରିପାରିବେ, ସେମାନଙ୍କର ଦରଖାସ୍ତ ମଧ୍ୟ ବିଚାରକୁ ନିଆଯିବ ।"

[ ଦୈନିକ 'କଳିଙ୍ଗ' : ତା ୧୮ । ୩ । ୭୨ ]

ଏହି ବିଜ୍ଞପ୍ତି କେବଳ 'ବିଜ୍ଞପ୍ତି'ରେ ହିଁ ରହିଛି । ଏତଦ୍ୱାରା ଅତି ଅଳ୍ପ ସଂଖ୍ୟକ ଲୋକ ଲାଭବାନ ହୋଇଛନ୍ତି । ଯେଉଁ ଜୀବିତ ତଥା ମୃତ ସ୍ୱାଧୀନତା ସଂଗ୍ରାମୀଙ୍କ ପରିବାର ଶାସକ ଶ୍ରେଣୀର ବରକନ୍ଦାଜ ଓ ଖୁଣ୍ଟୁକାର ସାଜିଛନ୍ତି ସେମାନଙ୍କ ଭିତରୁ ଅଧିକାଂଶ ଏପରି ଭତ୍ତା ପାଇଛନ୍ତି । ତା ଛଡା କାରାବରଣ କରିଥିବାର ପ୍ରମାଣପତ୍ର ଜେଲ୍ କର୍ତ୍ତୃପକ୍ଷଙ୍କ ଠାରୁ ନ ମିଳିଲେ ସ୍ୱାଧୀନତା

ସଂଗ୍ରାମ କାଳରେ ଆବେଦନକାରୀଙ୍କ ସହିତ ଏକତ୍ର ସେତେବେଳେ କାରାବରଣ କରିଥିବା ଓ ସଂପ୍ରତି ବିଧାନସଭା ବା ଲୋକସଭା ସଭ୍ୟ ପଦରେ ଅଧିଷ୍ଠିତ ଥିବା ବ୍ୟକ୍ତିଙ୍କର ସୁପାରିଶ ପତ୍ରଟିଏ ହେଲେ ଏହି ଭତ୍ତା ମିଳିବାର କୌଣସି ବାଧା ନାହିଁ ବୋଲି ଜଣାପଡ଼ିବା ପରେ ବିଧାନସଭା ଓ ଲୋକସଭା ସଦସ୍ୟମାନେ ତାଙ୍କର ସୁପାରିଶ ପତ୍ର ପ୍ରଦାନକୁ ଏକ ବ୍ୟବସାୟ କଲେ ଓ ତହିଁରୁ ଅର୍ଥ ଉପାର୍ଜନ ମଧ୍ୟ କଲେ । ଏପରିକି ଦିନେ ବି କାରାବରଣ କରି ନଥିବା ବ୍ୟକ୍ତି ମଧ୍ୟ ଏହି ସୁପାରିଶ୍ ପତ୍ର ବଦଳରେ ମାସିକ ଟ ୨୦୦.୦୦ ଭତ୍ତା ପାଇଲେ ।

ଏସବୁ ଘଟଣାକୁ ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ; ମୋର ବାପା ସ୍ୱାଧୀନତା ସଂଗ୍ରାମ ଜନିତ ସର୍ବସ୍ୱ ହରାଇ ନଥିଲେ ମୋର ଜୀବନର ଗତି ବା ପରିବେଶ ହୋଇଥାନ୍ତା ଅନ୍ୟପ୍ରକାରର । ପୈତୃକ ଆର୍ଥିକ ମୂଳଦୁଆ ଉପରେ ଠିଆ ହୋଇ ମୁଁ କିଛି ଅବଲମ୍ବନ ଆଦରିଥାନ୍ତି । ମୋର ଅନ୍ଧକାରମୟ ଆର୍ଥିକ ସ୍ଥିତି ପାଇଁ ସମ୍ପୂର୍ଣ୍ଣ ଦାୟୀ ବାପାଙ୍କର ସ୍ୱାଧୀନତା ସଂଗ୍ରାମର ତ୍ୟାଗ । ସେଥିପାଇଁ ମୁଁ ପ୍ରାଥମିକ ଶିକ୍ଷାରୁ ବଞ୍ଚିତ ହୋଇ ଜୀବନାରମ୍ଭରେ ହୋଇଛି ଗୃହତ୍ୟାଗୀ। ଆଜି ପର୍ଯ୍ୟନ୍ତ ମଧ୍ୟ ମୁଁ ପୃଥିବୀର ପଥପ୍ରାନ୍ତର ବାସିନ୍ଦା । ଟିକେ ନିରାପଦ ଆଶ୍ରୟ ଏବଂ ନିରାପତ୍ତା, ବଞ୍ଚିରହିବା ପାଇଁ ମୁଠାଏ ଖାଦ୍ୟ, ଲଜ୍ଜା ନିବାରଣ ପାଇଁ ଖଣ୍ଡେ ବସ୍ତ୍ର—ଏ ସବୁକୁ ଯୋଗାଡ଼ କରିବା ପାଇଁ ମୋତେ ଓ ମୋର ପରିବାରକୁ ପ୍ରାୟ ଆଗାମୀ ବହୁ ଜନ୍ମର ମୂଲ୍ୟ ଦେବାକୁ ପଡ଼ୁଛି।

୧୯୭୨ ମସିହାରେ ସ୍ୱାଧୀନତା ସଂଗ୍ରାମୀ ଓ ତାଙ୍କ ପରିବାରକୁ ଯେତେବେଳେ ସରକାର ଭତ୍ତା ଦେବେ ବୋଲି ସିଦ୍ଧାନ୍ତ ଘୋଷଣା କଲେ, ସେତେବେଳେ ପ୍ରକାଶିତ ସରକାରୀ ବିଜ୍ଞପ୍ତିରେ ଉଲ୍ଲିଖିତ ଏବଂ ପୂର୍ବରୁ ଉଦ୍ଧୃତ 'ଗ' ଓ "ଘ" ଅନୁଚ୍ଛେଦ ମୁତାବକ ସେହି ଭତ୍ତା ପାଇବାକୁ ମୁଁ ଆଇନଗତ ଶପଥପାଠ ସହ ନିର୍ଦ୍ଧାରିତ ଫର୍ମରେ ତା ୧୩ । ୩ । ୧୯୭୨ ଖ୍ରୀଷ୍ଟାବ୍ଦରେ ଆବେଦନ କରିଥିଲି । ଏଥି ସହିତ ବାପାଙ୍କର ସ୍ୱାଧୀନତା ସଂଗ୍ରାମକାଳୀନ କାରାବାସର ପ୍ରମାଣପତ୍ର ସଂଯୋଜିତ କରିବା ପାଇଁ ବହୁବାର କଟକ କେନ୍ଦ୍ରୀୟ କାରାଗାରର ନଥିପତ୍ର ଘାଣ୍ଟିଛି । କେତେକ ପୁରାତନ ସ୍ୱାଧୀନତା ସଂଗ୍ରାମୀ କହିଲେ : ୧୯୨୧ର ଦୂରରକଥା, ୧୯୩୦ ସାଲରେ ଯେଉଁମାନେ କାରାରୁଦ୍ଧ ଥିଲେ ସେମାନଙ୍କ ନାମ ମଧ୍ୟ ଜେଲ୍ କାଗଜପତ୍ରରୁ ମିଳିବ ନାହିଁ । କାରଣ ସେତେବେଳେ ନିର୍ଦ୍ଦେଶ ଥିଲା

କେହି ନିଜର ନାମ ଠିକଣା ପୋଲିସ ଆଗରେ କହିବେ ନାହିଁ । ତାହାହିଁ ସ୍ୱଚକ୍ଷୁରେ ଜେଲ୍ ନଥିପତ୍ରରୁ ଦେଖିବାକୁ ପାଇଲି । ମୋର ମଝିଆଁ ଦାଦା ଏବଂ ବାପା ଓ ଭାଇ ବଂଶୀଧର ସିଂହଙ୍କ କାରାବାସର ଯଦି କୌଣସି ରେକର୍ଡ ମିଳେ ତାହେଲେ ମୋତେ ସେତକ ଯୋଗାଇ ଦେବାକୁ ଜେଲ୍ କର୍ତ୍ତୃପକ୍ଷଙ୍କୁ ଏକ ଆବେଦନ କଲା ପରେ ଜେଲ୍ କର୍ତ୍ତୃପକ୍ଷେ ବହୁ ପରିଶ୍ରମ କରି ବାପା ଏବଂ ମଝିଆଁ ଦାଦାଙ୍କର କାରାବରୁଦ୍ଧ ହେବାର ୨ଟି ରେକର୍ଡ ପାଇ ମୋତେ ସେତକ ଯୋଗାଇ ଦେଲେ । ରେକର୍ଡ ଦୁଇଟି ହେଲା :

**Office of the Superintendent of Jail, Cuttack**

No. 801, Dt. 9. 3. 72

To

Sri Rabi Singh

Ref.-Your letter dated 8th March, 1972

Sir,

With reference to the letter dated above I am to inform you that Ramchandra Singh S/o Madhab Singh, Vill-Nabapatana, P. S.-Jagatasinghpur, Dist-. Cuttack was admitted in this Jail as under-trial prisoner on Dt. 30. 3. 33 ( U. T. No. 207 ) being member of Congress U/S. 17 (1) Cr. L A. Act by order of the S. D. O., Cuttack. He was convicted on Dt. 31. 3 33 ( convict No 4475/P ) to undergo R. I. for 6 months and fined Rs. 501/- O.R.I for 42 days by the order of Sri B. S Mohanty, Magistrate First class Cuttack. He has paid the fine amount in full. He was transferred to camp Jail on Dt. 10-4-33.

Yours faithfully

Superintendent of Jail, Cuttack

8-3-72

ଇଏତ ନେହେଲ୍ ବାପାଙ୍କ କାରାବାସର ଗୋଟିଏ ପ୍ରମାଣପତ୍ର । ମୋର ମହିଆଁ ଦାଦା ସ୍ୱର୍ଗତ ଯଦୁମଣି ସିଂହଙ୍କର କାରାବାସର ପ୍ରମାଣପତ୍ରଟି ହେଲ୍ :

**Office of the Superintendent of Jail, Cuttack**

No. 857 Dt. 11-3-72

To

Sri Rabi Singh

Sub.—Arrest of Freedom Fighters.

Ref.— Your letter dated 8th March, 1972.

Sir,

As per the old admission registers, I am to inform you that one Under-trail prisoner named Satyagrahi & Jadumani Singh S/o 'Unknown' and address—'unknown' was admitted in this jail on date 23 12–30 under section 17 (1) Cr. L. A Act by the order of the S. D. O , Cuttack. He was convicted on dated 6-1-31 (convict No. 1580/A) to undergo R. I. for 6 [six] months and fii ed Rs. 50/- in default R. I. for 42 ( Forty two) days by the order of Sri M. A. Ahad, S. D. O., Cuttack. He was transferred to Patna camp Jail on date 23. 2. 31.

Your's Faithfully

Superintendent of Jail, Cuttack

9-3 72

ଏତଦ୍ ବ୍ୟତୀତ ଓଡ଼ିଶାର ଦୁଇଜଣ ଭୂତପୂର୍ବ ମୁଖ୍ୟମନ୍ତ୍ରୀ ଡଃ ହରେକୃଷ୍ଣ ମହତାବ ଏବଂ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ୨ଟି ସୁପାରିସପତ୍ର ଆବେଦନ ପତ୍ର ସହିତ ସଂଯୋଜିତ କରି ପଠାଇଲ ।

ଡଃ ମହତାବ ଲେଖିଥିଲେ :

THE PRAJATANTRA
(The Premier Oriya Daily)
Prajatantra Building
Cuttack-2

I know Sri Rabi Singh who left his education at a young age because his father Sri Rama Chandra Singh, as a whole time Congress worker courted imprisonment on various occasions. The family had no property. Sri Rabi Singh could not build his career as he could not continue his education In the circumstances, he is now living a precarious life, meeting his two ends by some means I strongly recommend him for a decent pension as the dependent of Sri Ramchandra Singh who is no more.

**Harekrushna Mahatab**
4- 8- 1972

ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ ଲେଖିଥିଲେ :

I left my studies and joined the noncooperation movement in 1921 and went to work as a teacher in the National school of Jagatsinghpur. That is how I came to know Sri Rama Chandra Singh of Nabapatana very intimately. He made a deep impression

on my young mind by his spirit of sacrifice. He was in the forefront of the freedom struggle till the last days of his life and went to jail several times in 1930, 1932 to 1934. He was one of the very few amongst us who had sacrificed practically all he had for the country.

**Nabakrishna Choudhury**
12- 3- 1972

୧୯୭୩ ମସିହା ଡିସେମ୍ବର ୮ ତାରିଖରେ ଭାରତ ସରକାରଙ୍କ ଠାରୁ ଚିଠି ପାଇଥିଲି :—

No. 26 (273)/73 FFVIII
Government of India
Ministry of Home Affairs
( Grih Mantranalaya )

To

Sri Rbi Singh
At—Nabapatana
P. S.—Jagatsinghpur
Present Address—
C/4, Labour Colony, Rajabagicha,
Cuttack-9 ( Orissa )

Sub—Grant of pension from Central Revenues to freedom fighters and their families.

Sir,

I am directed to refer to your application dated— and to regret to say that your case does not come

**under the purview of the pension scheme as a son of the freedom fighters.**

**Your's faithfully**
**R. L. Domir**
**For Deputy Secretary to the Govt. of India**

ସନ୍ତୋଷଜନକ କାରଣ ନ ଦର୍ଶାଇ ଭାରତ ସରକାର କର୍ତ୍ତୃକ ମୋ ଆବେଦନର ସିଧାସଳଖ ପ୍ରତ୍ୟାଖ୍ୟାନ ଘଟଣାଟି ମୋତେ କେବଳ ସେଦିନ ହତବାକ୍ କରି ନଥିଲା, ଉତ୍ୟକ୍ତ ମଧ୍ୟ କରିଥିଲା । ତା ଛଡ଼ା ଏହି ସ୍ୱାଧୀନତା ସଂଗ୍ରାମୀ ଓ ତାଙ୍କ ପରିବାରବର୍ଗଙ୍କୁ ଭତ୍ତା ଦେବା ପ୍ରହସନଟି ମୂଳତଃ ହୋଇଥିଲା କିଛି ଲୋକଙ୍କ ମୁହଁ ବନ୍ଦ କରି ସେମାନଙ୍କୁ ନିଜର ଦଳୀୟ କାର୍ଯ୍ୟରେ ଲଗାଇବା । ଏହାହିଁ ଥିଲା କଂଗ୍ରେସୀ ଶାସନର ଅନ୍ୟ ଏକ ଉଦ୍ଦେଶ୍ୟ । ତାଛଡ଼ା ମୁଁ ଥିଲି ଜଣେ ଜଣାଶୁଣା କଂଗ୍ରେସ ବିରୋଧୀ ତଥା ମାର୍କ୍ସବାଦୀ ଚିନ୍ତକ ଏବଂ କବି । ଭାବିଲି, ଏ ଘଟଣାକୁ ଆଇନ ଅଦାଲତ ଯାଏଁ ଘେନିଯିବି ଫଳ ଯାହା ହେଉନା କାହିଁକି । ବୁର୍ଜୁଆ ପ୍ରତିକ୍ରିୟାଶୀଳ ଶାସକ ଶ୍ରେଣୀ ଯେଉଁ ବିଧାନ ପ୍ରଣୟନ କରିଥାଏ, ତାକୁ ସେ ନିଜେ କପଟର ନିଜର ସ୍ୱାର୍ଥ ଲାଗି ନିର୍ଲଜ୍ଜ ଭାବରେ ଲଙ୍ଘନ କରେ ତା'ରି ନଗ୍ନତାକୁ କଚ୍ଛୁଠା ଖୋଲି ଦେବି । ଏହି ସିଦ୍ଧାନ୍ତ ଘେନି ଏକଦା ଦ୍ୱାରସ୍ଥ ହୋଇଥିଲି ବାରିଷ୍ଟର ଶ୍ରୀ ରଣଜିତ୍ ମହାନ୍ତିଙ୍କ ପାଖରେ । ରଣଜିତ୍‌ବାବୁଙ୍କ ସହ ମୋର ସଂପର୍କ ଦୁଇ ପୁରୁଷର । ତା ଛଡ଼ା ରଣଜିତ୍-ବାବୁଙ୍କୁ ମୁଁ ପିଲାଦିନୁ ଅତି ନିକଟରୁ ଦେଖିଛି । ସେ ମଧ୍ୟ ମୋତେ ଦେଖିଛନ୍ତି । ମୋର ଜୀବନଯାତ୍ରା ଏବଂ ଅନିଶ୍ଚିତ ଭବିଷ୍ୟତ ସଂପର୍କରେ ସେ ସମ୍ପୂର୍ଣ୍ଣ ସଚେତନ । ବହୁ ବିପଦ, ବହୁ ଦୁର୍ଦ୍ଦିନ ମଧ୍ୟରେ ସେ ମୋତେ ନାନାଭାବରେ ସାହାଯ୍ୟ କରି ଆସିଛନ୍ତି । ଏ ଘଟଣାରେ ସେ ବିନା ଆପତ୍ତିରେ, ବିନାଖର୍ଚ୍ଚରେ ଆଗେଇ ଆସିଥିଲେ ମୋତେ ସାହାଯ୍ୟ କରିବା ପାଇଁ । ମୋ ତରଫରୁ ଭାରତ ସରକାରଙ୍କୁ ପକ୍ଷ କରି ବାରିଷ୍ଟର ବନ୍ଧୁ ଶ୍ରୀଯୁକ୍ତ ମହାନ୍ତି ଭାରତୀୟ ସଂବିଧାନର ୨୨୬ ଓ ୨୨୭ ଧାରା ମୁତାବକ ଓଡ଼ିଶା ହାଇକୋର୍ଟରେ ଏକ ରିଟ୍ ଆବେଦନ ଦାଖଲ କଲେ **( O. J. C. No. 27 of 1974 )** ତା ୨।୧।୭୪ ରିଖରେ । ବିଚାରପତି ମାନ୍ୟବର ରଙ୍ଗନାଥ ମିଶ୍ର ଆବେଦନଟିକୁ

ବିଗୁର ପାଇଁ ଗ୍ରହଣକରି ଅପରପକ୍ଷ (୧) ଅର୍ଥାତ୍ Union of India represented by the Secretary to Govt. of India, ministry of Home Afairs, New Delhi ( 2 ) State of Orissa represented by Chief Secretary to Govt. of Orissa, Bhubaneswar, Dist. Puriଙ୍କ ଉପରେ ନୋଟିସ ଜାରିକଲେ ।

ହାସ୍ୟକର ବିଷୟ ଏହି ଯେ, ନିଜ ଦେଶର ସ୍ୱେଚ୍ଛ ଗୃହିତାକୁ ଘୋଡାଇବାକୁ ଯାଇ ଭାରତ ସରକାର ନାନା ବିଭ୍ରାନ୍ତ ତଥା ଗୋଳମାଳିଆ ପରିସ୍ଥିତି ସୃଷ୍ଟି କରିବାକୁ ଗୃହିଁଲେ । ମାନ୍ୟବର ଓଡ଼ିଶା ହାଇକୋର୍ଟଙ୍କୁ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଅଣ୍ଡର ସେକ୍ରେଟାରୀ, ଦିଲ୍ଲୀ ହାଇକୋର୍ଟଙ୍କ ସମକ୍ଷରେ ଶପଥପାଠ ପୂର୍ବକ ଯେଉଁ ଜବାବ୍ ଦେଇଥିଲେ ସେଥିରେ ସେ ଠାଏ ଉଲ୍ଲେଖ କରିଥିଲେ :

"3-That the petition is not maintainable in law" "4-that the petitioner has no vested right for the pension and as such the petition is not maintainable Moreover, the condition under the scheme for pension for sons is subject to a rider and it is not open to all, but can be given in exceptional cases,"

ଓଡ଼ିଶା ସରକାରଙ୍କ ଅର୍ଥବିଭାଗ ଦ୍ୱାରା ପ୍ରଚାରିତ ଏବଂ ତା ୨୮-୩-୭୩ ମସିହାରେ ଓଡ଼ିଆ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ବିଜ୍ଞାପନରେ ସ୍ପଷ୍ଟଭାବରେ 'ଘ' ଅନୁଚ୍ଛେଦରେ "ଯେଉଁ ସାବାଳକ ପୁତ୍ରମାନେ ତାଙ୍କର କାରାବାସ ବା ଶହୀଦ୍ ହେବା କାରଣରୁ ଜୀବନରେ ପ୍ରତିଷ୍ଠିତ ହେବା ସୁବିଧାରୁ ବଞ୍ଚିତ ହୋଇଥିବେ ଏବଂ ଉକ୍ତ ବିଷୟରେ ନିର୍ଭରଯୋଗ୍ୟ ପ୍ରମାଣ ଦାଖଲ କରିପାରିବେ ସେମାନଙ୍କର ଦରଖାସ୍ତ ମଧ୍ୟ ବିଚାରକୁ ନିଆଯିବ" ବୋଲି ଉଲ୍ଲେଖ ଥିବାବେଳେ ଏବଂ ମୁଁ ଯେ ମୋର ପିତାଙ୍କ ସ୍ୱାଧୀନତା ସଂଗ୍ରାମ ପାଇଁ ଜୀବନରେ ପ୍ରତିଷ୍ଠିତ ହେବାର ସୁଯୋଗରୁ କେବଳ ବଞ୍ଚିତ ହୋଇନାହିଁ, ଏକବାରେ ବାତ୍ୟାହତ ଏବଂ ପଦଦଳିତ ଜୀବନ ଯାପନ କରୁଛି, ତାର ପ୍ରମାଣ ସ୍ୱରୂପ ଓଡ଼ିଶାର ୨ଜଣ ଭୂତ ମୁଖ୍ୟମନ୍ତ୍ରୀଙ୍କ ସୁପାରିସପତ୍ର ସହ ଅନ୍ୟାନ୍ୟ ନିର୍ଭରଯୋଗ୍ୟ ପ୍ରମାଣ ଦାଖଲ କରିଥିଲେ ମଧ୍ୟ ମୁଁ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇବାକୁ ହକ୍‌ଦାର

ନୁହେଁ ବୋଲି କହିବାର ଯଥାର୍ଥତା କ'ଣ ? ନିମ୍ନ ଭାବରେ ଏକଥା ମଧ୍ୟ କୁହାଯାଇଛି : ସରକାରଙ୍କର ସ୍ୱାଧୀନତା ସଂଗ୍ରାମୀ ପୁତ୍ରମାନଙ୍କୁ ପେନ୍‌ସନ ଦେବା ଯୋଜନା ବିଷୟଟି ସମସ୍ତଙ୍କ ପାଇଁ ଉନ୍ମୁକ୍ତ ନୁହେଁ, କେବଳ କେତେକ ସ୍ୱତନ୍ତ୍ର କ୍ଷେତ୍ରରେ ତାହା ଦିଆଯିବାର ବ୍ୟବସ୍ଥା ଅଛି ( **"Moreover the condition under the scheme for pension for sons is subject to a rider and it is not open to all, but can be given in exceptional cases )** ।

ତାହେଲେ ଏଥିରୁ କ'ଣ ସୂଚିତ ହେଉନାହିଁ ଯେ, କେବଳ ଶାସକ ଦଳର ଖଟ-ଭଡ଼ାଟିଆମାନଙ୍କୁ ଏହି ପେନ୍‌ସନ ଦେବା ପାଇଁ ସରକାର ଦ୍ୱାର ଉନ୍ମୁକ୍ତ ରଖିଛନ୍ତି ?

ଓଡ଼ିଶା ହାଇକୋର୍ଟରେ ରିଟ୍ ଆବେଦନ ଦାଖଲ କଲାବେଳେ ମୋ ଆବେଦନର ୫ମ ଅନୁଚ୍ଛେଦରେ ମୁଁ ଦର୍ଶାଇଥିଲି ଯେ; ମୋ ବାପା ଏବଂ ମଝିଆଁ ଦାଦା ପ୍ରମୁଖଙ୍କ ସ୍ୱାଧୀନତା ସଂଗ୍ରାମରେ ଦୀର୍ଘକାଳ ଧରି ଅଂଶଗ୍ରହଣ ଯୋଗୁ ମୁଁ ଜୀବନାରମ୍ଭରେ ପ୍ରାଥମିକ ଶିକ୍ଷାରୁ ବଞ୍ଚିତ ହୋଇଛି । ବର୍ତ୍ତମାନ ମୋର ବାର୍ଷିକ ରୋଜଗାର ଟ ୩୦୦-୦୦ । ମୁଁ ଜଣେ କବି ଏବଂ ଲେଖକ ଓ ମୋ ଉପରେ ଚାରୋଟି ପ୍ରାଣୀ ନିର୍ଭରଶୀଳ । **( Your petitioner was deprived of his education and has now to sustain himself in a small income of about Rs. 300/- per year as a poet and writer having four dependants. )**

ଏହାର ଜବାବ ଦେବାକୁ ଯାଇ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଅଣ୍ଡର ସେକ୍ରେଟାରୀ ଶ୍ରୀ ଏଚ୍, ଭି, ରୋଏରୀ ଯେଉଁ **Counter Affidavit of O. P. No. 1** ଦାଖଲ କରିଥିଲେ ତହିଁରୁ କିଛି ଏଠାରେ ଉଦ୍ଧାର କରାଗଲା :—

**"In paragraph 5 of the affidavit, the applicant, has stated that he is a poet and a writer His contention that he was deprived of his education as a result of**

**the imprisonment suffered by his father does not therefore, seems to be correct ; it appears that he is a man of literature.''**

ଏପରି ମୁକ୍ତ ନିର୍ବୋଧତାର କେଉଁ ପର୍ଯ୍ୟାୟରେ ପଡ଼ିବ, ତା'ର ବିଚାର ମୁଁ ବୁଦ୍ଧିଜୀବୀଙ୍କ ହାତରେ ନ୍ୟସ୍ତ କରୁଛି । କହିବା, ସାହିତ୍ୟିକ ପ୍ରତିଭା ଓ କବିତ୍ୱ ସହିତ ସ୍କୁଲ-କଲେଜ ଶିକ୍ଷାର କ'ଣ ସଂପର୍କ ଅଛି ? ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ମନ୍ତ୍ରଣାଳୟର ଏହି ଧଳାହାତୀ ବ୍ୟୁରୋକ୍ରାଟ୍ ଜଣକ ନିଜକୁ ଦାସତ୍ୱ ଚକରେ ଦୃଢ଼ଭାବରୁ ବାନ୍ଧି ରଖିଥିବାରୁ ଏପରି ହାସ୍ୟକର ଯୁକ୍ତି ଅଦାଲତ ସମକ୍ଷରେ ଉପସ୍ଥାପିତ କରିବାର ନିର୍ବୋଧତା କରିଛନ୍ତି । ସେ ଯଦି ଜାଣିଥାନ୍ତେ ବିଶ୍ୱକବି ରବୀନ୍ଦ୍ରନାଥ, ବିଦ୍ରୋହୀକବି କାଜି ନଜ୍‌ରୁଲ ଇସ୍‌ଲାମ୍, ଏମାନେ ପ୍ରବେଶିକା ଶିକ୍ଷାର ଦ୍ୱାରଦେଶ ବି ମାଡ଼ି ନ ଥିଲେ । ତା ଛଡ଼ା ବିଶ୍ୱ ସାହିତ୍ୟରେ ସାମାଜବାଦୀ-ବାସ୍ତବତାର ଜନକ ମାକ୍‌ସିମ୍ ଗର୍କି ତ ବିଶ୍ୱବିଦ୍ୟାଳୟର ତୋରଣ ସାମ୍ନାରୁ ଫେରି ଆସି ନିଜ "ବିଶ୍ୱବିଦ୍ୟାଳୟ"ରେ ଅଧ୍ୟୟନ କରିବାର ଅମର କାହାଣୀ ତାଙ୍କ "ମାଇଁ ଇଉନିଭରସିଟି" ଗ୍ରନ୍ଥରେ ଲିପିବଦ୍ଧ କରିଯାଇଛନ୍ତି । ଆମ ଓଡ଼ିଶାରେ କବି ଗଙ୍ଗାଧର ମେହେର, ଭୀମଭୋଇ ପ୍ରମୁଖଙ୍କର କି ଶିକ୍ଷାଗତ ଯୋଗ୍ୟତା ଥିଲା ? ମୋର ଶିକ୍ଷାଗତ ଯୋଗ୍ୟତା କ'ଣ, କି ପରିବେଶ ଭିତରୁ ମୋର ବିକାଶ ଏବଂ ବର୍ଦ୍ଧନ ତାହା ମୋର ଆଧୁନିକ ଓଡ଼ିଆ ସାହିତ୍ୟର ଲକ୍ଷ ଲକ୍ଷ ପାଠକ ପାଠିକା ଭଲଭାବରେ ଅବଗତ । ସମଗ୍ର ବୁର୍ଜୁୟା ଶିକ୍ଷା ବ୍ୟବସ୍ଥାକୁ ଚ୍ୟାଲେଞ୍ଜ୍ ହେଉଛି ମୋର ସାହିତ୍ୟିକ ତଥା କବି ଜୀବନ । ସ୍କୁଲ ତ ଦୂରର କଥା, ଦିନଟିଏ ମାତ୍ର ଗାଁ ଚାହାଳୀର ଛାତ୍ର ହେବାର ସୌଭାଗ୍ୟ ଅର୍ଜନ କରି ଅର୍ଦ୍ଧ ଚଉଠ ଶତାବ୍ଦୀରୁ ଅଧିକ କାଳ ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ସ୍ୱତନ୍ତ୍ର ଧାରାର ଅଗ୍ରବାହିନୀ ଭାବରେ ମୋର ଜୟଯାତ୍ରା ଅବ୍ୟାହତ ରହିଛି । ଏଥିପାଇଁ ମୁଁ ମୋ ଜୀବନ-ବିଶ୍ୱବିଦ୍ୟାଳୟରେ ଛାତ୍ରତ୍ୱ ଗ୍ରହଣ କରିଥିଲି । ପ୍ରତିଟି ମଣିଷକୁ ମୁଁ ମନେ କରିଥିଲି ଓ କରିଛି ଗୋଟିଏ ଗୋଟିଏ ଗ୍ରନ୍ଥ । ତା'ର ସଂଗ୍ରାମ-ସଂଘାତ, ଆଶା-ନିରାଶା, ଜୟ-ପରାଜୟ ହିଁ ମୋର ପ୍ରତିଦିନର ଅଧ୍ୟୟନ, ପାଠ୍ୟ । ତେଣୁ ଜ୍ଞାନାର୍ଜନ କ୍ଷେତ୍ରରେ ବିଶ୍ୱବିଦ୍ୟାଳୟ ଶିକ୍ଷାର କୌଣସି ଆବଶ୍ୟକତା ନାହିଁ ବୋଲି ମୋର ଜୀବନ ଏବଂ ସୃଷ୍ଟି ବଜ୍ରଗମ୍ଭୀର କଣ୍ଠରେ

ଘୋଷଣା କରନ୍ତୁ । ପ୍ରଶାସନଙ୍କ-ଉପଜାତି ଭାବରେ ଅବସ୍ଥାପିତ ହେବା ପାଇଁ, ଜନସାଧାରଣଙ୍କ ଉପରେ ଲଗାତର ଅତ୍ୟାଚାର କରିବା ପାଇଁ, ସେମାନଙ୍କୁ ଜବତ କରିବା ପାଇଁ ଯେଉଁ ଯୋଗ୍ୟତା ବା ଶିକ୍ଷାର ପ୍ରୟୋଜନ, ତାହା ଶତସହସ୍ର ବାର ସ୍କୁଲ,କଲେଜ ବା ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଦୁର୍ନୀତିବନ୍ତ ବିରାଜମାନ କରୁଛନ୍ତି, ଏଥିରେ ମୁଁ ଶତକଡ଼ା ୨୦୦ ଭାଗ ଏକମତ । (୧)

ସେ ଯାହାହେଉ, ଯେ କୌଣସି ମତେ ମୋତେ ମୋର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରିବା ପାଇଁ ଅର୍ଥାତ୍ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ନ ଦେବା ପାଇଁ ଭୁବନେଶ୍ୱର ଏବଂ ଦିଲ୍ଲୀର କଂଗ୍ରେସ ଶାସକଚକ୍ର ବଦ୍ଧପରିକର ହୋଇ ଓଡ଼ିଶା ହାଇକୋର୍ଟଙ୍କ ସାମ୍ନାରେ ବାରମ୍ବାର ନାନା ଯୁକ୍ତି ବାଢ଼ି ମୋର ଦାବୀ ଏବଂ ଆବେଦନକୁ ଗୋଳମାଳିଆ ଅବସ୍ଥାରେ ପକାଇବା ପାଇଁ ପ୍ରଚେଷ୍ଟା ଚାଲୁ ରହିବା ଅବସ୍ଥାରେ ଭାରତବର୍ଷ ଉପରେ ଘୋଟି ଆସିଲା ଜରୁରୀ ପରିସ୍ଥିତିର ଫ୍ୟାସିବାଦୀ କଳାବତ୍ତି । ଭାରତରକ୍ଷା ଆଇନ ଏବଂ ଆଭ୍ୟନ୍ତରୀଣ ନିରାପତ୍ତା ରକ୍ଷାଆଇନ ବଳରେ ମୋତେ ଗିରଫ କରିବା ପାଇଁ ଓ୍ୱାରେଣ୍ଟ ଜାରି ହେବାରେ ମୋତେ ଅନ୍ତର୍ଗୋପନ କରିବାକୁ ପଡ଼ିଥିଲା । ୧୯୭୫ ମସିହା ଅଗଷ୍ଟ ୭ ତାରିଖ ରାତିରେ ମୋତେ ଗିରଫ କରି ନିଆଗଲା । ମୁଁ ଅନ୍ତକବନ୍ଦୀ ଥିବା ବେଳେ ପଶ୍ଚିମ ବଙ୍ଗର ମୁଖ୍ୟମନ୍ତ୍ରୀ ଓଡ଼ିଶା ଆସିଥିଲେ । ମୋର ରିଟ୍ ଆବେଦନ ଯୋଗୁଁ ଭାରତ ସରକାର ମହା ଅଡୁଆରେ ପଡ଼ିଥିଲେ । ପଶ୍ଚିମ-ବଙ୍ଗର ମୁଖ୍ୟମନ୍ତ୍ରୀଙ୍କ ଓଡ଼ିଶା ଆଗମନ କାଳରେ ମୋ ରିଟ୍ ଆବେଦନ କପରି ପ୍ରତ୍ୟାହୃତ ହେବ ସେଥିପାଇଁ ମୋର କ୍ଷମତାପ୍ରାପ୍ତ ଆଇନଜ୍ଞ ପ୍ରତିନିଧିଙ୍କ ଉପରେ ପ୍ରଚଣ୍ଡ ନୈତିକ ଚାପ କୁଆଡେ ସୃଷ୍ଟି କରିଥିଲେ ଶ୍ରୀ ସିଦ୍ଧାର୍ଥଶଙ୍କର ରାୟ ।

---

(୧)"...ରବି ସିଂ ସ୍ୱୟଂସିଦ୍ଧ...ଏକଲବ୍ୟ ପରି, ନୋହିଲେ ଗଣକବି ବୈଷ୍ଣବ ପାଣିଙ୍କ ପରି, ସେ ଜନା ଗୁରୁଙ୍କରେ କାବ୍ୟ ସାଧନା କରିଛନ୍ତି । ତାଙ୍କ ଗୁରୁ ଏଲିୟଟ୍, ଓ ସୁଲିନ୍ ଥମାସ୍, ସ୍ପେଣ୍ଡର, ପାଉଣ୍ଡ ନୁହନ୍ତି କି କାଳିଦାସ, ଭବଭୂତି, ରବୀନ୍ଦ୍ରନାଥ ନୁହନ୍ତି । ସେଥିପାଇଁ ତାଙ୍କ କବିତାରେ ରୂପକ ବା ରୂପକଳ୍ପତାର ବିନ୍ୟାସ ନାହିଁ, ଧ୍ୱନିର ଆଡମ୍ବର ନାହିଁ । ...ମାତ୍ର ଅଛି ଅନୁଭୂତିଲବ୍ଧ କଠୋର ଅଭିଜ୍ଞତାର ତୀବ୍ର ଅଭିଜ୍ଞାନ ।" ( ସୁରେନ୍ଦ୍ର ମହାନ୍ତି : ୧୯୬୫ ସାଲରେ ଲିଖିତ "ପାଦଟୀକା" ଗ୍ରନ୍ଥର ମୁଖବନ୍ଧ । )

ଏହା କେତେଦୂର ସତ୍ୟ; ତା' ଅବଶ୍ୟ ମୁଁ ଜାଣେନା । ପ୍ରକାଶ ଥାଉକି ଶ୍ରୀ ରାୟ ମୋର କ୍ଷମତାପ୍ରାପ୍ତ ଅଇନଜ୍ଞ ପ୍ରତିନିଧିଙ୍କ ଲଣ୍ଡନର ସହପାଠୀ ଥିଲେ । ୧୯୭୫ ନଭେମ୍ବର ୧୧ ତାରିଖ ଦିନ ମୁଁ ପ୍ୟାରୋଲ୍‌ରେ ୭୦ ଦିନ ପାଇଁ କାରାଗାରରୁ ମୁକ୍ତ ହୋଇ ଶୁଣିଲି ମୋର ଉକ୍ତ ରିଟ୍ ଆବେଦନଟି ପ୍ରତ୍ୟାହୃତ ହୋଇଛି ।

ଆଇନର ଅଙ୍କୁଆ ସୂତା ବଣ୍ଡିଲ ଭିତରୁ ଖିଅ ଖୋଜି ପାଇବା ଦରିଦ୍ର ଲୋକ ପକ୍ଷରେ କେତେ କଠିନ ତାହା ଅନୁଭବୀ ମାନେହିଁ ଜାଣନ୍ତି । ତେଣୁ ମୋର ଭତ୍ତା ପାଇବାର ଆଇନଗତ ସଂଗ୍ରାମ ଏହି ଭାବରେ ହିଁ ଶେଷ ହୋଇଥିଲା । କହିଲେ ଅପ୍ରାସଙ୍ଗିକ ହେବ ନାହିଁ, ମୋର ଏହି ରିଟ୍ ଆବେଦନ ଓଡ଼ିଶା ହାଇକୋର୍ଟରେ ବିଚାରାଧୀନ ଥିବା ବେଳେ ମୋର ସାଫଲ୍ୟ ଏବଂ ବିଜୟ କାମନା କରି ମୋର "ହକ୍ ପ୍ରାପ୍ୟ" ମୁଁ ପାଇବା ଉଚିତ ବୋଲି ଶ୍ରୀଯୁକ୍ତ ନୀଳମଣି ରାଉତରାୟ ବହୁବାର କହିଥିଲେ । ଏହା ସାରସ୍ୱତ ଜଗତରେ ବିଦିତ ଯେ, ଶ୍ରୀଯୁକ୍ତ ରାଉତରାୟଙ୍କ ସ୍ୱର୍ଗତା ସହଧର୍ମିଣୀ ନାଗରିକବି ନଳିନୀଦେବୀ ରାଉତରାୟ ଥିଲେ ମୋର ଜ୍ୟେଷ୍ଠାଭଗ୍ନୀ ଠାରୁ ଅଧିକ ସ୍ନେହମୟୀ । ବିଗତ ୨୫ ବର୍ଷ ଧରି ଶ୍ରୀଯୁକ୍ତ ରାଉତରାୟଙ୍କ ବାସଗୃହ ମୋର ଅନ୍ୟ ଏକ ଆବାସ ଭଳି ଥିଲା । ମୋର ଅତି ସ୍ନେହମୟୀ ସ୍ୱର୍ଗତା ନଳିନୀଦେବୀ ରାଉତରାୟ (ମାମା) ମୋତେ ମୁହୂର୍ତ୍ତେ ନଦେଖିଲେ ଅଧୀର ହେଉଥିଲେ । ଏ ସବୁର ସ୍ମୃତି କଥା ପରେ ପ୍ରସଂଗକ୍ରମେ ଆଲୋଚିତ ହେବ । ମୋଟାମୋଟି ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କ ସହିତ ମୋର ସମ୍ପର୍କଟା ହେଉଛି ବନ୍ଧୁବାନ୍ଧବ ତଥା ଅତି ପାରିବାରିକ ସଂପର୍କ । ଦେଶରେ କଂଗ୍ରେସ ଶାସନର ଅବସାନ, ଜନତା ସରକାରର ଅଭ୍ୟୁଦୟ ପରେ ଶ୍ରୀଯୁକ୍ତ ରାଉତରାୟ ଯେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ସେତେବେଳେ ମୁଁ ପୁଣି ଥରେ ମୋର ସେହି ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଇଁ ତାଙ୍କୁ ଆବେଦନ କଲି । କିନ୍ତୁ ସେ ମୋତେ ସ୍ପଷ୍ଟ ମନା କରି ଦେଲେ ଯେ ସେ ସେଥିରେ କିଛି ସାହାଯ୍ୟ କରିପାରିବେ ନାହିଁ । ଜନତା ସରକାର ଗଲା, ପୁଣି କଂଗ୍ରେସ(ଇ)

ଦଳ ଗଦିଆସୀନ ହେଲା, ଓଡିଶାର ମୁଖ୍ୟମନ୍ତ୍ରୀ ହେଲେ ମୋର ଅତୀତରେ ଦୀର୍ଘକାଳ ଧରି ଘନିଷ୍ଠ ଥିବା ସାହିତ୍ୟିକ ବନ୍ଧୁ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ । ତାଙ୍କୁ ମଧ୍ୟ ଏକ ଲିଖିତ ଆବେଦନ ଏହି ମର୍ମରେ କଲି । ସେ ମୋ ଆବେଦନକୁ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ପେନ୍‌ସନ୍ ଦେବା-ପାଇଁ ଗଠିତ କମିଟିରେ ପକାଇବା ପାଇଁ ବିଭାଗୀୟ ନିର୍ଦ୍ଦେଶ ଦେଲେ । ସେ କମିଟିର କର୍ମକର୍ତ୍ତା ହେଲେ ଡଃ ହରେକୃଷ୍ଣ ମହତାବ, ( ଯିଏ କି ମୋର ପେନ୍‌ସନ ପାଇବା ସପକ୍ଷରେ ଲିଖିତ ଭାବେ ସୁପାରିସ କରିଥିଲେ ବହୁପୂର୍ବରୁ) । ତାପରେ କମିଟି ମୋ ଅବେଦନକୁ ପୂର୍ବାପର ନାମଞ୍ଜୁର କରି ମୋତେ ଚିଠି ଦ୍ୱାରା ଜଣାଇ ଦେଲେ ଯେ, ମୁଁ ପେନ୍‌ସନ ପାଇବାକୁ ହକ୍‌ଦାର ନୁହେଁ । ଏତେବେଳେ ଯାଇ ବୁଝିଲି ଯେ, ସରକାରୀ ଗଛର ପେଣ୍ଡାକ ଯାକ ନଡ଼ିଆ ସବୁ ଭୁତଖିଆ ।



# ଝଡ଼ର ଗ୍ରାଜୁଏଟ

ସେ ଯୁଗରେ ଜାତିଭେଦ ପ୍ରଥା ଅତି ଉତ୍କଟ ଥିଲା, ବିଶେଷ କରି ନବାପାଟଣା ଗାଁ ପରି ହାଟୁଆ ଗାଁରେ । ମୋର ବାପା ଥିଲେ କଂଗ୍ରେସବାଲା । ବାରମ୍ବାର ଜେଲ୍‌ଖାନା ଯାଇ, ପ୍ରାୟଶ୍ଚିତ ନ ହୋଇ, ଛୁଆଁ ଅଛୁଆଁ ନ ମାନିବା ସେତେବେଳେ ଏକ ସାମାଜିକ ଅପରାଧ ଛଡ଼ା ଅନ୍ୟକିଛି ନଥିଲା । ସେଥିପାଇଁ ଆମ ପରିବାର ଉପରେ ଯେଉଁ ବାସନ୍ଦ ବ୍ୟବସ୍ଥା ଲାଗୁ କରାହୋଇଥିଲା ଜମିଦାର ସିଂହବଂଶଙ୍କ ପ୍ରରୋଚନାରେ, ତାହା ବଳବତ୍ତର ଥିଲା ୧୯୫୭ ମସିହାର ଫେବ୍ରୁଆରୀ ମାସ ଅର୍ଥାତ୍ ବାପାଙ୍କ ମୃତ୍ୟୁର ଏକମାସ ପୂର୍ବ ପର୍ଯ୍ୟନ୍ତ । ସେ ବାସନ୍ଦ ବ୍ୟବସ୍ଥା ଭିତରେ ଥିଲା—ନାଆଁ, ପାଣି, ଧୋବା, ଭଣ୍ଡାରୀ, ହୋଳି-ପୂର୍ଣ୍ଣିମାରେ ଆମ ଘରେ ଠାକୁର ଭୋଗ ଖାଇବା ଇତ୍ୟାଦି ସବୁ ବନ୍ଦ । ବାପା କିନ୍ତୁ ଏ ସବୁକୁ ଭ୍ରୂକ୍ଷେପ କରୁ ନ ଥିଲେ । ସେ ଥିଲେ ମ୍‌ଗ୍ରିପ୍‌ଜାତି ଘୋର ବିରୋଧୀ । ବାକି ଅନ୍ୟକାମ ସେ ନିଜ ହାତରେ କରୁଥିଲେ । ତେଣୁ ସେ ବାସନ୍ଦ ବ୍ୟବସ୍ଥା କିଛି ଫଳପ୍ରଦ ହୋଇ ନ ଥିଲା ।

ବେଳକୁବେଳ ପରିବାରର ଆର୍ଥିକ ସ୍ଥିତି ଶୋଚନୀୟ ହୋଇ ଉଠୁଥିଲା । ମା' ମୋର ଥିଲା ରୁଗ୍‌ଣା, ଭାଙ୍ଗିପଡ଼ୁଥିଲା ବାପାଙ୍କର ସାଧାରଣ ସ୍ୱାସ୍ଥ୍ୟ । ଦୁଇ ଦାଦା ଓ ବାପାଙ୍କ ଭିତରେ ରୁଦ୍ଧ ମନାନ୍ତର—ଏଇସବୁ ଦୁର୍ବିପାକ ଭିତରେ ଆମେ ସମସ୍ତେ ଯଥା—ବାପା, ମା' ଓ ମୁଁ ପ୍ରାୟ ପେଷି ହୋଇ ଯାଉଥିଲୁ । ଏତଦ୍ ବ୍ୟତୀତ ବାପା ଓ ମା, ଦୁହିଁଙ୍କର ଏକ ଗମ୍ଭୀର ଆତ୍ମଯନ୍ତ୍ରଣା ସେମାନଙ୍କୁ ପ୍ରତିନିୟତ ତୁଷାଗ୍ନି ପରି ତିଳ ତିଳ ଜାଳିପୋଡ଼ି ମାରୁଥିଲା । ସେହି ଅବିରତ ଦହନର କାରଣ ହେଲେ ମୋର ଜନ୍ମିତ ବଡ଼ଭାଇ, ଯାହାଙ୍କର ଶୈଶବ ଓ କୈଶୋର ଗଠିତ ହୋଇଥିଲା ଦୁଗ୍ଧ ଫେନ ନିଭ କୋମଳ ଶଯ୍ୟାରେ, ସେହି ଯମୁନା ଲାଲ ସିଂଙ୍କୁ କେନ୍ଦ୍ର କରି । ମୋର ସାନଦାଦା ଅର୍ଥାତ୍ ବାପାଙ୍କ ସାନଭାଇ ସ୍ୱର୍ଗତ ସାଧୁଚରଣ ସିଂ ଓ ତାଙ୍କ ସ୍ତ୍ରୀଙ୍କ କୁଶିକ୍ଷାରେ ଯମୁନାଲାଲ ହୋଇଥିଲେ ଅପଥଗାମୀ । ସେ ବାପ, ମା'ଙ୍କ ପାଖ ମାଡ଼ୁ ନ ଥିଲେ କେବଳ ନୁହେଁ, ସେମାନଙ୍କୁ ଚରମ ଅବଜ୍ଞା ମଧ୍ୟ କରୁଥିଲେ । ପରିଶେଷରେ ସେ

ବାପାଙ୍କ ବିପ୍ଳବୀ ଜାତୀୟତାବାଦୀ ଆଦର୍ଶର ବିରୁଦ୍ଧାଚରଣ କରି ଇଂରେଜ ସାମରିକ ବାହିନୀରେ ଯୋଗ ଦେବା ଫଳରେ ଘୋର ମାନସିକ ଆଘାତ ପାଇଥିଲେ ବାପା । ମୁଁ କିନ୍ତୁ ଆବାଲ୍ୟରୁ ଥିଲି ଭାଇଙ୍କ ଚରିତ୍ରର ସମ୍ପୂର୍ଣ୍ଣ ଓଲଟା, ଆଉ ଚରମ ପିତୃଭକ୍ତ । ଫଳରେ ଜୀବନର ଆରମ୍ଭରୁ ବାପାଙ୍କର ସାନ୍ନିଧ୍ୟ ଓ ଶିକ୍ଷା ମୋତେ ସମ୍ପୂର୍ଣ୍ଣ ରୂପେ ମିଳିଥିଲା ।

ପରିବାରର ଆର୍ଥିକ ଅବସ୍ଥା ଏପରି ସାଙ୍ଘାତିକ ହୋଇଥିଲା ଯେ, ପ୍ରତିଦିନର ଅନ୍ନସଂସ୍ଥାନ ହୋଇ ଉଠୁଥିଲା ଏକ ସମସ୍ୟା । ଅନାହାର, ଅନଶନ, ଅର୍ଦ୍ଧାହାର, ରୋଗ ଏବଂ ମାନସିକ ବିଷାଦ ଆଉ ସନ୍ତୁଳନ ସେତେବେଳେ ଥିଲା ଆମର ନିତ୍ୟ ସଙ୍ଗୀ । ଏପରି ଅବସ୍ଥାରେ ମୋର ପ୍ରାଥମିକ ଶିକ୍ଷାର ପ୍ରଶ୍ନ ଉଠି ନ ପାରେ । ନଜର ଦେବାକୁ ଅବସର ବା କାହାର ଅଛି ?

ସାବାଳକ ହେଲା ପରେ ଉଚ୍ଚଶିକ୍ଷିତ, ବିଶେଷ କରି କଲେଜର ଶିକ୍ଷକ, ଲେକ୍‌ଚରର ବା 'ଅଧ୍ୟାପକ'ମାନେ ଥିଲେ ମୋ ପାଖରେ ଗୋଟିଏ ଗୋଟିଏ ବିସ୍ମୟ । ଶିକ୍ଷା ଜଗତର ତାଳଗଛ ପରି ମୋର ମନେ ହେଉଥିଲା ସେମାନଙ୍କୁ । ଏପରି ମନେ ହେବାଟା ମୋ ପକ୍ଷରେ ଏକାନ୍ତ ସ୍ୱାଭାବିକ । କାରଣ ଠିକ୍ ମନେ ଅଛି, କେତେ ସାଲର ଘଟଣା କହିପାରିବି ନାହିଁ, ଗାଁ' ଗୃହାଳିକୁ ଯାଇଥିଲି ମାତ୍ର ଦିନକ ପାଇଁ । ତହିଁଆର ଦିନ କାହିଁକି, ସାରା ଜୀବନ ପାଇଁ ଶିକ୍ଷାଳୟର ଚୌସୀମାରେ ଏ ଯାବତ୍ ମୋର ଆଉ ପାଦ ପଡ଼ିନାହିଁ । ତେଣୁ ମୋର "ଅନୁଭୂତି ଲବ୍ଧ କଠୋର ଅଭିଜ୍ଞତାର ତୀବ୍ର ଅଭିଜ୍ଞାନ", ଯାହାର ପ୍ରେରଣାରେ ମୋ ଜୀବନର ମଧୁମୟ ଦିନ ଗୁଡ଼ିକ ଅର୍ଥାତ୍ ସମଗ୍ର ଯୌବନ କଟିଛି କଠୋର କର୍ମପ୍ରେରଣା ତଥା ନିରାନନ୍ଦମୟ ଅକ୍ଳାନ୍ତ ସଂଗ୍ରାମ ଭିତର ଦେଇ, ସମଗ୍ର ସମାଜ ବ୍ୟବସ୍ଥା ବିରୁଦ୍ଧରେ ମୋର ଆଜୀବନ ବେସାଲିସୀ-ବିଦ୍ରୋହର ଯିଏ ଅସରନ୍ତି ଇନ୍ଧନ ; ତାହା ଜନ୍ମଲାଭ କରିନାହିଁ କୌଣସି ସ୍କୁଲ-କଲେଜ ବା ବିଶ୍ୱବିଦ୍ୟାଳୟ ଶିକ୍ଷାର ପରିସର ଭିତରୁ—ତା'ର ଜନ୍ମ ଏକ ଗଦ୍ୟମୟ ବ୍ୟଥା-କଣ୍ଟକିତ ରୁକ୍ଷ-ବାସ୍ତବତାର ବିଶ୍ୱବିଦ୍ୟାଳୟରୁ ହିଁ ସଂଜାତ । ଯେତେ କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ବି କୌଣସି ଲିଖିତ ଡିଗ୍ରୀ ବା ଉପାଧି ମିଳେ ନାହିଁ ସେ ବିଶ୍ୱବିଦ୍ୟାଳୟରୁ । ସେ ବିଶ୍ୱବିଦ୍ୟାଳୟର ଯେଉଁମାନେ କୃତୀ ଛାତ୍ର, ଯେଉଁମାନେ ଉତ୍ତୀର୍ଣ୍ଣ ହୋଇଥାନ୍ତି,

ସେମାନେ ସଂଖ୍ୟାରେ ମୁଷ୍ଟିମେୟ ହେଲେ ବି 'ଅସାମାଜିକ' 'ରାଜଦ୍ରୋହୀ' 'ବିଦ୍ରୋହୀ' 'ବିପ୍ଳବୀ' ଆଦିର ଅବାଞ୍ଛନୀୟ ଦାଗ ସେମାନଙ୍କ ଲଲାଟରେ ଅଂକିତ ହୁଏ—ହୋଇଛି । ସେମାନଙ୍କୁ ଯୁଗେ ଯୁଗେ ସମାଜର ଦରବାର "ଏକ ଦୁରନ୍ତ ଦିଗ୍‌ଭ୍ରଷ୍ଟ କଳାପାହାଡ଼" ବୋଲି ଅଯାଚିତ ଭାବରେ ଉପାଧି ଦେବାକୁ ଆଗେଇ ଆସେ । ସେ ଉପାଧି ମୋ ଜୀବନରେ ମୁଁ ପାଇଛି ବହୁବାର । ଯେଉଁ ବିଶ୍ୱବିଦ୍ୟାଳୟ ଶିକ୍ଷାରେ ବିଶ୍ୱସାହିତ୍ୟର ସମାଜବାଦୀ ବାସ୍ତବତାର ଜନକ ମ୍ୟାକ୍‌ସିମ ଗର୍କି, ବିଦ୍ରୋହୀକବି କାଜୀ ନଜରୁଲ ଇସ୍‌ଲାମ୍; ଆମ ଓଡ଼ିଶାରେ ଗଣକବି ବୈଷ୍ଣବ ପାଣି, କବି ଗଙ୍ଗାଧର ମେହେର, ଖ୍ରୀମତେଇ ପ୍ରମୁଖ ଧନୀ ଓ ବିଦ୍ୱାନ, ମୁଁ ମଧ୍ୟ ସେହି ବିଶ୍ୱବିଦ୍ୟାଳୟର ଜଣେ କୃତୀ ଛାତ୍ର । ଆମ୍ଭମାନଙ୍କର ସେ ବିଶ୍ୱବିଦ୍ୟାଳୟର ଯେଉଁମାନେ ଅଧ୍ୟାପକ; ସେମାନେ ରକ୍ତମାଂସର ଦେହଧାରୀ ନରମଣିଷ ନୁହନ୍ତି, କିମ୍ବା "ରାଧାନାଥ ଓ ଚିଲିକା' କିମ୍ବା "ମଥୁରାମଙ୍ଗଳ ପରିକ୍ରମା"ର ଲେଖକ ନୁହଁନ୍ତି । ସେ ଅଧ୍ୟାପକମାନେ ହେଲେ ଝଡ଼, ଝଞ୍ଜା, ରୋଗ, ଶୋକ, ଅନାହାର, ଅନଶନ, ଅବହେଳା, ଅନାଦର, ଅପମାନ, ବାଧା, ଅବରୋଧ, କ୍ଷୁଧା, ଅସ୍ପୃହା, ଅଭାବ, ଅନାଟନ, ଆକ୍ରମଣ, ହତାଶା ଇତ୍ୟାଦି । ଏ ଅଧ୍ୟାପକମାନଙ୍କର ରକ୍ତଚକ୍ଷୁ ତଥା ବେତ୍ରାଘାତରେ ଯିଏ ଶିକ୍ଷିତ ହୁଏ; ତାର ଆତ୍ମାର ଲୌହପିଣ୍ଡ ଶାଣିତ ହୋଇ ବିଚ୍‌ଛିନ୍ନତାକୁ ବାହାରି ଆସେ—କୌଣସି କ୍ଳେଦ ତା ମନକୁ କ୍ଳେଦକ୍ତ କରି ପାରେନା । ସ୍ଥିତାବସ୍ଥା, କାଏମୀସ୍ୱାର୍ଥ ବିରୁଦ୍ଧରେ ତାର ବୌଦ୍ଧିକ ଅଭିଯାନ ନରକାଗ୍ନିର ଗର୍ଭରେ ବି ସୁବାସିତ କୁସୁମର ପ୍ରସ୍ଫୁଟନ କରିପାରେ—କରିଛି । ତେଣୁ ମୋର ସେହି ପୂଜ୍ୟ ଅଧ୍ୟାପକମାନଙ୍କର ଶିକ୍ଷାଦାନ, ଅଭିଭାବକତ୍ୱ ମୋ କଲମରେ ପରବର୍ତ୍ତୀ କାଳରେ ଭରି ଦେଇଥିଲା ତରବାରୀର ଝନତ୍‌କାର, ହୃଦୟର ଧମନୀ ଧାରରେ ଅନିର୍ବାଣ ବହ୍ନିଶିଖା, ମାନସଲୋକରେ ଉଲ୍ଲସିତ ଶିବର ଉଦ୍ଦାମ ଜଟା-ଗ୍ରନ୍ଥିଳ ।

କଳ୍ପନାତୀତ ଦୁଃଖର ଧୂ ଧୂ ମରୁଭୂମି ଭିତରେ ପିଲାଦିନେ ମୁଁ ଥିଲି ଭାରି ଦୁରନ୍ତ । ତା'ର ଭିତରେ ମୁଁ ଭୁଲୁଥିଲି ମରୁଭୂମିର ତାପ ପ୍ରବାହ ଏବଂ ଗରମ ଲୁ'ର ଜ୍ୱାଳାକୁ । ତେଣୁ ଦୁରନ୍ତ ନ ହେବା ବ୍ୟତିରେକ ସେତେବେଳେ ମୋର କୌଣସି ଗତ୍ୟନ୍ତର ନ ଥିଲା । ମୋ ଦୁଷ୍ଟାମିକୁ ନିୟନ୍ତ୍ରିତ କରି

ମୋତେ ଶୃଙ୍ଖଳିତ କରିବା ପାଇଁ ମୋର ଛାତ୍ର ଜୀବନର ଶୁଭ ଦେବାକୁ ସିଦ୍ଧାନ୍ତ ନିଆହେଲା । ସେଦିନକୁ ମିଶାଇ ଦୁଇଦିନ ଧରି ଆକାଶରେ ଦିନମଣିଙ୍କ ଦେଖାଦର୍ଶନ ନଥାଏ—କୁଣ୍ଡା ଝାଡ଼ୁଥାଏ ମେଘ । ସକାଳୁ ନୀଳରଙ୍ଗର ଖଦଡ଼ ହାଫ୍‌ପ୍ୟାଣ୍ଟଟି ପିନ୍ଧି, ପକେଟରେ କିଛି ମୁଢ଼ି ପୁରାଇ, ହାତରେ ଖଣ୍ଡେ ଖଡ଼ିଗୋଟାଳି ଧରି ଜୀବନରେ ସେଦିନ ପ୍ରଥମ ଏବଂ ଶେଷଥର ପାଇଁ ପ୍ରବେଶ କରିଥିଲି ଆମ ଗାଁ ମୁଣ୍ଡ ଦୋଳବେଦୀ ପାଖରେ ଥିବା ବିଦ୍ୟାଳୟରେ । ସେତେବେଳେ ଯେଉଁ ଶିକ୍ଷକଙ୍କୁ ପ୍ରଥମେ ଦେଖିଥିଲି, ତାଙ୍କ ଘର ସାତପୁରା ଗାଁ'ରେ । ହାତରେ ଖଣ୍ଡେ ବେତ ଧରି ସେ ବସିଥିଲେ ଆଉ ତାଙ୍କ ସାମ୍ନାରେ ଗୋଟେଇ ହୋଇ ବସିଥିଲେ ଅନ୍ୟ ପିଲାମାନେ । ସେମାନଙ୍କ ମେଳରେ ସେଦିନ ମୁଁ ଦେଖିଲି ମୋର କେତେଜଣ ଖେଳସାଥୀଙ୍କୁ । ଟିକେ ତଫାତରେ ମୋତେ ବସିବାକୁ ଇସାରା ଦେଇଥିଲେ ଶିକ୍ଷକ । ( ପ୍ରକାଶ ଥାଉକି ସ୍କୁଲକୁ ଯିବା ଆଗରୁ ମୁଁ ବାପାଙ୍କ ଠାରୁ ଅ ଆ କ ଖ ଶିଖି ସାରିଥାଏ । )

"ଅ ଆ ଆଉ କ ଠୁଁ କ୍ଷ ପର୍ଯ୍ୟନ୍ତ ତଳେ ଲେଖି ଦେଖେଇଲୁ ମତେ…" ନିର୍ଦ୍ଦେଶ ଦେଇଥିଲେ ଶିକ୍ଷକ । ମୁଁ ତାଙ୍କ ଆଦେଶ ମୁତାବକ ଲେଖିବାକୁ ଆରମ୍ଭ କଲି । ଏଥି ଭିତରେ ଶିକ୍ଷକ ମହାଶୟ ଉଠି ପରିସ୍ରା କରିବାକୁ ଗଲେ । ମୋତେ ମୁତ ମାଡ଼ିଲା । ମୁଁ ବି ତାଙ୍କ ପଛରେ ଉଠି ମୁତିବାକୁ ଗଲି । ମୁଁ ଆସିବା ଆଗରୁ ଶିକ୍ଷକ ମହାଶୟ ଆସି ତାଙ୍କ ସ୍ଥାନରେ ବସି ସାରିଥିଲେ । ମୁଁ ଯେତେବେଳେ ଆସି ମୋ ଜାଗାରେ ବସିବାକୁ ଯାଉଛି, ସେତେବେଳେ ଶାସନ କଲା ପରି ଗମ୍ଭୀର ଏକ କଣ୍ଠରେ ଶିକ୍ଷକ ମୋ ଉଦ୍ଦେଶ୍ୟରେ ପ୍ରଶ୍ନ କଲେ : "କୁଆଡ଼େ ଯାଇଥିଲୁ ?"

"ମୁତିବାକୁ ।"

"ହୁଁ…ମୁତିବାକୁ… ?"

ତାପରେ ସପାତ୍ ସପାତ୍ କରି ବେତ ପ୍ରହାର ମୋ ହାତ ଚକ, ପିଣ୍ଡି ଏବଂ ପିଠି ଉପରେ କାଳସୀ ନାଚିଲା ପରି ପରସ୍ତେ ନାଚିଗଲା । ଲୁହ ଆଉ କାନ୍ଦ ଭିତରେ ମା', ମା' ବୋଲି ଚିତ୍କାର କରି ମୁଁ ବି ବେତର ନାଚ ସହୁଥ

ନାଚୁଥାଏ । ତା'ର ଭିତରେ ବେତ ପୁଣି ଯେତେବେଳେ ଉଦ୍ୟତ ହେବାର ଉପକ୍ରମ ହେଲା ମୁଁ ତତ୍‌କ୍ଷଣାତ୍ ହାତରେ ଧରିଥିବା ଓଜନିଆ ଖଡ଼ି ଖଣ୍ଡିକୁ ଜୋର୍‌ରେ ଶିକ୍ଷକଙ୍କ ଉପରକୁ ଫିଙ୍ଗି ଆଖି ପିଛୁଳାକେ ସେଠାରୁ ଅନ୍ତର୍ଦ୍ଧାନ ହୋଇ କାନ୍ଧ ଘରେ ଆସି ପହଞ୍ଚିଲି । ଏ ଘଟଣାର କିଛୁଦିନ ପର୍ଯ୍ୟନ୍ତ ମନକୁ ମନ ସବୁବେଳେ ଭାବୁଛି : କ'ଣ ମୋର ଅପରାଧ ? ମାଷ୍ଟ୍ରେ ମୋତେ ବିନା କାରଣରେ ଏପରି ବାଡ଼େଇଲେ କାହିଁକି ? ମୁଁ ତ କିଛି ଖରାପ କାମ କରି ନାହିଁ । ଏହି ପ୍ରଶ୍ନର ଭୂମିକ ଆନ୍ଦୋଳନ ସେତେବେଳେ ମୋତେ ଓ ମୋର ଶିଶୁ ମାନସକୁ ବାରମ୍ବାର କେବଳ ଆନ୍ଦୋଳିତ କରି ନ ଥିଲା, ବିଦ୍ରୋହୀ ମଧ୍ୟ କରୁଥିଲା । ଶିକ୍ଷା ଏବଂ ଶିକ୍ଷକ ଏ ଦୁହିଁଙ୍କ ପ୍ରତି ଯେତିକି ଭୟସଞ୍ଚାର ହୋଇଥିଲା ମନରେ, ଘୃଣା ସଞ୍ଚାର ହୋଇଥିଲା ତା'ଠାରୁ ଅଧିକ । ପରେ ଜାଣିବାକୁ ପାଇଥିଲି ମୋତେ ଶିକ୍ଷକ ସେଦିନ କାହିଁକି ବାଡ଼େଇ ଥିଲେ ତାହା ହେଲା ଶୃଙ୍ଖଳା ଭଙ୍ଗର ଅପରାଧ । ପରିସ୍ରା ବା ଝାଡ଼ା ଯିବାକୁ ହେଲେ 'ସାନପାସ୍' ବା 'ବଡପାସ୍' କହି ଅନୁମତି ନେଇ ଯିବାକୁ ହୁଏ ବୋଲି ମୋର ବିନ୍ଦୁ ମାତ୍ର ଧାରଣା ନ ଥିଲା । ସେଥିପାଇଁ ଶିକ୍ଷକଙ୍କ ବିନା ଅନୁମତିରେ ମୁଁ ପରିସ୍ରା କରିବାକୁ ଯିବାର ଫଳଶ୍ରୁତି ହୋଇଥିଲା ସେହି ମାଡ଼...ବାସ୍... ପାଠପଡା ଇତିଶ୍ରୀ । ଆଜି ଜୀବନର ମଧ୍ୟାହ୍ନରେ ବସି ଭାବୁଛି : ଶୃଙ୍ଖଳା... ହାଃ ! ହାଃ ! ହାଃ ! କିଏ ଶୃଙ୍ଖଳିତ ହୋଇଥାନ୍ତା ? ଏ ଅଧମ ରବି ସିଂ ? ଯାହାର ଜୀବନଟା ସିଧା ସଳଖ ନିର୍ଦ୍ଦିଷ୍ଟ ହୋଇ ରହିଥିଲା ଶୃଙ୍ଖଳକୁ ଜୀବନ ତମାମ୍ ଚୂର୍ଣ୍ଣବିଚୂର୍ଣ୍ଣ କରିବାର କାର୍ଯ୍ୟକ୍ରମ ନେଇ, ପୃଥିବୀର ପଥପ୍ରାନ୍ତରର ନୀରବ ଆମନ୍ତ୍ରଣ ଯିହାକୁ ସେତେବେଳେ କାହିଁକି, ଆଜି ବି ଆକର୍ଷିତ କରୁଛି ଦ୍ରୁତ ପଦକ୍ଷେପରେ, ସେହି ବ୍ୟକ୍ତିଟି ଅର୍ଥାତ୍ ମୋର ବାଲ୍ୟକାଳ କପରି ବିନା ପ୍ରତିବାଦରେ ମାନି ନେଇଥାନ୍ତା ଶିକ୍ଷକଙ୍କ ଶୃଙ୍ଖଳା ଶିକ୍ଷାକୁ ?

ଏହି ସ୍ମରଣୀୟ ଘଟଣାଟି ମୋ ଜୀବନ ଇତିହାସର ଚକକୁ ଏପରି ତୀବ୍ର ଭାବରେ ଘୂରାଇ ଦେଇ ଥିଲା ଯେ, ଯାହା ଫଳରେ କି ପରବର୍ତ୍ତୀ କାଳରେ ବୁର୍ଜୁଆ ଧନତାନ୍ତ୍ରିକ ଅପସଂସ୍କୃତି ଓ ଶିକ୍ଷା ବ୍ୟବସ୍ଥା ଠାରୁ ମୁଁ ଏକ ତ୍ୟକ୍ତ ଅନଳ କଣା ପରି ଛିଟିକି ପଡ଼ିଥିଲି ଦୂରକୁ ଚିରକାଳ ଲାଗି । ତହିଁରେ ମୋର ଲାଭ ହୋଇଛି ଯଥେଷ୍ଟ । କାରଣ ବିଭକ୍ତ ସମାଜର ଥିଲାବାଲାଙ୍କ ଅପସଂସ୍କୃତି ଓ ଶିକ୍ଷାର ବିଷକ୍ରିୟା କେତେ ଉତ୍କଟ ତାହା ମୁଁ ହାଡ଼େ ହାଡ଼େ ଅନୁଭବ

କରିଛି ଦେଶର ଜ୍ଞାନୀ, ଗୁଣୀ ତଥା ଶିକ୍ଷିତ ସମ୍ପ୍ରଦାୟଙ୍କ ଆନ୍ତରିକ ବ୍ୟବହାରରୁ । ପ୍ରଚଳିତ ଇଂରାଜୀ-ଔପନିବେଶିକ ଶିକ୍ଷା ବ୍ୟବସ୍ଥାର ତ୍ରିସୀମା ନମାଡ଼ି ମଣିଷ ଜ୍ଞାନ ଆହରଣ କରିପାରେ କି ନା, ଦେଶର ଜଣାଶୁଣା ପ୍ରଗତିଶୀଳ ବୁଦ୍ଧିଜୀବୀ-ମାନଙ୍କ ମଧ୍ୟରୁ ଜଣେ ହୋଇପାରେ କି ନା, ତାର ଚିନ୍ତା-ଚେତନାକୁ ସେ ବିକଶିତ କରାଇ ପାରିବ କି ନା ଏହାର ସ୍ପଷ୍ଟ ତଥା ବିସ୍ତୃତକାରୀ ଉତ୍ତର ଦେବ କେବଳ ମୋର ଜୀବନ ନୁହେଁ—ମୋର ସାହିତ୍ୟ, ମୋର କାବ୍ୟ କବିତା, ମୋର ପ୍ରବନ୍ଧ, ମୋର ବାମପନ୍ଥୀ ରାଜନୈତିକ ସତ୍ତା । ମୋର ଚଉଠ ଶତାବ୍ଦୀ ବ୍ୟାପି କବି, ଲେଖକ, ରାଜନୈତିକ ତଥା ସାମ୍ବାଦିକ ଜୀବନ ଭିତରେ ମୁଁ ଓଡ଼ିଶାର ତଥା ଓଡ଼ିଶା ବାହାରର ବହୁ କଲେଜ, ବିଶ୍ୱବିଦ୍ୟାଳୟ, ସାଂସ୍କୃତିକ ସଭା-ସମ୍ମିଳନୀରେ ଛାତ୍ର ତଥା ସଂସ୍କୃତିପ୍ରେମୀ ଜନଗଣଙ୍କୁ ଉଦ୍‌ବୋଧନ ଦେବାର ସୁଯୋଗ ପାଇଛି । ଶିକ୍ଷାଜଗତର ବହୁ ପ୍ରଧାନ ପୀଠର ବୁକୁ ଉପରେ ଠିଆ ହୋଇ ମୁଁ ଛାତ୍ରସମାଜକୁ ବଜ୍ରକଣ୍ଠରେ କହି ଆସିଛି : ଜ୍ଞାନାର୍ଜନ ପାଇଁ ସ୍କୁଲ, କଲେଜ ତଥା ବିଶ୍ୱବିଦ୍ୟାଳୟର ଡ଼ିଗ୍ରୀ କୌଣସି ସାହାଯ୍ୟ କରିପାରିବ ନାହିଁ, ତାହା ସାହାଯ୍ୟ କରିବ ଦାସତ୍ୱ ପଦାରେ ବନ୍ଧା ହେବା ପାଇଁ କେବଳ । ମୋର ଏ ବକ୍ତବ୍ୟରେ କ୍ଷୁବ୍ଧ ହୋଇଛନ୍ତି, ମାନସିକ ଦାସଦଳର ଥାଟ । କିନ୍ତୁ ଏହା ଯେ ବାସ୍ତବ ସତ୍ୟ, ଏ କଥା କହିବା ମୂଳରେ ନାହିଁ ମୋର ଅହମିକା । ଜ୍ଞାନର ସାଗର ସୀମାହୀନ । ମୁଁ ଜୀବିତ ଥିବାଯାଏ ସେ ସାଗରର ଅତଳ ତଳରେ ବାରମ୍ବାର ବୁଡ଼ିଛି, ଏବେବି ବୁଡ଼ୁଛି ।



# ପ୍ରଣାମ ଘେନ

ପିଲାଦିନେ ସ୍କୁଲ ଦୁଆରେ ପାଦ ଦେବାର ସେହି ବିଚିତ୍ର ସ୍ମୃତି ସହିତ ଆଉ ଏକ ସ୍ମୃତି କଥା ଏଠାରେ ଉଲ୍ଲେଖ କରିବାକୁ ଗଲାବେଳେ ମନରେ ଆସେ ଏକ ରୋମାଞ୍ଚ······ଏକ ଭାବାବେଶ । ୧୯୭୪ ସାଲର ଘଟଣା ବୋଧହୁଏ ସିଏ । ମୋ ଜୀବନର ଉତ୍ସଭୂମି ନବାପାଟଣା ଗାଁ ପାଖ ଚଉକୁନ୍ଦ ହାଇସ୍କୁଲରେ ଅନୁଷ୍ଠିତ ହୋଇଥିଲା ଗୋଠିଣା ଗାଁର ଅପେରା ନାଟ୍ୟକାର ଶ୍ରୀ ରାମଚନ୍ଦ୍ର ସ୍ୱାଇଁ ( ଗୁଣ୍ଡ୍ରୁଣୀ ରାମା )ଙ୍କ ସମ୍ବର୍ଦ୍ଧନା ସଭା । ସେଥିକୁ ମୋତେ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କରାଯାଇଥିଲା । ସେଠି ସେଦିନ ପହଞ୍ଚି ମନରେ ଆସିଥିଲା ମୋର ଭାବାନ୍ତର । ଏହି ଚଉକୁନ୍ଦ ହେଉଛି ମୋ ନିଜ ଗାଁର ଅଳ୍ପ ଦୂରରେ । ପିଲାଦିନେ ଏହି ଚଉକୁନ୍ଦ ମାଟି ସହିତ ମୋର ନାନା ସ୍ମୃତି ବିଜଡ଼ିତ । ଏହି ଜନ୍ମମାଟି ଓ ତାର ଆଖପାଖରୁ ମୁଁ ଏକ ଜ୍ୱଳନ୍ତ ଉଲ୍‌କାବତ୍ ମୋର ନିଷ୍ଠୁର ନିୟତିର ଧକ୍କାରେ ଛିଟିକି ବହୁ ଦୂରରେ ଯାଇ ପଡ଼ିଥିଲି ୧୯୪୭ ସାଲରେ । ଆଜି ମୋ ନିଜ ଗାଁର କେତେକ ପୁରୁଣାକାଳିଆ ଲୋକଙ୍କୁ ବାଦ ଦେଲେ ଅନ୍ୟ କାହାକୁ ଚିହ୍ନିବା ମୋ ପକ୍ଷରେ ମୁସ୍କିଲ୍ । ସେ ଯାହାହେଉ, ସେଦିନ ମୋର ଭାଷଣ ଶୁଣିବା ପାଇଁ ଓ ମୋତେ ଦେଖିବା ପାଇଁ ଆମ ଗାଁରୁ ବହୁଲୋକ ସେ ସଭାକୁ ଆସିଥିଲେ । ମୋର ଜୀବନ ଏବଂ ବୈପ୍ଳବିକ ଭୂମିକାର ସେଦିନ ସଭାରେ ପରିଚୟ ପ୍ରଦାନ କରିଥିଲେ ଭାରତୀୟ କମ୍ୟୁନିଷ୍ଟ ଦଳର ନେତା ତଥା ପାଖ ସାତପୁର ଗ୍ରାମ ନିବାସୀ ଶ୍ରୀ ଗୋବିନ୍ଦଚନ୍ଦ୍ର ମହାନ୍ତି । ହଠାତ୍ ପକ୍ୱକେଶ, ଧଳା ପଞ୍ଜାବୀ ପିନ୍ଧା, ବସନ୍ତ ଚିହ୍ନ ଶୋଭିତ ମୁଖମଣ୍ଡଳ ବିଶିଷ୍ଟ ଚଉକୁନ୍ଦ ହାଇସ୍କୁଲର ଜଣେ ଶିକ୍ଷକଙ୍କ ଉପରେ ମୋର ଦୃଷ୍ଟି ପଡ଼ିଲା । ତାଙ୍କୁ ସେଠାରେ ଲୋକେ ଖୁବ୍ ଗୁରୁତ୍ୱ ଦେଇ ସମ୍ମାନ ପ୍ରଦର୍ଶନ କରୁଥିବାର ମଧ୍ୟ ଦେଖିଲି । ସଭା ସାଙ୍ଗ ହେଲା ପରେ ତାଙ୍କୁ ପଚାରିଲି "ଆପଣ ନବାପାଟଣା ଡୋଳାବେଡ଼ା ପାଖ ସ୍କୁଲରେ କେବେ ଶିକ୍ଷକ ଥିଲେ ?"

ଉତ୍ତର ମିଳିଲା, " ସିଏତ ବହୁକାଳର କଥା !"
"ଆପଣଙ୍କ ଘର ସାତପୁର ନା"
ସେ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ ।

ଏଥରକ ମୋର ଆଉ ସନ୍ଦେହର ଅବକାଶ ହେଲ ନାହିଁ ଯେ, ସେ ହେଉଛନ୍ତି ମୋର ସ୍ମରଣୀୟ ସେହି ଶିକ୍ଷକ—ଯିଏକି ମୋତେ ମୋର ବିଶୃଙ୍ଖଳା ପାଇଁ ସେହି ବର୍ଷଣ ମୁଖର ଦିବସଟିରେ ବେତ୍ରପ୍ରହାର ଦେଇଥିଲେ, ଆଉ ମୁଁ ତାଙ୍କ ଉପରକୁ ଖଡ଼ିଗୋଳାକ ଫୋପାଡ଼ି ଦେଇ ଶିକ୍ଷାଗତ ଯୋଗ୍ୟତାର ପୋଥିରେ ଡୋର ବାନ୍ଧିଥିଲି ଚିରକାଳ ଲାଗି । ମନେ ମନେ ଫେରିଗଲି ବହୁ ସୁଦୂର ଅତୀତକୁ । ଯତର୍କରେ ଚାହିଁ ଦେଖିଲି ତାଙ୍କ ନାକ ତଳର ସେହି କଳର ଅବସ୍ଥିତ ଅତୀତରେ ଯେପରି ଥିଲା ଠିକ୍ ସେଇମିତି ଅଛି ; କିନ୍ତୁ ଅତୀତରେ ତାହା ପାଚି ନଥିଲା······ଏବେ ତାହା ପାଚି ଯାଇଛି । ଯେତେବେଳେ ସେ ଥିଲେ କୃଶତନୁ, ଏବେ ସେ ଟିକେ ମୋଟା ହୋଇ ଯାଇଛନ୍ତି । ଯେପରି ହାପସାର୍ଟ ପିନ୍ଧୁଥିଲେ । ଏବେ ଠିକ୍ ତାହାହିଁ ପିନ୍ଧୁଛନ୍ତି । ମୁହଁର ବସନ୍ତ ଚିହ୍ନ ଗୁଡ଼ିକ ଅବିକଳ ଠିକ୍ ସେଇମିତି ଅଛି । ବାସ୍ତବତା ଭିତରକୁ ଫେରି ଆସି ଅତି ନମ୍ର ଏବଂ ବିହ୍ୱଳ କଣ୍ଠରେ ମୁଁ ତାଙ୍କୁ କହିଲି, "ମୋର ପ୍ରଣାମ ନିଅନ୍ତୁ ! ଆପଣ ମୋର ଗୁରୁଦେବ । ମନେ ପଡ଼ୁଚି ସୁଦୂର ଅତୀତର ସେ ଘଟଣା ?" ଲକ୍ଷ୍ୟ କଲି ସେ କିପରି ଏକ ଭାରସାମ୍ୟହୀନତା ଭିତରେ ପହଞ୍ଚିଗଲେ । କିଛି ସମୟ ଉତ୍ତାରୁ ସେ ଗର୍ବିତ ଭଙ୍ଗୀରେ ମୋ ସହିତ ବ୍ୟବହାର କଲେ । ଖିଆ ପିଆ ଠାରୁ ବିଦାୟ ବେଳ ପର୍ଯ୍ୟନ୍ତ ସେ ମୋ ସହିତ ବେଶ୍ ଆତ୍ମୀୟତା ପ୍ରଦର୍ଶନ କରିଥିଲେ । ଅତୀତର ସ୍ମାରକୀ ସ୍ୱରୂପ ମୋ ସହିତ ଥିବା ଫଟୋଗ୍ରାଫରଙ୍କୁ କହିଲି ଶିକ୍ଷକ ମହାଶୟଙ୍କର ଗୋଟିଏ ଫଟୋ ନେବା ପାଇଁ । ମାରବଲରେ କ୍ୟାମେରା ଆଗରେ ଠିଆ ହୋଇ ସେ ଫଟୋ ଉଠାଇଲେ ।

ସେଦିନ ତେଲୁନ୍ଦରୁ ବିଦାୟ ନେଇ କଟକ ଫେରିବା ବେଳେ ଗତିଶୀଳ କାର୍ ଭିତରେ ଭାବୁଥିଲି ମୋର ସ୍ମରଣୀୟ ସେହି ଶିକ୍ଷକ ମହାଶୟଙ୍କ କଥା । ଏ ଶିକ୍ଷକ ଜଣକ ଅନାବିଳ ମୋ ପରି ଶିଶୁକୁ ବିଶୃଙ୍ଖଳା ପାଇଁ ଯେଉଁ ବେତ୍ରାଘାତ କରିଥିଲେ ତାହା ମୋତେ ଚିରକାଳ ଲାଗି ବିଶ୍ୱବିଦ୍ୟାଳୟ ଶିକ୍ଷାରୁ କେବଳ ବଞ୍ଚିତ କରି ନଥିଲା, 'ଶୃଙ୍ଖଳା' ବଦଳରେ ମୋ ଭିତରେ ଭରି ଦେଇଥିଲା ବିଶୃଙ୍ଖଳା, ବିଦ୍ରୋହର ଅକ୍ଷୟ ବୀଜ । ସେହି ବୀଜ ଭିତରୁ ପରବର୍ତ୍ତୀ କାଳରେ ଉଦୟ ହୋଇଥିଲା ବିଦ୍ରୋହ, ବିପ୍ଳବ, ଜ୍ୱଳନ, ଧ୍ୱଂସ ଏବଂ ସୃଷ୍ଟିର ମହାଦ୍ରୁମ—ସେହି ବୀଜ ମୋ ମନରେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା ପ୍ରତି

ଆଣିଥିଲା ଏକ ଶିଶୁ ତୁଲ୍ୟ ଘୃଣା । ଜୀବନର ପ୍ରାରମ୍ଭରେ ତାହା ଥିଲା ମୋ ପକ୍ଷରେ ଏକ ବେଦନା ଦାୟକ ଘଟଣା । ଶିକ୍ଷକ ମହାଶୟଙ୍କ ସେହି ବେତ୍ରାଘାତରେ, ପ୍ରଚଣ୍ଡ ବିସ୍ଫୋରଣରେ ବଧିର ଶ୍ରବଣ ଶକ୍ତି ଫେରିପାଇଲା ପରି ମୋର ସାରସ୍ୱତ ପ୍ରତିଭାର ତୃଷ୍ଣାୟୁ ନୟନ ଉନ୍ମୁକ୍ତ ହେବାର ପ୍ରକ୍ରିୟା ଆରମ୍ଭ ହୋଇଥିଲା । ସଂପ୍ରତି ମୋର ବିକାଶ, ସାହିତ୍ୟିକ ପ୍ରତିଷ୍ଠା ତଥା ବିଦ୍ରୋହୀ ଓ ବିପ୍ଳବୀ ବାମପନ୍ଥୀ ବ୍ୟକ୍ତିତ୍ୱ ପ୍ରତି ମୋର ସେହି ସ୍ମରଣୀୟ ଶିକ୍ଷକ ଜଣକ କେତେଦୂର ସଚେତନ ବା ଗର୍ବିତ ତା ଅବଶ୍ୟ ମୁଁ ଜାଣେନା ; କିନ୍ତୁ ମୋ ପ୍ରତି ତାଙ୍କର ସେହି ଅଣାତର ନିଷ୍ଠୁର ଦାନ ତାଙ୍କର ଅଜ୍ଞାତରେ ମୋ ଭଣ୍ଡାରକୁ କରିଛି ଅତ୍ୟନ୍ତ ଧନୀ ଏବଂ ଅନ୍ୟଭାବରେ ଗଠନ କରିବାରେ ମଧ୍ୟ ସାହାଯ୍ୟ କରିଛି ମୋ ଜୀବନର ମାନଚିତ୍ରକୁ । ଏସବୁ ସତ୍ତ୍ୱେ ଆଜିବି ତାଙ୍କ ପ୍ରତି ମୋର କୌଣସି ଅଶ୍ରଦ୍ଧା, ଅଭକ୍ତି, ବା ଅସମ୍ମାନ ନାହିଁ, ବରଂ ଅଛି ସମ୍ମାନ, ଶ୍ରଦ୍ଧା, ଭକ୍ତି । ସେ ମୋର ସ୍ମୃତିର ସିଂହାସନରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ।

ପୂର୍ବରୁ ସୂଚିତ ହୋଇଛି ଯେ, ଗୋଟିଏ କୁସଂସ୍କାରଗ୍ରସ୍ତ ହାଟୁଆ ଗାଁ ସିଂହାରପୁର ଓରଫ ନବାପାଟଣାରେ କେବଳ ନୁହେଁ ଏକ ସୁବିସ୍ତୃତ ବିରାଟ ଇଲାକା ଧରି ସେତେବେଳେ ମୋର ସ୍ୱର୍ଗତ ପିତା ରାମଚନ୍ଦ୍ର ସିଂହଙ୍କର ବିପ୍ଳବୀ ବ୍ୟକ୍ତିତ୍ୱ ଥିଲା ଅତ୍ୟନ୍ତ ପ୍ରଚଣ୍ଡ । ସେତେବେଳେ ସେ ପ୍ରତିକ୍ରିୟାଶୀଳ ନ୍ୟସ୍ତସ୍ୱାର୍ଥବାଦୀ ଚକ୍ର ପାଖରେ ଥିଲେ ବାଘ ପରି ଭୀଷଣ—ଦରିଦ୍ର ଅସହାୟ ଜନସାଧାରଣଙ୍କ ପାଖରେ ଥିଲେ ଏକାନ୍ତ ବନ୍ଧୁ । ଏଥି ସହିତ ତତ୍କାଳୀନ ପ୍ରତିକ୍ରିୟାବାଦୀ ଔପନିବେଶିକ ଅନ୍ଧକାର ଯୁଗରେ ତାଙ୍କର ତ୍ୟାଗ, ଦେଶପ୍ରେମ ତଥା ଉଗ୍ର ଜାତୀୟବାଦୀ ଭୂମିକା କମ୍ ଦୁଃସାହସର ପରିଚୟ ଦେଇ ନ ଥିଲା ! ଏଥିରେ ତାଙ୍କର ସାନଭାଇ ସ୍ୱର୍ଗତ ସାଧୁଚରଣ ସିଂ ମୋଟେ ସନ୍ତୁଷ୍ଟ ନଥିଲେ । ତାଙ୍କ ତଳ ଅର୍ଥାତ୍ ମଝିଆଁ ଭାଇ ଯଦୁମଣି ସିଂ ଥିଲେ ବାପାଙ୍କର ଅନୁଚର ଏବଂ ବାଧ୍ୟ । ତା ନ ହେଲେ ସେ ୧୯୫୦ ସାଲରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ କରି ନ ଥାନ୍ତେ । ସାନଭାଇ ସାଧୁଚରଣ ସିଂ

ପ୍ରକାଶ୍ୟରେ ବାପାଙ୍କ କାର୍ଯ୍ୟର ବିରୋଧ ନ କରି ଭିତରେ ଭିତରେ ଷଡ଼ଯନ୍ତ୍ରର ଜାଲ ବୁଣିବାରେ ବ୍ୟସ୍ତ ଥିଲେ ।

ବାପାଙ୍କର ଏହି ତଳ ଦୁଇ ଭାଇ ଯାକ ଦୁଇଥର ବିବାହ କରିଥିଲେ । ଆମ ଜାତିରେ ସାଧାରଣତଃ କନ୍ୟା ଏବଂ ବରର ସଂଖ୍ୟା ଅଭାବ । ବାପା ସେତେବେଳେ ଜାତିଭେଦ ପ୍ରଥାର ଜଘନ୍ୟ ଚକ୍ର ଉପରେ ପ୍ରଥମ ଆଘାତ ପୂର୍ବକ ପ୍ରଥମ କରି ଯେତେବେଳେ ହାଡ଼ିମାନଙ୍କୁ ଘରକୁ ଖାଇବାକୁ ନିମନ୍ତ୍ରଣ କରି ସେମାନଙ୍କ ଅଇଁଠା ପତ୍ର ନିଜ ହାତରେ ସଫା କରିଥିଲେ; ସେତେବେଳେ ସେ ଘଟଣା ବୃଶିଅତେ ଏକ ଚହଲ ପକାଇ ଦେଇଥିଲା । ଜାତୀୟ କଂଗ୍ରେସରେ ଯୋଗ ଦେବା ପରେ ବାପା ମାଛ-ମାଂସ ଖାଇବା ପୁରାପୁରି ଛାଡ଼ି ଦେଇଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ସେ ଥିଲେ ନିରାମିଷାଶୀ । ତାଙ୍କର ସେହି ଆଦର୍ଶର ଅନୁଗାମିନୀ ହୋଇଥିଲେ ମୋର ମା । ଫଳରେ ମୁଁ ପିଲାଦିନୁ ଏଯାବତ୍ ମାଛ-ମାଂସର ସ୍ୱାଦ କପରି ଜାଣେନା ।

ପୂର୍ବରୁ କହିଛି ବାପାଙ୍କର ସାନଭାଇ ଦୁହେଁ ଦୁଇଥର ବିବାହ କରିଥିଲେ । ମଝିଆଁ ଭାଇ ଯଦୁମଣି ସିଂହ ସହିତ ତାଙ୍କର ପ୍ରଥମା ସ୍ତ୍ରୀଙ୍କର କୌଣସି କାରଣରୁ ବିଚ୍ଛେଦ ଘଟିଥିଲା । ସାନଭାଇ ସାଧୁଚରଣ ସିଂଙ୍କ ପ୍ରଥମା ସ୍ତ୍ରୀ ମଧ୍ୟ ଥିଲା ଅର୍ଦ୍ଧ ପାଗଳୀ । ବିବାହ ବେଦୀରୁ ସେ ଉଠି ପଳାଇ ଯାଇଥିଲା ବୋଲି କଥିତ ଅଛି । ଜାତିଭେଦ ପ୍ରଥାକୁ ଭାଙ୍ଗିବେ, ଧର୍ମୀୟ ଭଣ୍ଡାମିକୁ ଆଘାତ କରିବେ ଏହି ଉଦ୍ଦେଶ୍ୟ ନେଇ ବାପା ତାଙ୍କ ସାନଭାଇ ଯଦୁମଣି ସିଂହ ପାଇଁ ନିକଟସ୍ଥ ଜଇଶଳ ଗାଁର ଗୋଟିଏ ନିପଟ ଚଷା କୁଳର କନ୍ୟାକୁ ନିର୍ବାଚିତ କରିଥିଲେ । କନ୍ୟାର ପିତା ଆସିଥିଲେ ଆମର ଘରଖଞ୍ଜଣୀ କରିବାକୁ । ପ୍ରାପ୍ତ ଅଧଦଣ୍ଡାଏ ଭିତରେ ବିବାହ ପ୍ରସ୍ତାବ ଓ ତାର ପ୍ରସ୍ତୁତି । ନିର୍ବାଚିତା କନ୍ୟାଟି ଯାହାକୁ ପୂର୍ବରୁ ବିବାହ କରିଥିଲା ସେ ଲୋକଟି କନ୍ୟାକୁ କେବଳ ପରିତ୍ୟାଗ କରି ନଥିଲା, "ପଲ୍ୟଣପଣ ଉଡ଼ା" ଅର୍ଥାତ୍ ଗାବଦଣାରେ ତାର ଶୁଦ୍ଧି କ୍ରିୟା ସମାପନ କରିଥିଲା । ଦୁର୍ଭାଗ୍ୟ—ଏପରି ଏକ ନିଚ ରକ୍ତ ସହିତ ମିଳିତ ହୋଇଥିଲା ଶୁଦ୍ଧ ତଥା ବୀର ସିଂହବଂଶର ରକ୍ତ ସ୍ରୋତ । କିନ୍ତୁ ସୌଭାଗ୍ୟର ବିଷୟ, ତା ଗର୍ଭରୁ ମଝିଆଁ ଦାଦାଙ୍କର କୌଣସି ସନ୍ତାନ ଜନ୍ମଗ୍ରହଣ କରି ନ ଥିଲେ । ସାନଦାଦା ସାଧୁଚରଣ ସିଂହଙ୍କ ଅବସ୍ଥା ମଧ୍ୟ

ଚନ୍ଦ୍ରପ । ଆମ ଗାଁର ଅନତିଦୂରରେ ଥିବା ବରଗୋଳ ଗାଁର ଶ୍ରୀ ବାଲୁକେଶ୍ୱର ନାୟକଙ୍କ କୁମାରୀ କନ୍ୟା 'ଜେମା' ସହିତ ତାଙ୍କର ହୋଇଥିଲା ପ୍ରଥମ ବିବାହ । ଶ୍ରୀ ନାୟକ ଥିଲେ ଜାତିରେ ଓଡ଼ଚଷା । ଏହି ବିବାହ ପ୍ରସ୍ତାବକୁ ମୋର ମା ଶେଷ ପର୍ଯ୍ୟନ୍ତ ଘୋର ବିରୋଧ କରିଥିଲା । ପରେ ମୋର ଜନ୍ମିତ ବଡ଼ଭାଇ ଯମୁନାଲାଲ ସିଂଙ୍କ ଜୀବନର ସମସ୍ତ ସମ୍ଭାବନାକୁ ଧ୍ୱଂସ କରିଦେବାରେ, ବାପା-ମା'ଙ୍କର ଅନ୍ତିମ ଜୀବନକୁ ହାହାକାରମୟ କରି ସେମାନଙ୍କୁ ଅକାଳ ମୃତ୍ୟୁ ମୁଖକୁ ଠେଲି ଦେବାରେ, ମୋର ଅନାବିଳ ଶୈଶବ ଏବଂ ଅନାଦୃତ କୈଶୋର ଉପରେ ଅକଥନୀୟ ଅତ୍ୟାଚାର ଚଳାଇ ପରିଶେଷରେ ମୋତେ ପୃଥିବୀର ରାଜପଥ ଉପରେ ଏକାକୀ ଠିଆ କରାଇବାରେ ସାନଦାଦାଙ୍କ ପ୍ରଥମା ସ୍ତ୍ରୀ ଜେମା ଥିଲା ସୂତ୍ରଧାରିଣୀ ଖଳନାୟିକା । ମୋର ସ୍ୱାଭାବିକ ବୃଦ୍ଧି ବ୍ୟାହତ ତଥା ଝଞ୍ଜାହତ ବିଦ୍ରୋହୀ ଜୀବନ ତା'ରି ଅତ୍ୟାଚାର ଭିତରୁହିଁ ସଞ୍ଜାତ ।

ମୋର ଜନ୍ମିତ ବଡଭାଇ ଯମୁନାଲାଲଙ୍କ ବ୍ୟତୀତ ଆଉ ଜଣେ ଭାଇ ଥିଲେ । ସେ ହେଲେ ସ୍ୱର୍ଗତ ବଂଶୀଧର ସିଂ । ସେ ଥିଲେ ବାପାଙ୍କ ଭଣଜା । ପିଲାବେଳୁ ସେ ଅନାଥ ହୋଇପଡ଼ିବାରୁ ବାପା ତାଙ୍କୁ ଆଣି ପୁଅ ଠାରୁ ଅଧିକ ସ୍ନେହରେ ଲାଳନପାଳନ କରିଥିଲେ । ମୋର ସ୍ମୃତି ମୋତେ ଆଜି ବି ଚେତାଇ ଦିଏ, ଅତି ପିଲାଦିନେ ମୁଁ ତାଙ୍କୁ ଦେଖିଛି । ମଧ୍ୟ ଭଳି ଉଚ୍ଚ, କଳା ମଚମଚ, ବପୃଷ୍ମନ୍ତ ବଳଶାଳୀ ଚେହେରା । ପରିଧାନ ମୁସଲମାନୀ ଲୁଙ୍ଗୀ ଓ ଗଞ୍ଜି । ସେ ଥିଲେ ବାପାଙ୍କର ଏକାନ୍ତ ବାଧ୍ୟ ଏବଂ ଅନୁଗତ । କହିବାକୁ ଗଲେ ସେ ଥିଲେ ଆମ ପରିବାରର ଏକ ବଡ ସମ୍ପଦ । ଅତ୍ୟାଚାରୀ ଜମିଦାର ସାହୁବଂଶର ସେ ଥିଲେ ଜାତିବ ଆତଙ୍କ । କେବଳ ବାପାଙ୍କ ନିର୍ଦ୍ଦେଶ ପାଇଲେ ହିଁ ସେ ଜୀବନକୁ ବାଜି ଲଗାଇ ଯେ କୌଣସି ବିପଦକୁ ମୁକାବିଲା କରିବାକୁ ଆଗେଇ ଯାଉଥିଲେ । ମା'ର ସେ ଥିଲେ ଅତିଶୟ ପ୍ରାଣାଧିକ । ସେ ମଧ୍ୟ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରି ସେତେବେଳେ କାରାରୁଦ୍ଧ ହୋଇ ପାଟଣା କ୍ୟାମ୍ପ ଜେଲରେ ବନ୍ଦୀ ଥିଲେ ।

ବନ୍ଦୀ ଥିବାବେଳେ ସେଠାକାର ଜଳବାୟୁ ତାଙ୍କୁ ଅସୁସ୍ଥ କରିପକାଇଥିଲା । ରୁଗ୍ଣ ଅବସ୍ଥାରେ ସେ କାରାମୁକ୍ତ ହୋଇଥିଲେ । ସାନଦାଦା ଓ ତାଙ୍କ ଦ୍ୱିତୀୟା ସ୍ତ୍ରୀଙ୍କର ମୋର ବାପ-ମା'ଙ୍କ ପ୍ରତି ବିରୂପ ବ୍ୟବହାର ତାଙ୍କୁ ଅନେକ

ସମୟରେ ବନ୍ଦୀ କରି ପକାଇଥିଲା । ସେ କାରାମୁକ୍ତ ହେଲା ପରେ କିଛି-କାଳ ଚିକିତ୍ସିତ ହୋଇ ବାପାଙ୍କ ନିର୍ଦ୍ଦେଶରେ ଆଦରି ନେଇଥିଲେ ତାଙ୍କର କର୍ମକ୍ଷେତ୍ର ଜଗତ୍‌ସିଂହପୁର୍‌ର ଗାଲୁପଡ଼ା ଠାରେ ଥିବା ଆମର ତତ୍‌କାଳୀନ ବିରାଟ ମୁଦି ଦୋକାନର ବୁଝାସୁଝା ଭାର । ଏହି ଦୋକାନଟି ପ୍ରଥମେ ଥିଲା ଆମ ଗାଁ ହାଟ ଅର୍ଥାତ୍ କେନ୍ଦାଳ ହାଟରେ । ବାପା ନିଜେ ଏହାର ତତ୍ତ୍ୱାବଧାରକ ଓ ମାଲିକ ଥିଲେ । ଘନଘନ ସରକାରୀ ଆକ୍ରମଣ, ଗିରଫ ପରୱାନା ଓ କାରାବାସ ଯୋଗୁଁ ବାପା ସେ ଦୋକାନର ଦାୟିତ୍ୱ ତାଙ୍କ ସାନଭାଇ ସାଧୁଚରଣ ସିଂଙ୍କ ହାତରେ ଦେଇ ଦୋକାନକୁ ସ୍ଥାନାନ୍ତରିତ କରିଥିଲେ ଜଗତ୍‌ସିଂହପୁରର ଗାଲୁପଡ଼ାକୁ ।

ବଂଶୀଭାଇଙ୍କୁ ଗାଲୁପଡ଼ା ଦୋକାନର ଦେଖାଶୁଣା ଦାୟିତ୍ୱ ଦେବାରେ ସାନଦାଦା ସାଧୁଚରଣ ଅସନ୍ତୁଷ୍ଟ ହେଲେ ବି ବାପାଙ୍କ ନିର୍ଦ୍ଦେଶ ଏବଂ ସିଦ୍ଧାନ୍ତର ପ୍ରତିବାଦ କରିବା ତାଙ୍କ ପକ୍ଷରେ ଆଦୌ ସମ୍ଭବ ନ ଥିଲା ।

ହଠାତ୍ ଦିନେ ସନ୍ଧ୍ୟାରେ ବଜ୍ରାଘାତ ପରି କବାଟଣା ଗାଁରେ ଏବଂ ଆମ ପରିବାରରେ ସମ୍ବାଦ ଆସି ପହଞ୍ଚିଲା, ବଂଶୀଭାଇ ଆଉ ଇହଧାମରେ ନାହାନ୍ତି । ମୋର ଠିକ୍ ମନେ ଅଛି, ମୁଁ ମା' କୋଳରେ ଶୋଇ ଦୁଧ ଖାଉଥିଲି । ସମସ୍ତେ ସେତିକବେଳେ ସମସ୍ୱରରେ ଆକୁଳ ହୋଇ କାନ୍ଦୁଥିଲେ । ପରେ ଜଣାପଡ଼ିଲା ବଂଶୀଧରଙ୍କର ଏହି ଅକାଳ ବିୟୋଗର ଗୁପ୍ତତଥ୍ୟ । ତାହାହେଲା ସୁଜିଦ୍ୱାରା ପ୍ରସ୍ତୁତ ହାଲୁଆ ଭିତରେ ଉତ୍କଟ ବିଷ ମିଶାଇ ତାହାକୁ ସାନଦାଦାଙ୍କ ହାତରେ ଆମ ଗାଁ'ରୁ ଅତି ସତର୍କତାର ସହିତ ବଂଶୀଧରଙ୍କ ଉଦ୍ଦେଶ୍ୟରେ ଗାଲୁପଡ଼ାକୁ ପଠାଇଥିଲେ ଖୁଡ଼ୀ । ସେତକ ଖାଇ ବଂଶୀଭାଇ ତାଙ୍କର ଉଦ୍ଦାମ ଯୌବନରେ ଜୀବନ ପ୍ରଖରୁ ଅକାଳରେ ବିଦାୟ ନେଇଥିଲେ । ତାପରେ ଅସୀମ ବେଦନାର ଏକ ଝଡ଼ ସହିତ ଯେପରି ଏକ ଆର୍ତ୍ତନାଦ କରି ଆଘାତ ହାଣିଥିଲା ଆମର ସମଗ୍ର ପରିବାର ଉପରେ । ସେ ଦୃଶ୍ୟ ସେତେବେଳେ ମୁଁ ଶିଶୁ ଆଖି ନେଇ ଦେଖିଥିଲି ସନ୍ଧ୍ୟାର ଲଘୁ ଅନ୍ଧକାର ଭିତରେ ମା' କୋଳରେ ଶୋଇ ରହି ।

୯ ବଂଶୀଧର ସିଂଙ୍କ ସାମରିକ ଚରିତ୍ର ସମ୍ପର୍କରେ ଏକ ଉଲ୍ଲେଖ ଯୋଗ୍ୟ ଘଟଣା ଏଠାରେ କହିରଖେଁ । ବାପା ସେତେବେଳେ କାରାରୁଦ୍ଧ ।

ବଂଶୀଧର ଥରେ ଜଗତ୍ସିଂହପୁର ବଜାରକୁ ସାଇକେଲରେ ଚଢ଼ି କୌଣସି କାମରେ ଯାଇଥିଲେ । ଶ୍ରୀକୃଷ୍ଣ ଏକାଡେମୀ ହତାରେ ଠିଆ ହୋଇଥିଲେ ସ୍ୱର୍ଗତ ଶ୍ରୀକୃଷ୍ଣ ମହାପାତ୍ରେ । ସ୍ୱର୍ଗତ ମହାପାତ୍ରେ ଥିଲେ ଯେତିକ ବିଖ୍ୟାତ ସେତିକ କୁଖ୍ୟାତ । ନାମଜାଦା ଜମିଦାର ଥିଲେ ସେ । ତା' ଛଡ଼ା ସେ ଥିଲେ ସେତେବେଳେ କଟକ ଜିଲ୍ଲାର ପୁଲିସ ଏସ: ପି: । ସେ ବଂଶୀଧରଙ୍କୁ ଦେଖି ଦେଖି ପାଖକୁ ଡାକ ଆମ ଘରର ହାଲଚାଲ, ଖବର ଅନ୍ତର ପଚାରିବା ଭିତରେ ବଂଶୀଧରଙ୍କ ବେକରେ ଝୁଲୁଥିବା ତଉଲିଆର ଦୁଇମୁଣ୍ଡକୁ ଧରି ଧୀରେ ଧୀରେ ମୋଡ଼ିବାକୁ ଲାଗିଲେ । ବଂଶୀଧରଙ୍କ ବେକ ଯେତେବେଳେ ବେଦନା ଅନୁଭବ କଲା, ସେ ଗୋଟିଏ ପ୍ରଚଣ୍ଡ ଧକ୍କାରେ ଶ୍ରୀ ମହାପାତ୍ରଙ୍କୁ ତଳେ ପକାଇ ଦେଇ ସାଇକେଲରେ ଗାଁ'କୁ ପଳାଇ ଆସିଥିଲେ । ବାପା ଜେଲଖାନାରୁ ଖଲାସ ହେବା ପରେ ୬ ମହାପାତ୍ର ଏ ଘଟଣା ପ୍ରତି ତାଙ୍କର ଦୃଷ୍ଟି ଆକର୍ଷଣ କେବଳ କରି ନ ଥିଲେ, ଧମକ ମଧ୍ୟ ଦେଇଥିଲେ ଯେ, "ଯଦି ସେ ( ବଂଶୀଧର ) ଜଗତ୍ସିଂହପୁର ମାଟି ମାଡ଼େ, ତା ହେଲେ ତାକୁ ମୁଁ ସୁଟ୍ କରିଦେବ ।"

ଭାଇ ବଂଶୀଧରଙ୍କ ମୃତଦେହକୁ ଅଳକାନନ୍ଦୀ ତୀରରେ ଦାହ କରିବାକୁ ଗଲାବେଳେ ସ୍ୱର୍ଗତ ଶ୍ରୀକୃଷ୍ଣ ମହାପାତ୍ର ଜିଦ୍ ଧରି ବସିଥିଲେ ଯେ; ସେ ତାଙ୍କ ଶବକୁ ସେଠି କୌଣସି ମତେ ଦାହ କରାଇ ଦେବେ ନାହିଁ । କିନ୍ତୁ ବାପାଙ୍କର ଅନଶନ ଧର୍ମଘଟ ଧମକରେ ଶ୍ରୀ ମହାପାତ୍ର ବାଧ୍ୟ ହୋଇ ନିଜ ସିଦ୍ଧାନ୍ତର ପୁନର୍ବିଚାର କରିଥିଲେ । ଫଳତଃ ଯେଉଁଠି ଜଗତ୍ସିଂହପୁରର 'ସ୍ୱାମୀ ବିବେକାନନ୍ଦ କଲେଜ' ମୁଣ୍ଡ ଟେକିଛି, ତା'ରି ହତା ମଧ୍ୟରେ ଥିବା ବିରାଟ ଝଙ୍କାଳିଆ ବଟବୃକ୍ଷ ତଳେ ଅଳକାନନ୍ଦା ତୀରରେ ବଂଶୀଭାଇଙ୍କ ଶବକୁ ଦାହ କରାଯାଇଥିଲା । ପିଲାଦିନେ ବାପାଙ୍କ ସହିତ ଗଲାବେଳେ ବାରମ୍ବାର ସେହି ବଟବୃକ୍ଷଟି ମୋର ଦୃଷ୍ଟି ପଥାରୂଢ଼ ହୋଇ ମନରେ ଆଣିଛି ଭାବାନ୍ତର । ଆଜି ସେ ଗଛଟି ସେଠି ଅଛି କି ନାହିଁ ଜାଣେନା···କାରଣ ମୁଁ' ତ ପିଲାଦିନ ମାଡ଼ିହରା !

ଭାଇ ବଂଶୀଧରଙ୍କ ଅକାଳ ବିୟୋଗ ପରେ ଦାଦା ସାଧୁ ଚରଣ ସିଂଙ୍କ ପକ୍ଷରେ ଗାଲୁପଡ଼ାର ମୁଦି ଦୋକାନ ଚଳାଇବା କଷ୍ଟକର ହୋଇପଡିବାରୁ

ସେ ବାଧ୍ୟ ହୋଇ ବାପାଙ୍କୁ ଆସି କହିଲେ, "ଯମୁନାକୁ ମୋ ପାଖରେ ଛାଡ଼ି ଦିଅନ୍ତୁ । ମୁଁ ତାକୁ ପାଖରେ ରଖି ପଢ଼ାଇବି ଓ ବ୍ୟବସାୟ ଦିଗରେ ତାକୁ ତାଲିମ୍ ବି କରିଦେବି ।" (ଯମୁନା ଅର୍ଥାତ୍ ଯମୁନାଲାଲ ସିଂ, ମୋର ଜନ୍ମିତ ବଡଭାଇ, ସିଏ କି ଏବେ ବି ଜୀବିତ) ବାପା କୌଣସି ଆପତ୍ତି ନ କରି ରାଜି ହୋଇଗଲେ । କିନ୍ତୁ ତଦ୍ଦ୍ୱାରା ଭାଇ ଯମୁନାଲାଲଙ୍କ ପାଠପଢା ପୋଥିରେ ଡୋରି ବନ୍ଧା ହୋଇଗଲା ଚିରକାଳ ପାଇଁ । ସେ ହୋଇଥିଲେ ଗାଲୁପଡ଼ା ଦୋକାନର ସାମାନ୍ୟ ଏକ ସେଲସ୍ ମ୍ୟାନ । ଏତଦ୍ ବ୍ୟତୀତ କାଳକ୍ରମେ ଦାଦା ଏବଂ ତାଙ୍କର ୨ୟ ସ୍ତ୍ରୀ, ବାପ-ମା' ଏବଂ ମୋ ପ୍ରତି ଭାଇଙ୍କ ମନରେ ଏପରି ବିଷବୀଜ ବପନ କରିଥିଲେ ଯେ, ସେ ଜୀବନ ତମାମ ବାପ-ମା'ଙ୍କୁ ଆଡ଼ଆଖିରେ ମଧ୍ୟ ଚାହିଁ ନ ଥିଲେ । ଗାଲୁପଡାରୁ ପ୍ରତି ସପ୍ତାହରେ ସେ ଶୂନଗାଡ଼ି (ସାଇକେଲ) ଚଢି ଗାଁକୁ ଆସନ୍ତି । ପଛରେ ବନ୍ଧା ହୋଇଥାଏ ନାନା ଧରଣର ଜିନିଷ । ଶୂନଗାଡ଼ିର ଘଣ୍ଟି ଯେତେବେଳେ ଗାଁ ଦାଣ୍ଡରେ ବାଜିଉଠେ "ଭାଇ ଆସିଲେଣି" ବୋଲି ମୁଁ ମୋର ଧୂଳିଖେଳ ଛାଡି ତାଙ୍କ ଆଗରେ ଯାଇ ହାଜର ହୁଏ, ଆଉ ଶିଶୁ ସୁଲଭ ମନ ନେଇ ମୋ ଡାହାଣ ହାତର ଧୂଳି ଧୂସରିତ ଗ୍ଲେଟ ହାତଟିକୁ ତାଙ୍କ ଆଡକୁ ବଢ଼ାଇ ଦେଇ କହେ "ଭାଇ, ମୋ ପାଇଁ କ'ଣ ଆଣିଛ ? ଗୋଟାଏ ଅଧଲା ଦେଲ !" କେତେବା ବୟସ ମୋର ସେତେବେଳେ ? ଏଇ ୬ କି ୭ ବର୍ଷ ହେବ ! ଆଶ୍ଚର୍ଯ୍ୟ ! ତାର ପ୍ରତିଦାନ ମୁଁ ପାଏ— 'ମରିତ ଗଲି ....ଜୀବନ ତ ଛାଡ଼ିଗଲା...... ଯା, ଭାଗ୍ !!" ତଦ୍ଦ୍ୱାରା ମୋ ଭିତରର ଅନାବିଳ ସ୍ନେହ-କାଙ୍ଗାଳ ଶିଶୁ ଭୋଳାନାଥଟି ଆହତ, କ୍ଷୁବ୍ଧ ଏବଂ ବିସ୍ମିତ କେବଳ ହୁଏନାହିଁ ଲୋତକର ଏକ ଲବଣାକ୍ତ ଦରିଆ ହଠାତ୍ ରୁଦ୍ଧ ଗର୍ଜନରେ ଆଖିପଲ୍ଲବକୁ ପ୍ଲାବିତ କରି ନେତ୍ରପ୍ରାନ୍ତ ଦେଇ ତାର ଯାତ୍ରା ଆରମ୍ଭ କରିଦିଏ । ଆହତ ମନ ସହ ମୁଁ ସେତେବେଳେ ମୋର ଶିଶୁ ଦେହଟିକୁ ଅସହାୟ ଭାବରେ ନେଇ ଗଛ କାଟିଲା ପରି କଚଡ଼ି ହୋଇ ପଡ଼େ ମା ପାଖରେ । ମୋତେ କୋଳକୁ ନେଇ, ମୋ ଦେହରୁ ଧୂଳିଝାଡ଼ି ମା' ଝଡ଼ ଭଳି ଛୁଟିଯାଏ ଭାଇଙ୍କ ପାଖକୁ । ଭାଇ ସେତେବେଳକୁ ସାଇକେଲରେ ଆଣିଥିବା ନାନା ଦ୍ରବ୍ୟ ଖୁଡ଼ୀ ଓ ତା'ର ପିଲାଙ୍କ ଗହଣରେ ଖୋଲିବାରେ ବ୍ୟସ୍ତ—ସେ ଦ୍ରବ୍ୟମାନଙ୍କ ଭିତରେ ଥାଏ ଖୁଡ଼ୀ ଓ ତା'ର ଝିଅମାନଙ୍କ ପାଇଁ ଶାଢ଼ି, ଜାମା, ପ୍ୟାଣ୍ଟ । ସମସ୍ତଙ୍କ ମୁହଁରେ ହସର ଜୁଆର । ସେ ଦୃଶ୍ୟକୁ ମା ନୀରବରେ ଦେଖେ ଏବଂ ଏକ ଗଭୀର ଦୀର୍ଘଶ୍ୱାସ ତାର ଦେହପଞ୍ଜରକୁ ଦୋହଲାଇ ବାହାରି ଆସେ । ବାରଣ୍ଡାରେ ଠିଆ ହୋଇ

ସେ ଭାଇ ଉଦ୍ଦେଶ୍ୟରେ କୁହେ : "ହଇରେ ଯମୁନା ! ତୁ ନିଜ ଭାଇଟାକୁ -- ଆସୁ ଆସୁ ଏମିତିଆ କଥା ସବୁ କାହିଁକି କହିଲୁରେ...... ? ପର ତୋ ନିଜର ହେଲେ, ଆଉ ନିଜ ଭାଇଟା ହେଲା ପର !..."

ଭାଇ କିନ୍ତୁ ନୀରବ । ସେ ନୀରବତାର ଅନ୍ତରାଳରେ ଥାଏ ଏକ ଅବଜ୍ଞାର ଭାବ । ଏ ଘଟଣାରେ ମା' ଆହୁରି ଏକ ଦୀର୍ଘଶ୍ୱାସ ନିର୍ଗତ କରେ । ସେ ଦୀର୍ଘଶ୍ୱାସ ବାୟୁମଣ୍ଡଳରେ ବିଲୀନ ହୋଇଯିବା ପୂର୍ବରୁ ତାହା ମୋ କପାଳରେ ଆସି ଆଘାତ ହାଣେ । କାରଣ, ମା ମୋତେ ସେତେବେଳେ କାଖେଇ ଥାଏ । ମା ! ଆହା, ମୋର ଗର୍ଭଧାରିଣୀ, ବିଗୃହୀ ଅନାହାର, ଅନାଦର, ଅବହେଳାରେ ବାପାଙ୍କ ବିପ୍ଲବୀ ଆଦର୍ଶ ଏବଂ ତ୍ୟାଗପୂତ ଜୀବନର ଅଂଶୀଦାର ହୋଇ ନୀରବରେ ଶହୀଦ ହୋଇଛି । କ'ଣ ନ ଥିଲା ତାର ? ମହାପ୍ରତାପୀ ସିଂହ ବଂଶର ବଡ଼ବୋହୂ, ବିପ୍ଲବୀ ବୀର ଯୋଦ୍ଧା ରାମଚନ୍ଦ୍ର ସିଂହଙ୍କ ସହଧର୍ମିଣୀ ସିଏ, ତାର ଦୁଇ ଦୁଇଟି ଦିଅର, ଭେଣ୍ଡାପୁଅ, ଏ ସବୁ ଥାଇ ବି ସେ ନିଃସ୍ୱ । କାହିଁକି ? ତାର ବଡପୁଅ, ଅର୍ଥାତ୍ ଭାଇ ଯମୁନାଲାଲ, ଯାହାଙ୍କର ବାଲ୍ୟକାଳ ବିତିଛି ଦୁଗ୍‌ଧଫେନ ନିଭ ସୁକୋମଳ ଶଯ୍ୟାରେ......ସିଏ ସାବାଳକ ହେବ...ଘରକୁ ଆସିବ ବୋହୂ...କେତେ ଆଶା...କେତେ ସ୍ୱପ୍ନ ମା'ର । କିନ୍ତୁ ନା, ସବୁକିଛି ଧୂଳିସାତ୍ ହୋଇଛି, ତାର ଆଗରେ ତାର ଆତ୍ମଜକୁ ଛଡାଇ ନିଆଯାଇଛି । ତଥାପି ମା ଦିନେହେଲେ ବି ଅଭିଶାପ ଦେଇ ନାହିଁ । ଖାଲି କହିଛି, 'ହେ ଭଗବାନ, ମୋ ପୁଅକୁ ଯିଏ ମୋ'ଠୁ ଛଡ଼ାଇ ନେଇଛି, ତା କଥା ତୁ ବୁଝିବୁ । ମୁଁ ଆଉ ବେଶିଦିନ ବଞ୍ଚିବି ନାହିଁ ।"

ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ମୁକ୍ତି ଆନ୍ଦୋଳନର ଲେଲିହାନ ଶିଖାରେ ସମସ୍ତ ପାରିବାରିକ ସୁଖ ସ୍ୱାଚ୍ଛନ୍ଦ୍ୟ, ଭୂ-ସମ୍ପତ୍ତି, ନିଜର ସନ୍ତାନ ତଥା ସହଧର୍ମିଣୀର ଭବିଷ୍ୟତକୁ ନିର୍ମମଭାବରେ ଆହୁତି ଦେଇ ମୋର ଜନ୍ମବେଳକୁ ବାପା ପ୍ରାୟ ଦାଣ୍ଡର ଭିକାରୀରେ ପରିଣତ ହୋଇଥିଲେ କହିଲେ ଚଳେ । ସେତେବେଳକୁ ମୋର ଶିଶୁ ଆଖି ଦେଖିଛି ଏକାଧିକ ଥର ବାପା ଆଉ ମା'ଙ୍କର ଆଠ ଆଠ ଦିନ ଧରି ବାଧ୍ୟତାମୂଳକ ନିର୍ଜଳା ଉପବାସ । ସେଥିରେ ମୁଁ ମଧ୍ୟ ଭାଗିଦାର ହୋଇଛି । ତେଣେ ଦାଦା ସାଧୁଚରଣ ସିଂ ଓ ତାଙ୍କର ପିଲାମାନେ ମହାନନ୍ଦରେ ଦିନ କାଟୁଥିବା ବେଳେ ଆମ ଜୀବନରେ ନାଚୁଥିଲା ଅଭାବର ରୁଦ୍ରତାଣ୍ଡବ ।

ଆମ ପରିବାର ବାସ କରୁଥିବା ପୁରୁଣା ପୈତୃକ ଖଞ୍ଜାରେ ରହୁଥିଲେ ମଝିଆଁ ଦାଦା ସଦୁମଣି ସିଂ ଓ ତାଙ୍କ ୨ୟ ସ୍ତ୍ରୀ । ସାନ ଦାଦା ସାଧୁଚରଣ ସିଂ ତ ଥ'ନ୍ତି ଗାଲୁପଡ଼ାରେ ଥିବା ମୁଦି ଦୋକାନରେ । ମଝିରେ ମଝିରେ ଘରକୁ ଆସନ୍ତି । କିନ୍ତୁ ତାଙ୍କର ସ୍ତ୍ରୀ ଓ ପିଲାମାନେ ସେହି ଖଞ୍ଜାର ପ୍ରାୟ ତିନି ଚତୁର୍ଥାଂଶ ଦଖଲ କରି ରହିଥା'ନ୍ତି । ଖଞ୍ଜା ସାମ୍ନାରେ ଥିବା ଆମର ଅନ୍ୟ ଏକ ପ୍ଲଟରେ ଥାଏ ଅନ୍ୟ ଗୋଟିଏ ଘର । ସେଇ ଘରେ ଲୁଗାବୁଣା ଚାଲି ପଡ଼ିଥାଏ । ବାପା ନିଜ ହାତରେ ସୂତା କାଟି ଲୁଗା ବୁଣନ୍ତି । ଥାନ୍ତି ଏଣ୍ଡି ପୋକ । ଥାଏ ମହୁଗୃଷର ବାକ୍ସ । ବାପା, ମା' ଓ ମୁଁ ସେହିଘରେ ରହୁ । ଆମ ସହିତ ଥାଏ ଆଉ ଏକ ପ୍ରାଣୀ—ଶଙ୍ଖୀ ବିଲେଇ । ପିଲାଦିନେ ସିଏ ନଖାଇଲେ ମୁଁ ଖାଏନା । ମୁଁ ଖେଳିବାକୁ ଗଲେ ମୋ ପଛେ ପଛେ ଯାଏ । ମୁଁ ଖେଳସାରି ଘରକୁ ଆସିଲାବେଳେ, ସିଏ ତାର ବୁଲାବୁଲି ସାରି ମିଆଉଁ ମିଆଉଁ ଶବ୍ଦରେ ଆସି ମୋ ଗୋଡ଼ତଳେ ଗଳିଯାଇ ଦେହରେ ଘଷିହୁଏ ।

ପ୍ରତିଦିନ ରାତିପାହି ସକାଳ ହେଲେ ଆଣ୍ଠୁ ଲୁଚୁ ନ ଥିବା ନିଜ ହାତବୁଣା ଖଦଡ଼ ଧୋତିଟିକୁ ପିନ୍ଧି, ପାଦରେ ଚଟି ଦୁଇଟି ଗଳାଇ, ଦେହରେ ଧଳା ଖଦଡ଼ର ଖଣ୍ଡେ ଚଦର ଟାଙ୍କି, ହାତରେ ଖଣ୍ଡେ ଖଦଡ଼ ବ୍ୟାଗ ଝୁଲାଇ, ସେ ବ୍ୟାଗ ଭିତରେ ଭଗବତ୍ ଗୀତା, କେତେକ ସ୍ୱ-ରଚିତ ଇଂରେଜ ବିରୋଧୀ ଜାତୀୟ ସଙ୍ଗୀତର ପାଣ୍ଡୁଲିପି ପୂରାଇ ଦୃଢ଼ ଏବଂ ଦ୍ରୁତ ପଦକ୍ଷେପରେ ଘରୁ ବାହାରି ଯାଆନ୍ତି ବାପା । ସନ୍ଧ୍ୟା ଯେତେବେଳେ ନଇଁ ଆସେ, ଗାଁର ଅଖାଡ଼ୁଆ ଗିରିଧାରି ଭିକାରିଆ ଗଉଡ଼ ତା'ର ଗୋରୁ ଗୋଠକୁ ଧରି, ସେମାନଙ୍କୁ ଅଶ୍ରାବ୍ୟ ଭାଷାରେ ଗାଳି ଦେଇ ଯେତେବେଳେ ଘରକୁ ଫେରୁଥାଏ, ସେତିକ-ବେଳେ ବାପା ଆସି ପାଦ ଦିଅନ୍ତି ଘରେ । କେବେ କେବେ ରାତି ଅଧ ବି ହୋଇ ଯାଏ ତାଙ୍କର ଫେରିବାକୁ । ଏଣେ ସାରାଦିନ ଆମେ ମା'-ପୁଅ କ୍ଷୁଧା ଏବଂ ଅଭାବର ଧୂ-ଧୂ ମରୁଭୂମିରେ ପଡ଼ି ଛଟପଟ ହେଉଥାଉଁ । ହାଣ୍ଡିରେ ଥିବା ପାଞ୍ଚଦିନ ତଳର ଖଟା ତୋରାଣୀ, ଲୁଣ ଏବଂ କଞ୍ଚାଲଙ୍କା ଟି ହୋଇଥାଏ ମା'ର ସାରାଦିନର ଆହାର । କେବେ କେବେ ତା' ବି ଜୁଟେନା । ଦିନ ତମାମ୍ ମୁଁ ଏକୁଟିଆ ଗାଁ' ଦାଣ୍ଡରେ ଧୂଳିଘର କରି ମାରିବାରେ ବସି ଖେଳେ । ବେଳେ ବେଳେ ମୋ ସହିତ ଆସି ଯୋଗ ଦିଏ 'ବୁଡ଼ୀ' । ପାଖ ପଡ଼ୋଶୀ ଲକ୍ଷ୍ମଣ ସାହୁର ବଡ଼ଝିଅ ସେ । ବୟସରେ ମୋ ଠୁଁ ବି କିଛି ବଡ଼ । ମୋତେ ସେ 'ବୋହୂ ବୋହୂକା' ଖେଳିବାକୁ ଡକାଏ ।

ସ୍ତ୍ରୀ । ସେ ମୋତେ ଧୂଳିର ଘର-ଡାଲି ଡ଼ିମିରି ପତରରେ ବାଡ଼ିଦେଇ ଆଉ ଗୋଟିଏ ପତର ହାତରେ ଧରି ମୋ ପାଖରେ ବସି ପଙ୍ଖା କରେ । ଏପରି ଅନେକ ଦିନ ତା ସହିତ ମୁଁ ଖେଳିଛି । ସିଏ ଆଜି ବିବାହିତା । ସେଇ ବାଲ୍ୟକାଳରୁ ଆଉ କେବେ ଏ ଯାବତ୍ ତା ସହିତ ମୋର ଦେଖା ହୋଇ ନାହିଁ ।

ସେ ଯାହାହେଉ, ସେହି ଧୂଳିଖେଳ ଭିତରେ ମୁଁ ଅନୁଭବ କରେ ଭୋକ । ଆଶ୍ଚର୍ଯ୍ୟ ! ଠିକ୍ ମନେଅଛି, ତା' ସହିତ ମୋର ଶିଶୁମନରେ ତତ୍‌କ୍ଷଣାତ ଭାସିଉଠେ ମା'ର ଅନାହାରୀ ମୂର୍ତ୍ତି ସହିତ ବାପାଙ୍କର ଘରୁ ଅନୁପସ୍ଥିତିର ଛବି । ତେଣୁ ଭୋକକୁ ଚାପି ରଖି ପୁଣି ଖେଳ ଭିତରେ ନିଜକୁ ବୁଡ଼ାଇଦିଏ । କିନ୍ତୁ କ୍ଷୁଧାର ଜ୍ୱାଳା ଯେତେବେଳେ ତୀବ୍ରରୁ ତୀବ୍ରତର ହୁଏ, ସେତେବେଳେ ଘରକୁ ଫେରିଆସି ମାତୃମୂର୍ତ୍ତି ଆଗରେ ଅପରାଧୀ ପରି ମୁହଁ ଶୁଖାଇ ଠିଆହୁଏ ମୁଁ । ମା – ଜନନୀ, ଗର୍ଭଧାରିଣୀ, ସର୍ବଂସହା ସିଏ । ତାଙ୍କୁ ତା'ର ସେହିପରି ଅବସ୍ଥାରେ ଖାଇବାକୁ ମାଗିବା ପାଇଁ ବିବେକ ବାଧା ଦିଏ । ପାଠକେ ବିଶ୍ୱାସ କରନ୍ତୁ, ପିଲାଦିନେ ଅତି କମ ବୟସରୁ ମୋର ଏ ଚେତନାର ଅଙ୍କୁରୋଦ୍‌ଗମ ଘଟିଥିଲା । ଟିକେ କଟୂକଥା ବା ଅନ୍ୟାୟ ଅତ୍ୟାଚାରରେ ମୁଁ ଅଭିମାନ କରି କାନ୍ଦି ଉଠୁଥିଲି । ମୋ ଚେହେରା ଦେଖି ମା ପ୍ରଥମେ ଚାହିଁ ମୋ ଆଖି ଦୁଇଟିକୁ । ତା ପରେ ତାର ଆଖିରେ ଜକେଇ ଆସେ ଲୋତକ । ସେ କାନ୍ଦିଉଠେ—ତା ସହିତ ମୁଁ ବି । ଓଃ ! ସେତେବେଳର ସେହି କରୁଣ, ବେଦନାଦାୟକ ଘଟଣାକୁ ଏଠି ରୂପଦେବା ପାଇଁ ଆଜି ମୋର ଭାଷା ନାହିଁ । ତା' ପରେ ମୋର ଧୂଳିଧୂସରିତ ଶିଶୁ ଦେହଟିକୁ କୋଳକୁ ଟାଣିନେଇ ନିଜର ପଣନ୍ତ କାନିରେ ମୋ ଦେହରୁ ଧୂଳି ଝାଡ଼ିଦେଇ ମା କହେ : "ବାପା ଅବିକା ଆସିବେ । ଆସିଲେ ରାନ୍ଧି ଦେବି । ପେଟେ କରି ଭାତ ଖାଇ ଶୋଇପଡ଼ିବୁ । ଆ, ତୋରାଣି ଅଛି, ଟିକେ ପିଇଦେ !"

ଏଇ ! ଏଇ ହେଉଛି ମୋର ସେହି ସ୍ୱର୍ଗତା ଶହୀଦ୍ ସ୍ନେହମୟୀ ଜନନୀ । ମୋର ଆଜିର ପ୍ରତିଷ୍ଠା, ସୁନାମ, ଅତୀତର ରକ୍ତାକ୍ତ ମରଣପଣ ସଂଗ୍ରାମ ତଳେ ଅଛି ତା'ର ଛାୟାମୂର୍ତ୍ତି । ମୋର ବାଲ୍ୟ ଜୀବନର ସେହି ଅଭାବ, ଅନାହାର ଅଧ୍ୟୁଷିତ ଧୂଳିଖେଳ ସନ୍ଦର୍ଭ ସରିଛି, ତଥାପି ମୋ ଖେଳ ସରି ନାହିଁ । ଆଜିପର୍ଯ୍ୟନ୍ତ ଗୁଳିଗୋଳାରୁ ଅଧିକ ଖେଳନା ମୁଁ ଭାଙ୍ଗି ସାରିଲିଣି

ମା ଘରୁ ଦୌଡ଼ିଆସି ମୋତେ ଉଚ୍ଚ କଣ୍ଠରେ ଡାକୁଥିଲା । ଆଜ କନ୍ତୁ ମୁଁ ଖେଳୁଛି, କେହି ଡାକିବାକୁ ନାହିଁ । ଭଗ୍ନ ହୃଦୟ, ଦଗ୍‌ଧ ଭାଲ, ଉଦାସୀନ ଏକାକୀତ୍ୱ ସାଥିରେ ମୋର ଚାଲିଛି ପ୍ରାଣଭରା ଖେଳ । ପିଲାବେଳେ କ୍ରୀଡ଼ାକ୍ଳାନ୍ତ ହୋଇ ଯେଉଁ କୋଳକୁ ଫେରୁଥିଲି ସେ କୋଳ ଆଜ ନାହିଁ, ଏକ ଲେଲିହାନ ଚିତାଗ୍ନି ତାକୁ ପୋଡ଼ି ପାଉଁଶ କରିଦେଇଛି । ହେଲେବି ଖେଳ ମୋର ଅବ୍ୟାହତ ରହିଛି । ସେ ଖେଳ ଜୀବନ ସହିତ ମରଣରେ, ମିଥ୍ୟା ସହିତ ସତ୍ୟରେ, ଆଲୋକ ସହିତ ଅନ୍ଧକାରରେ, ପ୍ରତିକ୍ରିୟା ସହିତ ପ୍ରଗତିରେ— ବିପ୍ଳବରେ । ମୋ ଅଶ୍ୱର ଇସ୍ପାତ ଖୁରା ଅକଲ୍ୟାଣର ଶତକୋଟି କଙ୍କରର ଅନ୍ତନାଡ଼ିକୁ ଛିନ୍ନବିଚ୍ଛିନ୍ନ କରି, ସମର ଭୂମିର ଅଗ୍ନି ଗୋଳା-ବାରୁଦର ଧୂମ ମେଘ ଭିତରେ ଛୁଟିଛି, ତା ସହିତ ଚାଲିଛି ମୋର ଖଡ଼୍‌ଗବାହୀ ବାହୁ । ସନ୍ଧ୍ୟା ଘନେଇ ଆସୁଛି ଧୀରେ ଧୀରେ, ଖେଳ ସରିନାହିଁ, ଦେହ, ମନ, ଜଠରରେ ତୀବ୍ର କ୍ଷୁଧାର ଜ୍ୱାଳା । ଜନନୀଙ୍କର ଆଉ ସେ ଡାକ ଶୁଭୁନାହିଁ "ସେତିକି ଥାଉ, ଆ, ସଞ୍ଜ ହେଲାଣି ଯେ !" ନା, ଖେଳ ମୋର ସରିବ ନାହିଁ, ସଞ୍ଜ ପରେ ଆସିବ ରାତି, ବାଲ୍ୟକାଳର ମୋର ସେହି ଅଭିମାନଭରା କାନ୍ଦଣାର ରୁଦ୍ରରୂପ ମୋତେ ଆଜ ଏକ ରକ୍ତପୁଟୀ ବୃନ୍ଦରେ ଦୀକ୍ଷିତ କରିଛି । ସେଥିପାଇଁ ଦୁସ୍ତର ପାରାବାର, ବନ୍ଧୁର ଦୁର୍ଗମ ଗିରିସଙ୍କଟକୁ ଅତିକ୍ରମ କରିବାର ଦୁରନ୍ତ ସାହସ ଏବଂ ଦମ୍ଭକୁ ଅତିରେ ଅର୍ଜନ କରିଛି, ଓ ନୀଳକଣ୍ଠଙ୍କ ପରି ବନ୍ଧୁ ରାଜଦ୍ରୋହ, ଜଘନ୍ୟ ଷଡ଼ଯନ୍ତ୍ର, ରକ୍ତାକ୍ତ ଆକ୍ରମଣର ବିଷକୁ ମୁଁ ପାନ କରିଛି ହସିହସି । ଫଳରେ ମୃତ୍ୟୁର ହିମ-ଶୀତଳ ଲୋମଶ ହାତ ବାରମ୍ବାର ହୋଇଛି ଅବଶ । ଏ ଏକ ବିପଜ୍ଜନକ ଖେଳ । ଏ ଖେଳ ସମସ୍ତେ ଖେଳି ପାରିବେ ନାହିଁ ।

ହଁ, ଯେତେବେଳେ ଶକ୍ତା ମୋର ସେହି ଜନନୀ ମୋତେ କୁହେ "ବାପା ଆସିବେ ଆହଳା । ଆସିଲେ ମୁଁ ଚଞ୍ଚଳ ବାନ୍ଧିଦେବି···ଘରେ କିଛି ହେଲେ ବି କିଛି ନାହିଁ । ଆ ଚୋରଣୀ ମୁହେଁ ପିଇ ଦେ ।" ସେତେବେଳେ ତାହା ମୋର କ୍ଷୁଧାର ପୃଥିବୀ ଉପରେ ସୁଧାର ବାରି ସିଞ୍ଚନ କରେ । ମୁଁ ଭୋକ ଭୁଲିଯାଏ ।

'ରବି !···" ବାହାରୁ ଯେତେବେଳେ ବାପା ଡାକନ୍ତି, ମୁଁ 'ଆଜ୍ଞା !' ବୋଲି କହି ଚଲି ପରି ଦୌଡ଼ିଯାଏ ତାଙ୍କ ପାଖକୁ । ସେ ଧରିଥିବା କନକକୁ

କୁହାଇ ମୁହାଇ ଘରକୁ ଆଣେ । ତା'ପରେ ମା ଚୁଲି ଲଗାଏ । ବାପାଙ୍କୁ ଆଗେ ନାଲି ଗୁ' କରିଦିଏ । ମୁଁ କିନ୍ତୁ ଏଥି ମଧ୍ୟରେ ଧୀରେ ଧୀରେ ଢଳିପଡ଼େ କ୍ଳାନ୍ତ ନିଦ୍ରାର ଶାନ୍ତ କୋଳରେ ।

ରାତି ଅନେକ ହୋଇଯିବା ପରେ, ସାରା ଗାଁ ନିଦ୍ରାରେ ଅଚେତ ହେବା ପରେ ଆମର ରୋଷେଇ ସରେ । ମୋତେ ନିଦରୁ ଉଠାଇବା ପାଇଁ ମା'କୁ ବହୁତ ପରିଶ୍ରମ କରିବାକୁ ପଡ଼େ । ତଥାପି ମୋ ନିଦ ଭାଙ୍ଗେ ନାହିଁ । ଦିନସାରା ଖେଳି ଖେଳି କ୍ଳାନ୍ତ—ତା ଉପରେ ପୁଣି ଭୋକର ଦାଉ । ସେଥିରେ ବାଟଣା ଧରୁ ଧରୁ ମୁଁ ନିଦରେ ଅଚେତ ହୋଇ ପଡ଼େ । ମା ଯେତେବେଳେ ମୋର ନିଦ ଭଙ୍ଗାଇବାକୁ ବ୍ୟର୍ଥହୁଏ, ସେତେବେଳେ ସେ ବାପାଙ୍କର ଆଶ୍ରୟ ନିଏ । ବାପାଙ୍କର ସେହି ଗମ୍ଭୀର କଣ୍ଠର ୨।୩ଟି ଡାକରେ ମୁଁ ନିଦ ବାଉଳାରେ ହେଲେ ବି ଉଠି ବସେ । ମା ମୋର ମୁହଁ ଧୋଇ ଦିଏ । ପୂରା ନିଦ ଭାଙ୍ଗି ଗଲା ପରେ ମା ଯେତେବେଳେ ମୋତେ ଭାତ ବାଢ଼ିଦିଏ, ମୁଁ ସେତେବେଳେ ମା'କୁ କହେ, "ମୋତେ ଆହୁରି ବହୁତ ଭାତ ଦିଅ । ମୁଁ ଖାଇପାରେ । ଏଁ ?" ମୋର ଏଇ କଥନରେ ଆଶ୍ଚର୍ଯ୍ୟର କଥା, ଦୁଃଖ ଦାରିଦ୍ର୍ୟ, ରୋଗ-ଯନ୍ତ୍ରଣା ସହିତ ମରଣପଣ ସଂଗ୍ରାମରେ ଲିପ୍ତ, ଜୀବନ୍ତ ଇସ୍ପାତ ସଦୃଶ ମୋର ବାପାଙ୍କ ଆଖିରେ ଟଳମଳ କରେ ଅଶ୍ରୁବିନ୍ଦୁ—ବଢ଼ା ହୋଇଥିବା ବାସିଁଉଠା ଭାତଥାଳି ଉପରେ ତହିଁରୁ କେତୋଟି ବିନ୍ଦୁ ଝରିପଡ଼େ ନୀରବରେ । ଏଇ ଦୃଶ୍ୟ ମୋର ଶିଶୁ ମନକୁ ସେତେବେଳେ ବୁଡ଼ାଇଦିଏ ଏକ ବେଦନାର ଦରିଆ ଭିତରେ ।

ଆଜନ୍ମରୁ ମୁଁ ଥିଲି ଖୁବ ଭାବପ୍ରବଣ ସହିତ ଅଭିମାନୀ ଏବଂ ସ୍ମରଣଶକ୍ତି ମୋର ଥିଲା ଅତ୍ୟନ୍ତ ପ୍ରଖର । ଏକୁଟିଆ···ନିଃସଙ୍ଗ ଅବସ୍ଥାରେ ବସି ନୀରବରେ କୋଉଠି ଖେଳୁଥିବା ବେଳେ ମୋର ଶିଶୁ ମନରେ ଗୁଡ଼ାକୁ ଗୁଡ଼ା ପ୍ରଶ୍ନ ଉଠିଛି : କାହିଁକି ବାପା-ମା ଏବଂ ଆମ ସମସ୍ତଙ୍କର ଏପରି ଦଶା ? କାହିଁକି ବଡ଼ଭାଇ ବିନା କାରଣରେ ମୋତେ ଘୃଣା ଏବଂ ହତାଦର କରୁଛନ୍ତି ? କାହିଁକି ବାପା ଆମକୁ କିଛି ନଦେଇ ମାଛ ମାଂସ ଧରି, ଦିନ ଦିନ ଧରି କୁଆଡ଼େ ଚାଲି ଯାଉଛନ୍ତି ? ଦାଦା, ଖୁଡ଼ୀ ଓ ତାଙ୍କ ଝିଅମାନେ ସୁଖ ଶାନ୍ତିରେ ଦିନ କାଟୁଥିବା ବେଳେ କାହିଁକି ମା ଆଉ ମୁଁ ଟଣ୍ଡାଏ ଖାଇବାକୁ ପାଉନୁ ? କିନ୍ତୁ କିଏ ଦେବ ଏ ସବୁର ଉତ୍ତର ? ମା'ର ମନ ଭଲଥିଲା ବେଳେ ମୁଁ ତାକୁ ଗୁଡ଼େଇ

ଲୁଚେଇ ଏ ସବୁର କାରଣ ପଚ୍ଛରେ । ସେ ତା'ର ଉତ୍ତରରେ କେବଳ ନୀରବରେ କିଛି ବେଳ ମୋ ମୁହଁକୁ ଅନାଏଁ, ଆଉ ଗୋଟିଏ ବାକ୍ୟରେ ତାର ଉତ୍ତର ଦିଏ, "ବଡ଼ହେଲେ ଜାଣିବୁ ।"

ମୋ ପ୍ରଶ୍ନର ଉତ୍ତର ବଦଳରେ ତାର ସେହି ନୀରବ ଗୃହାଣୀକୁ ପଢି ବୁଝିବା ପରି ଶକ୍ତି ସେତେବେଳେ ମୋର ନଥିଲା । ତା'ର ସେ ନୀରବ ଗୃହାଣୀ ମୋ ଆଗରେ ଏକ ବେଦନାର ମହାକାବ୍ୟ ମନେ ମନେ କେବଳ ଆବୃତ୍ତି କରୁ ନଥିଲା, କହୁଥିଲା କୋଟି ଉପବାସ, ଅସଂଖ୍ୟ ରାଜରୋଷ, ଶତ ସହସ୍ର ବିଷାଦଭରା ଦିବସ ରାତିର କାହାଣୀ । ସେ ମନେମନେ ଯାହା ମୋ ଉଦ୍ଦେଶ୍ୟରେ ସେତେବେଳେ କହୁଥିଲା ସେ ସବୁକୁ ବାଣୀବଦ୍ଧ କରି ମହାକାଳ ତାଙ୍କୁ ସାଇତି ରଖିଥିଲା ମୋ ପାଇଁ । ବଡ଼ ହେଲେ ଜାଣିବୁ···ବୋଲି ଯେଉଁ ବାକ୍ୟଟି ମୋର ସ୍ନେହମୟୀ ଜନନୀଙ୍କ ମୁଖରୁ ସେଦିନ ଉଚ୍ଚାରିତ ହୋଇଥିଲା, ଆଜିଯାଏ ଶୁଭୁଛି ତାହା! ମହାକାଳର କଣ୍ଠସ୍ୱର । ମୁଁ ଆଜି "ବଡ" ହୋଇଛି । ଶୈଶବ, କୈଶୋର, ଯୌବନ ଯାଇ ପ୍ରୌଢ଼ତ୍ୱର ବେଳା ପାଖରେ ଆସି ପହଞ୍ଚିଲଣି । ଜୀବନ ତମାମ୍ ଜାଣିବା ବ୍ୟତୀତ ମୋର ଯେପରି ଅନ୍ୟ କୌଣସି କାର୍ଯ୍ୟ ନାହିଁ । ଜାଣିଛି······ ଜାଣୁଛି ··· ଆହୁରି ··· ଜାଣିବି । ସେହି ଜାଣିବା ଭିତରେ ମୋର ସୃଷ୍ଟି, ଧ୍ୱଂସ ଗଠନ, ଭଙ୍ଗାରୁଜା । ସେହି ଜାଣିବା ଭିତରେ ମୋର ବାହ୍ୟ ଏବଂ ଅନ୍ତର୍ଜ୍ୱଳନ ଶତ ସହସ୍ର ଶିଖା ମେଲିଛି—ସେ ଜ୍ୱଳନର ଶେଷ ନାହିଁ । ଜଳିଛି···ଜଳିବି··· ଧୂ ଧୂ ··· ଲେଲିହାନ ଜିହ୍ୱା ମେଲି ··· ପରେଶେଷରେ ଗୁଡ଼ିଯିବ ଏକ ଅନ୍ତକାୟୁ ପାଉଁଶର ସ୍ତୂପ—ସେହି ସ୍ତୂପ ତଳେ ରହିଯିବ ବହୁ ପାଶବିକତା ଓ ନରସୃଷ୍ଟ ନରକର ଘୃଣ୍ୟ ଇତିହାସ, ମଣିଷର କ୍ରୋଧ, ଶୋଷ, ଲୁହଲହୁ, ଅନଶନ-ଅନାହାର ସହିତ ସଂଘାତ-ସଂଗ୍ରାମର ରକ୍ତାକ୍ତ ଦଲିଲ । ତାହା ଆଗାମୀ ବଂଶଧର ଏବଂ ମୋ ନିଜର ପୁଅ ପୌତ୍ରାଦି ପ୍ରମୁଖଙ୍କୁ କହିବ : ଘରଠାରୁ ପରପର୍ଯ୍ୟନ୍ତ, ଗଣ ଠାରୁ ଜଣ ପର୍ଯ୍ୟନ୍ତ, ଜନପଦ ଠାରୁ ନଗର ପର୍ଯ୍ୟନ୍ତ, ସମାଜ ଠାରୁ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତେ ଯେପରି ଯୋଜନାବଦ୍ଧ ଭାବରେ ଗୁହିଁଛନ୍ତି, ସଂଗଠିତ ହୋଇଛନ୍ତି ମୋର ବୈପ୍ଳବିକ ପ୍ରଗତିଶୀଳ ବିଦ୍ରୋହୀ-ଭୂନିୟାଦିକୁ ନିଶ୍ଚିହ୍ନ କରିଦେବା ପାଇଁ । ମୁଁ ଥିଲି ଏକ ତ୍ୟକ୍ତ-ଅନଳର କଣା, ପୃଥିବୀର ରାଜରାସ୍ତା କଡରେ ଅପାଙ୍କ୍ତେୟ ଭାବେ ପଡ଼ିରହି ମୁଁ ଯୋଗାଡ଼ କରିଛି ଏକ ବିଦ୍ରୋହୀ ଜୀବନୀ-ଶକ୍ତି । ତାହାହିଁ ତ ମୋର ଥିଲା ଏକ "ଅପରାଧ" ।



ଗାଁରେ ରହି ମା'ର ଯନ୍ତ୍ରଣା ଏବଂ ଦୁର୍ଦ୍ଦଶା ଆଦିକୁ ନିଜ ଆଖିରେ ଦେଖିବେ ନାହିଁ ବୋଲି ବାପା ଗାଁରୁ ବାଧ୍ୟ ହୋଇ ଅନୁପସ୍ଥିତ ରହୁଥିଲେ । ମା' କେମିତି ଚଳିବ, କ'ଣ ଖାଇବ, ସେ ନେଇ ସେ ମର୍ମାନ୍ତକ ବେଦନା ଅନୁଭବ କଲେ ବି ସାପ ପରି ସେ ସମସ୍ତ ଯନ୍ତ୍ରଣାକୁ ସହୁଥିଲେ ନୀରବରେ; କାରଣ ତାଙ୍କର ସେତେବେଳେ କୌଣସି ଆର୍ଥିକ ଶକ୍ତି ନ ଥିଲା । ଫଳରେ ମାସକୁ ୧୫ ଦିନ ମା'ର କଟୁଥିଲା ଅର୍ଦ୍ଧାହାର ଆଉ ଅନାହାରରେ । ବାକି ୧୫ ଦିନର ଖାଦ୍ୟ ଥିଲା ପଖାଳ, ତୋରାଣି, ସଜନା ଶାଗ ଓ ଅନ୍ୟାନ୍ୟ ସାଗର ସିଝା । ମା ଅସମ୍ଭବ କ୍ଷୁଧାର ଜ୍ୱାଳାକୁ ନୀରବରେ ସହ୍ୟ କରିବାରେ ଧୁରନ୍ଧର; କିନ୍ତୁ ପାନ-ଗୁଆ-ଗୁଣ୍ଡି ନ ଥିଲେ ସେ ପାଗଳୀ ପରି ହୋଇଯାଏ । (ସେତେବେଳେ ଅଧିଲାକୁ ଛ'ଅ ଫାଳ ଗୁଆ ମୁଁ ମୋ ନିଜ ହାତରେ କିଣିବାର ମନେ ଅଛି ।) ବାପା ପ୍ରଥମେ ପ୍ରଥମେ ଗାଁରୁ ଏକୁଟିଆ ଅନୁପସ୍ଥିତ ରହୁଥିଲେ ମୋତେ ମା' ପାଖରେ ଛାଡ଼ିଦେଇ । ମୁଁ ମା' ପାଖରେ ଥିବାରୁ ମା'ର ଯନ୍ତ୍ରଣା ଅଧିକ ହେଉଥିଲା । କାରଣ କ୍ଷୁଧାତୁର ଶିଶୁ କ ବୁଝେ ଦାରିଦ୍ର୍ୟ, ଅଭାବର କାରଣ ? ଦିନକୁ ଦୁଇବେଳା ଦି'ମୁଠା ଭାତ ମୋ ପେଟରେ ପକାଇବାର ନୈତିକ ଦାୟିତ୍ୱ ମା ଉପରେ ପୁରାପୁରି ପଡ଼ିବାଟା ଥିଲା "ବୋଝ ଉପରେ ନଳିତା ବିଡ଼ା" ପରି । ମାସକରେ ଯେଉଁ ୧୫ ଦିନ ଆମେ ମା-ପୁଅ କିଛି ଖାଦ୍ୟ ପାଉଥିଲୁ, ତାହା ମା'କୁ ଯୋଗାଡ଼ କରିବାକୁ ପଡୁଥିଲା ଘରୁ ଦୋକୁ ନ ବାହାରି । ଆମ ବାଡ଼ିରେ ଥିଲା ସର୍ବମୋଟ ୧୦ଟି ନଡ଼ିଆଗଛ । ସାନ ଦାଦା ଓ ମଝିଆ ଦାଦାଙ୍କ ଦଖଲରେ ସେଥିରୁ ଥାଏ ତିନିଭାଗ । ବାକି ଭାଗ ଗଛରୁ ଯାହା ନଡ଼ିଆ ତୋଳା ହୁଏ ତାକୁ ମା ଚମାର ଦ୍ୱାରା ଛଡ଼ାଇ ତା'ର ଚ୍ଛେପା ବା କତା ଗୁଡ଼ିକୁ ଆମ ବାଡ଼ପଟେ ଥିବା ପୋଖରୀରେ ଭିଜାଇ ରଖେ । ସେଗୁଡ଼ିକ ଭିଜିଗଲା ପରେ ତାକୁ ସବୁ ଏକ ପିଟୁଣି ସାହାଯ୍ୟରେ ଛେଚି ତାକୁ ଖରାରେ ଶୁଖାଏ । ସେଗୁଡ଼ିକ ଶୁଖିଗଲା ପରେ ତାକୁ ଦଉଡ଼ି ବଳି ଗୋଟିଏ ଲେଖେଁ ବିଡ଼ା ତିଆରି କରେ । ଗୋଟିଏ ବିଡ଼ାର ମୂଲ୍ୟ ସେତେବେଳେ ଦୁଇ ପଇସା ଥିବାର ମନେପଡ଼ୁଛି । ସେଗୁଡ଼ିକ ଲୋକ ଆସି ଆମ ଘରୁ କିଣି ନେଉଥିଲେ । ସେଇଥିରୁ ଯାହା ପଇସା ମିଳୁଥିଲା ସେଥିରେ କିଣା ପାଉଥିଲା ଚାଉଳ । ତରକାରି କଥା ଛାଡ଼ । ସଜନାପତ୍ର ଝୋଳ ଆଉ ଭାତ ଆମର ଥିଲା ପ୍ରାଣରକ୍ଷକ । ମୁଁ ପିଲାଦିନୁ ମା'ର ସେହି ହାତରନ୍ଧା ସଜନାପତ୍ର ଝୋଳ ଅମୃତ ପରି ଭଲ ପାଉଥିଲି—ଆଜି ପର୍ଯ୍ୟନ୍ତ ତାର ସ୍ୱାଦ ମୋର ଅଭୁଲା ହୋଇ ରହିଛି ।

ବାପା ମଝିରେ କଟକରେ ଥାଇ ଦୁଇ-ତିନି ଟଙ୍କା ମା' ପାଖକୁ ପଠାନ୍ତି । କ'ଣ ବା କରିବ ସିଏ ? ଦାରିଦ୍ର୍ୟ ଦାନବର ସେ ସେତେବେଳେ ଏକ ଅସହାୟ ଶିକାର । ଅପର ପକ୍ଷରେ ମୋର ବଡଭାଇ ଯମୁନାଲାଲ ବେଣ୍ଟ ଛନ୍‌ଛନ୍ ବେଶରେ ଗାଁକୁ ଯିବା ଆସିବା କରୁଥିଲେ । ସେ କିନ୍ତୁ ଆସୁ ନ ଥିଲେ ମା' ପାଖକୁ । ସାନଖୁଡ଼ୀ ପାଖରେ ରହୁଥିଲେ । ତାର ଝିଅମାନଙ୍କ ପାଇଁ ଲୁଗାପଟା, ମିଷ୍ଟାନ୍ନ ଆଦି ଆଣୁଥିଲେ । ସେମାନେ ତାଙ୍କୁ "ଭାଇ" "ଭାଇ" ଡାକ ପାଣି ପିଉ ନ ଥିଲେ । ମୁଁ ନୀରବରେ ମୋର ଅବହେଳିତ ଶିଶୁ ଚେତନା ନେଇ ଏ ଦୃଶ୍ୟକୁ ଦେଖି ଗଭୀର ବେଦନା ଅନୁଭବ କରୁଥିଲି । ମା' ମଧ୍ୟ ଏ ଘଟଣାରେ ଦୁଃଖିତା ହେଉ ନ ଥିଲା—ଦେହସୁହା ହୋଇଯାଇଥିଲା ତା'ର । କିନ୍ତୁ ଏ ସବୁ ସତ୍ତ୍ୱେ ସେ ଚାହୁଁଥିଲା ଭାଇ ଆସି ତାକୁ କେବଳ "ମା" ବୋଲି ଡାକୁ, ତା ପାଖରେ ବସୁ । କିନ୍ତୁ ଭାଗ୍ୟର ନିଷ୍ଠୁର ପରିହାସରେ ତାହା ସମ୍ଭବ ହୋଇ ନ ଥିଲା ।

ବାପାଙ୍କର ଆର୍ଥିକ ସ୍ଥିତି ଆହୁରି ଶୋଚନୀୟ ହେବାକୁ ଆରମ୍ଭ କଲା । ତାର ଫଳଶ୍ରୁତି ହେଲା ଘରର ୫ ପୁରୁଷର ବାସନକୁସନ, ଅସ୍ତ୍ରଶସ୍ତ୍ର, ଛୁରି, ତେଣ୍ଟା, ବର୍ଛା, ତରବାରି, ଢାଲ ସବୁକିଛିକୁ ସେ ବିକି କରିବାକୁ ଭୁଲିଲେ ନାହିଁ । ଲଜ୍ଜା, କ୍ଷୋଭ, ଦୁଃଖର ବିଷୟ ମୋ ପକ୍ଷରେ ଏହି ଯେ, ମୁଁ ନିଜ ଆଖିରେ ଦେଖିଛି, ପରିଶେଷରେ ମାଛଧରା ଜାଲ ହୋଇଥିଲା ମା'ର ପିନ୍ଧାଲୁଗା, ହାତ ତା'ର ଦି'ପଟ ଚୁଡ଼ି ବଦଳରେ ପିନ୍ଧିଥିଲା ଦି'ଖଣ୍ଡ ସୂତା । ଅଭାବର କଣ୍ଟକ-ମୁକୁଟ ଶୋଭିତା ମୋର ମହୀୟସୀ ଜନନୀର ସେହି ଭାବମୂର୍ତ୍ତି ଆଜି ବି ମୋର ମନର କାନ୍‌ଭାସ ଉପରେ ଅଙ୍କିତ ହୋଇ ରହିଛି । ସେହି ଭାବମୂର୍ତ୍ତିକୁ ଯେତେ-ବେଳେ ମୁଁ ନିରୀକ୍ଷଣ କରେ ସେତେବେଳେ ପୃଥିବୀକୁ ପୁଣି ଏକ ବାଷ୍ପ-କନ୍ଦୁକ କରି ମହାଶୂନ୍ୟକୁ ଫିଙ୍ଗିଦେବାର ଦୁର୍ଦ୍ଦମନୀୟ ଇଚ୍ଛା ମୋ ଭିତରେ ଜାଗିଉଠେ, ଇଚ୍ଛା ହୁଏ, ଦିନକ ପାଇଁ ହେଲେ ବି ମୁଁ ହୁଅନ୍ତି ଧରଣୀର ଏକଛତ୍ର ସମ୍ରାଟ, ଆକାଶର ବିଦ୍ୟୁନ୍ନଟୀକୁ ନିଜ ହାତମୁଠାରେ ରଖି ତାକୁ ଚାବୁକ ପରି ବ୍ୟବହାର କରନ୍ତି । ଭାଗ୍ୟ, ଭଗବାନ, ଧର୍ମ, ମାନବତା, ଦୟା, ମାୟା, ସବୁକିଛି ଭୁଲି କେବଳ ଅତ୍ୟାଚାର, ହତ୍ୟା, ନିର୍ଯାତନର ଷ୍ଟିମ୍ ରୋଲର ଚଳାନ୍ତି ସମଗ୍ର ମାନବ ସଭ୍ୟତା ଉପରେ । ମୋ ମା'ର ଏହି ଅବସ୍ଥା ଉପରେ; ମୋ ବାପାଙ୍କର ତ୍ୟାଗ, ତପସ୍ୟା ଓ ସଂଗ୍ରାମର ଯାଜ୍ଞିକ ବେଦି ଉପରେ ଆଜି ତଥାକଥିତ ସ୍ୱାଧୀନତାର ସୌଧ ଠିଆ ହୋଇଛି । କିନ୍ତୁ ମୁଁ ପାଇଛି କ'ଣ ?

କୋଟି କୋଟି ଭାରତବାସୀ ପାଇଛନ୍ତି କ'ଣ ? ଆମେ ସମସ୍ତେ ପାଇଛୁ ମାନବିକତାର ବେଶ୍ୟାବୃତ୍ତି, ଦଳବଦଳ, ଶୋଷଣ, କଷଣ, ଘରଜଗୋଷ୍ଠି, କର ଘର, ଲାଠି, ଗୁଳି, ଜେଲ୍, ଆକ୍ରମଣ, ଷଡ଼ଯନ୍ତ୍ର । ଏହି କ୍ଷୋଭ, ଏହି କାରଣ ହିଁ ମୋର ବିଦ୍ରୋହୀ ତଥା ବିପ୍ଳବୀ କବିତାର ଅନ୍ତର୍ନିହିତ ରସଦ ।

ମୋର ବୟସ ବଢ଼ିବା ସଙ୍ଗେ ସଙ୍ଗେ ବାପା ମୋତେ ଘରେ ଅର୍ଥାତ୍ ଗାଁରେ ମା' ପାଖରେ ଛାଡ଼ି କେଉଁଆଡ଼କୁ ଯିବାକୁ ପ୍ରସ୍ତୁତ ନଥିଲେ । ତା'ର କାରଣ ମୁଁ ହେଉ ପାଇଲା ପରେ ଜାଣିବାକୁ ପାଇଥିଲି । ତାହା ହେଲା ଅଭାବ, ଓ ଦୁଃଖ ଦାରିଦ୍ର୍ୟର ଧୂ ଧୂ ମରୁଭୂମି ଭିତରେ ନବାପାଟଣା ପରି ପଛୁଆ ଓ ହାଟୁଆ କୁସଂସ୍କାର ଗ୍ରସ୍ତ ଗାଁରେ ମୁଁ ଯଦି ମା' ପାଖରେ ବରାବର ରହେ, ତାହେଲେ ମୋର ଭବିଷ୍ୟତ ଘୃଷଣତମ ଏକ ନରକରେ ଆଉଟି ହେବ । ସହଜେ ପାଠପଢ଼ା ପୋଥିରେ ବନ୍ଧା ହୋଇଛି ଡୋର । ମନ୍ତ୍ରାନର ପିତା ପକ୍ଷରେ ଏହା ଗଭୀର ବେଦନାର ବିଷୟ ଯେ, ଆଖିଆଗରେ ନିଜର ସନ୍ତାନ ତିଳ ତିଳ କରି ଅନାହାର, ଅନାଦର, ଅଶିକ୍ଷା, ଅଭାବ ଭିତରେ ଜୀବନ କଟାଇବ । ନବାପାଟଣା ଗାଁରେ ଶିକ୍ଷାର ମାନ ଯେ ସେତେବେଳେ କେଉଁ ସ୍ତରରେ ଥିଲା ତାହା ଆଜି ମନେ ପଡ଼ିଲେ ହସମାଡ଼େ । ଆମ ପାଇରେ ଥିଲା ଗୋଟିଏ ତନ୍ତୀ ପରିବାର । ପରିବାରଟି ଦରିଦ୍ର । ପ୍ରତିଦିନ ପରିବାରର ମୁଖ୍ୟ ବ୍ୟକ୍ତି 'ବନ୍ଧୁ' ଅର୍ଥାତ୍ ବନ୍ଧୁଆ ତନ୍ତୀ ଦୋକାନରୁ ମୋଡ଼ାଏ ଵା' ମୋଡ଼ା ସୂତା କିଣି ଆଣେ । ତାକୁ ତା'ର ସ୍ତ୍ରୀ କଞ୍ଚି ପଖାଳ ଭାତ ଓ ତୋରାଣୀ ଦେଇ ଚକଟେ, ତା'ପରେ ତାକୁ ଅରଟ ସାହାଯ୍ୟରେ ତାକୁଡ଼ିରେ ଗୁଡ଼ାଏ । ତା'ପରେ ବନ୍ଧୁଆ ତାକୁ ନେଇ ତନ୍ତରେ ବ୍ୟବହାର କରି ଲୁଗାବୁଣେ । ସଂଧ୍ୟାରେ ବୁଣା ଲୁଗାଖଣ୍ଡକୁ ନେଇ ତାକୁ ବିକି କରି ନିଜର ଗୁଜରାଣ ମେଣ୍ଟାଏ । ସେହି ବନ୍ଧୁଆ ଦିନେ ଆସି ମୋ ବାପାଙ୍କୁ ପରାମର୍ଶ ମାଗିଲା ଯେ, ତା ପୁଅର ଗୁରୁଆଖି ହୋଇଗଲାଣି ଅର୍ଥାତ୍ ସେ 'ଭାଗବତ' ପଢ଼ିପାରିଲାଣି । ଆଉ ପାଠ କ'ଣ ଦରକାର ? ଏଣିକି ତାକୁ ସିଏ କୋଉ କାମରେ ଲଗାଇବ ? ବାପା ନିଜ ହସକୁ ସେଦିନ ଚାପିରଖି ତାକୁ ପଚାରିଲେ : "ତୁ କ'ଣ ଭାବୁଛୁ ? କୋଉ କାମରେ ଲଗାଇବୁ ତାକୁ ?" ବନ୍ଧୁଆ ଅତି ଅନାବିଲ ଭାବରେ ସେଦିନ ଉତ୍ତର ଦେଇଥିଲା : "ଲୋକେ କହୁଛନ୍ତି ତାକୁ ନାଟ ଆଖଡ଼ାରେ ଦେବା ପାଇଁ । ସେଥିରେ ମୋର ନାଁ ହବ ଆଉ ଲୋକେ ତାକୁ ଧନ୍ୟ ଧନ୍ୟ କହିବେ ।"

ହସକୁ ସମ୍ଭାଳି ନପାରି ବାପା ସେଦିନ ଫେ-କିନି ହସିଦେଇ କହିଥିଲେ ;
"ଭଲ, ସେଇଆ କର !"

ବନ୍ଧୁଆ ଉତ୍ସାହିତ ହୋଇ ଶେଷରେ ସେଇଆ କରିଥିଲା ।

ଆମ ଗାଁରେ ସେତେବେଳେ ଥିଲା ଦୁଇଟି ନାଟ ଆଖଡ଼ା । ଗୋଟିଏ ଡେରିସାହିରେ, ଅନ୍ୟଟି ଠାକୁର ଦାଣ୍ଡରେ । ଏ ଦୁଇଟି ଆଖଡ଼ାରେ କେବଳ ରାମଲୀଳା ରିହରସାଲ୍ ହୋଇ ପରିଶେଷରେ ତାହା ମାସ ମାସ ଧରି ଅଭିନୀତ ହେଉଥିଲା । ରାମ ଜନ୍ମ ଠାରୁ ରାବଣ ବଧ ଯାଏ ପ୍ରତିଦିନ ରାତି ୧୦ଟାରୁ (ଗୁରୁବାର ବ୍ୟତୀତ) ଅଭିନୟ ଆରମ୍ଭ ହୁଏ । ଅଭିନୟ ପୂର୍ବରୁ ଗାଁ ଲୋକେ ଖିଆପିଆ ସାରିଦିଅନ୍ତି । ରାତି ୯ଟା ବେଳକୁ ଅଭିନୟ ମଞ୍ଚ ପାଖରେ ଧୀରେ ଧୀରେ ଭିଡ଼ ଜମେ । ଘରର ସ୍ୱାମୀ-ସ୍ତ୍ରୀ, ପିଲାଛୁଆ, ଝିଅବୋହୂ ସମସ୍ତେ ଆସନ୍ତି—ଆସି ଆଗରୁ ସ୍ଥାନ ସଂରକ୍ଷଣ କରନ୍ତି । ମାଇପିମାନେ ସାଙ୍ଗରେ ମଞ୍ଚ ପାଖକୁ ଆଣିଥାନ୍ତି ପାଣିନାଟା, ସଜପ, ହାତପଙ୍ଖା, ପ୍ରଚୁର ଭଙ୍ଗାପାନ । ଅଭିନୟ ପୂର୍ବରୁ ସେମାନେ ଆସି ଅଭିନୟ ସ୍ଥଳରେ କରେ କରେ ନିଦ ହି ଶୋଇଯାଆନ୍ତି । ଶାଶୁ ଶୋଇ ଯାଇଥିଲେ ବୋହୂ ତା'ର ଗୋଡ଼ ମୋଡ଼େ । ଅଭିନୟ ଆରମ୍ଭ ହେଲେ ସମସ୍ତେ ଉଠିବସନ୍ତି । ସୀତା ହରଣ ଦିନ ସୀତାଙ୍କର କରୁଣ କ୍ରନ୍ଦନରେ ମାଇପିମାନେ ବି ଆଖିରୁ ଲୁହ ପୋଛନ୍ତି । ତା' ପରଦିନ ଗାଁର ମାଇପିମହଲରେ ଗତ ରାତିର ଅଭିନୟ ଆଲୋଚିତ ହୁଏ । ହଁ, ବନ୍ଧୁଆ ତନ୍ତୀ ପରିଶେଷରେ ପୁଅକୁ ତା'ର ସେହି ନାଟ ଆଖଡ଼ାରେ କେବଳ ଭର୍ତ୍ତି କରି ନ ଥିଲା, ପୁଅ ଯେଉଁଦିନ ଏକ କୁମାରୀ ଭୂମିକାରେ ଦର୍ଶକମଣ୍ଡଳୀ ସାମ୍ନାରେ ଉପସ୍ଥିତ ହେଲା; ସେଦିନ ସେ (ବନ୍ଧୁଆ) ତା' ସ୍ତ୍ରୀକୁ ଧରି ଯାଇ ବସିଥିଲା ସଭା ଆଗରେ, ଏକ ଗର୍ବିତ ଭଙ୍ଗୀରେ । କେବଳ ସେତିକି ନୁହେଁ ପୁଅର ଅଭିନୟ କିପରି ହେଉଛି ସେ ପ୍ରଶ୍ନ ପଚାରି ପାଖ ଦର୍ଶକମାନଙ୍କୁ ବ୍ୟତିବ୍ୟସ୍ତ କରିଥିଲା । ପରେ ବାପା ଏ ସମ୍ବାଦ ଶୁଣି ମା'କୁ କହିଥିଲେ :
"ଶଳା କୁଅ ବେଙ୍ଗ...ଅତି ବେହିଆ ।"

ମୋର ବାପା ନାଟତାମସାକୁ ଘୃଣା କରୁଥିଲେ—ଯଦିଓ ତାଙ୍କର ଥିଲା କବିଭ୍ର । ସେ ବହୁ ଗଳ୍ପ, କବିତା, ସଙ୍ଗୀତ ରଚନା କରିଥିଲେ । ତା'ର ଗୋଟିଏ ବି ପାଣ୍ଡୁଲିପି ଆଜି ମୋ ପାଖରେ ନାହିଁ ।

ସେତେବେଳେ ନବାପାଟଣା ଗାଁରେ ଏହିପରି ଥିଲା ଶିକ୍ଷାର ମାନ ।

ସେ ଯାହାହେଉ, ମୁଁ ଗାଁରେ ମା' ପାଖରେ ରହିଲେ ନଷ୍ଟ ହୋଇଯିବି, ମୋର ବିକାଶ ବାଧାପ୍ରାପ୍ତ ହେବ—ଏ କଥାକୁ ଅତି ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଶ୍ଳେଷଣ କରି ଅତି ନିର୍ମମ ଭାବରେ ମୋତେ ମାତୃବୃନ୍ତରୁ ବଞ୍ଚିତ କରିଥିଲେ ବାପା । ଫଳରେ ମୋତେ ବାଧ୍ୟ ହୋଇ ମାତୃକୋଳ, ଜନ୍ମମାଟି, ବାଲ୍ୟସାଥୀ ସମସ୍ତଙ୍କୁ ଛାଡ଼ି ତାଙ୍କ ସହିତ ପାଦମିଳାଇ ଚାଲିବାକୁ ପଡ଼ିଥିଲା ପୃଥିବୀର ରାଜପଥ ଉପରେ ଅତିକମ୍ ବୟସରୁ । ଏହି ଘଟଣାଟି ଥିଲା ଜୀବନ-ବିଶ୍ୱବିଦ୍ୟାଳୟରେ ମୋର ପ୍ରବେଶର ଶୁଭାରମ୍ଭ ।

ସକାଳୁ ବାପା ଆଉ ମୁଁ ବାହାରି ଯାଉଁ । ବାହାରି ଯିବାର କାରଣ ହେଲା ଅନୁସନ୍ଧାନ । ଫେରୁଁ କେବେ ସନ୍ଧ୍ୟା କେବେ ବା ରାତିଅଧ ବେଳକୁ । ବାପା ମୋତେ ବାଟ ଚାଲିଇବାର ଅଭ୍ୟାସ କରାଉଥିଲେ ଜାଣିଶୁଣି । ସତେ ଯେପରି ସେ ଜାଣିଥିଲେ ତାଙ୍କର ବିଦାୟ ଆସନ୍ନ, ଆଉ ମୋତେ ଏକୁଟିଆ ଜୀବନ ତମାମ୍ ଚାଲିବାକୁ ପଡ଼ିବ ବହୁ ଶିଳାବନ୍ଧୁର ଦୁର୍ଗମ ପଥରେ । ଚାଲି ଚାଲି ମୋର ବାଳକ ପାଦ ଦୁଇଟି ଥକିଗଲେ ବାପା ରାସ୍ତା କଡ଼ରେ କମ୍ଭା ତୃଣାଚ୍ଛାଦିତ କୌଣସି ପ୍ରାନ୍ତରରେ ନିଜେ ବସି, ମୋତେ ପାଖରେ ବସାଇ ରସରସିଆ ଗଳ୍ପମାନ ଶୁଣାନ୍ତି । ଭଗବତ୍ ଗୀତାକୁ ସେ ମୋତେ ଏପରି ଭାବରେ, ଏପରି ଭାଷାରେ ବୁଝାନ୍ତି ଯେ, ମୁଁ ତନ୍ମୟ ହୋଇ ଶୁଣେ । କ୍ଲାନ୍ତି ମେଣ୍ଟିଗଲା ପରେ ପୁଣି ଆମେ ବାଟ ଚାଲୁଁ । ସେ ସବୁବେଳେ ମୋତେ ଆଗେ ଆଗେ ଚାଲନ୍ତି, ପଛରେ ଥାଇ ମୋତେ ପାଠ ବି ପଢାନ୍ତି । ଏ, ବି, ସି, ଡ଼ି ଘୋଷାନ୍ତି । ସବୁବେଳେ ନିର୍ଭୀକ ଆଉ ବେପରୁଆ ହେବାପାଇଁ ପ୍ରେରଣା ଦିଅନ୍ତି । କୁମ୍ଭାର କଞ୍ଚା ମାଟିକୁ ଦଳି ଚକଟି ହାଣ୍ଡି ମାଠିଆ ତିଆରି କଲା ପରି ସେ ମୋର ବ୍ୟକ୍ତିତ୍ୱ ଏବଂ ନୈତିକତାକୁ ତିଆରି କରି ଯାଇଥିଲେ । କେଜାଣି କାହିଁକି ମୁଁ ମା' ଅପେକ୍ଷା ଅଧିକ ଭଲ ପାଉଥିଲି ବାପାଙ୍କୁ ! ତାଙ୍କ ପ୍ରତି ଯେତିକି ଭକ୍ତି ଥିଲା, ଭୟ ମଧ୍ୟ ଥିଲା ସେତିକି । କଥା ନ ମାନିଲେ, ଅବାଧ୍ୟ ହେଲେ ସେ ମୋତେ ଏପରି ବାଡ଼ାନ୍ତି ଯେ, ତାହା ସେତେବେଳେ ମୋ ବୟସର ପିଲା ପକ୍ଷରେ ସହିବା ମୁସ୍କିଲ । ତଥାପି ତାଙ୍କର ଅନୁପସ୍ଥିତି ଥିଲା ମୋ ପକ୍ଷରେ ଦାରୁଣ ଶୂନ୍ୟତା । ବାପାଙ୍କର ଥିଲା ଶ୍ୱାସରୋଗ । ତାହା ଯେତେବେଳେ ଆତ୍ମପ୍ରକାଶ କରୁଥିଲା, ସେତେବେଳେ ସେ କାଶି କାଶି ଅଚେତ

ହୋଇ ପଡ଼ୁଥିଲେ । ସେତେବେଳେ ତାଙ୍କର ସେବାରେ ମୋର ପଟାନ୍ତର ନ ଥିଲା । ହାତରେ ଅଞ୍ଜୁଳା ଅଞ୍ଜୁଳା ଛେପ, ଖଙ୍କାର ସଫା କରିବା ସଙ୍ଗେ ସଙ୍ଗେ ଝାଡ଼ା ପରିସ୍ରା ନିଜ ହାତରେ ସଫା କରେ । ପ୍ରବାସରେ ଥାଇ ଦୀର୍ଘ ଅସୁସ୍ଥତାରୁ ସେ ପୁଣି ଉଠିବସନ୍ତି । ପୁଣି ଆରମ୍ଭ ହୁଏ ଆମର ଅଭିଯାନ । ରାତିରେ ମୁଁ ନିଘୋଡ଼ ନିଦରେ ଅଚେତନ ଥିଲାବେଳେ ସେ ବସି ବସି ମୋ ମୁଣ୍ଡକୁ ଆଉଁସନ୍ତି, ଗମ୍ଭୀର ଅଥଚ ନୀରବ ଆଶୀର୍ବାଦ ଢାଳନ୍ତି ମୋ ଉପରେ । ମୋ ପାଇଁ ତାଙ୍କୁ ଦୁଇଟି ଭୂମିକା (ଅର୍ଥାତ ବାପା ଆଉ ମା')ରେ ଅବତୀର୍ଣ୍ଣ ହେବାକୁ ହୋଇଥିଲା । ଆଳସ୍ୟ ଥିଲା ବାପାଙ୍କର ପରମ ଶତ୍ରୁ । ମୁଣ୍ଡରେ ପିଲାଦିନୁ ବାଳ ରହିଲେ ବେକ ବଗ ପରି ସରୁ ହେବ—ଏଇଟା ଥିଲା ତାଙ୍କର ଏକ ଦର୍ଶନ । ସେଥିପାଇଁ ସେ ନିଜେ ନିଜ ହାତରେ ଲଣ୍ଡା ହେଉଥିଲେ, ମୋତେ ବି ଲଣ୍ଡା କରି ପକାଉଥିଲେ । ଏପରିକି ୧୯୪୭ ମସିହା ଅର୍ଥାତ୍ ସେ ଜୀବିତ ଥିବାଯାଏ ମୋ ମୁଣ୍ଡରେ ବାଳ ନ ଥିଲା । ମାଘ ମାସର ହାଡ଼ଭଙ୍ଗା ଶୀତ, ଆମେ ଗାଁରେ ବା ବିଦେଶରେ ଥାଉ, ରାତି ଗୁରିଟାବେଳୁ ସେ ମୋତେ ନିଦରୁ ଉଠାନ୍ତି, ତେଲ ଲଗାଇ ଦିଅନ୍ତି, ଆଉ ନିଜେ ନେଇ ଗାଧୋଇ ଦିଅନ୍ତି ।



# ନୀ ଡ଼ ହ ରା

୧୯୩୯ ସାଲ ବୋଧହୁଏ !

ଅବିଶ୍ୱାସ୍ୟ ହେଲେ ବି ସେଦିନକୁ ମିଶାଇ ତିନିଦିନ ଧରି ବାପା, ମା ଆଉ ମୁଁ କିଛି ହେଲେ ବି ଖାଇ ନ ଥାଉଁ । ହଁ, ମନେପଡ଼ୁଛି, ମୁଁ ଏହି ତିନିଦିନ ମଧ୍ୟରେ ଦୁଇଥର ମୁଡ଼ିକୁ ଭଜାଇ ଖାଇଥିଲି, ଆଉ ମୁଡିଭଜା ପାଣିରେ ଗୋଟିଏ କଞ୍ଚାଲଙ୍କା ଚକଟି ପିଇଥିଲି ମା । ସେ ତିନିଦିନର ରାତିଗୁଡ଼ିକ ମଧ୍ୟ ଥିଲି ଗଭୀର ଅନ୍ଧକାର ! ଲଣ୍ଠନ ଓ ଡିବିରି ମଧ୍ୟ ରାତିରେ ଘରେ ଜଳି ନ ଥିଲା, କାରଣ କିରାସିନି ପାଇଁ ପଇସା ନ ଥିଲା । ସନ୍ଧ୍ୟାର ଲଘୁ ଅନ୍ଧକାର ବେଳୁ ରଜନୀର ଅନ୍ତିମ ପ୍ରହର ପର୍ଯ୍ୟନ୍ତ ଗଭୀର ଅନ୍ଧକାର ଭିତରେ 'ଭୋକେ ଓଡ଼ିଆ ନିଦ ଯାଏ" ନ୍ୟାୟରେ ଆମେ ଶୋଇପଡ଼ୁଥିଲୁ । ଏହି କ୍ଷୁଧା, ଏହି ଅଭାବ, ଏହି ଦାରୁଣ ଦାରିଦ୍ର୍ୟ ମୋତେ ଭବିଷ୍ୟତରେ ଦେଇଥିଲା ପ୍ରଚଣ୍ଡ ସଂଗ୍ରାମର ଉପାଦାନ, ନୈତିକତାର ଅକ୍ଷୟ ବୀଜମନ୍ତ୍ର, ଦେଇଥିଲା କଷ୍ଟ ସହିବାର ପ୍ରଚଣ୍ଡ ସହ୍ୟଶକ୍ତି । ସେ ଦାରିଦ୍ର୍ୟ, ଅଭାବ, କ୍ଷୁଧା, ଅନାହାର ମୋର ପ୍ରଣମ୍ୟ; ସ୍ମରଣୀୟ ଏବଂ ସଂଗ୍ରାମର ସୁତୀକ୍ଷ୍ଣ-ବିବେକ ଓ ତାର ଇସ୍ପାତ ବୁନିୟାଦ ।

କ୍ଷୁଧା, କ୍ଳାନ୍ତି, ଦୁଃଖର ଏହି ସକରୁଣ ଦିନ ଗୁଡ଼ିକରେ ବରଡ଼ାପତ୍ର ପରି ଥର ଥର ହୋଇ ଥରୁଥାଏ ମା'ର ଦେହ । କୌଣସି ଉପାୟ ନଥିଲା, ସ୍ୱର ବଳରେ ହତାଶାର ଧୂ ଧୂ ମରୁବାଲି । ପରିଶେଷରେ ବାରପଟି ନଡ଼ିଆ ଗଛରୁ ଚମ'ର ଡାକ କିଛି ନଡ଼ିଆ ତୋଳିବାକୁ ନିର୍ଦ୍ଦେଶ ଦେଲେ ବାପା, କିନ୍ତୁ ଗଛରେ ନଡ଼ିଆ କାହିଁ ? ଗଛଗୁଡ଼ିକ ନୀରବ ଦାର୍ଶନିକ ପରି ଠିଆ, ସେମାନେ ସତେ ଯେପରି ଆମକୁ ସମବେଦନା ଜଣାଇବା ପାଇଁ ନିଜକୁ ନିଃସ୍ୱ କରିଦେଇଛନ୍ତି । କେତେ ବା ସେମାନେ ଦାନ କରିବେ । ଘୋର ଅସମୟ—ଦୁଃସମୟରେ ସେମାନେ କେବଳ ନିଜର ଶକ୍ତି ମୁତାବକ ଆମକୁ ଦେଇ ଆସିଛନ୍ତି କୌଣସି ପ୍ରତିଦାନର ଆଶା ନ ରଖି । ଆମର ପ୍ରାଣଧାରଣ ତନ୍ତ୍ରୀ ସତେଜ ରହିଛି କେବଳ ଏହି ଭାଷାହୀନ ନୀରବ ଗଗନଚୁମ୍ବୀ ନାରିକେଳ ଦ୍ରୁମର ନିଃସ୍ୱାର୍ଥ ଅବଦାନରେ । ସେ ଯାହାହେଉ, ବାରମ୍ବାର ଗଛଗୁଡ଼ିକୁ

ନିଃସ୍ୱ କରିବା ଫଳରେ ବିଶେଷ କିଛି ନଡ଼ିଆତ ନ ଥିଲା, ଯାହାଥିଲା ସେତିକି ଏବଂ ୪।୬ଟି ପଇଡ଼ ତୋଳାହେଲା । ଦୁଇଟି ପଇଡ଼ କାଟି ମା'କୁ ସେଦିନ ନିଜହାତରେ ଖାଇବାକୁ ଦେଇଥିଲେ ବାପା । ନଡ଼ିଆତକ ସେହି ଶସ୍ତାଯୁଗରେ ବିକି ହୋଇଥିଲା ମାତ୍ର ଦୁଇଟଙ୍କା ମୂଲ୍ୟରେ । ସେଥିରୁ ଟଙ୍କାଟିଏ ମା ହାତରେ ଧରାଇଦେଇ, ତାକୁ ଏକ ନିଃସଙ୍ଗ ତଥା ଅନିଶ୍ଚିତ ଭବିଷ୍ୟତ ହାତରେ ସମର୍ପି ଦେଇ, ମୋତେ ସାଙ୍ଗରେ ଧରି ବାପା ଘରୁ ଗୋଡ଼ କାଢ଼ିଲେ କଟକ ଅଭିମୁଖେ । ମାଡ଼ ହରାଇବାର ଏଇ ପ୍ରଥମ ଦିବସଟି କାଲି ପରି ଲାଗେ । ଅକଥନୀୟ ଦୁଃଖ-ଯନ୍ତ୍ରଣା ଭିତରେ ବି ରାତିରେ ଯେତେବେଳେ ମୁଁ ନିଘୋଡ଼ ନିଦରେ ମା' କୋଳ ଭିତରେ ଶୋଇପଡ଼ୁଥିଲି, ତା' ମୋ ମା' ପକ୍ଷରେ ଥିଲା ଏକ ପୂର୍ଣ୍ଣତା । ଆଜି କିନ୍ତୁ କୋଳ ତାର ଶୂନ୍ୟ ହେବ । ଗିରି-ଜନନୀର ପଳାତକ ସ୍ରୋତ ଶିଶୁ ମୁଁ, ମୁଁ ଆଜି ମୋର ଯାତ୍ରା ଆରମ୍ଭ କରୁଛି ସାଗର-ସନ୍ଧାନରେ—ମୋତେ ଅପେକ୍ଷା କରିଛି ପ୍ରାନ୍ତର, ପଲ୍ଲୀ, ଜନପଦ, ଅରଣ୍ୟ, ଶିଳା-ବନ୍ଧୁର ବହୁ ଗଡ଼ାଣି ଉଠାଣି ପଥ ସହିତ ଝଡ଼-ବାଦଲର ରାତି । କ୍ଷୀଣ ଏକ ରୂପେଲି ଫିତାପରି ଗିରି ଜନନୀର କୋଳକୁ ପରିତ୍ୟାଗ କରି ଯେଉଁ ଦିନ ମୋର ଯାତ୍ରା ଆରମ୍ଭ ହୋଇଥିଲା ସେଦିନ ମୁଁ କିନ୍ତୁ ନିଃସଙ୍ଗ ନ ଥିଲି । ଭଗୀରଥ ପରି ମୋ ଆଗେ ଥିଲେ ବାପା । ପଛରେ କାନ୍ଦୁଥିଲା ମାତୃକୋଳ । ଆମ ଘର ସାମ୍ନାରେ କାହିଁ କେଉଁ କାଳରୁ ଅହଲ୍ୟା ପରି ପଡ଼ିରହିଥିବା ବିଶାଳକାୟ ପଥରଖଣ୍ଡ ଉପରେ ସେଦିନ ଅଶ୍ରୁପୂର୍ଣ୍ଣ ନୟନରେ ଠିଆହୋଇଥିଲା ମା—ପରେ ଆମର ପାଦ ଯେତେବେଳେ ଯାତ୍ରାରତ ହେବାକୁ ଆରମ୍ଭ କଲା, ସେତେବେଳେ ତାର ଚକ୍ଷୁଦ୍ୱାରରୁ ଶ୍ୱେତପ୍ରସ୍ତରବତ୍ ଝରିପଡ଼ିବାକୁ ଆରମ୍ଭ କଲା ଲୋତକର କଣା । ଏହି ଅଶ୍ରୁବିନ୍ଦୁ ଗୁଡ଼ିକ ବାପାଙ୍କ ସିଦ୍ଧାନ୍ତର ଥିଲା ନୀରବ ପ୍ରତିବାଦ : "ମୋ ପୁଅକୁ ମୋ କୋଳରୁ ଛଡ଼ାଇ ନିଅନା । କାହା ମୁହଁକୁ ଚାହିଁ ମୁଁ ବଞ୍ଚିବି କୁହ ।" କିନ୍ତୁ ଦୂରଦ୍ରଷ୍ଟା ମୋର ବାପା ଯଦିଓ ତାହା ମର୍ମେ ମର୍ମେ ବୁଝି ପାରୁଥିଲେ, ତଥାପି ସେତେବେଳେ ସେ ହୋଇ ଉଠିଥିଲେ ନିଷ୍ଠୁର । ନିବାପାଟଣାର ଅନ୍ଧକୂପରୁ ସେ ମୋତେ ନେଇ ଅନନ୍ତ ଏକ ଦିଗ୍‌ବଳୟ ମଧ୍ୟରେ ଛାଡ଼ିବାକୁ ଥିଲେ ବଦ୍ଧପରିକର । ଥରେ ମା' ମୁହଁକୁ ଚାହିଁ ଦେଇ ସେ ନିଜ ଆଖିରୁ ଲୁହ ପୋଛୁବା ମୁଁ ସେଦିନ ଦେଖିଥିଲି । ସିଂହର ଆଖିରେ ଲୁହ ! ହାୟ ନିଷ୍ଠୁର ନିୟତି ! ଗ୍ରାମରେ ଥିଲାବେଳେ ବାପାଙ୍କ ସହିତ ମୁଁ ଯୁଆଡ଼େ ଯାଇଥାଏ ନା କାହିଁକି, ଯେତେ ରାତି ହେଲେ ବି ମା' ଆମର ବାଟ ଚାହିଁ ବସିଥାଏ । କିନ୍ତୁ ସେଦିନ ରାତିରେ ସେ ଆଜି ଆମ ବାଟ ଚାହିଁ

ବସିବ ନାହିଁ । ଏକ ବିଚିତ୍ର ଭାବନା ମୋର ଶିଶୁ ମନକୁ ସେଦିନ ଆଚ୍ଛନ୍ନ କରିଥିଲା । ଭାବୁଥିଲି କେବଳ ସେଦିନ ରାତିଟି ନୁହେଁ; କେତେ ଅଗଣିତ ରଜନୀ ଶୂନ୍ୟ ରହିବ ମୋର ମାତୃକୋଳ, ପୁଣି ସେ କୋଳକୁ କେବେ ଫେରିବି ? ଗାଁ ଦାଣ୍ଡ, ବାଲ୍ୟସାଥୀ, ହାଟ ପଡ଼ିଆ, ଏ ସମସ୍ତର ସ୍ମୃତି ମୋ ମନକୁ ଆନ୍ଦୋଳିତ କରୁଥିଲା ସେଦିନ । ମନେ ମନେ ଭାବୁଥିଲି, ନିଶା ଗର୍ଜୁଥିବ ସାଇଁ ସାଇଁ, ଉପରର କଳ୍ପନ୍ଦ ହଳଦିଆ ଆଲୁଅ ହୁଏତ ମରିବରେ ଉର୍ଦ୍ଧ୍ୱକୁ ତାର ଶିଖା ଟେକି ଜଳୁଥିବ ଛଣ ଉଡ଼ିଯାଇଥିବା ଘର ଭିତରେ । ପେଟରେ ଭୋକ, ମନରେ ଦୁଃଖ ଆଉ ଶୋକ, ତୈଳହୀନ ମଥାର କେଶରାଶି ମଧ୍ୟରେ ପାଚିଲାବାଳ କେତୋଟି ବେଶ୍ ବାରିହୋଇ ପଡ଼ୁଥିବ—ଅନାଟନ, ଅନାହାର, ନିଃସଙ୍ଗତାର ଜଳରାଶିରେ ଏକାକିନୀ ଭାସୁ ଭାସୁ ସୁଦୂର ଅଜଣା ଭବିଷ୍ୟତର ଆଶାରେ ଭାବ ଭାବ ହୁଏତ କିଛି ଆସିବ ନାହିଁ ମା'ର । ପିନ୍ଧିବାକୁ ନାହିଁ ଲୁଗା ଖଣ୍ଡେ, ପେଟରେ ପଡ଼ିବାକୁ ନାହିଁ ଦାନା ଗଣ୍ଡେ—ମାତ୍ର ଗୋଟାଏ ଟଙ୍କା ତାକୁ ଧରାଇ ଦେଇ ବାପା ଓ ମୁଁ ଆଜି ଚାଲି ଯାଉଛୁଁ ଦୂରକୁ ।

ଏହି ସବୁ ଭାବନା ନେଇ କେତେବେଳେ ମାଙ୍କଡଗାଡ଼ିଆ ଗୋହିରି ଟପି, ଗାଁ ମଶାଣି 'ଭୁରୁଭୁରୁଆ କୁଦ'; କେନ୍ଦାଳ ହାଟକୁ ପଛରେ ପକାଇ ତିନିତିଅର ମାଛଗାଁ କେନାଲର ବନ୍ଧ ଉପରେ ଆସି ମୁଁ ପହଞ୍ଚି ଯାଇଛି ସେ କଥା ମୋତେ ମାଲୁମ ନ ଥିଲା । ସକାଳ ୯ଟା ବେଳ ହେବ । ତିନିତିଅର ଠାରେ ହାତଟଣା ବୋଟ୍‌କୁ ଅପେକ୍ଷା କରିବାକୁ ହେଲା । ସେତେବେଳେ ଜଗତସିଂହପୁର ଠାରୁ ମାଛଗାଁ କେନାଲ ଭିତର ଦେଇ କଟକର ନୂଆବଜାର ପର୍ଯ୍ୟନ୍ତ ହାତଟଣା ବୋଟ ଯିବା ଆସିବା କରୁଥିଲା । ଅବଶେଷରେ ତିନିତିଅର ଠାରେ ଆସି ବୋଟ୍ କୂଳରେ ଲାଗିଲା । ଆରମ୍ଭ ହେଲା ଆମର ଯାତ୍ରା । ଦିନ ତମାମ୍ କଟିଲା ସେହି ବୋଟ୍ ଭିତରେ । ବାଟରେ କଇଜଙ୍ଗା ଠାରେ ବାପା କିଛି ଦହି ଛେନା କିଣି ମୋତେ ଖାଇବାକୁ ଦେଇଥିଲେ, ଅଥଚ ନିଜେ ଥିଲେ ଅନାହାରରେ । କାରଣ, ନଡ଼ିଆ ବିକି କରି ଯେଉଁ ପଇସା ମିଳିଥିଲା, ସେଥିରୁ ମା' ହାତରେ ତ କିଛି ଦେଇ ଆସିଥିଲେ, ଯାହା ବା ଅଳ୍ପ କିଛି ଥିଲା, କଟକରେ ପହଞ୍ଚି ଗୋଟିଏ ରାତି ଚଳିବା ପାଇଁ ସେତିକ ଗଚ୍ଛିତ ରଖିଥିଲେ ପାଖରେ ।

ଏକ ଅତିକାୟ ରାଜହଂସ ପରି ବିପରୀତ ସ୍ରୋତ କାଟି ଦୋହଲି ଦୋହଲି ବୋଟ୍‌ଟି ମୁହଁ ସଞ୍ଜବେଳକୁ କଟକର ପ୍ରବେଶପଥ ନୂଆବଜାରରେ କୂଳରେ

ଲାଗିଲା । ବୋଟ୍‌ରୁ ଓହ୍ଲାଇ କେନାଲ ବନ୍ଧ ଉପରେ ଆସି ବାପା ଓ ମୁଁ ଯେତେବେଳେ ଠିଆ ହେଲୁଁ ସେତେବେଳେ ମୋର ମନେ ହେଉଥିଲା ମୋ ଦେହରେ ଯେପରି ଜୀବନ ନାହିଁ । ମାନସିକ ଏବଂ ଦୈହିକ କ୍ଳାନ୍ତି ମୋତେ ଆଚ୍ଛନ୍ନ କରିଥିଲା ପୂର୍ଣ୍ଣମାତ୍ରାରେ । ବେଶ୍ ଅନ୍ଧକାର ହୋଇ ଯାଇଥିଲା । ବାପା ସଙ୍ଗେ ସଙ୍ଗେ ରାତିକୁ ଦୁଇ ପଇସା ଭଡ଼ାରେ କେନାଲ ବନ୍ଧ କଡ଼ରେ ଥିବା ଏକ ଷ୍ଟୋଟ ଗୃହ ଘରଟିଏ ନେଲେ । ମୋତେ ଗୋଟିଏ କଦଳୀ କିଣି ଦେଇ ରାତ୍ରି ଭୋଜନର ବ୍ୟବସ୍ଥାରେ ଲାଗିଗଲେ । କିଛି ସମୟ ପରେ ମୁଁ କାଦୁଆ ଜାତରେ ଅଚେତ ହୋଇପଡ଼ିଲି । ବାପା ଯେତେବେଳେ ମୋତେ ଖାଇବାକୁ ଡାକିଲେ ସେତେବେଳକୁ ବହୁତ ରାତି । ସ୍ପଷ୍ଟ ମନେ ଅଛି, ମୋ ସାମ୍ନାରେ ଦୁଇଟି ଖଲି ପତ୍ରରେ ବଢ଼ା ହୋଇଥିଲା ଭାତ । ତରକାରୀ ବୋଇଲେ ଆଳୁଭର୍ତ୍ତା କେବଳ ।

ସେଇ ସ୍ମରଣୀୟ ଦିନଟି ହେଲା ମୋର ଏବର ଏବଂ ସେତେବେଳର ଭବିଷ୍ୟତ କର୍ମଭୂମି କଟକ ସହର ବୁକୁରେ ପାଦ ଦେବାର ପ୍ରଥମ ସ୍ମାରକୀ ।

ତାପରେ ଆମର ଅସ୍ଥାୟୀ ସ୍ଥଳ ହୋଇଥିଲା କଟକରେ ଦୋଳମୁଣ୍ଡାଇ ବା ଲଛମନଆବାଗ ।

ଦିନ ବିତିବାକୁ ଆରମ୍ଭ କଲା ବୈଚିତ୍ର୍ୟହୀନ ଭାବରେ ।

ମୋତେ ସାଙ୍ଗରେ ଧରି ବାପା ପ୍ରବେଶ କରିବାକୁ ଆରମ୍ଭ କଲେ ତତ୍‌କାଳୀନ ଶିକ୍ଷିତ ବୁଦ୍ଧିଜୀବୀ ମହଲରେ । ଅଧ୍ୟାପକ, ଓକିଲ, ରାଜନୈତିକ ନେତାମାନଙ୍କ ସହିତ ଏକାତ୍ମ ହେବାର ଅବକାଶ ମୋତେ ସେହିଦିନ ଠାରୁ ମିଳିବାକୁ ଆରମ୍ଭ କଲା । ସେତେବେଳେ ଯେଉଁମାନେ ମୋର ମାନସଲୋକରେ ପ୍ରଭାବ ପକାଇ ଥିଲେ, ସେମାନେ ହେଲେ ତତ୍‌କାଳୀନ ବିଶିଷ୍ଟ ଆଇନଜୀବୀ ସତ୍ୟନାରାୟଣ ସେନ୍‌ଗୁପ୍ତ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ମୁକ୍ତାର ରାଖାଲ ଚନ୍ଦ୍ର ରାୟ, ଅଧ୍ୟାପକ ରତ୍ନାକର ପତି, ଆଡ଼ଭୋକେଟ୍ ଶ୍ରୀ ଗିରିଜା ଶଙ୍କର ବହିଦାର, ଜାତୀୟ କବି ବୀରକିଶୋର ଦାସ ପ୍ରମୁଖ । ଏମାନଙ୍କ ସହିତ ବାପାଙ୍କର ଘନିଷ୍ଠ ସମ୍ପର୍କ ଥିଲା ବହୁ ଆଗରୁ । ସେତେବେଳେ ବାପା ଯେଉଁ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ-ସଙ୍ଗୀତମାନ ରଚନା କରିଥିଲେ ତାର ଦୁଇଟି ସଂକଳନ

" ଚଷାପୁଅ " ଓ " ଗ୍ରାମରାଜ୍ୟକୁ "କୁ କଟକ ଜିଲ୍ଲା କଂଗ୍ରେସ କମିଟି ପ୍ରକାଶ କରିଥିଲେ । ମୁଁ ସେହି ସଙ୍ଗୀତ ଗୁଡ଼ିକୁ ଅତି ଚମତ୍କାର ଭାବରେ ଗାଇ ଜନାରଣ୍ୟର ଅଭ୍ୟନ୍ତରରେ ପ୍ରବେଶ କରି ଜାତୀୟତାବାଦର ଚେତନାକୁ ଆଗେଇ ନେବାରେ ସାହାଯ୍ୟ କରୁଥିଲି । କଟକ ସହରର ଶଂକରପୁର, ଶିଖରପୁର, ସମାଧି ପାଟଣା, ଜୋବ୍ରା, ହରିପୁର, ବିଦ୍ୟାଧରପୁର ପ୍ରଭୃତି ଗ୍ରାମର ବାସିନ୍ଦା, ଶ୍ରମଜୀବୀ ଜନସାଧାରଣ, ପରିବା ବିକାଳୀ, ଶଗଡ଼ ଚାଳକ ଏବଂ ଘରର ବୋହୂ ଓ ବୃଦ୍ଧାମାନଙ୍କ ମେଳରେ ମୁଁ ହୋଇ ଉଠିଥିଲି ଆଦରଣୀୟ । ଆଜି ମଧ୍ୟ ସେତେବେଳେ ଏହି ପୁରୁଣା ଲୋକମାନେ ମଝିରେ ମଝିରେ ଦେଖାହେଲେ ମୋତେ ଚିହ୍ନିପାରି ପଚାରନ୍ତି : " ବାବୁ, ଚିହ୍ନି ପାରୁଛ ? କଂଗ୍ରେସ ଆନ୍ଦୋଳନ ବେଳେ କି କଷ୍ଟ ନ ସହିଚ ତମେ ଓ ତମ ବାପା ! ଅବକା କ'ଣ କରୁଛ ? ବାପା ମରିବା କେତେ ବର୍ଷ ହେଲା ?" ଇତ୍ୟାଦି ।



# ପଥେ ପଥେ

କଟକର ଦୋଳମୁଣ୍ଡାଇ ଛକରେ ଗୋଟିଏ କଡ଼କୁ ଲାଗି ଧରମୁ ସାହୁଙ୍କ ମୁଦି ଦୋକାନ । ଧରମୁ ସାହୁ ଖାନ୍‌ନଗର ଗାଁ'ର ଲୋକ । ଅତି କର୍ମଠ । ଦେହର ଗଠନ ବେଶ୍ ସୁସ୍ଥ, ସବଳ, ମୁଣ୍ଡ ଲଣ୍ଡା । ରାତି ଥାଉଣୁ ନିଦରୁ ଉଠି ସୂର୍ଯ୍ୟ ଉଦୟ ବେଳକୁ ନିତ୍ୟକର୍ମ ସାରି ଦୋକାନ ଖୋଲି ବସି ଯାଆନ୍ତି । ଧରମୁ ସାହୁ ଓ ତାଙ୍କ ସ୍ତ୍ରୀ ଉଭୟେ ଭାରି ମେଳାପି, ଦୁହିଁଙ୍କର ଆପୁନଣା । ବଡ଼ ପୁଅ ଲକ୍ଷ୍ମଣ, ମଝିଆଁ ପୁଅ ଝରିଆ ଓ ସାନ ପୁଅ ରବି । ତିନିଅଟିର ନାଁ ହେଲା ଶୋଭା । ବଡ଼ପୁଅ ଲକ୍ଷ୍ମଣ ଥିଲା ମୋର ଖେଳ ସାଥୀ, ଝରିଆ ମଧ୍ୟ । ଧରମୁ ସାହୁ ଓ ତାଙ୍କ ସ୍ତ୍ରୀ ଆଜି ଇହଧାମରେ ନାହାନ୍ତି । ତାଙ୍କର ପୁଅମାନଙ୍କ ଭିତରୁ ରବି ଏବେ ରାସ୍ତା କଡ଼ରେ ମାଛ ବିକେ । ଝରିଆର ମୁଦି ଦୋକାନ—ଲକ୍ଷ୍ମଣର ମଧ୍ୟ । ଏବେ ରାସ୍ତା ଘାଟରେ ସେମାନଙ୍କ ସହିତ ଦେଖା ହେଲେ ସେମାନେ ଦଣ୍ଡେ ରହିଯାଇ କୋଟିନିଧି ପାଇଲା ପରି ହସି ହସି ମୋର ଭଲମନ୍ଦ ପଚାରନ୍ତି ଆଉ ରୋମନ୍ଥନ କରନ୍ତି ଅତୀତରେ ସେହି ଦିନ ଗୁଡ଼ିକର କାହାଣୀକୁ । ମୁଁ ମଧ୍ୟ ସେମାନଙ୍କୁ ଦେଖିଲେ ଫେରିଯାଏ ବହୁ ସୁଦୂର ଅତୀତକୁ । ଏମାନଙ୍କ ବ୍ୟତୀତ ସେତେବେଳେ ସେଠାକାର ଯେଉଁସବୁ ଚରିତ୍ରର ମଣିଷମାନଙ୍କୁ ମୁଁ ମୋର ଚଲାପଥରେ, ଦୈନନ୍ଦିନ ଜୀବନରେ ଭେଟିଥିଲି ସେମାନେ ଅତି ସାଧାରଣ ଅଖ୍ୟାତ ଏବଂ କୁଖ୍ୟାତ ମଣିଷ—ଇତିହାସ ସେହିମାନଙ୍କୁ ମନେ ରଖିବାର କୌଣସି କାରଣ ମଧ୍ୟ ନାହିଁ । କିନ୍ତୁ ମୋ ଜୀବନର ଇତିହାସରେ ସେମାନେ ସ୍ମରଣୀୟ, ପୂଜ୍ୟ, ସେମାନଙ୍କୁ କୌଣସି-ମତେ ଭୁଲିଯିବା ମୋ ପକ୍ଷରେ ସମ୍ଭବ ନୁହେଁ ।

---

## ଦାନ୍ତଭଙ୍ଗା ବାବାଜୀ ସାଗର ଦାସ

---

ଅଣଓସାରିଆ, ହିନ୍ଦୀଭାଷୀ, ଗୈରିକ ବସନ ପରିହିତ ଏହି ମଣିଷଟି ମହାନ୍ । କେବେ କାହିଁକି, କେଉଁଥି ପାଇଁ, କେଉଁଠୁ ସେ ଆସି ଦୋଳମୁଣ୍ଡାଇ ଛକର ରାସ୍ତାକଡ଼ରେ ବଖରାଏ ଚାଳଘରେ ପହଞ୍ଚି ଥିଲେ । ଦେହର ଗଠନ ଖୁବ୍ ବଳିଷ୍ଠ । ଶ୍ୟାମଳ ବର୍ଣ୍ଣ । ମୁଖ-ମଣ୍ଡଳରେ ପକ୍ୱ ନିଘଞ୍ଚ ଶୁଭ୍ର ରାଜି, ଆଖି ଦୁଇଟି ଗ୍ଲେଟ ଗ୍ଲେଟ । ବୟସ

ପରୁଣ, ପଞ୍ଚବନ ହେବ । ବାବା ସାଗର ଦାସ 'ଦାନ୍ତଭଙ୍ଗା ବାବାଜୀ' ବୋଲି ସେତେବେଳେ ସର୍ବଜନ ପରିଚିତ ଥିଲେ । ବାପା ଓ ମୁଁ ଯେତେବେଳେ ଯାଇ ଦୋଲମୁଣ୍ଡେଇ ଛକରେ ଗୋଟିଏ ଚାଳଘର ଭଡ଼ା ନେଇ ଆସ୍ଥାନ ଜମାଉଁ, " ଦାନ୍ତଭଙ୍ଗା ବାବାଜୀ " ବାବା ସାଗର ଦାସ ଆମ ଘରଠୁ କେତୋଟି ବଖରା ଛାଡ଼ି ଗୋଟିଏ ଘରେ ରହୁଥାନ୍ତି । ତାଙ୍କ ସହିତ ମୋ ବାପାଙ୍କର ଥିଲା ଘନିଷ୍ଠ ସମ୍ପର୍କ । ବାବାଜୀ ମୋ ବାପାଙ୍କର ତ୍ୟାଗ, ତପସ୍ୟା, ଦେଶପ୍ରେମ ତଥା ବିପ୍ଳବୀ ଭୂମିକା ପ୍ରତି ସଚେତନ ମଧ୍ୟ ଥିଲେ । ଆମର ସେତେବେଳର ଦୁର୍ଗତି ଏବଂ ଘୋରତର ଦାରିଦ୍ର୍ୟରେ ସେ ଅତି ଦୁଃଖିତ ମଧ୍ୟ ହେଉଥିଲେ । ବାବାଜୀ ଖୁବ୍ ଭଲ ପାଉଥିଲେ ମୋତେ । ସେ ରାତି ୪ଟାରୁ ଉଠି ଗାଧାନ୍ତି । ଗାଧୋଇ ଯିବାବେଳେ ମୋତେ ଯାଇ ନିଦରୁ ଉଠାନ୍ତି । ଉଠାଇ ନିଜ ଘରକୁ ନେଇ ତେଲ ଲଗାଇ ଦିଅନ୍ତି । ପାଖରେ ଥିବା ଟିଉବ୍‌ୱେଲ ପାଖକୁ ଆଗେ ଯାଇ ମୋତେ ନିଜର ପେରୁଆ ଗାମୁଛାରେ ଘସିଘାସି ଗାଧୋଇ ଦିଅନ୍ତି । ତାପରେ ସେ ଘରକୁ ଆସି ୧୦/୧୫ ମିନିଟ୍ ପୂଜାପାଠ କରନ୍ତି । ତା'ର ଭିତରେ ମୁଁ ପ୍ୟାଣ୍ଟ ପିନ୍ଧି ଚାଲିଆସେ । ପୂଜାପାଠ ପରେ ବାବାଜୀ ଧୁନି ଲଗାନ୍ତି । ଧୁନି ଜଳିଲେ ତା ଉପରେ ନିଜର ଏକ ପିତଳ କମଣ୍ଡଳୁରେ ଦୁଧ ଗରମ କରନ୍ତି ଓ ଅଟା ଚକଟି ୭/୮ ଖଣ୍ଡ ମୋଟା ରୁଟି ସେକନ୍ତି । ରୁଟି ସେକା ସରିଲେ ଠିକେ ଆଳୁର ସହ ସେ ରୁଟି ଖାଆନ୍ତି । ମୋତେ ପାଖରେ ବସାଇ ୨ ଖଣ୍ଡ ରୁଟି ଗୋଟିଏ କାଗଜରେ ଦିଅନ୍ତି । ମୁଁ ବି ସେଠି ବସି ସେତକ ଖାଏ । ଗରମ ଦୁଧତକରୁ କିଛି ମୋତେ ଦେଇ ଦେଇ ସେ ସବୁତକ ପିଇ ଦିଅନ୍ତି । ତାଙ୍କ ନିଶ ଓ ଦାଢ଼ିରେ ଦୁଧ କିଛି ଲାଗିଯାଏ । ମୁଁ ସେ ଦୃଶ୍ୟ ଦେଖି ମୁରୁକେଇ ହସେ । ସେ ତାହା ବୁଝି ପାରନ୍ତି ଓ ସ୍ନେହଭରା ସ୍ୱରରେ କହନ୍ତି " ତୁମ୍ ବଦମାସ୍ ହୋ " । ଖିଆପିଆ ପର୍ବ ସରେ—ବାବାଜୀ ଗୋଟାଏ ଖଲରେ କିଛି ଧଳା ଧଳା ପଦାର୍ଥକୁ ପାଳିସ କରିବା ଆରମ୍ଭ କରନ୍ତି । ପ୍ରାୟ ଅଧଘଣ୍ଟାଏ ଖଣ୍ଡେ ପାଳିସ କାମ ଚାଲେ । ପାଳିସ ସରିଲେ ସେଥିରେ ସେ କିଛି ଔଷଧ ମିଶାଇ ତାକୁ କେତେଗୁଡ଼ିଏ ଶିଶିରେ ପୂରାଇ, ତାର ମୁହଁ ବନ୍ଦ କରି ତହିଁରେ ଲେବୁଲ ମାରନ୍ତି । ସେଗୁଡ଼ିକ ହେଲା ଦାନ୍ତଘଷା ପାଉଡର । ଦିନ ୧୦ଟା ବେଳେ ବାବାଜୀ ଏକ ହାତଟଣା ରିକ୍‌ସାରେ କଟକ କଲେକ୍‌ଟରି-ଏଟ୍ ହତାକୁ ଯାଇ ସେଠାରେ ରାସ୍ତା କଡ଼ରେ ଗୋଟିଏ ଗଛମୂଳେ ବସି ନିଜଦ୍ୱାରା ପ୍ରସ୍ତୁତ ଏହି ଦାନ୍ତଘଷା ପାଉଡର ଗୁଡ଼ିକ ବିକ୍ରି କରନ୍ତି । ତା ସହିତ ଦାନ୍ତ ଉପାଡ଼ିବା, ଦାନ୍ତର ନାନା ଚିକିତ୍ସା ମଧ୍ୟ କରନ୍ତି ସେଠି ବସି । ଦାନ୍ତ

ଉପାନ୍ତବାଟରେ ସେ ଏପରି ସିଦ୍ଧହସ୍ତ ଯେ, କଟକ ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ଲୋକେ ତାଙ୍କ ପାଖକୁ ଆସନ୍ତି । ଦିନୁ ଦିନ ତାଙ୍କର ଖ୍ୟାତି ବଢେ । ତାଙ୍କ ନିଜ ଦ୍ୱାରା ତିଆରି ଦାନ୍ତଘଷା ପାଉଡର ପ୍ରସ୍ତୁତ, ପ୍ରସାର ଅଧିକରୁ ଅଧିକ ହୁଏ । ବାବା ସାଗର ଦାସ ନାହାରକୁ କେବେ କୌଣସି ଅବସ୍ଥାରେ ତାଙ୍କ ଦାନ୍ତଘଷା ପାଉଡର ମାଗଣା ଦିଅନ୍ତି ନାହିଁ । ସେ ଜୀବିତ ଥିବା ଯାଏ ଏହି ଦାନ୍ତ ଚିକିତ୍ସାକୁ ଜୀବନର ଏକ ପବିତ୍ର କର୍ମ ବୋଲି ଧରି ନେଇଥିଲେ । ବାବାଜୀ ଥିଲେ ଶିଶୁବତ୍ସଳ । ଶିଶୁମାନଙ୍କର କଲ୍ୟାଣ, ସେମାନଙ୍କ ଜୀବନ ଗଠନ ଉପରେ ସର୍ବଦା ସେ ଗୁରୁତ୍ୱ ଆରୋପ କରୁଥିଲେ । ଦାନ୍ତଘଷା ପାଉଡର ଓ ଦାନ୍ତ-ଚିକିତ୍ସା ବ୍ୟବସାୟରୁ ସେ ଯାହା ଅର୍ଥ ଉପାର୍ଜନ କରିଥିଲେ ସେତକ ସେ ସ୍ଥାନୀୟ ଏକ କମିଟି ହାତରେ ଦେଇ ଯାଇଥିଲେ ଏବଂ ଇଚ୍ଛା ପ୍ରକାଶ କରିଥିଲେ ଯେ, ତାଙ୍କର ସେହି ଅର୍ଥ ତାଙ୍କ ଅନ୍ତେ ଏକ ସ୍କୁଲ ପ୍ରତିଷ୍ଠା ଦିଗରେ ବ୍ୟୟିତ ହେବ । ତାଙ୍କର ସେ ସ୍ୱପ୍ନ ସଫଳ ହୋଇଥିଲା । ଆଜି କଟକରେ ଦୋଳମୁଣ୍ଡାଇ ଛକର ଗୋଟିଏ କଡ଼ରେ ମୁଣ୍ଡ ଟେକିଥିବା "ବାବା ସାଗର ଦାସ ବିଦ୍ୟାପୀଠ" ହେଉଛି ତାଙ୍କ ସ୍ୱପ୍ନର ବାସ୍ତବ ସ୍ମାରକୀ । ଏହି ସ୍ୱର୍ଗତ ସାଧୁ ପ୍ରକୃତିର ମଣିଷଟି ନିଜ ଚରିତ୍ରବଳର ପ୍ରଚଣ୍ଡ ପ୍ରଭାବ ମୋର ବାଲ୍ୟ ଜୀବନ ଉପରେ ପକାଇଥିଲେ କହିବା ବାହୁଲ୍ୟ । ସେ ଅନାହୂତଙ୍କ ପରି ଆସିଥିଲେ । ଶେଷ ଗୃହ ଗୃହିବା ବେଳେ ବହୁ ଲୋକଙ୍କ ମନରେ ରଖି ଯାଇଥିଲେ ତାଙ୍କ ସାଧୁତାର ଅମଳିନ ଛାପ ।

## ବାବାଜୀ ରାମ ଦାସ :

ଶୀର୍ଣ୍ଣକାୟ, ଦାର୍ଘାଙ୍ଗ, ଗମ୍ଭୀର ତଥା ହ୍ରାସଭାଷୀ ଏହି ସାଧୁ ସେତେବେଳେ ରହୁଥିଲେ ଦୋଳମୁଣ୍ଡାଇ ଛକ ପାଖରେ ଥିବା ନଡ଼ା ଛାଆଣି ବଖରାଏ ଭଡା ଘରେ । ମାତାଜୀ ଥିଲେ ଖର୍ବାକୃତି କୃଷ୍ଣାଙ୍ଗୀ ଜଣେ ବଙ୍ଗୀୟା ମହିଳା । ବାବାଜୀ-ମାତାଜୀ ଦୁହେଁ ଅତ୍ୟନ୍ତ ମିଷ୍ଟଭାଷୀ, ନମ୍ର, ଆଉ ଅସମ୍ଭବ ତଥା ବସ୍ତୁସ୍ପୃକର ଭାବରେ ପରିଷ୍କାର ପରିଚ୍ଛନ୍ନ । ବାବାଜୀ ଶିବ ଭକ୍ତ । ଶିବଙ୍କ ପୂଜା ନ ସରିଲେ ବାବା-ମାତା କେହି ଜଳସ୍ପର୍ଶ କରନ୍ତି ନାହିଁ । ତାଙ୍କର ସେ ଘର ବଖରାକ ଭିତରେ ପଶିଗଲେ ନିଜକୁ ନିଜେ କାଣେ ଅପରିଷ୍କାର ବୋଲି ମନେ-କରିବ । ଘର ଭିତରୁ ଚମତ୍କାର ଏକ ଧର୍ମୀୟ ଧୂପ, ଧାପର ଗନ୍ଧ ପ୍ରାଣରେ ଭରିଦିଏ ଅପୂର୍ବ ମାଦକତା । ବାବା-ମାତା ଭିକ୍ଷାନ୍ନରେ ଚଳନ୍ତି । ମାତା

ଭାରି ଅଭିମାନୀ । ଟିକେ କେହି ଟାଣ କରି ପଦେ କଥା କହିଦେଲେ ତାଙ୍କ ଆଖି ପଲ୍ଲବ ଲୁହ ଛଳ ଛଳ ହୋଇଉଠେ । ପ୍ରତିଦିନ ବାବା-ମାତା ଦୁହେଁ ଦୁଇ ଘଣ୍ଟା ଏକାଠି ଭିକ୍ଷା କରିବାକୁ ଯାଆନ୍ତି । ଯାହା ମିଳିଲା ସେମାନେ ତୃପ୍ତ । ମୁଁ ଏହି ଯେଉଁଦିନ ଦୋଳମୁଣ୍ଡାଇ ଛକରେ ପହଞ୍ଚେ ତା'ର ଆଠ-ଦଶ ଦିନ ପରେ ବାବାଜୀଙ୍କ ଅପେକ୍ଷା ମାତାଜୀ ମୋତେ ବେଶି ଭଲ ପାଉଥିଲେ । ପରେ ମୋର ଦ୍ୱି'ପହରର ଖାଇବାଟା ବାବାଜୀ ରାମ ଦାସଙ୍କ ପାଖରେ ହିଁ ହେଉଥିଲା । ଠାକୁରଙ୍କ ଭୋଗ ସରିଲେ ମାତାଜୀ ଦୋଳମୁଣ୍ଡାଇ ଛକର ଆର ପାଖରେ ମୋତେ ବୁଲି ବୁଲି ଖୋଜନ୍ତି, ମୋ ନାଁ ଧରି ଡାକନ୍ତି । ତାଙ୍କର ସେହି ଡାକ ଶୁଣି ମୁଁ ଚାଲି ପରି ଛୁଟି ଆସେ । ସେ ମୋ ହାତ ଧରି ଟାଣି ଟାଣି ନିଅନ୍ତି । ବାବାଜୀ ମୋତେ ଦେଖି ଦେଖି ପଚାରନ୍ତି, "କ୍ୟା ବେଟା, ଖାନା ଖାଏଗା ନେହିଁ ?" ମୁଁ ଅଳ୍ପ ହସି ଦେଇ ବାହାରେ ହାତ-ମୁହଁ ଧୋଇ ଭିତରକୁ ଯାଏ । ମାତାଜୀ ଡେନାଟି ଜାଗାରେ ଭାତ ବାଢନ୍ତି । ପ୍ରାୟ ସବୁଦିନେ ସରୁ ଅରୁଆ ଚାଉଳର ଭାତ, ଡାଲି ବଢ଼ିଲା, ପରିବାପତ୍ର ପଡ଼ି ଗୋଟାଏ ସନ୍ତୁଳା ହୋଇଥାଏ । ତାହା ମୋ ପାଖରେ ଥିଲା ଅମୃତ । ମାତାଜୀଙ୍କ ହାତର ରାନ୍ଧଣା ସତରେ ଅପୂର୍ବ । ସେ ରାନ୍ଧଣାର ସ୍ୱାଦ ମୁଁ ଜୀବନ ତମାମ ଭୁଲି ପାରିବି ନାହିଁ । ବାବାଜୀ ରାମ ଦାସ ତାଙ୍କର ସାଂଧ୍ୟ ନିତ୍ୟକର୍ମ ସାରିଲା ପରେ ମୋ ବାପାଙ୍କ ସହିତ ଅନେକ ସମୟ ଯାଏଁ କଥାବାର୍ତ୍ତା ହେବାର ମୁଁ ଦେଖିଛି । ବେଳେ ବେଳେ ମୋତେ ଏକୁଟିଆ ଏହି ରାମ ଦାସଙ୍କ ହେପାଜତରେ ଛାଡ଼ି ଦେଇ ବାପା ଦିନ ତମାମ ଅନୁପସ୍ଥିତ ରହନ୍ତି । ଏହାପରି ବର୍ଷାଧିକ କାଳ ବିତିଛି ।

## ବାବାଜୀ ଗୋପାଳ ଦାସ :

ଯାଙ୍କ ସହିତ ଭୁଲରେ କେବେ କଥା କହି ନାହିଁ ମୁଁ । ଏ ମହାଶୟ ଥିଲେ କାଳ । ଆଜି ଦୋଳମୁଣ୍ଡାଇ ଛକରେ ଯେଉଁ ଜଗନ୍ନାଥ ମନ୍ଦିରଟି ଅଛି ତାହା ସେତେବେଳେ ଏପରି ନ ଥିଲା । ତାହା ଥିଲା ଗ୍ରେଟ । ଗୋଟିଏ କଡକୁ ତା'ର ଥିଲା ଦୋଳମଣ୍ଡପ, ତା' ପାଖକୁ ଲାଗି ଗୋରୁଗାଈମାନଙ୍କର ଏକ ଜେଲ୍‌ଖାନା ଅର୍ଥାତ କାଞ୍ଜିଆହୁଦା । ତା' ପାଖକୁ ଲାଗି କେତୋଟି ଆମ୍ବଗଛ । ଆମ୍ବଗଛ ତଳେ ଏକ ଖୋଲା ପଡିଆ । ସେ ପଡ଼ିଆରେ ବଢ଼େଇମାନେ କାଠ

ଚରନ୍ତି । ବାବାଜୀ ଗୋପାଳ ଦାସ ଓଡ଼ିଆ କହିପାରନ୍ତି ନାହିଁ । ହିନ୍ଦୀ କହନ୍ତି । ସେ ରହନ୍ତି ସେଇ ଜଗନ୍ନାଥ ମନ୍ଦିରରେ । ଜଗନ୍ନାଥଙ୍କ ସେବା-ପୂଜାର ଦାୟିତ୍ୱ ତାଙ୍କର ଉପରେ । ବହୁତ ଗଞ୍ଜେଇ ଖାଆନ୍ତି । ବାବାଜୀ ଯୌବନରେ ବିବାହ କରିଥିଲେ । ଗୋଟିଏ ମାତ୍ର ପୁତ୍ର ସନ୍ତାନକୁ ପୃଥିବୀରେ ଛାଡ଼ିଦେଇ ତାଙ୍କ ସ୍ତ୍ରୀ ଇହଧାମ ତ୍ୟାଗ କରିଥିଲେ । ସେ ପୁତ୍ର ସନ୍ତାନଟିର ନାମ ଜଗନ୍ନାଥ ବା 'ଜଗ' । ଜଗ ଖାଣ୍ଟି ଓଡ଼ିଆ । ସେ ପିଲାଦିନ ଠାରୁ ମଣିଷ ହୋଇଥିଲା ଦୋଳମୁଣ୍ଡାଇ ଛକର ପରିବେଶରେ । ସେତେବେଳେ ସମ୍ପୃକ୍ତ ଅଞ୍ଚଳରେ ଯେଉଁମାନେ ନାମଜାଦା ଗୁଣ୍ଡା, ମଦ୍ୟପ ଥିଲେ ସେମାନେ ଜଗର ନାଁ ଶୁଣିଲେ ଥରଥର ହେଉଥିଲେ । ଜଗ ଦେହରେ ଥିଲା ଅମିତ ଶକ୍ତି । ଚଉଡ଼ା ଛାତି । ଲୁହାଖମ୍ବ ଭଳି ତା'ର ହାତ, ବାହୁରେ ବିରାଟ ବିରାଟ ପେଶୀ ଦୁଇଟା । କଣ୍ଠସ୍ୱର ଗମ୍ଭୀର । ଦିନକୁ ଭରିଏ ଗଞ୍ଜେଇ ଟାଣେ । ଠିଆ ଠିଆ ବୋତଲ ବୋତଲ ମଦ ସେ ପାଣି ଭଳି ପିଇଯାଏ । ଯୌନ ବ୍ୟଭିଚାର ଠାରୁ ଆରମ୍ଭ କରି କଥା କଥାକେ ମାରଧର, ଗୁଣ୍ଡାମୀ କରିବା ଥିଲା ତାର ନିତ୍ୟକର୍ମ । ବାବାଜୀ ଗୋପାଳ ଦାସଙ୍କୁ ବି ସେ ମଝିରେ ମଝିରେ ମାରେ । ବୃଦ୍ଧ ବାପର ତା'ର ସେହି ଜନକଟି ମାରିବାରେ ଆଖିରୁ ଲୁହ ଗଡ଼ାଇ କାନ୍ଦନ୍ତି, ଅଭିଶାପ ଦିଅନ୍ତି । ସେସବୁକୁ ଭ୍ରୂକ୍ଷେପ ନ କରି ଜଗ ତାର ଶଇତାନୀ କାର୍ଯ୍ୟକଳାପକୁ ଅବ୍ୟାହତ ରଖେ । ଜଗ ଏପରି ଦୈହିକ ଶକ୍ତିର ଅଧିକାରୀ ଯେ, ଗୋଟାଏ ଷଣ୍ଢକୁ ଶୂନ୍ୟେ ଶୂନ୍ୟେ ଟେକି ସେ ଅନାୟାସରେ ଫିଙ୍ଗି ଦେଇ ପାରେ । ଏହି ନରଦାନବଟି ସେତେବେଳେ ମୋତେ ଦେଖିବା ମାତ୍ରେ ଅଶ୍ଳୀଳ ଭାଷାରେ ସମ୍ବୋଧନ କରୁଥିଲା ଓ ସୁଯୋଗ ପାଇଲେ ମୋ ହାତକୁ ମୋଡ଼ି ଭାଙ୍ଗି ଦେବାର ଉପକ୍ରମ କରୁଥିଲା । ମୋ ପ୍ରତି ତା'ର ଏହି ନିଷ୍ଠୁର ବ୍ୟବହାର ବିରୁଦ୍ଧରେ କେହି ପ୍ରତିବାଦ କରୁ ନଥିଲେ— କରିବାର ସାହସ ମଧ୍ୟ କାହାରି ନଥିଲା । ହଠାତ୍ ଦିନେ ଜଗର ମୃତ୍ୟୁ ଘଟିଲା ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇ ।

## ରାଧା

ମୁଁ ସବୁଦିନେ ତାକୁ ଦେଖେ । ମୋତେ ଦେଖିବା ମାତ୍ରେ ସେ ସ୍ଥିର ଦୃଷ୍ଟିରେ ଅନାଏ । କିଛି କହେନା । କିନ୍ତୁ ସେ ବାବାଜୀ ରାମଦାସଙ୍କ ମାତା ସହିତ ଏକୁଟିଆ ବସି ଗପ କରିବାର ମୁଁ ଦେଖିଛି । ହୁଏତ ମାତାଜୀ

ମୋ ସମ୍ପର୍କରେ ତାଙ୍କୁ କିଛି କହିପାରିଥାନ୍ତି । ଦିନ ବିତି ଯାଉଥାଏ ବୈଚିତ୍ର୍ୟହୀନ ଭାବରେ । ବାପାଙ୍କର ଆର୍ଥିକ ଅବସ୍ଥା ଅଧିକରୁ ଅଧିକ ଖରାପ ଆଡ଼କୁ ଗତି କରୁଥାଏ । ଅନେକ ସମୟରେ ସେ ଉପବାସ ମଧ୍ୟ ରହିଯାନ୍ତି । ଦିନକର ଘଟଣା । ବାପା ସେଦିନ ସକାଳ ୧୦ଟା ବେଳେ ମୋତେ ସାଙ୍ଗରେ ନେଇ ଏକୁଟିଆ କୁଆଡ଼େ ବାହାରିଗଲେ । ଚଞ୍ଚଳ ଫେରିବେ ବୋଲି କହିଗଲେ ମୋତେ । ଦିନ ଯାଇ ସଞ୍ଜହେଲା, ତେବେବି ତାଙ୍କର ଦେଖାଦର୍ଶନ ନଥାଏ । ମୁଁ ବଡ଼ ବ୍ୟସ୍ତ ହୋଇ ପଡ଼ିଲି । ଦୋଳମଣ୍ଡାଇ ଛକରେ ଆରମ୍ଭ ହୋଇଗଲା ସନ୍ଧ୍ୟାଦିନ ପରି ମଦ୍ୟପମାନଙ୍କର ଉତ୍ପାତ । ରାମଦାସଙ୍କ ପୂଜାପାଠ ସରିଲା, ମୁଁ ଆସିଲି ରାସ୍ତା ଉପରକୁ—"ବାପା ଏତେବେଳ ଯାଏଁ ଗଲେ କୁଆଡ଼େ ?" ଉଦାସ ମନନେଇ ଧୀରେ ବଜ୍ରକବାଟି ଆଡ଼କୁ ଲମ୍ବି ଯାଇଥିବା ଗେରୁଆ ସଡ଼କ କଡ଼େ କଡ଼େ କିଛିଦୂର ଆଗେଇଲି । ପାଖ ମୁଦି ଦୋକାନରେ ଗ୍ରାହକ-ମାନଙ୍କର ଭିଡ଼ ବେଶ୍ ଜମି ଉଠିଥିଲା । ହଠାତ୍ ପଛରୁ କାହାର ଏକ ବଳିଷ୍ଠ ହାତ ମୋତେ ଭିଡ଼ି ଧରିଲା । ଚମକି ପଡ଼ି ଚାହିଁ ଦେଖିଲି ଜଗ । ମନରେ ଭରିଗଲା ଆତଙ୍କ । ଆଉ କିଛି ଭାବିବା ଆଗରୁ ଗୋଟାଏ ଦୋଅଣି ମୋ ହାତଚକରେ ଗୁଞ୍ଜିଦେଇ ଜଗ ନିର୍ଦ୍ଦେଶ ଦେଲା ପାଖ ଗଞ୍ଜେଇ ଦୋକାନରୁ ଦୁ'ଅଣାର ଗଞ୍ଜେଇ ଆଣିବାକୁ । ପିଲାଦିନେ ମୁଁ ଥିଲି ଏକଜିଦିଆ, ଗମ୍ଭୀର । ପରିଣତି ଯାହା ହେଉନା କାହିଁକି, ମୁଁ ସାହସ ବାନ୍ଧି ଜଗକୁ କହିଲି, "ଦେଖ, ମୁଁ ସେ କାମ କରିପାରିବି ନାହିଁ ।"

"—ଅଲବତ କରିବୁ ।"

"—ନା ।"

"—ଆବେ, ଦେଖିବୁ ଅବକା ?"

ଏତିକ କହି ସେ ମୋ ଚଣ୍ଡିଟାକୁ ଚିପି ଧରି ଉପରକୁ ଟେକିଦେଇ ମୋତେ ରାସ୍ତା ଉପରେ କଚାଡ଼ି ଦେଲା । ମୁଁ ଚିତ୍କାର କରିବାରୁ ସେ ପୁଣି ଆସି ମୋତେ ଚିତ୍କରି ଶୁଆଇ ଦେଲା ରାସ୍ତା ମଝିରେ । ତା'ର ଡାହାଣ ଗୋଡ଼କୁ ମୋର ଦୁଇଗୋଡ଼ ଉପରେ ରଖି ବାଁ ଗୋଡ଼ଟାକୁ ରଖିଲା ବେକ ଉପରେ'ଓ ଧୀରେ ଧୀରେ

ଗୃପ ହେଲି । ଗୋଟାଏ ଘୋଡ଼ାଗାଡ଼ି ଆସୁଥିଲା ମୋ ପଛଆଡ଼ୁ । ମୋର ଏ ଅବସ୍ଥା ଦେଖି ସେ ଆସି ଠିଆହେଲା କିଛି ଦୂରରେ । ଧୀରେ ଧୀରେ ଲୋକ ଜମିଲେ ; କିନ୍ତୁ ସମସ୍ତେ ନୀରବ । ଜଗ କଥାରେ କିଏ କଥା କହିବ ? ଜଗ ସେଇମିତି ପୋଜିସନ୍‌ରେ ଥାଏ । ହଠାତ୍ ଲୋକ ଭିଡ଼ ଠେଲି ଶୁଣାଗଲା ଏକ ନାରୀକଣ୍ଠର ଚିତ୍କାର : "ତମେ ମଣିଷ ନା କ'ଣ ? ଏତିକି ବଚ୍ଚାଟେ ପିଲାକୁ ଛୁଆ, ତାକୁ ମାଡ଼ିବସି ରାସ୍ତାଟା ଉପରେ କ'ଣ ଏସବୁ କରୁଛ ? ଛାଡ଼ ତାକୁ ଛାଡ଼ ।" ଏ କଣ୍ଠସ୍ୱର ସହିତ ରାସ୍ତାର କେତେକ ଦେଖଣାହାରୀ ସ୍ୱର ମିଳାଇଲେ । ଜଗ ହଟିଲା । ମୋତେ ଟେକି ଉଠାଇ ନିଜ ଶାଢ଼ୀ କାନିରେ ଝାଡ଼ିଝୁଡ଼ି ଦେଇ କାଖେଇ ମହିଳାଟି ଗୃଲିଲା ତା' ନିଜ ଘରକୁ । ମରଣର ଆତଙ୍କରେ ଜୀବନକୁ ପ୍ରାଣପଣେ ଜାବୁଡ଼ି ଧରି ଏକ ରୁଦ୍ଧ ଶୋକରେ ତା'ର କାନ୍ଧ ଉପରେ ମୁହଁକୁ ଲୁଚାଇ ମୁଁ କାନ୍ଦି ଉଠୁଥାଏ ; କାନରେ ବାଜୁଥାଏ ମହିଳାଟିର ଜଗ ଉଦ୍ଦେଶ୍ୟରେ ଅଶ୍ରାବ୍ୟ ଗାଳିଗୁଲଜ । ରାତି ସେତେବେଳକୁ ଆଠଟା ଖଣ୍ଡେ ହେବ । ମହିଳାଟି ମୋତେ ନେଇ ତା'ର ଛୋଟଘର ବଖରାକ ଭିତରେ ପଡ଼ିଥିବା ଖଟ ଉପରେ ବସାଇଲା । ମନେ ଅଛି, ଗୋଟିଏ କପ୍‌ରେ କପେ ଗରମ ଦୁଧ ଆଣି ଠିକ୍ ମା ପରି ମୋତେ ଜବରଦସ୍ତ ପିଆଇଲା । ବାପା ସେଦିନ ଫେରିଲେ ରାତି ୧୦ଟା ବେଳକୁ । ଫେରି ରାମଦାସଙ୍କ ପାଖରେ ମୋତେ ଖୋଜିଲେ । ରାମଦାସ ମହିଳାଟିର ଘରୁ ମୋତେ ନେଇ ଆସିଲେ ବାପାଙ୍କ ପାଖକୁ । ସବୁଘଟଣା ଶୁଣି ଦୁଃଖ, କ୍ଷୋଭ ଏବଂ କ୍ରୋଧରେ ବାପା ଅସ୍ଥିର ହୋଇପଡ଼ି ଘଟି ଯାଇଥିବା ଘଟଣାର ଏକ ପ୍ରତିକାର କରିବାକୁ ରାମଦାସଙ୍କ ସହ ପରାମର୍ଶ କଲେ । ତହିଁ ଆରଦିନ ଆଖପାଖର କେତକ ବିଶିଷ୍ଟ ଲୋକଙ୍କର ଏକ ସଭା ଡକାହୋଇ ଘଟଣାର ବିଗୃର ଗୃଲିଲା । ଜଗ କିନ୍ତୁ ତା ଚରିତ୍ରରେ ଅଟଳ । ତେବେ ଏହି ସଭା ବସିବା ଦିନ ଠାରୁ ସେ ତା'ର ମୃତ୍ୟୁ ପର୍ଯ୍ୟନ୍ତ ମୋତେ ଆଉ ମୋଟେ ମାରଧର କରିନାହିଁ ।

ହିଂସ୍ର ବାଘ କବଳରୁ ତା'ର ଶିକାରକୁ ଝାମ୍ପି ଛଡ଼ାଇ ଆଣିଲା ପରି ଲୋକଗହଳି ଭିତରୁ ସେଦିନ ଜଗକୁ ଦୂରକୁ ଠେଲି ଦେଇ ଯେଉଁ ମହିଳା ଜଣକ ମୋତେ ଉଦ୍ଧାର କରି ତାର ପ୍ରଚଣ୍ଡ ମାତୃତ୍ୱ ଦ୍ୱାରା ସିକ୍ତ କରିଥିଲା ସେଇ ହେଲା ରାଧା । ରାମଦାସ ବାବାଜୀ ଯେଉଁ ଘରେ ରହନ୍ତି, ସେଇ ଧାଡ଼ିରେ ଗୋଟିଏ ବଖରାରେ ଥାଏ ରାଧା । ଦୋଳମୁଣ୍ଡେଇ ଛକରେ ରହିବା

ଦିନଗୁଡ଼ିକରେ ଯେଉଁ ମଣିଷଟିମାନେ ମୋର ସ୍ମରଣୀୟ ହୋଇ ରହିଛନ୍ତି ସେମାନଙ୍କ ମଧ୍ୟରୁ ଅଧିକ ସ୍ମରଣୀୟ ହେଲି ଏଇ ରାଧା । ତା'ଠାରୁ ମୁଁ ପାଇଥିଲି ମା'ର ମମତା, ଭଉଣୀର ଆଦର । ମୋର ସେତେବେଳର ଅନାଦୃତ ତଥା ଅବହେଳିତ ବାଲ୍ୟକାଳ ଏହି ରାଧାର ସ୍ନେହ ଶ୍ରଦ୍ଧାରେ ବହୁଦିନ ଯାଏଁ ଭରପୂର ହୋଇ ରହିଥିଲା । ରାଧା—ତା'ର ପରିଚୟ ପାଇଲେ ସମାଜର ରାଜଦରବାର ଆଜି ନାସିକା କୁଞ୍ଚନ କରିବ, ପୁରବାଳାକୁଳ, ଗୃହବଧୂ, ସଭ୍ରାନ୍ତ ବଂଶଜ ଭଦ୍ରବାବୁମାନେ ହୁଏତ ତା'ର ଜୀବନକୁ ନରକର କୀଟ ସହିତ ତୁଳନା କରିବସିବେ । ମୋ ପ୍ରତି ତା'ର ସ୍ନେହଶ୍ରଦ୍ଧା ଓ ମାତୃସୁଲଭ ବ୍ୟବହାର ଯୋଗୁଁ ମୁଁ ହୁଏତ ଆଜି ନିନ୍ଦିତ ହେବି । କିନ୍ତୁ ସବୁ ସତ୍ତ୍ୱେ ରାଧା ଥିଲି ମାନବତାର ଏକ ଅପୂର୍ବ ମର୍ତ୍ତ୍ୟମଣି ମହୀୟସୀ ମହିଳା । ରାଧା—ସେ ଥିଲି ଗଣିକା, ବେଶ୍ୟା, ବାରାଙ୍ଗନା, କୁଳଟା, ରୂପଜୀବା, ଯିଏକି ଦୋଳମୁଣ୍ଡାଇଛକର ପଥ-ପ୍ରାନ୍ତରେ ଏକ ନୁଆଣିଆ ନଡ଼ାଛପର ଘରେ ସନ୍ଧ୍ୟାରୁ ଭୋର୍ ପର୍ଯ୍ୟନ୍ତ ଦୁନିଆରେ ନିଜର ଅସ୍ତିତ୍ୱକୁ ବଜାୟ ରଖିବା ପାଇଁ ନିଜ କଞ୍ଚା ମାଂସର ବ୍ୟବସାୟ କରୁଥିଲି । ବ୍ରାହ୍ମଣ ଘରର ଝିଅ ରାଧା । ସୁନ୍ଦରୀ, ସୁଗୋଲ ମୁଖମଣ୍ଡଳର ବାମ ନୟନର ଠିକ୍ ତଳକୁ ଏକ ସୌନ୍ଦର୍ଯ୍ୟର ଦାଗ ବା 'ବଉଟି ସ୍ପଟ' ପରି ଏକ କଳାଜାଇ । ଦେହରେ ଚମ୍ପାଫୁଲର ରଙ୍ଗ, ମୁଣ୍ଡରେ ଘନକେଶର ଗୁଚ୍ଛ, ଗୁରୁ ନିତମ୍ବିନୀ ଆଉ ସ୍ୱାସ୍ଥ୍ୟବତୀ । କେଉଁ ଘଟଣାର ଦୁରନ୍ତ ଏକ ଝଡ଼ ତାକୁ ଆଣି ଫିଙ୍ଗି ଦେଇଥିଲା ସେଠି, ତାହା ଆଜି ବି ମୋତେ ଅଜଣା । ହଁ, ରାଧା ନିଜର ବେଉସା କରେ, ଠିକ୍ ଅନ୍ୟ ଦୋକାନଦାରମାନଙ୍କ ପରି । ଅନ୍ୟାନ୍ୟ ଦୋକାନଦାରମାନେ ସକାଳୁ ରାତି ୧୨ଟା ଯାଏ ଦୋକାନ ଖୋଲି ନିଜର ବେପାର କରନ୍ତି କିନ୍ତୁ ରାଧାର ଦୋକାନ ଦିନରେ ମୋଟେ ଖୋଲେନା । କଟକ ସହର ବୁକୁରେ ଯେତେବେଳେ ସନ୍ଧ୍ୟାର ପତଳା ପରଦା ନଇଁଆସେ, ରାସ୍ତାକଡ଼ର ମ୍ୟୁନିସିପାଲିଟି ବତୀଖୁଣ୍ଟମାନଙ୍କରେ ଯେତେବେଳେ ଜଳିଉଠେ କିରୋସିନ ବତୀଗୁଡ଼ିକ, ବଜ୍ରକବାଟିର ସରଫ୍ ମିଆଁ ଦୋକାନରୁ ସରାପ୍ ପିଇ ଯେତେବେଳେ ମାତାଲ ଦଳ ଜମନ୍ତି ଦୋଳମୁଣ୍ଡାଇ ଛକରେ, ଠିକ୍ ସେତିକବେଳେ ରାଧା ତାର ଦୋକାନ ଖୋଲେ । ସେ ତା'ର ଦୋକାନ ଖୋଲିବା ଆଗରୁ ତା'ର କାଳ-କୃଷ୍ଣ କବରୀ ଶୋଭିତ ହୁଏ ତାଜା ରଜନୀଗନ୍ଧାର ପାଖୁଡ଼ାରେ, ମୁଖମଣ୍ଡଳ ଗୋଲାପି ରଙ୍ଗମିଶା ପାଉଡରର ପ୍ରଲେପରେ ଏକ ସଜ ପଦ୍ମ ପରି ପ୍ରତିଭାତ ହୁଏ, ଯୁଗଳ ପୀନ-ପୟୋଧର ଉପରେ ରକ୍ତ ବର୍ଣ୍ଣର ନିବିଡ଼ ସ୍ତନବନ୍ଧନୀ ଧଳାଶାଢୀ ତଳୁ ଉଙ୍କୁଟି ଉଠି ଆକର୍ଷଣ କରେ ଗ୍ରାହକ ନାଗରମାନଙ୍କୁ ।

ଅନ୍ୟାନ୍ୟ ଦୋକାନଦାରମାନେ ତାଙ୍କ ବ୍ୟବସାୟ ଆରମ୍ଭ କରିବା ଆଗରୁ କରଜ କରି ହେଉ ବା ପିତୃପୁରୁଷଙ୍କ ଦ୍ୱାରା ଗଚ୍ଛିତ ମୂଳଧନ ଯୋଗାଡ଼ କରିଥାନ୍ତି । କିନ୍ତୁ ରାଧାକୁ ବ୍ୟବସାୟ କରିବା ପାଇଁ ମୂଳଧନ କେହି ଦେଇ ନ ଥିଲେ । ସେ ତା'ର ଯୌବନ, ରକ୍ତ, ମାଂସ ଓ ମେଦକୁ ମୂଳଧନ କରି ବ୍ୟବସାୟ କରିଥିଲା, କରୁଥିଲା । ତା' ମୂଳଧନକୁ ବି ଗ୍ରାହକମାନେ ଲୁଣ୍ଠନ କରୁଥିଲେ । କ୍ଷିପ୍ରତମ କ୍ଷତି ଆଡ଼କୁ ନିର୍ଦ୍ଦିଷ୍ଟ ହୋଇ ରହିଥିଲା ତା ବ୍ୟବସାୟର ଭାଗ୍ୟ—ଏ କଥା ସେ ଜାଣି ସୁଦ୍ଧା ବ୍ୟବସାୟ କରୁଥିଲା । ରାତି ତମାମ ବାରଅଡ଼ର କୁକୁରଙ୍କୁ ସେ ଆଣି ଅଭିଷିକ୍ତ କରୁଥିଲା ତା'ର ସିଂହାସନରେ—ସେମାନେ ତା'ର ଆତ୍ମାକୁ ତିଳ ତିଳ କରି ଝୁଣୁଥିଲେ ଏକ ପାଶବିକ ଶିଉତାମି ଉଲ୍ଲାସରେ । ରାତି ପାହିବା ଆଗରୁ ସେହି କୁକୁରମାନେ ଝାଡ଼ିଝୁଡ଼ି ହୋଇ ବାହାରନ୍ତି ରାଧାର ଜୀବନ୍ତ ନରକର ଗହ୍ୱରରୁ । ସୂର୍ଯ୍ୟାଲୋକ ଧରଣୀକୁ ସ୍ପର୍ଶ କରିବା ପରେ ସେହି କୁକୁରମାନେ କଡ଼ା ଇସ୍ତ୍ରୀ ଦିଆ ପୋଷାକ ତଳେ ଆତ୍ମଗୋପନ କରି ବିଚ୍ଛୁରିତ ହୋଇପଡ଼ନ୍ତି ସମାଜର କର୍ମଚଞ୍ଚଳ ଭିତରେ । ରାଧା ପାଇଁ ସେମାନେ ଛାଡ଼ି ଯାଆନ୍ତି ପ୍ରଚୁର ତନ୍ଦ୍ରା, ଦୈହିକ କ୍ଳାନ୍ତି, ଯନ୍ତ୍ରଣା ଓ ଉପଦଂଶର ଅକ୍ଷୟ ଜୀବାଣୁ । ସାମାନ୍ୟ ଜଣେ ଘୃଣିତା ବାରାଙ୍ଗନା ରାଧା । ଦିନବେଳେ ତା'ର ଚତୁଃସୀମା ମାଡ଼ିବା ପାଇଁ କୁକୁରମାନେ ସାହସ କରନ୍ତି ନାହିଁ । ସାହସ ଥିଲେ ବି ସାମାଜିକତା ଏବଂ ଆଭିଜାତ୍ୟ ପ୍ରତିବନ୍ଧକ ସୃଷ୍ଟି କରେ । ଦିନର ପ୍ରଖର ସୂର୍ଯ୍ୟାଲୋକ ତଳେ ଏହି କୁକୁରର ଦଳ ରାଧାର ଜୀବନ ଓ ଜୀବିକାକୁ ଘୃଣାର ସହିତ ନିନ୍ଦା କରି 'ସତୀତ୍ୱ', 'ନୈତିକତା' ଆଦିର 'ଏଥିକ୍ସ' ଶୁଣାଇବା ସଙ୍ଗେ ସଙ୍ଗେ ଉତ୍ତୁଙ୍ଗ ଭାଷଣମାଳାରେ ଚା' ଦୋକାନ, ସଭାମଞ୍ଚମାନଙ୍କୁ ସରଗରମ କରିଥାଆନ୍ତି । ପୁଣି ଯେତେବେଳେ ଦିନମଣି ଅସ୍ତାଚଳ କୋଳରେ ଢଳି ପଡ଼ନ୍ତି, ଏହି କୁକୁରମାନଙ୍କ ଶିରାପ୍ରଶିରାରେ ବିକୃତିର ଝାଜାଣୁ ବେଗରେ ଧାଇଁ ଛୁଟେ - ରାଧାର କୁଞ୍ଜ କୁଟୀର ଆଭିମୁଖେ ଅଭିସାର ରଚନା କରନ୍ତି ପୁନଶ୍ଚ କୁକୁରର ଦଳ । ସେମାନଙ୍କର ଏ ଦୁଇ ନମ୍ବରି ବା ଦ୍ୱିଧା ବିଭକ୍ତ ଧନ୍ଦା ଯେ ରାଧା ଜାଣେନା ସେ କଥା ନୁହେଁ । ଜାଣିଲେ ବି ସେ ନୀଳକଣ୍ଠଙ୍କ ପରି ସବୁ ବିଷକୁ ଚଳୁ କରେ । ବଞ୍ଚିବା ଭିତରେ ସେ ତିଳ ତିଳ କରି ମରେ ଏବଂ ମରିବା ଭିତରେ ବି ସେ ତିଳ ତିଳ କରି ବଞ୍ଚେ । ରାଧା ବ୍ୟବସାୟୀ । କିନ୍ତୁ ତା'ର ବ୍ୟବସାୟ ଥିଲା ସ୍ୱଚ୍ଛ, ନିର୍ମଳ । ସେ ବାହାରକୁ ଗୋଟାଏ ଖାତା ଓ ଭିତରକୁ ଗୋଟାଏ

ଖାତା ରଖି ଦୁଇ ନମ୍ବରୀ ବେପାର କରୁ ନ ଥିଲା—ସବୁବେଳେ ଏକ ନମ୍ବରୀ ବେପାର ତା'ର । ତା' ଦୋକାନରୁ ସଉଦା ନେବା ପାଇଁ ଦୁଇ ନମ୍ବରୀ କାରବାରରେ ଓସ୍ତାଦ୍ କୃପଣ ଶିରୋମଣି ଦାତାରାମ ଠନ୍ ଠନ୍ ବାଲା, ଯିଏ କି ରାତି ତମାମ ଗୋଟିଏ ପଇସା ପାଇଁ ଶହେ ଓ୍ୱାଟ୍‌ର ଇଲେକ୍‌ଟ୍ରିକ୍ ବଲ୍‌ବ ଜଳାଇ ଖାତା ଘାଣ୍ଟେ, ସିଏ ମଧ୍ୟ ରଜନୀର ଅନ୍ତିମ ପ୍ରହରରେ ନିଜର ମେଦବହୁଳା, ବିକଟ-ନିତମ୍ବିନୀ, ବିବାହିତା ସହଧର୍ମିଣୀ କଥାକୁ ପଛକୁ ପକାଇ ରକେଟ୍ ଗତିରେ ଛୁଟି ଆସେ ରାଧାର କୁଞ୍ଜ ଅଭିମୁଖେ । ଏତଦ୍ ବ୍ୟତୀତ ଆସନ୍ତି ଓକିଲ, ଡାକ୍ତର, ବାବୁଭାୟା, କଂଟ୍ରାକ୍ଟର, ବସ୍ତି ଗୁଣ୍ଡା, ଜଘନ୍ୟ ନଜରବାଲା, ଠିକାଦାର, ମ୍ୟୁନିସିପାଲିଟି, ବୁଦ୍ଧିଜୀବୀ ଓଗେରେ । ଏହି ବୁଦ୍ଧିଜୀବୀ କୁଳର ରାଧାକୁଞ୍ଜକୁ ଗୋପନ ଅଭିସାର ମୋର ମନେ ପକାଇ ଦିଏ ଯୁକ୍ତରାଷ୍ଟ୍ର ଆମେରିକାର ହାରଲେମ୍ ସିଟି କଥାଟିକୁ । ବଂଗଳାର ବିଖ୍ୟାତ ଭୂ-ପର୍ଯ୍ୟଟକ ୬ ରାମନାଥ ବିଶ୍ୱାସ ତାଙ୍କର 'ଆଜକେର ଆମେରିକା' ପୁସ୍ତକରେ ଏହି ହାରଲେମ୍ ସିଟିର କାହାଣୀକୁ ରୂପାୟିତ କରିଛନ୍ତି । ଘଟଣା ହେଲା : ଦିନ-ବେଳେ କୌଣସି ଶ୍ୱେତକାୟ ଭଦ୍ର ମହୋଦୟ ହାରଲେମ ସିଟି ଆଡ଼କୁ ଯାନ୍ତି ନାହିଁ ବା ତା'ର ନାମ ମଧ୍ୟ ଉଚ୍ଚାରଣ କରନ୍ତି ନାହିଁ । (କଲେ 'ବାଇବେଲ୍' ଅଶୁଦ୍ଧ ହୋଇଯିବ ଯେ ! କାରଣ ହାରଲେମ ସିଟି ହେଉଛି ନିଗ୍ରୋ ଅଧ୍ୟୁଷିତ ଇଲାକା । ଦେହର କଳା ଚମଡ଼ା ପାଇଁ ନିଗ୍ରୋମାନେ ବିଶ୍ୱମୟ ଶ୍ୱେତକାୟ-ମାନଙ୍କ ଦ୍ୱାରା କିପରି ଲାଞ୍ଛିତ, ପଦଦଳିତ ତଥା ଅପମାନିତ ହୋଇଛନ୍ତି ସେ କଥା ବୁଝାଇ କହିବା ଅନାବଶ୍ୟକ ।) ଠିକ୍ କଟକର ଦୋଳମୁଣ୍ଡାଇ ଛକ ପରି ଯେତେବେଳେ ହାରଲେମ ସିଟି ଉପରେ ସନ୍ଧ୍ୟା ଘନେଇ ଆସେ, ସାରା ଦିନର ପଥଶ୍ରାନ୍ତ ଜ୍ୱଳନ୍ତ ଦିବାକର ଅସ୍ତ-ଆକାଶର ଅଳିନ୍ଦରେ ଅଦୃଶ୍ୟ ହୋଇ ଯାଆନ୍ତି, ଠିକ୍ ତା'ପରେ ପରେ ଆମେରିକାର ଶ୍ୱେତକାୟ ଭଦ୍ର ମହୋଦୟ-ଗଣଙ୍କର ଅଭିସାର ରଚିତ ହୁଏ ହାରଲେମ୍ ସିଟି ଅଭିମୁଖେ । ତା'ପରେ ଶ୍ୱେତ-ସଇତାନ ଦଳର ନକଲି ଆଭିଜାତ୍ୟ, ଆଭିଜାତ୍ୟ, ଶ୍ୱେତ ଅହମିକା ସବୁକିଛି ନିମଜ୍ଜମାନ ହୁଏ ନିଗ୍ରୋ ରମଣୀ ଦଳର ନିବିଡ଼ ଭୁଜ ବନ୍ଧନରେ । ଦିନର ଆଲୋକ ଲୌହଗର୍ଭା-ଧରିତ୍ରୀର ଅଙ୍ଗ ସ୍ପର୍ଶ କରିବା ଆଗରୁ ଏହି ଶ୍ୱେତ-ସଇତାନର ଦଳ ବାହାରି ଆସନ୍ତି ହାରଲେମ୍ ସିଟିର ଗହ୍ୱରରୁ । ବାହାରି ଆସିବା ଆଗରୁ ନିଗ୍ରୋ ରମଣୀର ଜଙ୍ଘପ୍ରଷ୍ଠରେ ଫିଙ୍ଗି ଦେଇ ଆସନ୍ତି ଯେଉଁ ବୀର୍ଯ୍ୟ, ସେଥିରେ ଅବିବାହିତା ଜନନୀ ସାଜନ୍ତି ବହୁ ନିଗ୍ରୋ ଯୁବତୀ । ତା' ପରେ ଅଗଣିତ ବର୍ଣ୍ଣସଙ୍କର ଶିଶୁର କୁଆଁ କୁଆଁ ରବରେ ମୁଖରିତ ହୋଇ ଉଠେ ହାରଲେମ ସିଟିର ନିଗ୍ରୋ-ବସତି

ଗୁଣ୍ଡିକ । ଶଠ, ପ୍ରବଞ୍ଚକ, ହିପୋକ୍ରାଟ ଦଳର ବିଶ୍ୱବ୍ୟାପୀ ସମ୍ମାନ । ଏମାନେ ଦୁନିଆର କୋଣେ କୋଣେ ଭରି ରହିଛନ୍ତି । କଟକର ଦୋଳମୁଣ୍ଡାଇ ଛକର ଗ୍ରଧା ଠାରୁ ଆରମ୍ଭ କରି ଆମେରିକାର ହାରଲେମ୍ ସିଟିର ନିଗ୍ରୋପଲ୍ଲୀ ପର୍ଯ୍ୟନ୍ତ ନିର୍ଯାତିତା ଅସହାୟା ରମଣୀମାନଙ୍କୁ କେବଳ ଏମାନେ ଉପଭୋଗ କରନ୍ତି ନାହିଁ, ଦୁନିଆର ମାତା-ଭଗିନୀର ଜାତିକୁ ଅସମ୍ମାନ କରନ୍ତି ପ୍ରତିନିୟତ । ଏମାନେ ଅସ୍ପୃଶ୍ୟପଶ୍ୟା ଘରର ଝିଅ ବୋହୂମାନଙ୍କୁ କଳୁଷିତ କରିବା ପାଇଁ ସୃଷ୍ଟି କରନ୍ତି ସୁଯୋଗ ଆଉ ସୁବିଧା, ନିର୍ମାଣ କରନ୍ତି ଜଘନ୍ୟତମ ଗୋଟିଏ ଗୋଟିଏ ଜୀବନ୍ତ ନରକ ।

ହଁ, ଗ୍ରଧା କିନ୍ତୁ ଆମେରିକାର ହାରଲେମ୍ ସିଟିର ନିଗ୍ରୋ ରମଣୀଙ୍କ ଅପେକ୍ଷା ଅଧିକ ଚତୁରୀ । ସେ ଏହି ଭଦ୍ରବେଶଧାରୀ ଶ୍ୱାନଦଳଙ୍କୁ ଦେହ ଦାନ କଲେ ମଧ୍ୟ ସେମାନଙ୍କର ସନ୍ତାନର ଜନନୀ ନହେବା ପାଇଁ ସର୍ବଦା ସଚେତନ କେବଳ ନଥିଲା, ସଫଳ ମଧ୍ୟ ହୋଇଥିଲା । ଯିଏ ଯାହା କହେ, ତାର "ମାତୃତ୍ୱ" ବୋଲି କିଛି ନଥିଲା, ମୁଁ ତା'ର ପ୍ରତିବାଦ କରିବି । ଯେତେବେଳେ ମୁଁ ତାର ସାକ୍ଷାତ ଓ ସାନ୍ନିଧ୍ୟ ପାଇଥିଲି ସେତେବେଳେ ଅତି ଅଳ୍ପ ବୟସର ବାଳକ ମୁଁ । ଏକ ଶିଶୁର ଜୀବନରେ ପିତାମାତାର ସ୍ନେହ ଶ୍ରଦ୍ଧା କେତେ ଦରକାରୀ, ତାହା ମନସ୍ତତ୍ତ୍ୱବିତ୍ କହିବେ । ବାପା ମୋତେ ଅତି ନିର୍ମମ ଭାବରେ ମା' କୋଳରୁ ଛଡ଼ାଇ ଆଣି ସଙ୍ଗରେ ଧରି ବୁଲୁଥିଲେ । ଦାରିଦ୍ର୍ୟ, ଅଭାବ, ଅନାହାର ସବୁକିଛି ଯେତେବେଳେ ଥିଲା ମୋର ନିତ୍ୟ ସଙ୍ଗୀ, ଠିକ୍ ସେତିକିବେଳେ ମୁଁ ପାଇଥିଲି ପତିତା ଗ୍ରଧାର ସାହଚର୍ଯ୍ୟ; ନିବିଡ଼ ସ୍ନେହ ଏବଂ ମାତୃସୁଲଭ ଆଦର ଯତ୍ନ । ଏକଦା ବାପା ଘୋର ଅସୁସ୍ଥ ହୋଇ କଟକ ବଡ଼ ଡାକ୍ତରଖାନାକୁ ସ୍ଥାନାନ୍ତରିତ ହେଲେ ମାସେ କାଳ । ସେହି ମାସଟି ମୋ ପକ୍ଷରେ ଥିଲା ଅତ୍ୟନ୍ତ ଦାରୁଣ ଦୁଃସମୟ । ପିନ୍ଧିବା ପାଇଁ ପ୍ୟାଣ୍ଟ ଖଣ୍ଡେ ନଥିଲା, ଦି' ବେଳା ଦି' ମୁଠା ଭାତ ମଧ୍ୟ ଜୁଟିବା ମୁସ୍କିଲ । ରାମଦାସ ବାବାଜୀଙ୍କ ଘର ବଖରାକରେ ଶୋଇ ରାତିରେ ନିଦ ବାଉଳାରେ ବାପାଙ୍କ ସହିତ କଥାବାର୍ତ୍ତା ହେବା, ମା'କୁ ଡାକିବା, କାନ୍ଦିବା ଥିଲା ନିତ୍ୟ-ନୈମିତ୍ତିକ ଘଟଣା । ସେଦିନ ରାମଦାସ ଓ ତାଙ୍କ ମାତା,ଏ ଦୁହେଁ ଘରେ ତାଲା ପକାଇ ଭିକ୍ଷା କରିବାକୁ ଯାଇଥିଲେ । ଦିନ ୧୦ଟା ହେବ । ମନ ମୋର ଭଲ ନଥାଏ । ଗ୍ରଧାର ଘର ସାମ୍ନାର ପ୍ରଧାନ ରାସ୍ତାରେ ଠିଆ ହୋଇ ମୁଁ ଜୀବନରେ କେତେ କ'ଣ

ଘାରୁଥାଏ । ପଛପଟୁ କୋମଳ ଏକ ସ୍ନେହାର୍ଦ୍ର କଣ୍ଠସ୍ୱରର ଡାକ : "ରବି" । ଚିନ୍ତା ରାଜ୍ୟରୁ ଫେରି ଆସିଲି ବାସ୍ତବତା ଭିତରକୁ । ଚାହିଁ ଦେଖିଲି ରାଧା ମୋ ପଛପଟେ । "କ'ଣ ମାଉସୀ" ବୋଲି ଜବାବ ଦେଲି । ସେ ପଚାରିଲା : "ବାପାଙ୍କୁ ଦେଖିବାକୁ ଯାଇଥିଲୁ ? କେମିତି ଅଛନ୍ତି ?" ମୁଁ କହିଲି, "ଆଜି ଯିବି । କାଲି ଯାଇଥିଲି ସେ···ଚେତା ନଥିଲା !" ମୋ ମୁହଁରୁ କଥା ନ ସରଣୁ ସେ ମୋ ହାତ ଧରି ତା' ଘରକୁ ନେଇଗଲା । ମୋତେ ତା' ପାଖରେ ବସାଇ ଠିକ୍ ମା' ପରି ମୋ ମୁଣ୍ଡ ଆଉଁସି ଦେଇ ନିଜ ଶାଢ଼ୀ କାନିରେ ମୋ ମୁହଁ ପୋଛି ଦେଇ ନିଜ ପାଇଁ ଭାତ ବାଢ଼ିଲା । ଗୋଟାଏ ଷ୍ଟେଟ ଥାଳିରେ ମୋ ପାଇଁ ଭାତ, ତରକାରି, ଡାଲି ଏବଂ ଆଳୁଚକଟା ଦେଇ ମୋତେ ବାଧ୍ୟ କଲା ଖାଇବା ପାଇଁ । ମୁଁ ପ୍ରଥମେ ସଙ୍କୋଚ କଲି । ସେ କହିଲା; "ଖା ଲାଜ କରୁଛୁ ? ମୋ ସୁନାଟି ପରା···ଖାଇଦେ । ବ୍ୟସ୍ତ ହନା, ମୁଁ ଅଛି । ତୋର କଷ୍ଟ ହେବନାହିଁ । ···ବାପା ଭଲ ହୋଇଯିବେ । ତୋର ଯେତେବେଳେ ଯାହା ଦରକାର ମୋତେ ମାଗିବୁ ।" ଖାଇବା ଭିତରେ ରାଧାର ମୁହଁକୁ ସତର୍କ ସହକାରେ ଅନାଉଥାଏ । ରାଧା ମୋ ଗୃହାଣୀକୁ ଲକ୍ଷ୍ୟ କଲା, ଅଳ୍ପ ହସିଦେଇ କହିଲା; "କ'ଣ ଦେଖୁଛୁ ? ମୋର ଦୁନିଆରେ କେହି ନାହାଁରେ ବାବା ! ଆମର ଭଗବାନ ଭରସା ।" ଖାଇସାରି ହାତ ଧୋଇ ବସିଲି । ବସି ବସି ଚୋଳେଇବାକୁ ଆରମ୍ଭ କଲି । ରାଧା କହିଲା, "ଯା, ଖଟ ଉପରେ ଟିକେ ଶୋଇପଡ଼ ! ମୁଁ ପଛେ ଡାକ ଦେବି । ଉଠିଲେ ବାପାଙ୍କୁ ଦେଖିବାକୁ ଯିବୁ ।"

ହିନ ଗୁରଟା ବେଳେ ରାଧାର ଡାକରେ ନିଦ ଭାଙ୍ଗିଲା । ଆକାଶ ଥାଏ ମେଘାଚ୍ଛନ୍ନ । ବାପାଙ୍କ ପାଖକୁ ଯିବା ପାଇଁ ପାଦ ବଢାଇଲାବେଳେ ରାଧା ମୋ ହାତଟାକରେ ଆଣି ଗୁଞ୍ଜି ଦେଲା ଦି'ଅଣା ପଇସା, ଆଉ କହିଲା, "ଚଞ୍ଚଳ ଚାଲିଆସିବୁ, ବେଶୀ ବିଳମ୍ବ କରିବୁ ନାହିଁ ।"

ଡାକ୍ତରଖାନାରେ ବାପାଙ୍କୁ ଦେଖି ଫେରୁ ଫେରୁ ରାତି ହୋଇ ଯାଇଥିଲା । ଆଜି ପରି ଦୋଳମୁଣ୍ଡାଇ ଛକରୁ ରାଣୀହାଟ ଆଡ଼କୁ ଯାଇଥିବା ରାସ୍ତା ଏପରି ପ୍ରଶସ୍ତ ବା ପିଚୁ ନଥିଲା । ତାହା ଥିଲା ଅପ୍ରଶସ୍ତ, କଚ୍ଚା । ରାତିରେ ବେଶୀ ଲୋକ ଚଳାଚଳ ହେଉ ନଥିଲେ । ସବୁଠାରୁ ଭୀତିପ୍ରଦ ଥିଲା ବଜ୍ରକବାଟି ଅଞ୍ଚଳ । ବଜ୍ରକବାଟି ପୋଲ ପାଖକୁ ଲାଗି ଏକ ଝଙ୍କାଳିଆ ଆମ୍ବଗଛ । ସେହି ଆମ୍ବଗଛ ତଳେ ସରଫ୍ ମିଆଁର ଗୁଉଲୀ ମଦଭାଟି । ସନ୍ଧ୍ୟା ହେଲେ

ମଦୁଆମାନଙ୍କର ଆଖଡ଼ା ସେଠି ଜମେ । ମୁଁ ବଡ଼ ଡାକ୍ତରଖାନାରୁ ଆସି ରାଣୀହାଟ ଛକ ଦେଇ ସିଧା ଚାଲିଥାଏ ଦୋଳମୁଣ୍ଡାଇ ଛକ ଆଡ଼କୁ । ବଜ୍ରକବାଟି କୌଣସି ମତେ ଟପିଗଲି । ଆଜି ଯେଉଁଠି ସାଆନ୍ତସାଇ ଗଡ଼ା ସେଇଠି ମୋ ସାମ୍ନାରେ ଦେଖିଲି ରାଧାକୁ । ମୋର ଡେରିହେବା ଦେଖି ସେ ଏକୁଟିଆ ବାହାରିଛି ମୋର ସନ୍ଧାନରେ । "କିଏ ରବି କି ରେ ?"

"ହଁ, ମାଉସୀ ।"

"ଆରେ ତୁ ଏତେବେଳଯାଏ କୋଉଠି ଥିଲୁ ? ବାପା କିମିତି ଅଛନ୍ତି ?" ଏକାବେଳେକେ ଏତେଗୁଡ଼ାଏ ପ୍ରଶ୍ନ । ମୁଁ କହିଲି, "ଆହୁରି ଅନେକ ଦିନ ଲାଗିବ ଭଲ ହେବା ପାଇଁ । ମୁଁ ତ ଚାଲି ଚାଲି ଆସୁଛି ।"

"ହେଉ ଆ" କହି ସେ ବୁଲିପଡ଼ି ଆଗକୁ ଆଗକୁ ଚାଲିଲା । ଧେନୁ ପଛେ ପଛେ ବାଛୁରୀ ଯେପରି ଚାଲେ ମୁଁ ଠିକ୍ ସେହିପରି ଚାଲିଲି ତା' ପଛେ ପଛେ । ତା ଘରେ ଯେତେବେଳେ ପହଞ୍ଚେ ସେତେବେଳକୁ ବେଶ୍ ଅନ୍ଧକାର ହୋଇ ଯାଇଥିଲା । ଘର ଖୋଲି ଲଣ୍ଠନ ଲଗାଇଲା ରାଧା । ଦି'ଟା ମୋଟା ମୋଟା ପାଚିଲା କଦଳୀ ଧରାଇ ଦେଲା ମୋର ଦି' ହାତରେ । ଚୁଲି ଲଗାଇ ନିଜେ ଚା କରି ପିଇବା ଆଗରୁ ମୋ ପାଇଁ କପେ ଦୁଧ ଗରମ କରି ପିଇବାକୁ ଦେଲା । କଦଳୀ ଦୁଇଟି ଓ ଦୁଧ କପ୍‌ଟିକୁ ପିଇ ମୁଁ ଶୋଇପଡ଼ିଲି ତା' ଖଟ ଉପରେ । ପିଲାଦିନେ ମୋର ନିଦ ଥିଲା ଭାରି ଗାଢ । କିନ୍ତୁ ସେଦିନ ହଠାତ୍ ହଟ୍ଟଗୋଳ ଏବଂ ଚିତ୍କାରରେ ନିଦ ଭାଙ୍ଗିଗଲା, ଉଠି ବସିପଡ଼ିଲି । ଘର ଭିତରେ ଲଣ୍ଠନର ପୀତାଭ ଶିଖାଟି କାଚର କାରାଗାର ଭିତରେ ଜଳୁଥିଲା ମିରିବରେ । ରାଧାର ଦୁଆର ମୁହଁରେ ବହୁ ମଣିଷର ସମାଗମ । ଘଟଣା କ'ଣ କିଛି ଜାଣି ପାରିଲି ନାହିଁ ଭୟରେ ପଦାକୁ ବି ବାହାରିଲି ନାହିଁ । ଚୁପ୍ ଚାପ୍ ବସିରହି ଦେଖୁଥାଏ ରାଧାର ରୁଦ୍ରମୂର୍ତ୍ତି । ଅଣ୍ଟାରେ ରାଣ୍ଡିମତ ଲୁଗାକୁ ଗୁଡ଼ାଇ ଦେଇ ହାତରେ ଝାଡ଼ୁ ଧରି ସେ ଦୁଆର ମୁହଁରେ ଠିଆ ହୋଇ କହୁଥାଏ, "ଆଉ ଦିନେ ଆସି ଏମିତି କବାଟ ବାଡ଼େଇବତ ତମ ମଦ ନିଶାକୁ ଏଇ ଝାଡ଼ୁ ପାହାରରେ ଛଡାଇଦେବି ।" ପରେ ଜାଣିବାକୁ ପାଇଥିଲି, ମୁଁ ସେଦିନ ଶୋଇଥିବା ଅବସ୍ଥାରେ ସେଠାକାର ନାମଜାଦା ମଦୁଆ ଦି'ଟା ତା' କବାଟ

ବାହାରେ ତାକୁ ଅଶ୍ରାବ୍ୟ ଭାଷାରେ ଗାଳିଗୁଲଜ କରି ତା' ଘରେ ପଶିବାର ଉଦ୍ୟମ କରିଥିବାରୁ ଏପରି ଅବସ୍ଥାର ସୂତ୍ରପାତ ହୋଇଥିଲା ।

କ୍ରମେ ରାଧାର ସ୍ନେହ ଶ୍ରଦ୍ଧା ମୋ ପ୍ରତି ବଢିବାକୁ ଲାଗିଲା । ଠିକ୍‌ଭାବେ ଲେଖିବସିଲେ ବହୁତ ଘଟଣା ଯିବ । ଗୋଟିଏ ଘଟଣା ମୋର ସ୍ପଷ୍ଟ ମନେ ଅଛି । ମୋର ପିନ୍ଧିବାକୁ ପ୍ୟାଣ୍ଟ ନ ଥାଏ । ଯେଉଁ ପ୍ୟାଣ୍ଟ ଖଣ୍ଡକୁ ପିନ୍ଧିଥାଏ ତାହା ପଛଆଡୁ ୨ ଜାଗାରେ ଫାଟି ଥାଏ । ଦେହରେ ଥିବା ଖଦଡ଼ର ହାଫ୍‌ସାର୍ଟଟି କେବଳ ଥାଏ ଭଲ । ଦିନେ ସନ୍ଧ୍ୟାରେ ଡାକ୍ତରଖାନା ଯାଇ ଡାକ୍ତରମାନଙ୍କ ଠାରୁ ବୁଝିଲି ବାପା ମେଡ଼ିକେଲରୁ ଛୁଟି ପାଇବେ ଆଉ ୮।୧୦ ଦିନ ପରେ । ତା'ପରେ ଫେରି ଆସିଲି ଦୋଳମୁଣ୍ଡେଇ ଛକକୁ । ରାଧା ଯେତେବେଳେ ଜାଣିଲା ବାପା ଆଉ ୮।୧୦ ଭିତରେ ଡାକ୍ତର ଖାନାରୁ ଆସୁ ନାହାନ୍ତି, ସେତେବେଳେ ସେ କ'ଣ ମାରବରେ ଭାବିଲା । ତା'ର ବହୁ ସମୟ ପରେ ମୋତେ କହିଲା " ରବି ! ଚାଲ କାଲି ଗୋଟାଏ ଆଡକୁ ଯିବା ।" ମୁଁ ଅବାକ ହୋଇ ତା' ମୁହଁକୁ ଚାହିଁଲି, ସେ ପୁଣି କହିଲା, "କିରେ ମୋ ମୁହଁକୁ ଇମିତି ଡବ ଡବ କରି ଅନଉଁଛୁ କାହିଁକି ?"

"ବାପାଙ୍କୁ କିଏ ଦେଖିବାକୁ ଯିବ ? ତା'ଛଡ଼ା କୁଆଡ଼େ ଯିବ ?"

"ଏଇ ମହାନଦୀ ସେପାଖ ଗୋଟାଏ ଜାଗାକୁ । ରେଲ୍‌ଗାଡ଼ିରେ ଯିବା, ୩।୪ ଦିନ ପରେ ଫେରି ଆସିବା ।"

"ସେଠି ତୋର ଆଉ ଗୋଟାଏ ମାଉସୀ ଅଛି ।"

କିଛି ବୁଝିପାରିଲି ନାହିଁ । ମୋତେ କାହିଁକି ସାଙ୍ଗରେ ନେବାକୁ ଚାହୁଁଛି ରାଧା । କୋଉଠିକି ବା ନବ ? ତେବେ ରେଲଗାଡ଼ିରେ ବସିବାର ଗୋଟାଏ ଆକର୍ଷଣ ମୋତେ ସେଦିନ ପ୍ରଲୋଭିତ କରି ଥିଲା । ସେ ଦିନ ସକାଳ ବେଳା ରାଧା ତା'ର ଗୋଟାଏ ମଧ୍ୟ ଭଳିଆ ସୁଟ୍‌କେସ, ଯାହା ଉପରେ ଅଙ୍କା ହୋଇଥିଲା ଦି'ଟା ଗୋଲାପ ଫୁଲ, ସେଥିରେ ତା'ର ବ୍ୟବହାର୍ଯ୍ୟ ସାମଗ୍ରୀ ସବୁ ଭର୍ତ୍ତିକଲା । ଗୋଟାଏ ଟିଫିନ କ୍ୟାରିଅର୍‌ରେ ପାଚିଲା ସପୁରି କିଛି କାଟି ଲୁଣ ଓ ଚିନି ମିଶାଇ ତାକୁ ଭର୍ତ୍ତିକଲା । ମଧ୍ୟାହ୍ନ ଭୋଜନ ସେଦିନ ହୋଇଥିଲା ଅରୁଆ ଭାତ

ଆଉ ଡାଲମା ଏବଂ ଗୁଡ଼ୁପାଣି, ତା'ପାଖରେ ବସି ମୁଁ ଖାଇଲି । ଖାଇସାରି ସେ ତା' ଖଟ ଉପରେ ଗୋଟାଏ କଡ଼କୁ ମୋତେ ଶୋଇବାକୁ କହିଲା ଓ ମୋ ପାଖରେ ଆସି ଶୋଇ ମୋ ପିଠି ଥାପୁଡ଼ଉଇଲା ।

ନିଦଭାଙ୍ଗିଲା ଦିନ ୩ଟା ବେଳେ । ପାଦରେ ଅଳତା, ଆଖିରେ କଜ୍ଜ୍ୱଳ, ଧୋବଫରଫର ଲାଲ ଚଉଡ଼ାଧଡ଼ିର ଏକ ଶାଢ଼ୀ ପିନ୍ଧି ଗୈରିକ ବସନ ପରିହିତ ଢେଙ୍କାନାଳିଆ ଦାଢ଼ିଟଣା ରିକ୍ସାବାଲା ଜଣକୁ ଡାକି, ସେ ମୋତେ କହିଲା "ଚାଲ" । ମୁଁ ଆଗେ ଆଗେ, ସିଏ ପଛେ ପଛେ । ରିକ୍ସାର ଚକ ଗଡ଼ିବାକୁ ଆରମ୍ଭ କଲା । ମନରେ ମୋର ପ୍ରବଳ ତୋଫାନ—କୁଆଡ଼େ ଯାଉଛି ମୁଁ ? କଟକ ରେଲ ଷ୍ଟେସନରେ ଟିକେଟ୍ କାଟି ଯେତେବେଳେ ଯାଇ ଆମେ ଗାଡ଼ିରେ ବସୁ, ସେତେବେଳେ ଚକିତ ହୋଇ ଚୁଆଡ଼କୁ ଚାହିଁ ଥାଏ ମୁଁ । କାରଣ ରେଳଗାଡ଼ିରେ ବସିବା ଥିଲା ମୋର ସେଦିନ ଜୀବନରେ ପ୍ରଥମ । ବହୁ କୌତୁହଳ, ବହୁ ଆନନ୍ଦ ଓ ରାଧାର ବହୁ ଖୁସିଗପ ଭିତରେ ଗାଡ଼ିର ଗତି ମନରେ ସେଦିନ ଏକ ବିଚିତ୍ର ଅନୁଭୂତି ଆଣି ଦେଇଥିଲା ।

ଯେତେବେଳେ ଆମେ ଗାଡ଼ିରୁ ଓହ୍ଲାଇଲୁ, ସେତେବେଳକୁ ସୂର୍ଯ୍ୟଙ୍କର ସତ୍ତା ନଥିଲେ ମଧ୍ୟ ସବୁ ଜିନିଷ ଦେଖି ହେଉଥିଲା । ରାତିର ଅନ୍ଧକାର କିନ୍ତୁ ମାଡ଼ି ଆସୁଥିଲା ଦ୍ରୁତ ଭାବରେ । ସ୍ଥାନଟି ବୋଧହୁଏ ବୈଗ୍ନି କମ୍ବା ଧାନମଣ୍ଡଳ ରେଲ ଷ୍ଟେସନର ପାଖାପାଖି ହେବ । ଗାଁ ନୁହେଁ, ଗୋଟାଏ ନିରୁଛିଆ ଜାଗାରେ ୩।୪ଟି ଘର । ତା ଭିତରୁ ଗୋଟିଏ ଘରେ ମୋତେ ସେଦିନ ସାଙ୍ଗରେ ଧରି ପହଞ୍ଚିଲା ରାଧା । ସେ ଘରଟି ରାଧାର ପିଉସୀ ଘର । ଲଣ୍ଠନ କାଚର କାରାଗାର ଭିତରେ ଘରେ ଜଳୁଥିଲା ଅଗ୍ନିର ଏକ ବନ୍ଦୀ ଶିଖା । ଦୁଇବଖରା ନଡ଼ା ଛାଆଣି ଘର । ତା' ଭିତରେ ବଖରାକରେ ଖଟଟିଏ, ବହିପଟର ଗୋଟିଏ ମଳିନ ଥାକ । ଭିତର ଘରେ ଲୁଗାପଟା, କେତୋଟି ସୁଟ୍‌କେଶ, ବାସନକୁସନ ଓଗେର । ଖଟ ଉପରେ ପ୍ରୌଢ଼ା ଗୌରାଙ୍ଗୀ ମହିଳାଟିଏ ବସିଥିଲେ, ମୁଣ୍ଡର ଘନକେଶକୁ ପୂର୍ଣ୍ଣ ମୁକୁଳିତ କରି । ସେ କେଶଗୁଚ୍ଛ ସମୁଦାୟ ପାଟ ଯାଇଥିଲା । ଦେହର ପଦାରଣ ଖଣ୍ଡେ ଧଳଧଳିଆ ଲୁଗା, ପାଟିରେ ରୋମନ୍ଥନ କରି ଚାଲିଥିଲା ପାନ । ପ୍ରୌଢ଼ା ଜଣକ ଯୁବତୀ ସମୟରେ ଥିଲା ଅପୂର୍ବ ସୁନ୍ଦରୀ ବୋଧହୁଏ । ମୁହଁର ପ୍ରତିଟି ପେଶୀ ତା'ର ସାକ୍ଷ୍ୟ ବହନ କରୁଥିଲା । ତା ପାଖରେ ବସିଥିଲା ୧୯।୨୦ ବର୍ଷର ଏକ ଶ୍ୟାମାଙ୍ଗୀ ଯୁବତୀ—

ତା'ର ଝିଅ । ପ୍ରୌଢ଼ାର ପୁଅ ନାହାନ୍ତି । ସେଇ ଝିଅ, ମନେପଡ଼ୁଛି ବୋଧହୁଏ ସେତେବେଳେ କୌଣସି ବିଦ୍ୟାଳୟର ଶିକ୍ଷୟିତ୍ରୀ । ଝିଅଟି ବସି ବସି କଣ ଗୋଟାଏ ସିଲେଇ କରୁଥିବା ମୋର ମନେ ପଡ଼ୁଛି । ଆମେ ଯେତେବେଳେ ଘରେ ପ୍ରବେଶ କରୁ, ପ୍ରୌଢ଼ା ରାଧାକୁ ଦେଖି ଅତି ଆନନ୍ଦିତ ହୋଇଥିଲା। ରାଧା ପଛରେ ମୋତେ ଦେଖି ସେ ଟିକେ ବିସ୍ମିତ ମଧ୍ୟ ହୋଇଥିଲା । ପ୍ରାୟ ୪।୫ ଦିନ ମୁଁ ଓ ରାଧା ସେଇ ଘରେ ଥିଲୁ । ଏହି ୪।୫ ଦିନ ମଧ୍ୟରେ ପ୍ରୌଢ଼ା ଓ ତା'ର ଝିଅ ଅତି ଆଦର ଯତ୍ନ କରିଥିଲେ ମୋତେ । ପହଞ୍ଚିବାର ପରଦିନ ରାଧା ପ୍ରୌଢ଼ାର ଝିଅକୁ ନିଜ ସୁଟ୍‌କେଶରୁ କିଛି ଟଙ୍କା ବାହାର କରି ପ୍ୟାଣ୍ଟ ସାର୍ଟ କନା କିଣି ଆଣିବାକୁ ଦେଲା । ସନ୍ଧ୍ୟାରେ କନା ଆସିଲା । ରାତି ଘଡ଼ିଏ ବେଳକୁ ପାଖ ଗାଁରୁ ଏକ ଦରଜି ଆସି ମୋର ମାପ ନେଲା । ତା ତହିଁ ଆରଦିନ ତିଆରି କରି ଦେଇଗଲା । ନିଜ ହାତରେ ଯେତେବେଳେ ନୂଆ ପ୍ୟାଣ୍ଟ-ସାର୍ଟ ପିନ୍ଧାଇ ଦେଉଥିଲା ରାଧା, ମୁଁ ସେତେବେଳେ ସେ ଘଟଣାର କୌଣସି ଆଦିଅନ୍ତ ପାଉ ନଥିଲି । ମୁଁ କେବଳ ନୀରବ ଏବଂ ଶୂନ୍ୟ ଦୃଷ୍ଟିରେ ରାଧା ମୁହଁକୁ ଅନାଇଥିଲି ଜଳଜଳ । ବୋଧହୁଏ ମୋର ମନୋଭାବକୁ ବୁଝି ପାରୁଥିଲା ରାଧା । ସେଥିପାଇଁ ସେ ମୋତେ ଠିକ୍ ତା'ପରେ ପରେ ଖପ୍ କରି ଧରିନେଇ ନିଜ କୋଳ ଭିତରେ ଜାବୁଡ଼ି ଧରିଲା, ଆଉ ପକାଇଥିଲା ଏକ ଦାରୁଣ ଦୀର୍ଘଶ୍ୱାସ । ରାଧା—ମୋର ମାତା-ଭଗିନୀ ଜାତିର ଜଣେ ମହିଳା ଥିଲା ସିଏ । ତାର ଇତିବୃତ୍ତ କଳଙ୍କମୟ ବୋଲି ସମାଜରେ ସେ ଲାଞ୍ଛିତା ଏବଂ ଘୃଣିତା ଥିଲା । ତା'ର ଅନ୍ତର୍ନିହିତ ମାତୃତ୍ୱର ମୋ ପ୍ରତି ଏ କର୍ମକାଣ୍ଡରେ ମୁଁ ସେତେବେଳେ ଅବାକ୍ ହୋଇ ତାକୁ ଦିନେ ପଚାରିଥିଲି, "ମାଉସୀ ତମର କ'ଣ କେହି ନାହାନ୍ତି ? ତମ ନିଜ ଘରକୁ ତମେ ତ ମୋତେ ଯାଉନାହିଁ । ମଉସା କ'ଣ ତମକୁ ଘରୁ ବାହାର କରି ଦେଇଛନ୍ତି ?"

ମୋର ଏହି ଅନାବିଳ ପ୍ରଶ୍ନରେ ସେଦିନ ସାଗରର ଚେଉ ଚିରି ନିଜ ଶୋଇବା ଖଟ ଉପରେ କଚଡ଼ା ହୋଇପଡ଼ିଲା ରାଧା, ଆଉ ତକିଆରେ ମୁହଁ ଗୁଞ୍ଜି କଇଁ କଇଁ ହୋଇ ଛୋଟ ପିଲାଙ୍କ ପରି କାନ୍ଦିଥିଲା ଅନେକ ସମୟ । ମୁଁ ଏଥିରେ ନିଜକୁ ଅପରାଧୀ ମନେ କରି ତାକୁ ନିଜର ଭୁଲମାଗି ଆକୁଳ ଅନୁରୋଧ କରିଥିଲି, "ମୋ ଉପରେ ରାଗିଗଲ ? ମୁଁ ତ ତମର କିଛି ଦୋଷ କରିନାହିଁ ।" ତତ୍‌କ୍ଷଣାତ ସେ ଉଠି ବସିଥିଲା, ତାର ଗୋରା ତକ ତକ ମୁହଁ ଏବଂ ଆଖିପଲ୍ଲବ

ଦୁଇଟି ଫୁଲଥିଲା କାନ୍ଦିବା ଯୋଗୁଁ । ମୋତେ ପାଖକୁ ଟାଣିନେଇ ମୋ ମୁହଁକୁ ନିଜ ମନେ କାନରେ ପୋଛି ଦେଇ ସେ କହିଲା, "ନାହିଁରେ ଧନ, ମୋର ପୋଡ଼ାଭାଗ୍ୟ । ତତେ ମୁଁ କିଛି ଦୋଷ ଦଉ ନାହିଁ ।" ବାସ୍, ଆଉ ସେ କିଛି କହି ନଥିଲା ।

ତା'ପରେ ସମୟର ଦାରୁଣ ଘୂର୍ଣ୍ଣିଝଡ଼ରେ ରାଧା ଦୋଳମୁଣ୍ଡେଇ ଛକରୁ ଅଦୃଶ୍ୟ ହେଲା । ହଠାତ୍ ଦିନେ ଏକ ସୁନ୍ଦର ସକାଳେ ରାଧାକୁ ଆଉ କେହି ଦେଖିବାକୁ ପାଇଲେ ନାହିଁ । ସେ ରହିଲଗଲା—ପଛରେ ଛାଡ଼ିଗଲା ଏକ ଅଲିଖିତ ମାନବିକ ଇତିହାସ, ଗୋପନ ସ୍ନେହଶ୍ରଦ୍ଧା ତଥା ହୃଦୟବତ୍ତାର ଦୃଷ୍ଟାନ୍ତ । ଆଜି ପର୍ଯ୍ୟନ୍ତ ମୁଁ ତାକୁ ଖୋଜେ ତା'ର ଋଣ ପରିଶୋଧ କରିବାକୁ, ତା'ର ମତୃତ୍ୱର ବେଦମୂଳେ ପ୍ରଣତିଟିଏ ଥୋଇବା ପାଇଁ । କିନ୍ତୁ···ନାଃ, ସେ ନାହିଁ···ଆଉ ଫେରିବ ନାହିଁ ।

ବାପା ଭଲ ହୋଇ ଆସି ଯେତେବେଳେ ମୋ ଦେହରେ ନୂଆ ଜାମା-ପ୍ୟାଣ୍ଟ ଦେଖିଲେ, ସେତେବେଳେ ସେ ବିସ୍ମିତ ହୋଇଥିଲେ । ତାଙ୍କର ଅନୁପସ୍ଥିତି କାଳରେ ରାଧାର ମୋ ପ୍ରତି ସ୍ନେହଶ୍ରଦ୍ଧା ତଥା ଅନାବିଳ ମମତାର କାହାଣୀ ଯେତେବେଳେ ମୁଁ ତାଙ୍କ ଆଗରେ ବର୍ଣ୍ଣନା କରିଥିଲି ସେତେବେଳେ ସେ ସ୍ତମ୍ଭିତ ହୋଇ ଅନେକ ସମୟ ଧରି କ'ଣ ଯେପରି ଭାବିଥିଲେ । ବାପା ଯେଉଁଦିନ ସୁସ୍ଥ ହୋଇ ଆସି ଦୋଳମୁଣ୍ଡାଇ ଛକରେ ପହଞ୍ଚିଥିଲେ ତା' ପୂର୍ବ-ଦିନ ରାତିରେ ରାଧା ଅନ୍ତର୍ଦ୍ଧାନ ହୋଇଥିଲା ମୋ ଅଜାଣତରେ ଭୋର୍ ରୁ । ସେ ଏକ ଦାରୁଣ ଅନୁଭୂତି । ବିଦ୍ୟୁତ୍ ଚମକ ପରି ସେ କାହିଁକି ମୋ ଜୀବନରେ ସେତେବେଳେ ଦେଖାଦେଇ ଅନ୍ତର୍ଦ୍ଧାନ ହୋଇଥିଲା ତାହା ଏକ ବିସ୍ମୟ ହୋଇ ରହିଗଲା ଚିରକାଳ ।

ପୁଣି ଆମ ଜୀବନର ସ୍ରୋତ ବହିଚାଲିଲା ଶିଳା-ବନ୍ଧୁର ବଙ୍କିମ ପଥଦେଇ । ଦୀର୍ଘ ଅସୁସ୍ଥତା ପରେ ପଥ୍ୟ ଓ ବିଶ୍ରାମ ବଦଳରେ ଅପଥ୍ୟ, ପରିଶ୍ରମ ହୋଇଉଠିଲା ବାପାଙ୍କର ସମ୍ବଳ ।

ଦୋଳମୁଣ୍ଡାଇ ଛକରେ ପ୍ରତିବର୍ଷ ବଡ ଧରଣର ରଥଯାତ୍ରା ହୁଏ । ସେଇ ଯାତ୍ରାକୁ ସେ ବର୍ଷ ବୋମ୍ବେ ଭଲ ପିଜୁଳୀ ବିକି ହେବାକୁ ଆସିଥିଲା ।

ବାପା ପିଜୁଳୀକୁ ଖୁବ ଭଲ ପାଆନ୍ତି । ସେତେବେଳେ ଏପରି ଦିନ ବିତୁଥାଏ ଯେ, ଆମେ ବେଳେ ବେଳେ ଉପବାସ ରହୁଥାଉଁ । ସେଦିନ ଗୁଡ଼ିକରେ ସେଇ ପିଜୁଳୀ ହୋଇଥିଲା ବାପାଙ୍କର ଖୁସୀ ଖାଦ୍ୟ । ରାତି ପାହିଲା ବେଳକୁ ବାପା କଲେରାରେ ଆକ୍ରାନ୍ତ ହୋଇ ଅଚେତ । ଠିକ୍ ସେତିକିବେଳେ ମୋ ଦେହରେ ଜରର ଖଇଫୁଟା ତାତି । ତାଙ୍କର ଏ ଅବସ୍ଥାରେ ମୋର ଅବସ୍ଥା କହିଲେ ନସରେ । ପାଖରେ କଣାକଉଡ଼ିଟାଏ ବି ନାହିଁ । କେବଳ ଅସହାୟ ଭାବରେ କାନ୍ଦିବା ବ୍ୟତୀତ ମୋର ଆଉ କିଛି ଗତ୍ୟନ୍ତର ରହିଲା ନାହିଁ ।

ଦୋଳମୁଣ୍ଡାଇ ଛକରୁ ପିଠାପୁର ଯିବା ରାସ୍ତାର ବାଁ କଡ଼ରେ ଥିଲା ତତ୍କାଳୀନ କଂଟ୍ରାକ୍ଟର ରଥ ବେହେରାଙ୍କ ଘର—ଆଜି ବି ଅଛି । ବେହେରାଙ୍କ ପରିବାର ସହିତ ବାପାଙ୍କର ଥିଲା ଗଭୀର ଆତ୍ମୀୟତା । ରଥବାବୁଙ୍କ ସ୍ତ୍ରୀ ମୋତେ ଭାରି ଭଲ ପାଉଥିଲେ । ଦିନାକେତେ ତାଙ୍କର ବାରଣ୍ଡାରେ ଥିଲା ଆମର ରାତି ଆଶ୍ରୟସ୍ଥଳ । ବାପାଙ୍କର ଏପରି ଅବସ୍ଥାରେ ବେହେରାଙ୍କ ପରିବାର ମଧ୍ୟ ଅତ୍ୟନ୍ତ ବିବ୍ରତ ହୋଇପଡ଼ି ସଂଗେ ସଂଗେ ଆମ୍ବୁଲାନ୍ସ ଡକାଇ ବାପାଙ୍କୁ ଡାକ୍ତରଖାନାକୁ ସ୍ଥାନାନ୍ତରର ବ୍ୟବସ୍ଥା କଲେ । ସକାଳ ଆଠଟା ବେଳେ ବାପାଙ୍କୁ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ହାସ୍ପାତାଲକୁ ପଠାହେଲା । ବଜ୍ରାଘାତରେ ବଧିର ଶ୍ରବଣଶକ୍ତି ଫେରିପାଇବା ପରି ମୋର ଜର ପୂରା ଛାଡ଼ିଗଲା । ଆମ୍ବୁଲାନ୍ସରେ ବାପାଙ୍କୁ ଉଠାହେଲା—ମୁଁ ବସିଲି ତାଙ୍କ ପାଖରେ ।

ସେତେବେଳେ କଟକ ବଡ଼ ଡାକ୍ତରଖାନାର ଛବି ଆଜି ବି ମୋର ମନେପଡ଼େ । ତାହା ଏକ ଜୀବନ୍ତ ଯମପୁରୀ । ବିଶେଷ କରି କଲେରାୱାର୍ଡ—କେବେ ଭାବି ନଥିଲି ଜୀବନ୍ତ ଅବସ୍ଥାରେ ତା'ର ବିଭୀଷିକାମୟ ରୂପକୁ ଆଖିରେ ଦେଖିବି ।

ଯେତେବେଳେ ବାପାଙ୍କୁ ନେଇ ଗୋଟିଏ ଖଟିଆରେ ଶୋଆଇ ଦିଆଗଲା ସେତେବେଳେ ବାହାରେ ଚାଳୁଣି ଛିଦ୍ରରୁ ପାଣି ଗଳିଲା ପରି ଆକାଶରୁ ଝରୁଥିଲା ଅବିଶ୍ରାନ୍ତ ବର୍ଷାଧାରା । ମୁଁ ସେତେବେଳେ ବାପାଙ୍କ ଖଟିଆ ଠାରୁ କିଛି ଦୂରରେ ଦୁଆର ମୁହଁର ଚଉକାଠକୁ ଆଉଜି ଏକ ନିଷ୍ପନ୍ଦ ପୁତୁଳ ପରି ଠିଆ ହୋଇଥିଲି । ସାନ୍ତ୍ୱନା ସେତେବେଳେ ଏକମାତ୍ର ମୋର ଥିଲା ରୁଦ୍ଧ ରୋଦନ ଏବଂ ଲୁହ ।

ଭୋକ ଶୋଷ ସବୁକୁ ଭୁଲିଥିଲି । ମନରେ ଲୁହାକୁ ଲୁହା ଗୋଟିଏ ମାତ୍ର ପ୍ରଶ୍ନ —ବାପା ସତରେ ବଞ୍ଚିବେ ତ ? ବହୁ ଅନୁନୟ ବିନୟ ପରେ ବାପାଙ୍କ ଖଟିଆର ଗୋଡ଼ ପାଖରେ ଯାଇ ବସିବାର ସୁଯୋଗ ପାଇଲି । ବସିଛି ତ ବସିଛି । ବସି ବସି ନିଦରେ ଢୁଳେଇ ପଡ଼ୁଛି । ଏଥିଭିତରେ ବାପାଙ୍କ ହାତ ଚିରାହୋଇ ଦିଆଯାଉଛି ସାଲାଇନ । ତାଙ୍କ ଉପରେ ତାଙ୍କି ଦିଆଯାଉଛି ୨।୩ଟା କମ୍ବଳ । ଓ୍ୱାର୍ଡଭିତରେ ମେଡ଼ିକାଲର ବେଳେ ବେଳେ ଅନ୍ୟାନ୍ୟ ଖଟିଆରୁ କମ୍ବଳ ଟେକି ଦେଖୁଛି ଅନ୍ୟ କଲେରାରୋଗୀଙ୍କୁ—ବେଳେ ବେଳେ କହି ଉଠୁଛି "ମଲାଣି" । ତାପରେ ମୋର ପାଖଦେଇ ମଡ଼ାମାନଙ୍କୁ ବୁହାହେଉଛି ବାହାରକୁ । ଇସ୍, କି ବୀଭତ୍ସ ପ୍ରେତାୟିତ ଦିନ ଥିଲା ସିଏ । କ୍ରମେ ଦିନଯାଇ ରାତି ଆସିଲା । ମହାମେରୁ କପିଳାସର ମୂକଚୂଡ଼ା ପରି ମୁଁ କାଠପାଲଟି ବସିଛି ସେଇମିତି । ରାତି ସେତେବେଳକୁ ୭ଟା ହେବ । ଜଣେ ନର୍ସ ପଶି ଆସିଲେ—ମୋତେ ନିରୀକ୍ଷଣ କରି ଚାହିଁଲେ, ବାପାଙ୍କ ଶାୟିତ ଦେହ ଉପରେ ଯେ ଟିକେ ନଜର ପକାଇ ପୁଣି ମୋ ଉଦ୍ଦେଶ୍ୟରେ ପଚାରିଲେ "ତୁ କଣ ଏଠି ରାତିଯାକ ରହିବୁରେ ପିଲା ?" ମୁଁ ମୁଣ୍ଡହଲାଇ ସମ୍ମତି ଜଣାଇବାରୁ ସେ ମୋତେ ଡାକି ନେଲେ ସଙ୍ଗରେ ଡ଼ିଉଟି ରୁମ୍‌କୁ । ମୋତେ ସେଠି ବସାଇ ମୋ ଆଡ଼କୁ ଦୁଇଟି କଦଳୀ, ଚାରିଖଣ୍ଡ ବିସ୍କୁଟ ଆଲମାରିରୁ କାଢ଼ି ବଢ଼ାଇ ଦେଇ କହିଲେ, ଖାଇଦେ, ସେଠି ବସି କିଛି ଖାଆନ୍ତି ନାହିଁ ।" ମୁଁ ସେତକ ଖାଇବା ଆଗରୁ ତାଙ୍କୁ ମାଗିଲି ପିଇବାକୁ ପାଣି । ୨।୩ ଗିଲାସ ପାଣି ଏକା ନିଃଶ୍ୱାସରେ ପିଇଗଲି । ତାପରେ ଖାଦ୍ୟତକ ଗର୍ଭସ୍ଥ କରି ପୁଣି ଫେରି ଆସିଲି ବାପାଙ୍କ ଖଟିଆ ପାଖକୁ ।

ରାତି ସେତେବେଳକୁ ଗୋଟାଏ ଖଣ୍ଡେ ହେବ । ମୁଁ ବସି ବସି ଢୁଳାଉଛି । ଏ ମଧ୍ୟରେ ତାଙ୍କୁ ସାଲାଇନ ଦବା ବନ୍ଦ କରି ଦିଆଗଲା । ବାହାରେ ନିଶା ଗର୍ଜୁଛି । ଚାରିଆଡେ ନୀରବ ଆଉ ନିଶୂନ । ସେତେବେଳର ସେହି ସ୍ତିମିତପ୍ରଦ କଲେରା ଓ୍ୱାର୍ଡରେ ଇଲେକ୍ଟ୍ରିକ୍ ବତୀ ଗୁଡ଼ିକ ତାଙ୍କର ଆଲୋକ ବିଚ୍ଛୁରିତ କରୁଛନ୍ତି । ତା'ର ଭିତରେ କହିବାକୁ ଗଲେ ଏକ ଅସହାୟ ଜୀବନ୍ତ ପ୍ରେତପୁରୀରେ ଏକ ବାଳକ ମୁଁ । ବସିଛି ବାପାଙ୍କ ଖଟିଆର ଗୋଡ଼ ପାଖରେ । ଖଟିଆ ଉପରେ କମ୍ବଳ ତଳେ ଚେତାଶୂନ୍ୟ ଅବସ୍ଥାରେ ପଡ଼ିଛନ୍ତି ବାପା···ମୋର ଜୀବନର ଏକମାତ୍ର ଆଶା ଭରସାର ସ୍ଥଳ, ଅନାଥର ନାଥ,

ଅସହାୟର ସହାୟ···ଅଥଚ ଦରିଆ ଜଳର ଏକମାତ୍ର ବିଜୟାବରେଣୀ, ଯିଏକ ପୃଥିବୀର ରାଜରାସ୍ତାରେ ଆଗେ ଆଗେ ଚାଲି ମୋତେ ଶିଖାଇଛନ୍ତି ବାଟଚଲା, ତାଙ୍କର ଆଜ ଏହି ଦଶା । ସେତେବେଳେ ମୋର ମନର ଅବସ୍ଥା ଯାହା ସେଥିରେ ମନେ ହେଉଥିଲା ମୋ ପାଦ ତଳେ ପୃଥିବୀର ମାଟି ନାହିଁ, କୌଣସି ଏକ ଗ୍ରହରୁ ବିଚ୍ଛିନ୍ନ ହୋଇ ମୁଁ ଦ୍ରୁତ ଗତିରେ ଛୁଟିଛି ଅନିବାର୍ଯ୍ୟ ଧ୍ୱଂସର କୋଳକୁ ।

ରାତି ଦୁଇଟା ବୋଧହୁଏ ହେବ ।

ବାପାଙ୍କ ଉପରେ ଢଙ୍କା ହୋଇଥିବା ଷ୍ଟେନୋପିଯାକ କମ୍ବଳ ହଠାତ୍ ଛିଟିକି ପଡ଼ିଲା ତଳଆଡ଼କୁ । ତାପରେ ବାପା ସେଇ ଖଟିଆ ଉପରେ ଉଠି ବସିପଡ଼ିଲେ । ସର୍ବାଙ୍ଗ ତାଙ୍କର ଆହତ ବିହଙ୍ଗ ପରି ଥର ଥର ହୋଇ ଥରୁଥିଲା, ଆଖି ଦୁଇଟି ଆଶ୍ରୟ ନେଇଥିଲା ଗଭୀର କୋଟର ମଧ୍ୟରେ । ହଇଜା ମଳୁର ଯେପରି ଚେହେରା ହେବା କଥା—ଦେଖିଲେ ମନେହେବ ଜୀବନ୍ତ ଗୋଟାଏ ପ୍ରେତ କେଉଁ ମଶାଣିରୁ ଉଠିଆସିଛି । ଆଉ ଦାନ୍ତ ରଗଡ଼ ଗୋଟାଏ ଭୌତିକ ଦୃଷ୍ଟିରେ ମୋ ଶିଶୁ ହୃଦୟକୁ ବାରମ୍ବାର ଉପହାସ କରୁଛି । ଅନୁଭବ କଲି ସେ ମୋତେ ଚିହ୍ନି ପାରୁନାହାନ୍ତି । କିଛି ସମୟ ମୋ ମୁହଁକୁ ନୀରବରେ ନିରୀକ୍ଷଣ କରିବା ପରେ ସେ ପୁଣି ଦାନ୍ତ କଡ଼ମଡ଼ କରି ଗର୍ଜନ କଲେ, ଆଉ ମୋତେ ପଚାରିଲେ "କିଏରେ ତୁ ?" ଏଠି କାହିଁକି ବସିଚୁ ? ଦେଖିବୁ ଅବକା ? ମୁଁ "ବାପା" "ବାପା" ବୋଲି ଡାକିବାରୁ ସେ ଖଟରୁ ଓହ୍ଲାଇ ପଳାଇ ଯିବାର ଉପକ୍ରମ କଲେ । କୌଣସି ଗତ୍ୟନ୍ତର ନଦେଖି ମୁଁ ଅତି ଆକୁଳ ଭାବରେ ଡାକ ପକାଇଲି "ନେହେରୀ, ନେହେରୀ !" ଯେତେବେଳକୁ ମୁଁ ଉଠି ଠିଆହୋଇ ପ୍ୟାଣ୍ଟରେ ପରିଶ୍ରା କରି ଦେଇଥାଏ । ମୋ ଚିତ୍କାରରେ ଡ୍ୟୁଟି ରୁମ୍‌ରେ ଥିବା ସର୍ଜନ, ନର୍ସ, ନେହେରୀ, ଜଣେ ମେହେନ୍ତର, ସମସ୍ତେ ଦୌଡ଼ିଆସିଲେ । ମନରେ ଦମ୍ଭ ଆସିଲା । ଦେହରୁ ଗୋଟାଏ ଝାଳ ବୋହିଗଲା । ଡାକ୍ତର କାଳ ବିଳମ୍ବ ନ କରି ବାପାଙ୍କ ଦୁଇହାତକୁ ତାଙ୍କ ଖଟିଆର ବାଡ଼ରେ ବାନ୍ଧିଦେଲେ । ଏ ଦୃଶ୍ୟରେ ମୁଁ ଅତ୍ୟନ୍ତ ଅସହାୟ ଭାବରେ କାନ୍ଦିବାକୁ ଆରମ୍ଭ କଲି । ନର୍ସ ଜଣକ ମୋତେ ତାଙ୍କ କୋଳକୁ ଆଉଜେଇ ନେଇ ସାନ୍ତ୍ୱନା ଦେଲେ ଏବଂ ମୋତେ ନେଇ ବସେଇଲେ ଡ୍ୟୁଟି ରୁମରେ ତାଙ୍କ ପାଖରେ ।

ରାତି ପାହି ଆସୁଥାଏ । ସକାଳର ପହିଲା କୁଆ ରାବିବା ଆଗରୁ ମୁଁ ପୁଣି ଥରେ ଯାଇ ଦେଖିଲି ବାପା ଶୋଇଛନ୍ତି, ତାଙ୍କ ଦେହରେ ପୂର୍ବବତ୍ କମ୍ବଳ ଢଙ୍କା ହୋଇଛି ।

ସକାଳ ହେଲା । ନିଜର ବିନିଦ୍ର ଆଖି ଦୁଇଟିକୁ ମଳି ମଳି ମୁଁ ବାହାରି ଆସିଲି ପଦାକୁ । ଯିବି କୁଆଡ଼େ, କରିବି କ'ଣ ? ବାପା କେବେ ଭଲ ହେବେ ? ତେଣେ ଗାଁରେ ମା' କିପରି ଅଛି ? ଏଇସବୁ ଚିନ୍ତାରେ ମୋ ମୁଣ୍ଡର ଖପୁରି ତଳ ସେତେବେଳେ ତାତି ଉଠୁଥାଏ । ଧୀରେ ଧୀରେ ପାଦ ବଢ଼ାଇଲି ଆଗକୁ । ଦୋଳମୁଣ୍ଡାଇ ଛକରେ ଆମର ପୂର୍ବ ଆଶ୍ରୟସ୍ଥଳ ଶ୍ରୀ ରଥ ବେହେରାଙ୍କ ଘରେ ଆସି ପାଦ ଦେବା କ୍ଷଣି ବହୁତ ପ୍ରଶ୍ନ ଏକାବେଳକେ ଆସି ଅଜାଡ଼ି ହୋଇ ପଡ଼ିଲା ମୋ ଉପରେ । ଏକ ଦୟାର୍ଦ୍ର କଣ୍ଠସ୍ୱର କାନରେ ଆସି ବାଜିଲା, "ଆ, ପଖାଳ ଅଛି ଦି'ଟା ଖାଇ ଦେ !" ଶ୍ରୀ ରଥ ବେହେରାଙ୍କ ସ୍ତ୍ରୀଙ୍କର ସେ କଣ୍ଠସ୍ୱର । ଯଦିଓ କେତେଦିନ ଧରି ମୋର ଦିନ ଗୁଡ଼ିକ ଅନାହାର ଓ ଅର୍ଦ୍ଧ ଅନାହାରରେ ବିତୁଥିଲା, ତଥାପି ପାକସ୍ଥଳୀ କୌଣସି ଖାଦ୍ୟ ଗ୍ରହଣ କରିବାକୁ ଥିଲା ଏକାନ୍ତ ଅନିଚ୍ଛୁକ । ଦେହ ଚାହୁଁଥିଲା ବିଶ୍ରାମ ଏବଂ ଗାଢ଼ନିଦ୍ରା ।

ମୋର ବଡ଼ଭାଇ ଯମୁନାକାନ୍ତ ସେତେବେଳେ କଟକର ମଛୁଆ ବଜାରରେ ଏକ ସାମରିକ ମେସ୍‌ରେ ଥା'ନ୍ତି । କାରଣ ସେତିକିବେଳେ ସେ ଇଂରେଜ ସାମରିକ ବାହିନୀରେ ଯୋଗ ଦେଇ ଟ୍ରେନିଂ ନେଉଥାନ୍ତି । ରଥ ବେହେରାଙ୍କ ସ୍ତ୍ରୀଙ୍କ ଅନୁରୋଧ ଏଡ଼ି ନପାରି ସାମାନ୍ୟ ଦି'ଟା ପଖାଳ ଖାଇ ଦେଇ ବଡ଼ କଷ୍ଟରେ ଚାଲି ଚାଲି ଯାଇ ପହଞ୍ଚିଲି ମଛୁଆ ବଜାରରେ ଭାଇଙ୍କ ପାଖରେ । ବାପାଙ୍କ ଅବସ୍ଥା ସମ୍ପର୍କରେ ତାଙ୍କୁ ଅବଗତ କରାଇ ମୋ ଅବସ୍ଥା କଥା କହିଲି । କିନ୍ତୁ ଆଶ୍ଚର୍ଯ୍ୟ, ତାଙ୍କଠାରେ କୌଣସି ପ୍ରତିକ୍ରିୟା ଲକ୍ଷ୍ୟ କଲି ନାହିଁ । ଖାଲି ଉପରଠାଉରିଆ ଭାବରେ ସେ ମୋତେ କହିଲେ, "ତୁ ଯା, ମୁଁ ପଛକୁ ଯିବି ଡାକ୍ତରଖାନାକୁ ।" ମୁଁ କେମିତି ଅଛି, କୋଉଠି ରହୁଛି, କଣ ଖାଉଛି, ତା'ର କୌଣସି ପ୍ରଶ୍ନ ସେ ପଚାରିଲେ ବି ନାହିଁ । ଏକ ଦାରୁଣ ଆଘାତ ନେଇ ବିରାଟ ଆଶାର ସିଂହଦ୍ୱାରରୁ ଶୂନ୍ୟପାତ୍ର ନେଇ ଫେରିଲି । ଠିକ୍ ମନେ ଅଛି, ମଛୁଆ ବଜାରରୁ ସେଦିନ ଆହତ ହୃଦୟ, ଭଗ୍ନମନ ନେଇ

ଗୁଲିଗୁଲି ପଡ଼ୁଥିଲା ଶଗଡ଼ଆସାଲ ଫ୍ରଫେସରପତ୍ତାରେ । ଦେଖା କରିଥିଲି ମୋର ଚିରସ୍ମରଣୀୟ ପୂଜ୍ୟ ଦର୍ଶନ ଅଧ୍ୟାପକ ୰ ରତ୍ନାକର ପତିଙ୍କୁ । ମୁଁ ଯେତେବେଳେ ଦାର୍ଶନିକ ପତିଙ୍କ ଆଗରେ ସମସ୍ତ ଘଟଣା ବର୍ଣ୍ଣନା କରୁଥିବି ଲୁହ ଛଳଛଳ ଆଖିରେ, ସେତେବେଳେ ତାଙ୍କର ଧର୍ମପତ୍ନୀ ଖଣ୍ଡେ ମଠାଶାଢ଼ୀ ପିନ୍ଧି କିଛି ଦୂରରେ ଠିଆ ହୋଇ ସବୁ ଶୁଣୁଥିଲେ । ମୋର କଥନରେ ତାଙ୍କ ଆଖିରେ ମଧ୍ୟ ଅଶ୍ରୁ ଫଗୁର ହୋଇଥିଲା । ସେ ଠିଆ ଠିଆ ନିଜ ଆଖିରୁ ଲୁହ ପୋଛୁଥିଲେ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ କଥା ମୁଁ ବାପାଙ୍କ ଠାରୁ ବହୁତ ଶୁଣିଛି । ତାଙ୍କର ସେହି କନ୍ୟା ଅଧ୍ୟାପକ ପତିଙ୍କର ସହଧର୍ମିଣୀ । ସେ ସେଦିନ ମୋତେ ପାଖକୁ ଡାକି ତାଙ୍କ ପିନ୍ଧା ମଠା ଲୁଗାରେ ମୋ ଆଖିରୁ ଲୁହ ପୋଛି ଥିଲେ ଏବଂ ମୋ ହାତ ଧରି ଘର ଭିତରକୁ ନେଇ ଆରିସା ପିଠା ଦୁଇଟି ଓ ଗୋଟିଏ କଦଳୀ ଖାଇବାକୁ ଦେଇ "ତୋର କିଛି ହବ ନାହିଁ" ବୋଲି ସାନ୍ତ୍ୱନା ଦେଇଥିଲେ । ଅଧ୍ୟାପକ ରତ୍ନାକର ପତି ମୋ ହାତରେ ଦୁଇଟି ଟଙ୍କା ଦେଇ ଗଭୀର ଆଶୀର୍ବାଦ କରି ଯେତେବେଳେ ବିଦାୟ ଦେଲେ ସେତେବେଳେ ବାହାରେ ଆକାଶ ଥିଲା ମେଘାଚ୍ଛନ୍ନ । ମୁଁ ତାଙ୍କ ଫାଟକ ପାରି ହୋଇ ଯେତେବେଳେ ଚାଲି ଆସୁଥିଲି ସେତେବେଳେ ତାଙ୍କର କ୍ଷୁଦ୍ର ଅଥଚ ଦାର୍ଶନିକ ଆଖି ଦୁଇଟି ମୋତେ ନୀରବରେ ଚାହିଁ ରହିଥିଲା ।

ଅଧ୍ୟାପକ ୰ ରତ୍ନାକର ପତି ଉପରକୁ ଦେଖିବାକୁ ଭାରି ରୁକ୍ଷ ଏବଂ ଚିଡ଼ଚିଡ଼ା ସ୍ୱଭାବର । ଯିଏ ତାଙ୍କୁ ବାହାରୁ ତାଙ୍କର ଏ ରୂପକୁ ଦେଖି ଦୂରେଇ ଗଲା, ସିଏ ଚିରକାଳ ପାଇଁ ଗଲା ; କିନ୍ତୁ ଯିଏ ତାଙ୍କର ସମସ୍ତ ବାହ୍ୟ ପ୍ରକୃତିର ଜ୍ୱାଳାକୁ ସହ୍ୟ କରି ମଧ୍ୟ ତାଙ୍କୁ ବୁଝିବା ପାଇଁ ଚେଷ୍ଟା କରିଛି, ସେଇ କେବଳ ପାଇଛି ଏକ ପ୍ରଶାନ୍ତ ବ୍ୟକ୍ତିତ୍ୱର ସାନ୍ନିଧ୍ୟ । ସେପରି ସାନ୍ନିଧ୍ୟ ଲଭିବା ପରମ ସୌଭାଗ୍ୟ ମୋର ହୋଇଥିଲା ବ୍ରିଟିଶ ଭାରତବର୍ଷରୁ "ସ୍ୱାଧୀନ ଭାରତ" ର ୧୯୭୦ ମସିହା ପର୍ଯ୍ୟନ୍ତ । ତାଙ୍କ ପରିବାର ସହିତ ମୁଁ କେତେ ଘନିଷ୍ଠ ଥିଲି ତାହା ଜାଣିଥିଲେ ତାଙ୍କର କନ୍ୟା ତଥା ବର୍ତ୍ତମାନର ମାନ୍ୟବର ବିଚାରପତି ନବକୁମାର ଦାସଙ୍କ ୰ ପତ୍ନୀ ଶ୍ରୀମତୀ ପ୍ରଭାମୟୀ ଦେବୀ । ୰ ରତ୍ନାକର ପତି ଓ ତାଙ୍କର ସହଧର୍ମିଣୀ ଏବଂ ମୋର ଘନିଷ୍ଠ ବନ୍ଧୁ ତଥା ତାଙ୍କର ଜ୍ୟେଷ୍ଠପୁତ୍ର ଡଃ ବିକ୍ରମ ପତି ସେ ଘନିଷ୍ଠତାର ଜୀବନ୍ତ ସାକ୍ଷୀ । ଯେତେବେଳେ ୰ ରତ୍ନାକର ପତିଙ୍କ ସହିତ ମୋର ପହିଲି ପରିଚୟ ହୋଇଥିଲା ସେତେବେଳେ ତାହା ହୋଇଥିଲା

ମୋର ବାପାଙ୍କ ଜରିଆରେ । ମୋ ବାପାଙ୍କର ୭ ପତ୍ର ଥିଲେ ଅତି ଘନିଷ୍ଠ । ବୃନ୍ଦ୍ରୁପ୍ରୀ ଜାଗ୍ରତ ଆନ୍ଦୋଳନର ଅଗ୍ନିଷ୍ଫୁଲିଙ୍ଗରେ ଦେଶ ଯେତେବେଳେ ପ୍ରଖର, ଯେତେବେଳେ ମୁଁ ଏକ ନଗଣ୍ୟ ଅଶିକ୍ଷିତ ତଥା ଅଖ୍ୟାତ ବାଳକ, ଯେତେବେଳେ ଇଂରେଜ ସରକାରର ରାଜରୋଷରେ ଆମର ପାରିବାରିକ ନବପତ୍ର ବିପନ୍ନ, ସେତେବେଳେ ମୁଁ ଥିଲି ବାପାଙ୍କ ରଚିତ ଇଂରେଜ ସାମ୍ରାଜ୍ୟବାଦ ବିରୋଧୀ ଅଗ୍ନିମୟ ସଙ୍ଗୀତର ଗାୟକ । ସେହି ଅବସ୍ଥାରେ ମୁଁ ପ୍ରଥମେ ବାପାଙ୍କ ସହିତ ଅଧ୍ୟାପକ ପତିଙ୍କ ପାଖରେ ତାଙ୍କ ବାସଭବନରେ ପହଞ୍ଚି ଥିଲି । ସେହିଦିନ ଠାରୁ ତାଙ୍କର, ତାଙ୍କ ପରିବାରର ସ୍ନେହଶ୍ରଦ୍ଧା ମୋତେ ନାନା ଭାବରେ ପ୍ରେରଣା ଯୋଗାଇଥିଲା । ତାହା ଲେଖିବସିଲେ ବିରାଟ ଗ୍ରନ୍ଥ ହେବ । ମନେଅଛି, ୧୯୪୭ ମସିହାରେ ଯେତେବେଳେ ମୁଁ ସମ୍ପୂର୍ଣ୍ଣ ଅନାଥ ହୋଇପଡେ, ପିତାମାତା, ପରିବାରର ଅଧିକାଂଶ ସଭ୍ୟଙ୍କୁ ଚିରଦିନ ପାଇଁ ହରାଇ ଯେତେ-ବେଳେ ମୁଁ ଅସହାୟ ଓ ଲକ୍ଷ୍ୟହୀନ ଭାବରେ କଟକ ମାଟିରେ ଆସି ପାଦ ଦିଏ, ସେତେବେଳେ ସ୍ୱର୍ଗୀୟ ଅଧ୍ୟାପକ ରତ୍ନାକର ପତିଙ୍କ ଦରଦ, ସମବେଦନା ଓ ସାହାଯ୍ୟ ଥିଲା ମୋ ପକ୍ଷରେ ଏକ ମହାର୍ଘ ପ୍ରେରଣା । ଆର୍ଥିକ ସାହାଯ୍ୟ ଠାରୁ ଆରମ୍ଭ କରି ବୌଦ୍ଧିକ ସାହାଯ୍ୟ ଯେପରି ଭାବରେ ମୁଁ ତାଙ୍କଠାରୁ ପାଇଥିଲି, ତାହା ନ ପାଇଥିଲେ ମୋର ବୌଦ୍ଧିକ ବିକାଶ ଶୋଚନୀୟ ଭାବରେ ବାଧାପ୍ରାପ୍ତ ହୋଇଥାନ୍ତା । କେତୋଟି ଘଟଣା ଆଜି ମନେ ପଡ଼ୁଛି । ରାଜନୈତିକ ଦୃଷ୍ଟିଭଙ୍ଗୀରେ ଦୀର୍ଘ କେତେବର୍ଷ କାଳ ( ୧୯୪୮-୧୯୫୩ ) ଯାଇ ଛିଟିକି ପଡ଼ିଥିଲି ଓଡ଼ିଶାର ବିଭିନ୍ନ ପୁରପଲ୍ଲୀରେ । ସେହି ସମୟ ଭିତରେ ମୋ ସାହିତ୍ୟିକ ପ୍ରତିଭାର ଅଙ୍କୁର ଦୁରନ୍ତ ଭାବରେ ଆତ୍ମପ୍ରକାଶର ପଥ ଖୋଜୁଥିଲା । ସେହି କେତେବର୍ଷ ଅଧ୍ୟାପକ ପତିଙ୍କ ସହିତ ମୋର ଦେଖା-ସାକ୍ଷାତ ପ୍ରାପ୍ତ ହୋଇନଥିଲା । ୧୯୫୫ ସାଲରେ ପର୍ତ୍ତୁଗୀଜ୍ ଶାସିତ ଗୋଆର ମୁକ୍ତି ଆନ୍ଦୋଳନରେ ଯୋଗଦେଇ ଘୋର ଆହତ ଅବସ୍ଥାରେ କଟକ ଫେରିବା ପରେ ମୋର ଯେତେବେଳେ ତାଙ୍କ ସହିତ ସାକ୍ଷାତ ହେଲା, ସେଦିନ ସେ ମୋତେ ଅସୀମ ଶ୍ରଦ୍ଧାରେ କୋଳାଗ୍ରତ କରି ମୋ ମୁଣ୍ଡରେ ହାତ ବୁଲାଇ ବାଷ୍ପରୁଦ୍ଧ କଣ୍ଠରେ କହିଥିଲେ, "ତୁ ବଡ଼ ଦୁଃସାହସୀ । ଭଗବାନଙ୍କ ଆଶୀର୍ବାଦ ନଥିଲେ ତୋର ଏ ବିକାଶ ସମ୍ଭବ ହୋଇ ନଥାନ୍ତା ।" ବହୁମତ, ବହୁପଥ, ବହୁତ ମନିଷଙ୍କ ମେଳରେ ବୁଲିବୁଲି କ୍ଳାନ୍ତ; ଅବଶ ହୋଇ ଯେତେବେଳେ ମୁଁ ସାହିତ୍ୟ ସାଧନାକୁ ଜୀବନର ଏକମାତ୍ର ଅବଲମ୍ବନ ବୋଲି ଗ୍ରହଣ କଲି,

ସେତେବେଳେ ସେ ପଥରେ ୰ ଅଧ୍ୟାପକ ରତ୍ନାକର ପତି ଥିଲେ ମୋର ଏକ ପ୍ରେରଣାର ଉତ୍ସ । ବହୁକାଳରୁ ମୁଁ ମାର୍କସୀୟ ଦର୍ଶନ ପ୍ରତି ଆକୃଷ୍ଟ ହୋଇଥିଲି । ସେ କଥା ସେ ଜାଣିଥିଲେ । ମୋ କବିତା ଗୁଡ଼ିକର ସେ ଥିଲେ ମୁଗ୍ଧ ପାଠକ ଏବଂ ଶ୍ରୋତା । ଦିନେ ଗୋଟିଏ କବିତା ମୁଁ ତାଙ୍କୁ ପଢ଼ି ଶୁଣାଇବା ପରେ ସେ ମୋତେ କହିଥିଲେ, "ହିନ୍ଦୁଟିଏ ମାତ୍ର ଶ୍ରେଣୀକୁ ପାଇ ତୁ ଏ ପ୍ରତିଭା ହାସଲ କଲୁ କୋଉଠୁ ? କପରି ଭାବରେ ତୁ ମଣିଷ ହୋଇଚୁ ତା'ତ ମୋର ଆଖି ଦେଖା ! ତୋ ପରି ଲୋକର ମାର୍କସବାଦକୁ ଆଦରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ । ମୁଁ ଅତିପ୍ରାକୃତ ଶକ୍ତିରେ ବିଶ୍ୱାସୀ । ତୋ ମୋ ଭିତରେ ଏ ସମ୍ବନ୍ଧରେ ମତ ବିରୋଧ ଥିଲେ ମଧ୍ୟ ମୁଁ ତୋର ଅଧ୍ୟୟନ ଏବଂ ଅଧ୍ୟବସାୟରେ ଅତ୍ୟନ୍ତ ବିସ୍ମିତ ଆଉ ମୁଗ୍ଧ ।" ମୋର ସମସ୍ତ ପ୍ରକାଶିତ ପୁସ୍ତକର ସେ ଥିଲେ ଗ୍ରାହକ ଏବଂ ଦରଦୀ ପାଠକ । ତାଙ୍କ ପାଖକୁ ଥରେ ଗଲେ ୨।୩ ଘଣ୍ଟା ପୂର୍ବରୁ ସେ ମୋତେ ଛାଡ଼ନ୍ତି ନାହିଁ । ପାଖରେ ବସାଇ ଖୁଆନ୍ତି । ମୋର ଜୀବନଯାତ୍ରା କଥା ମନେ ପକେଇ ସେ ତାଙ୍କ ବାଲ୍ୟ ଜୀବନରେ କପରି ଘୋର ଦାରିଦ୍ର୍ୟ ଭିତରେ ମଣିଷ ହୋଇଛନ୍ତି ତା'ର କାହାଣୀକୁ କହି ବସନ୍ତି ଓ ପରି-ଶେଷରେ ମୋତେ କହନ୍ତି, "ତୁ ଏ ଗୁଡ଼ାକ ବାହାରେ କେଉଁଠି କହିବୁ ନାହିଁ । କାରଣ, ଦାରିଦ୍ର୍ୟ ଆମର ଏଠି ଗୌରବ ନୁହେଁ—ଅଭିଶାପ ।" ୰ ପତି ଥିଲେ ରାମାୟଣର ରାମଚନ୍ଦ୍ରଙ୍କ ଘୋର ସମାଲୋଚକ । ରାବଣର ପୌରୁଷକୁ ସେ ଯଥେଷ୍ଟ ସମ୍ମାନ ଓ ଶ୍ରଦ୍ଧା କରୁଥିଲେ । ତାଙ୍କର ମତ ଥିଲା—ଯାହା ସତ୍ୟ, ତାହା ଅପ୍ରୀତିକର । ତେଣୁ ଅଗ୍ନିକୁ ସେ ସତ୍ୟର ଶ୍ରେଷ୍ଠ ନିଦର୍ଶନ ବୋଲି ସବୁବେଳେ ମୋତେ କହୁଥିଲେ । ପରବର୍ତ୍ତୀ କାଳରେ ତାଙ୍କର ବଡ଼ ପୁଅ ମହା ଗଣିତ-ବିଦ୍ୟାବାନ୍ ଡ଼ଃ ବିକ୍ରମ ପତି ମୋର ଘନିଷ୍ଠ ବନ୍ଧୁ ହୋଇଉଠିଲେ । ୧୯୫୯ ମସିହାରେ ମୋର 'ଚରମପତ୍ର' କାବ୍ୟଗ୍ରନ୍ଥ ଯେତେବେଳେ ପ୍ରକାଶିତ ହେଲା ସେତେବେଳେ ଡକ୍ଟର ବିକ୍ରମ ପତି ତା'ର ମୁଖବନ୍ଧ ଲେଖି ମୋତେ **"Mayakovsky of my people"** ଏବଂ **"Self schooled genius of Utkal"** ବୋଲି ଅଭିହିତ କରିଥିଲେ । ପୁସ୍ତକଟିକୁ ଯେତେବେଳେ ମୁଁ ଅଧ୍ୟାପକ ରତ୍ନାକର ପତିଙ୍କ ହାତରେ ଦେଲି ସେତେବେଳେ ସେ ମୁଖବନ୍ଧଟିକୁ ପଢ଼ି ଡ଼ଃ ବିକ୍ରମ ପତିଙ୍କୁ ଡାକି କହିଲେ, "ପଣ୍ଡିତଜୀ, ତମେ ରବିକୁ ଯେପରି ଦେଖିଛ ତାହା ଭାରି 'ଆପ୍ରୋପ୍ରିଏଟ୍' ହୋଇଛି ।"

ଡ଼ ରତ୍ନାକର ପତିଙ୍କ ସଭାପତିତ୍ୱରେ ଅନୁଷ୍ଠିତ କଟକ ସହରର ଏକାଧିକ ସାହିତ୍ୟ ସଭାରେ ଭାଷଣ ଦେବାର ସୌଭାଗ୍ୟ ମୋର ବହୁବାର ହୋଇଛି । ମୋର ସାହିତ୍ୟିକ ତଥା କାବ୍ୟିକ ପ୍ରତିଷ୍ଠାରେ ଯଦି କାହା ଆଖିରେ ଆନନ୍ଦାଶ୍ରୁ ଦେଖାଥାଏ ତା ହେଲେ ସେ ହେଉଛନ୍ତି ସେହି ମହାନ ପୁରୁଷ, ଦାର୍ଶନିକ ଡ଼ ରତ୍ନାକର ପତି । ୧୯୭୫ ମସିହାରେ ମୋର ସେହି "ଚରମପତ୍ର" କାବ୍ୟଗ୍ରନ୍ଥ ପାଇଁ ମୁଁ ଯେତେବେଳେ ଓଡ଼ିଶା ସାହିତ୍ୟ ଏକାଡେମୀର ପୁରସ୍କାର ଗ୍ରହଣ କରି ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପ ପାହାଚରୁ ତଳକୁ ଓହ୍ଲାଉ ଥାଏ, ସେତେବେଳେ ମୋ ସାମ୍ନାରେ ଠିଆ ହୋଇଥିଲେ ଅଧ୍ୟାପକ ପତି । ମୋତେ ସେଦିନ ସେ ଗଭୀର ଆଶୀର୍ବାଦ କରି କାନ୍ଦି ପକାଇ ଥିଲେ ।

ସେ ଯେତେବେଳେ ଇହଧାମରୁ ବିଦାୟ ନେଲେ ସବୁଠାରୁ ମୋର ବ୍ୟକ୍ତିଗତ କ୍ଷତି ହୋଇଥିଲା ଅଧିକ । ତାଙ୍କର ବରଫଶୀତଳ ମରଦେହର ପାଖେ ପାଖେ ମୁଁ ବସିଥିଲି । ଶବଯାତ୍ରାର ପୁରୋଭାଗରେ ମଧ୍ୟ ମୁଁ ଥିଲି । ତାଙ୍କର ଜ୍ୟେଷ୍ଠପୁତ୍ର, ବନ୍ଧୁ ବିକ୍ରମ ପତି ତାଙ୍କୁ ମୁଖାଗ୍ନି ଦେଇ ଯେତେବେଳେ ଶ୍ମଶାନରୁ ଗୃହ ଆସିଲେ, ରାତି ତମାମ୍ ମୁଁ ଏବଂ ତାଙ୍କର ଜାମାତା ବର୍ତ୍ତମାନର ଓଡ଼ିଶା ହାଇକୋର୍ଟର ବିଚାରପତି ଶ୍ରୀଯୁକ୍ତ ନବକୁମାର ଦାସ ତାଙ୍କ ଚିତା ପାଖରେ ଥିଲୁ । ଖାନ୍ନଗର ଶ୍ମଶାନ ଭୂମିରେ ତାଙ୍କର ଚିତାଗ୍ନି ଯେତେବେଳେ ନିଭି ଆସୁଥିଲା,ଘନ କୁହୁଡ଼ି ଭିତରେ ଘରକୁ ଫେରୁ ଫେରୁ ମୁଁ ତାଙ୍କର ସ୍ମୃତିକୁ ମର୍ମେ ମର୍ମେ ମନେ ପକାଉଥିଲି—ଗଲା, ମୋର ଏକ ଅବଲମ୍ବନ, ଚିରକାଳ ପାଇଁ । ତଥାପି ମୃତ୍ୟୁ ଜୀବନର ଚରମ ସାଫଲ୍ୟ ପାଇଁ ଅଶ୍ରୁମୋଚନ କଲେ ସ୍ୱର୍ଗତ ଆତ୍ମା ପ୍ରତି ଅବିଚାର କରାହେବ । ତାଙ୍କ ଉଦ୍ଦେଶ୍ୟରେ ଶେଷ ପ୍ରଣାମ ଜଣାଇଲି ବେଳେ ପୂର୍ବ ଦିଗରେ ଘଟୁଥିଲା ସକାଳର ନବ ସୂର୍ଯ୍ୟୋଦୟ ।

ସେତେବେଳର ସେହି ଜୀବନ୍ତ ପ୍ରେତପୁରୀ କଟକ ବଡ଼ ଡାକ୍ତରଖାନାର କଲେରା ୱାର୍ଡ଼୍—କେତେବେଳେ ଆସି ତାର ପାଖାପାଖି ହୋଇଗଲିଣି, ସେ କଥା ମୋ ନିଜକୁ ମଧ୍ୟ ମାଲୁମ୍ ନ ଥିଲା । ବାପା ଡାକ୍ତରଖାନାରେ ଭର୍ତ୍ତି ହେବା ଦିନ ଠାରୁ ନିତି ସଂଧ୍ୟାରେ ଯେଉଁ ସୁଶ୍ରୀ ଶ୍ୟାମାଙ୍ଗୀ ନର୍ସଟି ମୋତେ ଦରଦଭରା ଆଖିରେ

ଅନେକ ସମୟ ଧରି ଗୁହାଁରି ରହେ ଆଉ ବେଳେ ବେଳେ ସାନ୍ତ୍ୱନା ଦିଏ, ତା'ରି କଣ୍ଠସ୍ୱରରେ ଫେରିଆସିଲି ବାସ୍ତବତା ଭିତରକୁ । ସେ ମୋତେ ଦୂରରୁ ଦେଖି ସାରିଛି ଅନେକ ବେଳୁ । ମୁଁ ନିକଟତର ହେବାରୁ ସେ ପଚାରିଲା "ବାବୁରେ, କୋଉଠିକି ଯାଇଥିଲୁ ଏତେବେଳ ଯାଏଁ ?" କହିଲି "ଯାଇଥିଲି ମୋ ବଡ଼ଭାଇଙ୍କ ପାଖକୁ ।" "ଅଚ୍ଛା, ବାପା କେମିତି ଅଛନ୍ତି ?" "ଭଲ ଅଛନ୍ତି" । ସେ କହିଲା, "ତୁ କ'ଣ ଖାଇଛୁ ଆଜି ?"

ଏ ପ୍ରଶ୍ନରେ ଏକ ନିର୍ବାକ୍ ଗୁହାରୀରେ ମୁଁ ଅନେଇଲି ତା ମୁହଁକୁ । ଏ ପୃଥିବୀରେ ପୁଣି ଅନ୍ୟ ଦୁଃଖରେ ଦୁଃଖୀ ମଣିଷ ଅଛନ୍ତି, ଯିଏକି ମୋ ପରି ଏକ ଅସହାୟ ବାଳକ ପ୍ରତି ସଦୟ ହୋଇପାରେ ? ସେତେବେଳେ ମୋର ବାଳକ ମନର ଅବସ୍ଥା ଯାହା, ଏବଂ ଯେପରି ଭାବରେ ମୋର ଜୀବନ ବିତୁଥିଲା ସେଥିରେ ଖାଇବା ଶୋଇବା ଏସବୁ ଥିଲା ମୋ ପକ୍ଷରେ ଏକ ସ୍ୱପ୍ନ । ବାଷ୍ପାକୁଳ କଣ୍ଠରେ ତା ପ୍ରଶ୍ନର ଉତ୍ତର ଦେଇ କହିଲି, "ମୁଁ ଖାଇଛି ।"

କିନ୍ତୁ ନ କହି ଅନେକ ସମୟ ଧରି ହେନ୍ତି ମାନୁଷୀ ନର୍ସ ମୂର୍ତ୍ତିଟି ଏକ ଦୟାର୍ଦ୍ର ଗୁହାରୀରେ ମୋର ଆପାଦମସ୍ତକ ଆଉଥରେ ଦେଖିନେଲା ଓ କହିଲା, "ତୁ ଥା, ମୁଁ ଅଳ୍ପ ସମୟ ଭିତରେ ଆସୁଛି ।"

ମୁଁ ପଶିଲି କଲେରା ଓ୍ୱାର୍ଡ ଭିତରକୁ । ଯାଇ ବସିଲି ବାପାଙ୍କ ଖଟିଆ ପାଖରେ । ତାଙ୍କୁ ସାଲାଇନ୍ ଦେବା ବନ୍ଦ ହୋଇ ଯାଇଥିଲା ଓ ତାଙ୍କ ଉପରେ ଘୋଡ଼ା ଯାଇଥିଲା ଗୋଟାଏ ଭାଗଲପୁରୀ କମ୍ବଳ । ଆଜି ମନେ ପଡ଼ୁଛି, ସେତେବେଳେ ସନ୍ଧ୍ୟା ନଇଁ ଆସୁଥିଲା । କଲେରା ଓ୍ୱାର୍ଡ ସାମ୍ନାରେ ଥିବା ଝଙ୍କାଳିଆ ଲମ୍ବଗଛରେ ନାନା ଜାତିର ଘର୍‌ଫେରା ପକ୍ଷୀମାନଙ୍କର କଳରବ କାନରେ ପଡ଼ୁଥିଲା । ପଶ୍ଚିମ ଦିଗନ୍ତରେ ସୂର୍ଯ୍ୟାସ୍ତର ରୋଷଣୀ କ୍ଷୀଣ ହୋଇ ଆସିବା ମାତ୍ରକେ ଦୁଇଟି ମୃତଦେହକୁ ମେହେନ୍ତର ଶ୍ମଶାନକୁ ନେବା ପାଇଁ ଯୋଗାଡ଼ କରୁଥାନ୍ତି । ମୃତଦେହ ଦୁଇଟି ବେଓ୍ୱାରିସ୍—କେହି ଦାବିଦାର ନଥିଲେ ସେଗୁଡ଼ିକର । ବିରାଟ କଲେରା ଓ୍ୱାର୍ଡ ଭିତରେ ନିବିଡ଼ ନୀରବତାକୁ ମଥିତ କରି ବେଳେବେଳେ ମେହେନ୍ତର, ନର୍ସ ଓ ଡାକ୍ତରମାନଙ୍କର ପଦଧ୍ୱନି, ଏବଂ କେଉଁ ଏକ ହତଭାଗ୍ୟ ରୋଗୀର ବିକଟ ଚିତ୍କାର ଶୁଣା ଯାଉଥିଲା,

ଉପରେ ଅତି ଉଦାସ ଭାବରେ ଇଲେକ୍‌ଟ୍ରିକ୍ ବତୀ ଗୁଡ଼ିକ ଜଳୁଥିଲେ ମ୍ଳାନ ଦୀପ୍ତିରେ । ଏପରି ଏକ ଶାନ୍ତିପ୍ରଦ ଭୌତିକ ପରିବେଶ କୋଳରେ ବସି ବସି ରାତି କଟାଇବାକୁ ପ୍ରସ୍ତୁତ ହେଉଥିଲି ବେଳେ ଘନ ଘନ ଦୃଷ୍ଟି ପକାଉଥିଲି ବାପାଙ୍କର ନିଦ୍ରିତ ଦେହ ଉପରେ ଓ ମନକୁ ବିଦ୍ୟୁତ୍‌ଗତିରେ ନେଇ ଯାଉଥିଲି ମୋର ଜନ୍ମସ୍ଥାନ ନବାପାଟଣା ଗାଁକୁ । କ'ଣ କରୁଥିବ ମା', କ'ଣ ଖାଉଥିବ । ପୁଣି ଭାବୁଥିଲି, ଭାଇ କହିଥିଲେ ଆସିବେ ବୋଲି । କାହିଁ, ଏଯାଏଁ ତ ଆସିଲେ ନାହିଁ । ଏଇମିତି ଭାବୁ ଭାବୁ ବାପାଙ୍କ ଖଟିଆକୁ ଆଉଜି କେତେବେଳେ ମୁଁ ଶୋଇ ପଡ଼ିଛି, ସେକଥା ଜାଣେନା । ନିଦ ଭାଙ୍ଗିଲି-ବେଳକୁ ପୂର୍ବ ଦିଗରେ ସିନ୍ଦୂର ଫାଟୁଛି । ହଠାତ୍ ପେଟ ଭିତରଟା କାହିଁକି ମନ୍ଥି ଚକଟି ହେଲା ପରି ଲାଗିଲା । ଭାବିଲି, ଧରିଲା କି କଲେରା ! କିନ୍ତୁ ନା, କଲେରା କାହିଁକି ଏ ସମାଜର ଉତ୍କଟ ବିଷକୁ ଯେହେତୁ ଜୀବନ୍ତ ବିଷକଣ୍ଠ ପରି ଭବିଷ୍ୟତରେ ପାନ କରିବାକୁ ହେବ ମୋତେ, ସେହେତୁ କଲେରାର ଜୀବାଣୁ ଗୁଡ଼ିକ ସେକଥା ବୋଧହୁଏ କପରି ଜାଣିଥିବାରୁ ମୋତେ ସେତେବେଳେ ଆକ୍ରମଣ କରି ନଥିଲେ, ଆକ୍ରମଣ କରିବାର ସମସ୍ତ ସମ୍ଭାବନା ଥିଲେ ମଧ୍ୟ । ମନେଅଛି, ସେଦିନ ଭାବିଥିଲି, ଯଦି ବାପାଙ୍କର ମୃତ୍ୟୁ ଘଟେ, ଯଦି ତାଙ୍କୁ ଚିରକାଳ ପାଇଁ ହରାଇବାକୁ ପଡ଼େ, ମୋତେ ତାହେଲେ ଜୀବନ ପାଖରୁ ବିଦାୟ ନେବାର ବ୍ୟବସ୍ଥା କରିବାକୁ ହେବ । ବାପାଙ୍କ ବ୍ୟତୀତ ଏ ବିରାଟ ଦୁନିଆରେ ମୋର ଅସ୍ତିତ୍ୱର କୌଣସି ମନେ ହୁଏନା ।

ସକାଳର ସୁନେଲି ନରମ ଖରା ବିଞ୍ଚିହୋଇ ପଡ଼ିଥିଲା ବାହାରେ, କଲେରାଓ୍ୱାର୍ଡ ସାମ୍ନାର ସେହି ନିମ୍ବଗଛଟି ଉପରେ । ବାହାରକୁ ବାହାରି

ଆସି ପୃହଁଚିଲି ସ୍ବରଅାଡକୁ । କାହିଁ ସ୍ବାଇ ତ କହିଥିଲେ ଆସିବେ ବୋଲି, ଆସିଲେ ତ ନାହିଁ ! ପୁଣି ଥରେ ଭିତରକୁ ଯାଇ ବାପାଙ୍କୁ ଆପାଦମସ୍ତକ ଆଉ ଥରେ ଦେଖିନେଲି । ସେ ସେତେବେଳେ ଗଭୀର ନିଦ୍ରାରେ ନିମଗ୍ନ । ଧୀର ପଦକ୍ଷେପରେ ବାହାରକୁ ବାହାରି ଆସି ମୁହାଁଇଲି ମଙ୍ଗଳାବାଗ ଛକ ଆଡ଼େ । ମଙ୍ଗଳାବାଗ ଛକରେ ପହଞ୍ଚି ଗୋଟାଏ ଜଳଖିଆ ଦୋକାନରୁ ପେଟେ ପାଣି ପିଇଗଲି । ଜଳଖିଆ ଖାଇବାକୁ ପ୍ରବଳ ଇଚ୍ଛା ହେଉଥିଲେ ବି ସେ ଇଚ୍ଛାକୁ ନିର୍ମମ ଭାବରେ ଚାପିରଖିବାକୁ ପଡ଼ିଲା । ପଇସା କାହିଁ ଯେ ଜଳଖିଆ ଖାଇବି ? ଅଧ୍ୟାପକ ରତ୍ନାକର ପତି ଦେଇଥିବା ଦୁଇଟି ଟଙ୍କାକୁ ଗଣ୍ଠିଧନ କରି ରଖିଥାଏ । କାଳେ କେତେବେଳେ ଗାଁକୁ ଯିବାକୁ ପଡ଼ିପାରେ । ମନେପଡ଼ୁଛି, ସେଦିନ ସେଠି ପାଣି ପିଇ ସାରି ରାସ୍ତା ଉପରକୁ ଆସି ଗୋଟାଏ କଡ଼କୁ ଠିଆ ହେଲି । କୁଆଡ଼େ ଯିବି ? କୋଉଠିକି ଯିବାର ନାହିଁ । ଭାରି କାନ୍ଦ ମାଡ଼ିଲା । ଭିତରେ କୋହ, ଲୁହ ଛଳ ଛଳ ଆଖିରେ ସେଦିନ ରାଜରାସ୍ତାର ପ୍ରାନ୍ତରେ ଠିଆ ଠିଆ ଭାବିଥିଲି ମା'ର ସେହି ଉପାସିଆ ଅନାହାରୀ ଦିନଗୁଡ଼ିକର ଛବି । ସେ ଆଜି ଗାଁରେ ଏକୁଟିଆ ପଡ଼ିରହିଛି । ତାର ଖବର ନେବାକୁ କେହି ନାହିଁ । ଝଡ଼ ଯେପରି ପ୍ରଦୀପ ଠାରୁ ତା'ର ଶିଖାକୁ ନିର୍ମମ ଭାବରେ ବିଚ୍ଛିନ୍ନ କରିଥାଏ, ବାପା ଠିକ୍ ସେଇମିତି ମୋତେ ତା କୋଳରୁ ବାରମ୍ବାର ଛଡ଼ାଇ ଆଣିଛନ୍ତି । ପ୍ରବାସ ଜୀବନରେ ଗଭୀର ଶୀତ ରାତିରେ ବିହଙ୍ଗ ଯେପରି ତାର ଶାବକକୁ ନିଜର ପକ୍ଷ ଛାଇଁତଳେ ରକ୍ଷାକରେ, ବାପା ଠିକ୍ ସେହିପରି ମୋତେ କୋଳରେ ପୂରାଇ ସାରା ରାତି ଜାଗର ରହି କ'ଣ ଭାବୁଥିଲେ ଆଉ ନିର୍ଗତ କରନ୍ତି ଦୀର୍ଘଶ୍ଵାସ । ଆଜି ସେହି ମୂର୍ତ୍ତିଟି କଲେଜ ୱାର୍ଡରେ ଶଯ୍ୟାଗତ । ନିଜର ସାବାଳକ ପୁଅ, ଦୁଇ ଦୁଇଟି ସହୋଦର, ଯେଉଁମାନଙ୍କୁ ସେ ନିଜହାତରେ କେବଳ ମଣିଷ କରିନାହାନ୍ତି, ପ୍ରତିଷ୍ଠିତ ବି କରିଛନ୍ତି,

ସେମାନେ ସମସ୍ତେ ଥାଉଁ ଥାଉଁ ହାୟ, ତାଙ୍କର ଆଜି ଏ ଅବସ୍ଥା ! ମୁଁ ତ ପିଲାଲୋକ—କ'ଣ ବା କରିପାରନ୍ତି ?

ରାସ୍ତା ପାରିହୋଇ ବାପାଙ୍କ ପାଖକୁ, ଅର୍ଥାତ୍ କଲେରାୱାର୍ଡ଼କୁ ଯିବାକୁ ଉଦ୍ୟତ ହେଉଛି ଠିକ୍ ସେତିକିବେଳେ ସାମ୍ନାରେ ଦେଖିଲି ଭାଇଙ୍କୁ । କ୍ରୋଧ ଏବଂ ଘୃଣାରେ ମୁଁ ତାଙ୍କୁ କିଛି ସମୟ ପର୍ଯ୍ୟନ୍ତ କିଛି କହିପାରିଲି ନାହିଁ । ସେ ପଚାରି ଚାଲିଥାନ୍ତି "ବାପା କେମିତି ଅଛନ୍ତି ?" ଏ ପ୍ରଶ୍ନରେ ମୋର କ୍ରୋଧ ଆହୁରି ଦ୍ୱିଗୁଣିତ ହେଲା । ମୁଁ ତାଙ୍କୁ ପଚାରିଲି; "କ'ଣ ଚାହୁଁଛ ତମେ ?" ସେ ମୋ ପ୍ରଶ୍ନର କୌଣସି ଉତ୍ତର ନଦେଇ ମୋତେ ଫେରିବାକୁ ଇଂଗିତ ଦେଇ ମୋ ସହିତ ଚାଲି ଚାଲି ଆସିଲେ କଲେରାୱାର୍ଡ଼ ପର୍ଯ୍ୟନ୍ତ ।

ସେତେବେଳକୁ ବାପାଙ୍କର ନିଦ ଭାଙ୍ଗିଛି ।

ସେ ମୋତେ ଅଧୀର ଭାବରେ ଖୋଜି ବୋହରା, ନର୍ସ ଓ ଡାକ୍ତରଙ୍କୁ ମୋ କଥା ପଚାରୁଥାନ୍ତି ।

ହଠାତ୍ ଭାଇ ଯାଇ ତାଙ୍କ ଆଗରେ ଠିଆ ହେଲେ । ବାପା ପଚାରିଲେ, "ତୁ କେତେବେଳେ ଆସିଲୁ ? ରବି କାହିଁ ?"

ମୁଁ କିନ୍ତୁ ଭାଇଙ୍କ ପଛରେ ଠିଆ ହୋଇଥିଲି । ତାଙ୍କର ସେ ପ୍ରଶ୍ନରେ ଆତ୍ମପ୍ରକାଶ କରି ତାଙ୍କ ଖଟିଆ ପାଖକୁ ଲାଗିଗଲି । ମୋତେ ଦେଖି, ମୋ ମୁହଁକୁ ଅନାଇଁ ସେ ପିଲାଙ୍କ ପରି କାନ୍ଦି ଉଠିଥିଲେ ।

କିଛି ସମୟ ପରେ ଡାକ୍ତର ଆଉ ନର୍ସ ଆସିଲେ । ବାପାଙ୍କର ଏକା ଜିଦ୍ ସେ ସେହିଦିନ (ତତ୍କ୍ଷଣାତ୍) ଡାକ୍ତରଖାନାରୁ ବିଦାୟ ନେବେ । ଡାକ୍ତରଙ୍କ ଶତ ବାରଣ ବିଫଳ ହେଲା । ଡାକ୍ତର ପରିଶେଷରେ କହିଲେ, "ଆପଣ ନିଜ ଦାୟିତ୍ୱରେ ଯିବେତ ଯାଇ ପାରନ୍ତି ।" ତାହାହିଁ ହେଲା । "ନିଜ ଦାୟିତ୍ୱରେ ମୁଁ ଡାକ୍ତରଖାନାରୁ ବିଦାୟ ନେଉଛି" ବୋଲି ଲେଖିଦେଇ ବାପା ବାହାରି ଆସିଲେ କଲେରାୱାର୍ଡ଼ରୁ । ପାଦ ଦି'ଟା ତାଙ୍କର ପାଉଁରୁଟି ପରି ଫୁଲିଥାଏ । ପାଦେ ଆଗକୁ ଚାଲିବାର ବଳ ନାହିଁ । ଭାଇ ମୋତେ କହିଲେ,

'ତୁ କାହିଁକି ଚହଁରୁ ? ଗୁଣ୍ଡୁ ଯା ଗାଁକୁ । ବାପାଙ୍କୁ ନେଇ ପଛରେ ଯାଉଛୁ ।
ବାପା ମଧ୍ୟ ଏଥିରେ ଏକମତ ହେଲେ ।

ଗାଁରେ ଆସି କମିତି ପହଁଚିଲି—ବାଟଖର୍ଚ୍ଚ କୋଉଠୁ ପାଇଲି—ମନେ ନାହିଁ ।

ଘରେ ପହଞ୍ଚି ଦେଖିଲି ହଜନପଡ଼ି କାନ୍ଦ କାନ୍ଦ ମା'ର ଆଖି ଦୁଇଟି ଫୁଲି ଯାଇଛି । ଅକଟମାଟୁ ଦୁର୍ଦ୍ଦଶା ଭିତରେ ଥାଇ ମଧ୍ୟ ସେ ମୋର ଆଉ ବାପାଙ୍କର ଆଗମନକୁ ଅଧୀର ଆଗ୍ରହରେ ଅପେକ୍ଷା କରୁଥିଲା । ମୁଁ ଗାଁରେ ପହଞ୍ଚିବା ପରଦିନ ଓପରଓଳି ଭାଇ ଏକୁଟିଆ ଘରେ ଅସି ହାଜର । ମୁଁ, ମା ଏବଂ ଅନ୍ୟମାନେ ସେଦିନ ଅବାକ୍ ହୋଇଥିଲୁ ତାଙ୍କ ସହିତ ବାପାଙ୍କୁ ନଦେଖି । ବାରମ୍ବାର ପଚାରିଲା ପରେ ଭାଇ ଉତ୍ତର ଦେଇଥିଲେ, "ମୁଁ ଜାଣିନାହିଁ ସିଏ କୁଆଡ଼େ ଗଲେ ।"

ଘଟଣା କଣ ? ବାପା ତାହେଲେ ଗଲେ କୁଆଡ଼େ ? ସଦ୍ୟ ମୃତ୍ୟୁଶଯ୍ୟାରୁ ଉଠିଥିବା ହଇଜାମରୁଜୀ···ପାଦ ହ'ଟା ଫୁଲିଥିଲା·· ଚାଲିବାକୁ ଦେହରେ ନଥିଲା ସାମାନ୍ୟ ଶକ୍ତି । ଭାଇ ମୋତେ କହିଥିଲେ, "ତୁ ଯା, ମୁଁ ବାପାଙ୍କୁ ନେଇ ପଛରେ ଯାଉଛି", କିନ୍ତୁ ଏବେ ପଚାରିଲେ କହୁଛନ୍ତି କ'ଣ ନା ମୁଁ ଜାଣେନା ସିଏ କୁଆଡ଼େ ଗଲେ । ଉଦ୍‌ବେଗ ଏବଂ ଆଶଙ୍କା ଭିତରେ ଛଟପଟ ହେବାକୁ ଲାଗିଲୁ ମା' ଆଉ ମୁଁ । ଶେଷରେ ମା' ନିଜେ କଠୋର କଣ୍ଠରେ ଭାଇଙ୍କୁ ପଚାରିଲା, "ଆରେ ଯମୁନା, କ'ଣ ହୋଇଛି କହ ! ବାପା ଗଲେ କୁଆଡ଼େ ? ଇଏ କହୁଛି ଗୋଡ଼ ହ'ଟା ତାଙ୍କର ଫୁଲିଥିଲା ଚାଲିପାରୁ ନଥିଲେ··· ତୁ ତାଙ୍କୁ ନେଇ ପଛରେ ଘରକୁ ଆସିବୁ ବୋଲି କହିଲାରୁ ସିଏ ଅଗରୁ ପଳେଇ ଆସିଲା । ତୁ ତ ଆସିଲୁ ···ବାପା ?···"

ସ୍ପଷ୍ଟପରେ ଆସିଲା ଠିକ୍ ଉତ୍ତର, "ମୁଁ ତାଙ୍କୁ ସାଙ୍ଗରେ ନେଇ ଘରକୁ ଆସୁଥିଲି । ନୂଆବଜାର ପାଖରେ ସେ ମୋତେ ଚୁଛାଟାରେ ଗାଳିଦେଲେ । ମୁଁ ପାନ କିଣି ଆସୁଛି କହି ଅନ୍ୟବାଟେ ପଳାଇ ଆସିଲି···"

'ବାଃ ! ହଇରେ, ତୁ ମଣିଷ ନା···' ହତବାକ୍ ହୋଇଗଲା ମା ।

ସେଦିନ ରାତିଟି ଅନିଦ୍ରା ଓ ଉଦ୍‌ବେଗ ଭିତରେ କଟିଲା । ତହିଁ ଆର ଦିନ ସକାଳୁ ବାପାଙ୍କର ସନ୍ଧାନ ନେବାପାଇଁ କଟକ ଅଭିମୁଖେ ବାହାରିବାର ସିଦ୍ଧାନ୍ତ କରି ମୁଁ ମା'କୁ ପଚାରିଲି କିଛି ଖାଇବାକୁ ଅଛି କି ନାହିଁ । ଥିଲା କେବଳ ମୁଠାଏ ଖଣ୍ଡେ ଗୁଡ଼ିଲ ଭଜା । ସେତକ ଚୋବାଇ ପାଣି ପିଇ ବାହାରିବାକୁ ପ୍ରସ୍ତୁତ ହେଉଛି, ସାନ ଦାଦାଙ୍କ ସ୍ତ୍ରୀ ମା' କାନରେ ଆସି ଚୁପ୍ କରି କହିଲା ବାପା ଆସିଗଲେଣି ବୋଲି । ମୁଁ ଚାଲି ପରି ଦୌଡ଼ିଗଲି ବେଳକୁ ବାପା ଆସି ଘରର ବାରଣ୍ଡାରେ ବସିସାରିଲେଣି । ଲକ୍ଷ୍ୟ କରି ଦେଖିଲି ତାଙ୍କ ମୁହଁର ପ୍ରତିଟି ପେଶୀ କ୍ରୋଧ ଏବଂ ବିରକ୍ତିରେ ଫାଟି ପଡ଼ୁଥିଲା । ସେ ମୋତେ ଦେଖି ଦେଖି ପଚାରିଲେ "ଯମୁନା ଆସିଛି ?" ମୁଁ ମୁଣ୍ଡ ଟୁଙ୍ଗାରି ନୀରବରେ ସମ୍ମତି ଜଣାଇବାରୁ ସେ ମୋତେ ନିର୍ଦ୍ଦେଶ ଦେଲେ "ଡାକି ଆଣ୍ ତାକୁ ।"

ଭାଇ ସେତେବେଳେ ସାନଦାଦାଙ୍କ ସ୍ତ୍ରୀର ପଛନ୍ତ ତଳେ ଭୟରେ ଥରହର । ବଡ଼ କଷ୍ଟରେ ସେତେବେଳେ ବାପାଙ୍କ ଆଗରେ ଆସି ବଳିର ଏକ ନିରୀହ ଛାଗଳ ପରି ଠିଆ ହେଲେ । ବାପାଙ୍କର କୋଟରଗତ ଆଖି ଦି'ଟା ଜଳିଉଠିଲା—ସତେ ଯେପରି ଦି'ଟା ମଶାଲ । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ, "ମୁଁ ତତେ ଅଭିଶାପ ଦେଉଛି, ତୁ ଦୀର୍ଘଜୀବୀ ହ । ତତେ କୁଷ୍ଠବ୍ୟାଧି ହଉ । ବହୁ କୁଟୁମ୍ବୀ ହୋଇ ରାସ୍ତା କଡ଼ରେ ଅସହାୟ ଅବସ୍ଥାରେ ତୋ ଜୀବନ ଶେଷ ହେଉ ।..." ଏହା ପରେ ତାଙ୍କ ଆଖିରୁ ଶ୍ୱେତପ୍ରସ୍ତରବତ୍ ଝରିପଡ଼ିବାକୁ ଆରମ୍ଭ କଲା କେତୋଟି ଲୋତକର କଣା । ଘଟଣା ହେଲା--ମୁଁ ସେଦିନ ଭାଇଙ୍କ କହିବା ମୁତାବକ ଘରକୁ ଚାଲି ଆସିବା ପରେ ବାପା ଏବଂ ଭାଇ ଗୋଟାଏ ହାତଟଣା ରିକ୍‌ସାରେ ବସି ନୂଆବଜାର ସନ୍ନିକଟ ବିଦ୍ୟାଧରପୁର ଫାର୍ମ ପାଖରେ ଓହ୍ଲାଇଲେ । ବାପାଙ୍କର ସେଠି କାହା ପାଖରୁ କିଛି ପଇସା ପାଇବାର ଥିଲା । ରିକ୍‌ସାରୁ ଓହ୍ଲାଇବା ପରେ ଦୀର୍ଘଦିନର ଅସୁସ୍ଥତା ବଶତଃ କିଛି ଫଳ ଖାଇବା ପାଇଁ ତାଙ୍କର ଇଚ୍ଛା ହେଲା । ଭାଇ ସେଥିରେ ବିରକ୍ତ ହେବାରୁ ବାପା କ୍ଷୁବ୍ଧ ହୋଇ ରାସ୍ତାକଡ଼ରେ ଏକ ଓଉଗଛ ମୂଳେ ବସିପଡ଼ି କହିଲେ, "ତୁ କୁଆଡ଼େ ଯାଉଚୁ ଯା, ମୁଁ ତୋ ସାଙ୍ଗରେ ଯିବିନାହିଁ ।" ତା ପରେ ଭାଇ ଫେରାର ।

କଥାରେ ଅଛି ଦୁର୍ଦ୍ଦିନ ଯେତେବେଳେ ଆସେ ସେ ତା'ର ଦଳବଳଙ୍କୁ ନେଇ ଆସେ । ତାହାହିଁ ବାସ୍ତବରେ ଘଟିଥିଲା ମୋ କ୍ଷୁଦ୍ର ପରିବାରଟିର କପାଳରେ । ବାପାଙ୍କର ଡାହାଣ ଗୋଡ଼ର ପାଦ ଉପରେ ଚପଲ ବନ୍ଧି ପାଚ ତାହା ଗୁରୁତର ଆକାର ଧାରଣ କରିଥିଲା । ଭାଇ ସେତେବେଳେ ସୁଦୂର ମୁଲତାନ ର ପଠାଣକୋଟ୍ ରେ ଇଂରେଜ ସାମରିକ ବାହିନୀର ଜଣେ ସୈନିକ । ବାପାଙ୍କ ପାଦର ସେହି ଘାଆଟି କ୍ରମେ ଅଧିକ ଗୁରୁତର ହେଲା— ମାଂସ ଖାଇ ଦେଖାଗଲା ହାଡ । ବିଶ୍ରାମ, ଚିକିତ୍ସା ଏ ସବୁ କାହିଁ ? ମୁଠାଏ କ୍ଷୁଧାର ଅନ୍ନ ତ ଦୁଷ୍ପ୍ରାପ୍ୟ । ତା'ରି ଭିତରେ ପୁଣି ସେ ଆରମ୍ଭ କରିଥାନ୍ତି ବାଟଚଲା—ନଗଲେ ନ ଚଳେ । ଯନ୍ତ୍ରଣାର ବଙ୍କିମ ତଥା ଶିଳାବନ୍ଧୁର ଦାରୁଣ ଦୈନ୍ୟର ସରଣୀ ଉପର ଦେଇ ଏକୁଟିଆ ବାଟ ଚାଲୁଥିଲେ ବାପା— ପଛରୁ ଶୂନ୍ୟ ଆଖିରେ ଅନାଇ ଥିଲା ମା । ବେଳୁବେଳ ଅନ୍ଧକାର, ଅଭାବ, ବିଭତ୍ସ ଦୈନ୍ୟର ଧୁ ଧୁ ମରୁଭୂମି ଭିତରେ ମରୁଦ୍ୟାନ ଆଶାରେ ଆମେ ସମସ୍ତେ ଜଳିଯାଉଥିଲୁ କେଉଁ ଦୁର୍ବାସାର ଅଭିଶାପରେ କେଜାଣି ? ସେତେବେଳର ଦିନଗୁଡ଼ାକ ଥିଲା ଅତିଶପ୍ତ ଦୀର୍ଘ, ରାତି ଗୁଡ଼ାକ ଥିଲା ଅତନ୍ଦ୍ର ।

ମା'ର ଘୋରତର ଅସୁସ୍ଥତା ଯୋଗୁଁ ବୋଧହୁଏ ଛୁଟିରେ ଘରକୁ ଆସିଥାନ୍ତି ଭାଇ ।

ମା' ଥିଲା ଏକେବାରେ ଶଯ୍ୟାଶାୟୀ । ପେଟ ଭିତରୁ ଅନ୍ତନାଡ଼ୀ ପଚି ପୂଜ ସହିତ ରକ୍ତର ସ୍ରୋତ ଛୁଟିଥିଲା ଅବିରାମ । ମୁଦ୍‌ଗର ପରି ଫୁଲି ଯାଇଥିଲା ଦେହଟା । ଦୁର୍ଗନ୍ଧରେ ଘର ଅଗଣାରେ ମଧ୍ୟ ଠିଆହେବା କଷ୍ଟକର । ବାପା ତା' ଶେଯ ପାଖରେ ଥାଆନ୍ତି ଗୁପ୍ପୁଭଳି । ପାଖରେ ତାଙ୍କର କପର୍ଦ୍ଦକ ଶୂନ୍ୟ । ଭାଇ ସେତେବେଳେ ମା' ପାଇଁ କିଛି କିଛି ପଥ୍ୟ ବାବଦକୁ ଖର୍ଚ୍ଚ କରୁଥିବା ମନେ ପଡ଼ୁଛି ।

୩ ମାସ ବିତିଗଲାଣି । ରୋଗର ଉପଶମ ତ ଦୂରର କଥା, ବରଂ ଅବସ୍ଥା ଅଧିକରୁ ଅଧିକ ଶୋଚନୀୟ । ଜୀବନର ଉପାନ୍ତ ସୀମାରେଖା ଉପରେ ଠିଆ ହୋଇଥାଏ ମା' । ରାତିରେ ପାଖ 'କାଳି ଆମ୍ବଗଛ' ଡାଳରେ ପେଚା ବୋବାଏ—'ଭୁରୁଭୁରିଆ କୁଦ' ଅର୍ଥାତ୍ ଗାଁର ଭୂତପ୍ରଦ ଶ୍ମଶାନରୁ ଗଧିଆ

ଅନ୍ଧକାର ଜଣିଥରେ ଭାସି ଆସେ ଅଶ୍ରିଗ୍ର ବିଲୁଆର ଲଗାତର ଭୟାନକ ଚିତ୍କାର । ମୁଁ ଡ଼ୂଳାଉଥିବା ବେଳେ ବା ନିଦରେ ଶୋଇ ପଡ଼ିଥିଲେ ହଠାତ୍ ଉଠି ବସିପଡେ—ବାପା ମୋ ପାଖରେ ଉଜାଗର ହୋଇ ବସିଥା'ନ୍ତି ମା'କୁ ଜଗି । କହନ୍ତି "କ'ଣ ହେଲା ? ଶୋଇପଡ । ମୁଁ ଅଛି । ମୁଁ ନିଦ ବାଉଳାରେ ପଚାରେ, "ମା' କ'ଣ ଆଉ ଭଲ ହେବ ନାହିଁ ବାପା ?" ବାପା ମୋତେ ଅଭୟ ଦଅନ୍ତି, ମୁଁ ପୁଣି ଶୋଇପଡ଼େ ।

ସାରା ନବାପାଟଣା ଗାଁ ଏଥର ଜାଣିଲାଣି ମା' ମୋର ଆଉ ବଞ୍ଚିବ ନାହିଁ । ତା'ର ସମବୟସୀ ପଡ଼ୋଶୀ ସ୍ତ୍ରୀ ଲୋକେ ଅନାଗତ ସେହି ଦୁଃଖରେ ମ୍ରିୟମାଣ । ସେମାନେ ଦଳ ଦଳ ହୋଇ ଆସନ୍ତି—ମା'ର ଶେଯ ପାଖରେ ଠିଆ ହୋଇ ରହନ୍ତି ନୀରବରେ, ଅଶ୍ରୁପାତ କରି ଲୁଗା କାନିରେ ଆଖିରୁ ଲୁହ ପୋଛନ୍ତି । କେହି କାନ୍ଦି ଉଠେ ଶ୍ରେଷ୍ଠ ପିଲାଙ୍କ ପରି । ସେମାନଙ୍କ ଭିତରେ 'ବୁଢ଼ୀ ବୋଉ' ଅର୍ଥାତ୍ ଲକ୍ଷ୍ମଣ ସାହୁ ଓରଫ୍ 'ନଖଆଦାଦା'ଙ୍କ ସ୍ତ୍ରୀ, ଯିଏ କି ମୋର ସମଗ୍ର ବାଲ୍ୟଜୀବନର ମୂକସାକ୍ଷୀ, ତାଙ୍କୁ ହିଁ ଲକ୍ଷ୍ୟ କରି ମା' ତା'ର ମୃତ୍ୟୁଶଯ୍ୟାରୁ କୁହେ "ବୁଢ଼ୀ ବୋଉଲୋ ମୁଁ ମଲେ କ'ଣ ତମମାନଙ୍କୁ ଛାଡ଼ିପାରିବ ? ଦାଣ୍ଡ ନଡ଼ିଆ ଗଛରେ ଆସି ବାରି ବାରି ରହିବ ଯେ ! ମୋ ରବିକୁ ଅନେଇଥିବ ।" ଏତିକି କହି ସେ କାନ୍ଦ ପକାଏ ।

ସେଦିନ ରାତି ସେତେବେଳକୁ କେତେ ହେବ କେଜାଣି ।

ସାମ୍ନାରେ ଡିବିରିଟା ତାର ହଳଦିଆ ଶିଖାଟିକୁ ଊର୍ଦ୍ଧ୍ୱକୁ ଟେକି ଜଳୁଥିଲା ବିଷାଦରେ । ମା' ଶୋଇ ପଡ଼ିଥିଲା । ସେତେବେଳକୁ ସାରା ଗାଁ ଗଭୀର ତନ୍ଦ୍ରାରେ ଅଛନ୍ତି । ଥମ୍ ଥମ୍ କରୁଛି ବାହାରେ ଚକଟା ଅନ୍ଧକାର । ବାପା ତାଙ୍କର ପୁରୁଣା ଚଷମାଟି ଆଖିରେ ଦେଇ ବସି 'ଭଗବତ୍ ଗୀତା' ପଢ଼ୁଥିଲେ ଆଉ ମୁଁ ତାଙ୍କ ପାଖରେ ବସି ବସି ତାଙ୍କର ସେହି ପଠନଭଙ୍ଗୀ ଏବଂ ଆବୃତ୍ତିକୁ ଲକ୍ଷ୍ୟ କରୁଥିଲି । ହଠାତ୍ ସେ ତାଙ୍କର ପଢା ବନ୍ଦ କରି ମୋ

ଉଦ୍ଦେଶ୍ୟରେ କହି ଉଠିଲେ, "ବାବୁରେ, ତୁ ଟିକେ କାଲି ସକାଳେ କଟକ ଯାଇପାରିବୁ ? ମୁଁ ଖଣ୍ଡେ ଚିଠି ଲେଖି ଦଉଚି । ବଡ଼ି ଭୋରୁ ଉଠି ଗୋଟାଏ ପଇଡ଼ କାଟି ଖାଇଦେଇ ଯିବୁ—ଦିନ ଥାଉଁ ଥାଉଁ ଫେରିଆସିବୁ ।"

ସେଦିନକୁ ମିଶାଇ ବାପା ଆଉ ମୁଁ ଅନ୍ଧାରରେ ଥିଲୁ ଦିଇଦିନ । ପୂର୍ବଦିନ ନଡ଼ିଆ ଗଛରୁ ଯାହା ନଡ଼ିଆ ତୋଳା ହୋଇଥିଲା, ତାକୁ ବିକି କିଛି ପଇସା ହୋଇଥିଲା । ତାକୁହିଁ ବାପା ପାଖରେ ରଖିଥିଲେ । ସେଇ ପଇସା ହୋଇଥିଲା ମୋର ତା ତହିଁ ଆରଦିନର କଟକ ଯାତ୍ରାର ପାଥେୟ ।

ତା ତହିଁ ଆରଦିନର ବଡ଼ ସକାଳ ।

ନିଦରୁ ଉଠି, ନିତ୍ୟକର୍ମ ସାରି, ଖଦଡ଼ ହାଫ୍ ସାର୍ଟଟି ଦେହରେ ଗଳାଇ ବାପାଙ୍କ ପାଖରୁ ଦୁଇଟି ଟଙ୍କା ଧରି ମୁଁ ବାହାରି ପଡ଼ିଲି । ମା'କୁ ତା ଶେଯପାଖରେ ଠିଆହୋଇ ଶୁଣିହିଁଲି ମୀରବରେ । ସେ ମଧ୍ୟ ମୋତେ ତାର ଲିଭିଆସୁଥିବା ଆଖିର ମ୍ଳାନ ଆଲୋକ ସାହାଯ୍ୟରେ ଥରେ ଦେଖି ନେଲା । କହିଲି, "ମା, ମୁଁ କଟକ ଯାଉଚି । ଚଞ୍ଚଳ ଫେରିଆସିବି । ବ୍ୟସ୍ତ ହବୁନି ।"

"ନଗଲେ କ'ଣ ଚଳିବ ନାହିଁ···" କଥାଟାକୁ ଅସମାପ୍ତ ରଖି ପଚାରିଲା ସିଏ ।

"ବାପାଙ୍କ ଚିଠି ନେଇ ଯାଉଛି" କହିବାରୁ ସେ କହିଲା, "ହୁସିଆର ହୋଇ ଯିବୁ, ଦିନ ଥାଉଁ ଥାଉଁ ଫେରିଆସି ।"

ହାୟ, ଯଦି ଜାଣିଥାନ୍ତି, ଜାଣିପାରିଥାନ୍ତି ମୋ ନିଷ୍ଠୁର ନିୟତି ଯଦି ସେଦିନ କେବଳ ଟିକେ ମୋ ପ୍ରତି ଦୟା ପରବଶ ହୋଇ କୌଣସି ଉପାୟରେ ମୋତେ କହିଦେଇଥାନ୍ତା—"ଆରେ ପଳାତକା ସ୍ରୋତ ଶିଶୁ ! ଯାଆନା··· ଦଣ୍ଡେ ରହିଯା··ତୋର ଶଯ୍ୟାଗତ ଗିର-ଜନମୀର ଶେଷ ଦର୍ଶନ କରିଯିବୁ··· । ତୋର ଯିବା ନିଶ୍ଚିତ । ତୋ ପାଇଁ ଅପେକ୍ଷା କରୁଛି ବହୁ ପଥ, ବହୁ ମତ, ବହୁମଣିଷର ଭିଡ଼, ବହୁ ନଃସଙ୍ଗତା, ବହୁ ଏକାକୀତ୍ୱ, ହର୍ଷ ବିଷାଦ, ସଂଗ୍ରାମ ସଂଘାତ ତଥା ବିପଦ-ଆପଦଭରା ଯାତ୍ରାପଥ, ବହୁ ସୃଷ୍ଟି, ବହୁ ଆଘାତ ପ୍ରତିଘାତ । ସେ ସବୁର ଆମନ୍ତ୍ରଣ ତୋତେ ଗ୍ରହଣ କରିବାକୁ ହେବ । ସେ

ସଂସାର ତୋର ଅବ୍ୟାହତି ନାହିଁ । କିନ୍ତୁ 'ଚଞ୍ଚଳ ଫେରିବୁ' ବୋଲି ଯାହାଙ୍କୁ କହିଯାଉଛୁ ତୋ ଠାରୁ ଆହୁରି ଚଞ୍ଚଳ ସେ ଚାଲିଯିବ—ଯେଉଁଠିକି ଗଲେ କେହି କେବେ ଫେରେନା—ଫେରି ନାହିଁ—ସେଇଠିକି । ଯାଆନା-ଗଲେ ଦେଖିପାରିବୁନି ସେହି ମହାଯାତ୍ରା ।" ତାହେଲେ ମୋତେ ସେଦିନ ଘରୁ ଗୋଡ କାଢି ନଥାନ୍ତି ! ସାରା ଦୁନିଆର ସମସ୍ତ ଦୁଃଖ-ବେଦନାର ମୂର୍ତ୍ତିମନ୍ତ ରୂପ ମୋର ସେହି ଗର୍ଭଧାରିଣୀ ଜନନୀର ବିଦାୟ ଲଗ୍ନରେ, ତାର ମହାପ୍ରୟାଣର ପଥପାର୍ଶ୍ୱରେ, ତାର ଅଗ୍ନିନାଗୁଣୀ—ଚିତାନଳ ପାଖରେ ଠିଆହୋଇ ଭବିଷ୍ୟତରେ ସଂଗ୍ରାମ ସଂକୁଳ ଜୀବନ ପାଇଁ ନେଇଥାନ୍ତି ଦୃଢ଼ ଶପଥ, ଆଗ୍ନେୟ ଆଶୀର୍ବାଦ । ତାକୁ ମୁଖାଗ୍ନି ଦେବାର ନୈତିକ ଅଧିକାର ଯଦି ପୁଅ ହିସାବରେ କାହାର ଥାଏ, ତାହେଲେ ସେ ହେଉଛି ମୁଁ । ଭାଇ ଯମୁନାଲାଲ ଯଦିଚ ସେତେବେଳେ ଗାଁରେ ଥିଲେ, ତାଙ୍କର ମା'ଙ୍କୁ ମୁଖାଗ୍ନି ଦେବା ମା'ର ସ୍ମୃତି ପ୍ରତି ଏକ ଚରମ ଅପମାନ ବ୍ୟତୀତ ଅନ୍ୟ କିଛି ନୁହେଁ । କାରଣ ଜୀବନ ପାଖରୁ ଅସମୟରେ ତାର ବିଦାୟ ପାଇଁ ତାଙ୍କର ବ୍ୟବହାର ହିଁ ଅଧିକ ପରିମାଣରେ ଦାୟୀ । କିନ୍ତୁ ମୁଁ ହତଭାଗା, ମୋ ଭାଗ୍ୟରେ ମୋର ସେହି ସମରନିପୁଣା ସ୍ନେହମୟୀ ଜନନୀର ଶେଷ ଦର୍ଶନର ଯୋଗ ନଥିଲା । ପୂର୍ବରୁ କହିଛି, ଅନାହାର-ଅନଶନ, ରାଜରୋଷ, ଅଭାବ-ଅନଟନର ମୁଖାମୁଖୀ ଠିଆହୋଇ ତାକୁ ସାହସର ସହିତ ଜୀବନ ତମାମ ମୁକାବିଲା କରିଥିଲା ମୋର ମା । ସବୁ ଥାଇ ତା'ର କିଛି ନଥିଲା । ସ୍ୱାମୀ, ଭେଣ୍ଡା'ପୁଅ, ଦୁଇ ଦୁଇଟି ଝିଅର ଥାଉ ଥାଉ ପ୍ରଚଣ୍ଡ ପ୍ରତିପତ୍ତିଶାଳୀ ସିଂହବଂଶର ବଡ଼ବୋହୂ ହୋଇ ମଧ୍ୟ ଶେଷରେ ତାର ପରିଧାନ ହୋଇଥିଲା ମାଛଧରା ଜାଲ, ଚୂଡ଼ି ବା'ପଟ ବଦଳରେ ତାର ଝିଅଣି ନପୂତି ତାକୁ ଦେଇଥିଲା ବା'ହାତରେ ବାନ୍ଧିବା ପାଇଁ ବା'ଖଣ୍ଡ ସୂତା । କେତେ ବର୍ଷଣମୁଖର ଗ୍ରାମୀଣ ରଜନୀରେ ଏକୁଟିଆ ଉପବାସରେ ପଡ଼ି ପଡ଼ି ସବୁ ଯନ୍ତ୍ରଣା ଦୁଃଖ ଆଉ ଅପମାନ, ସରକାରୀ ଆକ୍ରମଣ, ପାରିବାରିକ ଅବହେଳାକୁ ଆହ୍ୱା ବିଗୁଣି ସାପ ପରି ସହିଛି ନୀରବରେ—କେତେ ରୌଦ୍ରଦଗ୍ଧ ପ୍ରଚଣ୍ଡ ମଧ୍ୟାହ୍ନରେ ଏକାକୀ ଅଛପର ଘରର ମଥାନ ତଳେ ବସି ବସି ବଡପୁଅଟିର ବ୍ୟବହାର କଥା ମନେ ପକାଇ ଆଖିରୁ ଢାଳିଛି ଲୁହ । ସଜନାଶାଗର ସିଝା କେବେ କେବେ ଖାଇ ଥଣ୍ଡା ପାଣି ପିଇ କଟାଇ ଦେଇଛି ଦିନ ପରେ ଦିନ । ସାମ୍ରାଜ୍ୟବାଦ ବିରୋଧୀ ବୁର୍ଜୁଆ ଜାତୀୟ ଆନ୍ଦୋଳନର ଯୁଗରେ ସେ ଥିଲା ଗୋପନ ଏକ ଜୀବନ୍ତ ଘାଟି । କେତେ ନେତା, କର୍ମୀ ତା'ର ଛୁଆ

ଛଳେ ଆଶ୍ରୟ ନେଇଛନ୍ତି, ତାର ଦ୍ୱାରା ବହୁ ଗୋପନ ଆନ୍ଦୋଳନର ପ୍ରସ୍ତର— ଚଳ ନଗରପଦାରେ · ଚାଲିଛି, ପ୍ରସ୍ତୁତ ହୋଇଛି । ରୋଷେଇଶାଳ ଭିତରେ ତାର ସେହି ଗୋରା ତକ ତକ ହାତ, ତେଣେ ବନ୍ଦୀଶାଳା ଭିତରେ ଉର୍ଦ୍ଧ୍ୱକୁ ଉତ୍ତୋଳିତ ବାପାଙ୍କର ଶପଥବଦ୍ଧ ବଦ୍ଧମୁଷ୍ଟି ଏ ଦେଶର ମୁକ୍ତି ସଂଗ୍ରାମର ସେତୁରେ ଅକୁଣ୍ଠ ମୃତ୍ତିକା ପତନ କରିଥିଲା । ତାର ସେହି ସ୍ୱପ୍ନବଣୀ ଭୂମିକାର ପ୍ରତିଚ୍ଛବି ମୋର ଜୀବନ ଉପରେ, ମୋର ଯୌବନରେ, ମୋର ବ୍ୟକ୍ତିତ୍ୱ ତଥା କବିତ୍ୱ ଉପରେ କମ୍ ପ୍ରଭାବ ବିସ୍ତାର କରିନାହିଁ । (୨)

ଘରୁ ଗୋଡ଼ କାଢ଼ିଲି । ବାହାରକୁ ଆସିବା ମାତ୍ରେ ଭାଇ ଯମୁନାଲାଲଙ୍କ ପ୍ରଶ୍ନ, "କୁଆଡ଼େ ଯାଉଚୁ କରେ ?"

"କଟକ ।"

"ଏକା ?"

"ହଁ ।"

"କାହିଁକି ?"

"ବାପାଙ୍କ ଚିଠି ନେଇ ।"

ବାସ୍, ଭାଇ ନୀରବ । ପଦେହେଲେ ବି ପଚାରିଲେ ନାହିଁ, କଟକ ଯାଉଛୁ···ପାଖରେ ପଇସା ଅଛି କି ନାହିଁ ।

---

(୨) "ଠାକୁରଙ୍କ ଜଣାଣ—୧୯୩୪ ସାଲର କଥା । ଘର ନାହିଁ, ଦ୍ୱାର ନାହିଁ— ଏମିତିକି ମୁଣ୍ଡ ଗୁଞ୍ଜିବାକୁ ଠାବ ନାହିଁ । ପଡ଼ଶା ଘର ଚାଳ ତଳେ ଆଶ୍ରାନେଇ ରହିଥାନ୍ତି 'ସାରଦା' । 'ବେଡ଼ି' ଉପରେ କୋରଡ଼ା ଭଳି ସ୍ୱାମୀ ରାମଚନ୍ଦ୍ର ସିଂ ଯେତେବେଳେ ପୁଣି ପାଟଣା କ୍ୟାମ୍ପ୍ ଜେଲ୍‌ରେ କୁଣିଆଁ । ସିଧା କଥାରେ 'ତଳ ତାଡ଼, ଉପର ତାଡ଼ — ତା ସାଙ୍ଗକୁ ଗର୍ଭ ତାଡ଼ ।' ତିନି ତାଡ଼ରେ ଆଉଟ ପାଉଟ ହୋଇ ଜୀବନଟାକୁ ଯଥା ତଥା ବଞ୍ଚାଇ ରଖିବା କଥା ସାରଦାଙ୍କର । କେବଳ ଗୋଟାଏ ବଡ଼ ଲୋଭ ଯେ ନିକଟରେ ସେ 'ମାଆ' ଡାକ ଶୁଣିବେ ।

"ହେଲା । ସେଦିନ ଆସିଗଲା । ଶ୍ରୀର ଶ୍ରୀର । ବସନ୍ତ ପଞ୍ଚମୀ—ସରସ୍ୱତୀ ପୂଜା । ସାରଦା ଦୁଃଖ ପାଇଲେ । ଓଳି ତଳେ ତ ଠାବ ନାହିଁ । ବାଣପଟ୍ଟ ଖଡ଼-ଗଦା ମୂଳେ ତାଙ୍କ କାନ ଶୁଣିଲା ଦୁଃଖପାସୋରା 'କୁଆଁ' ରାବ । ସବୁତ ବିଧାତା ଭୁଆଣ । ପିଉସୀ 'ଦୁର୍ଗା' ଖଡ଼ଗଦାରୁ କୁଢ଼ାଇ ଆଣିଲେ କଅଁଳା ପିଲା 'ରବି'କୁ ।

"ସାରଦା ଆଉ ଦୁର୍ଗା—ଏ ଦୁହିଁଙ୍କ ସ୍ନେହ କୋଳରେ ଦିନୁଦିନ ବଢ଼ିଲେ ରବି—ଦୁନିଆର ଦୁଃଖ ଜଞ୍ଜାଳ ଧକ୍କା ଖାଇ ।

"ସେଇ ରବି ୧୯୫୯ ବେଳକୁ ଯାଯାବର 'ଗୋଆଯାହୀ', ସେଇଠୁ 'ଚଳନ୍ତିକା' ପରେ 'ପରାସ୍ତ ସୈନିକ', ତହୁଁ ଆସିଲା 'ଅନୁଭୂତ' । ସେଇ ଅନୁଭୂତକୁ ସମ୍ବଳ କରି ସେ କବିତା ଆବୃତ୍ତି କଲେ ମୁକୁଳା ଦୁନିଆର 'ପଥପ୍ରାନ୍ତରେ' ବସି । ଲେଖି ବସିଲେ 'ଚଳମପଦ' । ବାସନ୍ତନ ବାରବୁଲା ଜୀବନର ଭାର ବହି ଯାଉ ଯାଉ ପଥରେ 'ବଲ୍‌ଗା ଶିଥିଳ' ହୋଇଗଲା ଦିନେ । ଆଖି ଆଗରେ ଦେଖିଲେ ସେ 'ଲାଲ ପାଗୋଡ଼ାର ପ୍ରେତ' ମୂର୍ତ୍ତି । ଅତି ଦୁଃଖରେ 'ଭ୍ରୁକୁଟି' ଦେଖା ଦେଲା । ଝଡ଼ଝଞ୍ଜା ଭିତରେ ବାସ ଖୋଜି ଖୋଜି ଗତି ଚଞ୍ଚଳ ହେଲା । ଆକାଂକ୍ଷାରେ ପଥେ ମଧ୍ୟେ 'ପାଦଟୀକା'ର ଚିହ୍ନ ଥୁଇ ଗାଇ ବୁଲିଲେ 'ଅପ୍ରୀତିକର କବିତା' । ଲୋକେ ଏଥର ଟିକେ କାନେଇ ଶୁଣିଲେ ।

"ଦେଖାଗଲା ଆଧୁନିକ ବୋଲାଉଥିଲେ ବି କେହି ଏଥିରୁ ଛଡ଼ାଛଡ଼ା ନୁହେଁ । ନିଜଲେଖା ନିଜେ ବୁଝିବା ପାଇଁ ନୁହେଁ । ଜଣାପଡ଼ୁଛି ପିଲାଦିନଆ କାଠପୋତା ଭଳି ଲୁଚକାଳି ଖେଳ ଖେଳି ଜାହାନ୍ତି ସେ । ଆଖି ଦେଖା ଭୁଇଁ ଲୁଚି ହେଉଛି ଏ ଗୁଡ଼ିକରେ ।

"ପ୍ରଚଣ୍ଡ ସଂଗ୍ରାମ ଭରା ଜୀବନ ମେଘୁଆ ରାତିରେ ଯେଉଁ 'ଶ୍ରେଷ୍ଠ' ମୁହୂର୍ତ୍ତ ଗୁଡ଼ିକରେ କ୍ଷଣିକ ବିଜୁଳି ଝଲକ ତାଙ୍କ ଚଲାବାଟରେ ଟିକିଏ ଆଶାର ଆଲୋକ ଛୁଟି । ଛୁଆଡ଼ ଦେଇଛୁ, ଗଣ୍ଠିଧନ କରି ତାକୁଇ ସେ ସଇଁତି ସାଇତି ରଖିଛନ୍ତି ଏଇ ପୋଥିପେଡ଼ିର ପୁଡ଼ା ଭିତରେ ।

ଏ ଝଲକ ଅମୂଲ୍ୟ ଚିହ୍ନ । ଯାହାପଥ ଉଜ୍ଜ୍ୱଳ ହଉ । ଦୀର୍ଘଜୀବୀ ହୋଇ ଯାତ୍ରୀ । ଏତିକି ଠାକୁରଙ୍କୁ ଜଣାଣ ମୋର ।

କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ
ତା ୨୨ । ୧୧ । ୬୫

ଦିନ ୧୨ଟା ଭିତରେ କଟକରେ ପହଞ୍ଚିଲି । ମନେପଡ଼ୁଛି, ବାପା ଯେଉଁ ଚିଠିଟି ଲେଖି ମୋ ହାତରେ ଦେଇଥିଲେ, ତାହା ଲିଖିତ ହୋଇଥିଲା ୰ସ୍ୱାମୀ ବିଚିତ୍ରାନନ୍ଦ ଦାସଙ୍କ ପାଖକୁ । ପ୍ରକାଶଥାଉକି, ସ୍ୱାମୀଜୀ ଥିଲେ ବାପାଙ୍କର ବହୁକାଳର ଘନିଷ୍ଠତମ ବନ୍ଧୁ । ୧୯୩୦ ସାଲରେ ବାପା ଯେତେବେଳେ ମୌନବ୍ରତ ଅବଲମ୍ବନ କରି ସାରାଭାରତ ପରିଭ୍ରମଣ କରୁଥିଲେ, ସେତେବେଳେ ସ୍ୱାମୀଜୀଙ୍କ ଅନୁରୋଧରେ ସେ ଯାତ୍ରାବିରତି କରି ମୌନବ୍ରତ ଭଙ୍ଗ କରିଥିଲେ । କହିବା ବାହୁଲ୍ୟ, ସ୍ୱାମୀଜୀ ଥିଲେ ସେ କାଳର ନାମଜାଦା ଆଇନଜୀବୀ, ସ୍ୱାଧୀନଚେତା ତଥା ଜାତୀୟତାବାଦୀ ସ୍ୱାଧୀନତା ସଂଗ୍ରାମର ଅକ୍ଳାନ୍ତ ସମର୍ଥକ ଏବଂ "ପାର୍ଲାମେଣ୍ଟର ପିତା" ରୂପେ ବିଦିତ ଶ୍ରୀ ଭୁବନାନନ୍ଦ ଦାସଙ୍କ ଭାଇ । ତଗରପଡ଼ାରେ ସ୍ୱାମୀଜୀଙ୍କ ଘରେ ମୁଁ ଯେତେବେଳେ ଯାଇ ପହଞ୍ଚେ, ସେତେବେଳେ ସେ ତାଙ୍କ ଗୈରିକ ଖଦଡ଼ ଲୁଂଗିଟି ପିନ୍ଧି ନିଜ ଅଫିସ ଘରୁ ବାହାରି ଆସୁଥିଲେ । ସେ ମୋତେ ଦେଖି ଦେଖି ବାପାଙ୍କ କଥା, ଘରର ଅନ୍ୟାନ୍ୟ ଖବରଅନ୍ତର, ମା'ର ସ୍ୱାସ୍ଥ୍ୟାବସ୍ଥା ସବୁ ପଚାରିଗଲେ । ମୁଁ ଆଭୂମିନତ ହୋଇ ତାଙ୍କୁ ପ୍ରଣାମ ଜଣାଇ ବାପା ଦେଇଥିବା ଚିଠିଟି ତାଙ୍କ ହାତରେ ଦେଲି । ଚିଠିଟି ପାଇ ସେ ବିବ୍ରତ ହେବା ପରି ଜଣା ପଡ଼ିଲେ । ନୀରବରେ କ'ଣ ଭାବିଲେ, ତା'ପରେ କହିଲେ, "ରହ, ଖାଇକରି ଯିବୁ ।" ତାଙ୍କ ନିର୍ଦ୍ଦେଶ ଏଡ଼ି ନପାରି ଭିତରକୁ ଯାଇ ଖାଇ ବସିଲି । ମା' କଥା ଚିନ୍ତା କରି ପେଟକୁ ଭାତ ଗଲା ନାହିଁ । କୌଣସି ମତେ ସାମାନ୍ୟ କିଛି ଗର୍ଭସ୍ଥ କରି ଯେତେବେଳେ ସ୍ୱାମୀଜୀଙ୍କ ପାଖରୁ ବିଦାୟ ନେବାକୁ ଗଲି ସେତେବେଳେ ସେ ମୋ ହାତକୁ କୋଡ଼ିଏ ଟଙ୍କା ବଢ଼ାଇ ଦେଲେ । ସେତକ ପ୍ୟାଣ୍ଟ ପକେଟରେ ପୂରାଇ ଚାଲି ଚାଲି ଗୌରୀଶଙ୍କର ପାର୍କ ଯାଏ ଆସିଲି । ସେତେବେଳେ ଗୌରୀଶଙ୍କର ପାର୍କ ଠାରୁ ଜଗତ୍‌ସିଂହପୁରକୁ ବସ୍ ଛାଡ଼ୁଥିଲା । ଅନେକ ସମୟ ଅପେକ୍ଷା କଲା ପରେ ବସ୍ ପାଇଲି । ବସ୍ ଠାରୁ ଅଧିକ ଦ୍ରୁତଗତିରେ ମନ ମୋର ଧାବିତ ହେଉଥାଏ ଆଗକୁ । ମନେ ମନେ ଘରେ ପହଞ୍ଚି ଗଲିଣି କେତେବେଳୁ । ନାନା କଥା, ନାନା ଦୃଶ୍ୟ, ମା'ର ଶାୟିତ ମୂର୍ତ୍ତି, ଗାଁର ଅନ୍ଧକାର, ଘରର ଡ଼ିବିରି ଆଲୁଅ, ସବୁକିଛି ଆଖି ଆଗରେ ନାଚି ଉଠୁଥାଏ । ଯେତେବେଳେ ବାସ୍ତବତା ଭିତରକୁ ଫେରିଆସେ, ଦେଖିଲି ବସ୍ ଠିଆ ହୋଇଛି ତିନିଡିଅର ଅନୁସାହୁ ଦୋକାନ ପାଖରେ । ବସ୍‌ରୁ ଓହ୍ଲାଇଲି । ସେତେବେଳକୁ ସନ୍ଧ୍ୟା ହୋଇ ବେଶ୍ ଅନ୍ଧାର ହୋଇ

ଯାଇଥାଏ । ଭାବେନି, ମୋର ବାଟ ଚାହିଁ ବାପା ବସିଥିବେ । ଡେରି ହେଲାଣି ବୋଲି ଭାଇଙ୍କୁ ପଠାଉଥିବେ । କିନ୍ତୁ ଚାରିଆଡକୁ ଅନାଇ ଦେଖିଲି କେହି କୁଆଡେ ନାହାନ୍ତି । ନା, ଅପେକ୍ଷା କରି ଲାଭ ନାହିଁ । ଅନ୍ଧକାର ମାଡ଼ି ଆସୁଛି । ପାଦ ବଢାଇଲି ଆଗକୁ । ମନ ମଧ୍ୟରେ ଏକ ଶୋକର ଆବର୍ତ୍ତ ଅନୁଭବ କରୁଥାଏ । ମନଟା ଲାଗୁଥାଏ ଉଦାସ । ଯେମିତି କୋଉଠି କିଛି କ'ଣ ହଜିଗଲା ସେଇମିତି ଲାଗୁଥାଏ । ପକେଟରେ ହାତମାରି ଦେଖିଲି ସ୍ୱାମୀଜୀ ଦେଇଥିବା ଟଙ୍କା ସେଇମିତି ଅଛି । ସେକ୍‌ପାଟଣା ପାଖ ଦେଇ ସ୍ଲେଟ କେନାଲ ବନ୍ଧ ବନ୍ଧେ ଯାଇ 'ଟୁଙ୍ଗିବାରି' କେନାଲ ହାଟ ପଡ଼ିଆରେ ଯେତେବେଳେ ପାଦ ଦେଲି, ସେତେବେଳେ ହାଟ ମଝିରେ ଥିବା ବଡ଼ ଝଙ୍କାଳିଆ ବରଗଛ ଶାଖାରେ ଗୃଧ୍ର ଦମ୍ପତିଙ୍କ ଶବ୍ଦ କାନରେ ପଡ଼ିବା ମାତ୍ରେ ମନରେ ଟିକେ ଛନକା ପଶିଲା । ଅନତିଦୂରରେ "ଭୁରୁ ଭୁରିଆ କୁଦ" ଅର୍ଥାତ୍ ଗାଁର ସେହି କୁଖ୍ୟାତ ଭୟଙ୍କର ମଶାଣି । "ପରଗାଁ ପାଣି, ନିଜ ଗାଁ ମଶାଣି" ହିତପ୍ରଦ ବୋଲି କୁହାଯାଏ । ବିନବେଳେ ଏଇ ମଶାଣି ପାଖରେ ହେବା ମାତ୍ରେ ପଥିକ ତା'ର ଗତିକୁ ଖରତର କରେ । ଏଇ ଗ୍ରାମ୍ୟ-ଶ୍ମଶାନକୁ କେନ୍ଦ୍ର କରି କେତେ ମନଗଢ଼ା ଭୌତିକ କାହାଣୀ ପିଲାଦିନେ ମୁଁ ଶୁଣିଛି । ଉଦ୍‌ଭିଦିଆ ଦ୍ୱିପହରେ ମଶାଣି ମଝିରେ ଗୋଟାଏ ଝାମ୍ପୁରିମୁଣ୍ଡି ବୁଢ଼ୀ ବସି ବସି କାନ୍ଦେ, ମଣିଷ ଦେଖିଲେ ହସି ହସି ଅଦୃଶ୍ୟ ହୋଇଯାଏ । ରାତିହେଲେ ଚିରଗୁଣୀମାନେ ଏକାଠି ବସି ନିଆଁ ଜାଳି, ସେ ନିଆଁରେ ନିଜ ନିଜ ଗୋଡ଼କୁ ଜଳାଇ ଚୁଆଙ୍କୁ ସେକନ୍ତି । ଭୂତମାନେ ଯା-ଆସ କରୁଥିବା ଲୋକଙ୍କ କାନ୍ଧରେ ହଠାତ୍ ସବାର ହୋଇ ବସନ୍ତି ଇତ୍ୟାଦି ଇତ୍ୟାଦି ଏଇମିତି କେତେ କେତେ ଭୌତିକ ପ୍ରବାଦ । ଏହି ପ୍ରବାଦପୀଠ ଭୟଙ୍କର ଶ୍ମଶାନର ଠିକ୍ ମଝିଆମଝି ମଣିଷ ଚାଲନ୍ତି ବାଟ ସାପେଇ ସାପେଇ ଲମ୍ବି ଯାଇଛି କେଉଁଠାକୁ ଧାନବିଲ ଅତିକ୍ରମ କରି—ପଶିଯାଇଛି ନବାପାଟଣା ଗାଁ ମୁଣ୍ଡ ଗୋହିରୀ ଭିତରେ, ଏବଂ ଉଠିଛି 'ମାଙ୍କଡ଼ଗୋଡ଼ିଆ' ପୋଖରୀ ବନ୍ଧ ଉପରେ ଯାଇ ।

ହିଂସ୍ର ଜନ୍ତୁ ବ୍ୟତୀତ ଭୂତପ୍ରେତ ଏ ସବୁକୁ ମୁଁ ମୋଟେ ଭୟ କରେନା । ଏ ଭୟ ବାଲ୍ୟକାଳରୁ ବାପା ମୋଠାରୁ ଦୂରେଇ ଦେଇଥିଲେ ।

ଏଇ କେନାଲ ହାଟ ପଡ଼ିଆ ହାଟପାଳି ବ୍ୟତୀତ ବିନବେଳେ ନିର୍ଜନ ।

ମୁଁ ଯେତେବେଳେ ବସ୍‌ରୁ ଓହ୍ଲାଇ ଘରମୁହାଁ ହୋଇ ଚାଲିଛି, ମୋର ଚାରି-ପାଖରେ କ୍ରମବର୍ଦ୍ଧମାନ ରାତିର ଅନ୍ଧକାର । ହଠାତ୍ ବିଲୁଆମାନଙ୍କର ସମ୍ମିଳିତ ଚିତ୍କାରରେ ଫେରି ଆସିଲି ରୂଢ଼ ବାସ୍ତବତା ଭିତରକୁ । ଦୂରକୁ ଚାହିଁ ଦେଇ ପାଦର ଗତି ମୋର ହଠାତ୍ ଧିମେଇଗଲା । ଦୂର 'ଭୁରୁଭୁରିଆକୁଦ'ର ଭୌତିକ ନିର୍ଜନ ବୁକୁ ଉପରେ ଏକ ପ୍ରଚଣ୍ଡ ଅଗ୍ନିଦାହର ଆଭା । ସମଗ୍ର ପରିବେଶ ଜନଶୂନ୍ୟ । ଚିତା ବଳୁଛି । ଘରେ ବାପା-ମା ହୁଏତ ମୋ କଥା ଭାବୁଛନ୍ତି । ସାଙ୍ଗରେ କେହି ନାହିଁ··· ଯିବି କେମିତି ? ଅବଚେତନ ମନରେ ଏକ ଆତଙ୍କ । କିଏ ମରିଛି ଦାହ ହେଉଛି କାହାର ଶବ ? (ମୃତ୍ୟୁ ସମ୍ପର୍କରେ ପିଲା ଦିନେ ମୋର ଏକ କିମ୍ଭୂତକିମାକାର ଧାରଣା ଥିଲା । ସବୁଆଡେ ସମସ୍ତଙ୍କ ଘରୁ ଲୋକେ ମଲେ ବି ଆମ ଘରୁ କେହି ମରିବେ ନାହିଁ । ଆଜି ସେକଥା ମନେ ପଡ଼ିଲେ ହସମାଡେ । ) ଯା ହେଉ, ମନକୁ ଦୃଢ କରି ଅଧିକ ଖରତର କଲି ପାଦର ଗତି । ମଣିଷ ଚଳନ୍ତି ସାପୁଆ ବସ୍ତାର ୪।୫ ହାତ ଛାଡ଼ି ଚିତାଟି ଜଳି ଆଲୋକିତ କରୁଥିଲା ସାରା ଶ୍ମଶାନ ଭୂମି ଏବଂ କିଛି ଦୂରର ଧାନକ୍ଷେତମାନଙ୍କୁ । ଦକ୍ଷିଣ ଦିଗରେ ପବନର ଅବିଶ୍ରାନ୍ତ ଧକ୍‌କା ଚିତାଗ୍ନିକୁ ଅଧିକ ଲେଲିହାନ, ଅଧିକ ପ୍ରଜ୍ୱଳିତ କରି ତୋଳୁଥିଲା । ମଝିରେ ମଝିରେ ଚିତାଗର୍ଭରୁ ଫୋ ଫୋ ଶବ୍ଦରେ କେତେକ ସ୍ଫୁଲିଙ୍ଗ ବିଚ୍ଛୁରିତ ହୋଇ ଛିଟିକି ପଡ଼ୁଥିଲା ବାହାରକୁ । ନା, ଯିବାକୁ ହେବ·· ଅତିକ୍ରମ କରିବାକୁ ହେବ ଏ ଚିତାଲୋକିତ ଶ୍ମଶାନ । ମା' ଯେ ତେଣେ ରୋଗଶଯ୍ୟାରେ ମୋ କଥା ବାରମ୍ବାର ପଚାରୁଥିବ ବାପାଙ୍କୁ । ଚାରିଆଡ଼କୁ ଥରେ ଅନାଇଁ ଦେଖିଲି ଚିତା ପାଖରେ କେହି ନାହାନ୍ତି । ଯଦି କିଏ ଥିବେ ତାହେଲେ ଦୂରରେ କୋଉଠି ଅବା ଥାଇପାରନ୍ତି ।

ଠିକ୍ ଚିତା ପାଖଦେଇ ଯେତେବେଳେ ଜୋର୍‌ରେ ଆଗକୁ ଚାଲିଯାଉଛି ସେତେବେଳେ ବତାସର ଏକ ତେଜରେ ଚିତାଗ୍ନିର ଊର୍ଦ୍ଧ୍ୱମୁଖ ଧୂମାଭ ଶିଖା ଅନନ୍ତ ଅଗ୍ନି-ନାଗୁଣୀର ପ୍ରସାରିତ ଭୟଙ୍କର ଫଣା ପରି ମୋ ମୁଣ୍ଡ ଉପରେ ଲହଲହ ହୋଇ ଉଠିଲା । ତା'ର ତାତି ଓ ଧୂଆଁରେ ଅନିଃଶ୍ୱାସୀ ହୋଇ ନିଜ ଅଜାଣତରେ ମୁଁ ଏକ ଆର୍ତ୍ତଚିତ୍କାର କରି ଉଠିଲି "ମା" !

କେତେବେଳେ ସମଗ୍ର ସର୍ପିଳ ଚଲାପଥ, ଗାଁ ମୁଣ୍ଡ ଗୋହିରି ପାରି ହୋଇ ଆସି 'ମାଙ୍କଡଗୋଡ଼ିଆ' ବନ୍ଧ ଉପରେ ପହଞ୍ଚିଛି, ତା ମଧ୍ୟ ମୋତେ ମାଲୁମ

ନାହିଁ । ଦେହରୁ ଗମଗମ ହୋଇ ଝାଳ ବୋହି ଯାଉଥିଲା ଓ ଗ୍ରୀଷ୍ମଟା ପଡ଼ୁଥିଲା ଓ ଉଠୁଥିଲା । 'ମାଙ୍କଡଗୋଡ଼ିଆ' ପୋଖରୀ ବନ୍ଧ—ତା' ପାଖେ ପାଖେ ବାଉଁଶ ଓ ଜଙ୍ଗଲର ସାମ୍ରାଜ୍ୟ । ଚମ୍ପ ଓ ଗୋଖର ସାପମାନଙ୍କର ଏଇଟା ରାଜଧାନୀ । ପାଖରେ କଣ୍ଡରା ଘର । ଯଦିଓ ସେ ଘରର କୋଉ ଲୋକର ନାଁ ମୋର ଆଜି ସ୍ମରଣ ନାହିଁ, ତଥାପି ସେମାନେ ଆମ ପରିବାରର ଥିଲେ ଏକାନ୍ତ ଘରଣୀ । ସେହି କଣ୍ଡରା ପରିବାରର ବୁଢ଼ୀ ସେତିକି ବେଳେ ପୋଖରୀରୁ ପାଣିପାରି ଉପରକୁ ଉଠୁଥିଲା । ଅନ୍ଧାରରେ କିଏ ଜଣେ ଯାଉଛି ଦେଖି ସେ ପଚାରିଲା, "କିଏ ଯାଉଛି ?"

"ମୁଁ ରବି ।" ଜବାବ ଦେଲି ।

"ରବି ?"

"ହଁ । କିଏ ମାଉସୀ ?"

"ହଁ ।" ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ଆରେ ତୁ କୋଉବାଟେ ଆଇଲୁ ?"

" ଏଇବାଟେ ତ ଆସୁଚି । କିଏ ଅଜି ମରିଚି କି ମାଉସୀ ? ପୋଡ଼ା ହେଉଚି ଯେ !"

ବୁଢ଼ୀ କିଛି ଉତ୍ତର ଦେଲା ନାହିଁ—ସେହି ଅନ୍ଧାର ଭିତରେ ସେ କାନ୍ଦୁଥିବାର ମୁଁ ଲକ୍ଷ୍ୟ କଲି । କିଛି ବୁଝି ପାରିଲି ନାହିଁ । ଦେହଟା ମୋର ପୁଣି ଥରି ଉଠିଲା । କହିଲି : ମାଉସୀ, ତୁ କାନ୍ଦୁଛୁ ? କା'ର କ'ଣ ହେଲା ?"

ବୁଢ଼ୀ ବାଷ୍ପରୁଦ୍ଧ କଣ୍ଠରେ, କହିଲା "ଶୁଆଲେ ମୁଁ ତତେ ଛାଡ଼ି ଦେଇ ଆସିବି ଘରେ ।..."

"ନାଇଁ ମାଉସୀ...ମୁଁ ଏକା ଚାଲିଯିବି... ।" ମୋ ପାଟିରୁ କଥା ନ ସରଣୁ ବୁଢ଼ୀ ମୋତେ ଜାବୁଡ଼ି ଧରିଲା । କିଛି ବୁଝି ପାରିଲି ନାହିଁ । ଗୋଟାଏ ବୈଦ୍ୟୁତିକ ଆତଙ୍କରେ ସର୍ବାଙ୍ଗ ମୋର ଦୋହଲି ଉଠିଲା । ମୁଁ

ଚିତ୍କାର କରି ଉଠିବା ଆଗରୁ ସେହି ଅନ୍ଧକାର ଭିତରେ ଏକ ଦୀର୍ଘଶ୍ୱାସ ପକାଇ ବୃଢୀ ସଙ୍କୋଚରେ ଘୋଷଣା କଲା—ଯେଉଁ ଜୁଳମାନ ଚିତାଗ୍ନିର ପାଖଦେଇ ମୁଁ ଚାଲି ଆସିଲି ତାହା ଅନ୍ୟ କାହାର ନୁହେଁ—ମୋ' ମାଆର । ପୃଥିବୀଟା କେତେ ଥର ମୋ ଆଖି ଆଗରେ ବୁଲିଗଲା, ରାତିର ଆକାଶଟା ଚିରି ଫାଳ ହୋଇ ସତେ ଯେପରି ତାରାଗୁଡ଼ାକ ସେହି ଫାଟ ମଧ୍ୟରେ ଗଳିପଡ଼ି ଅଦୃଶ୍ୟ ହେଲେ, ପାଦତଳର ମାଟିକୁ ମୋର ସତେ ଯେପରି କିଏ ଖସାଇ ନେଲା, ଅର୍ଦ୍ଧ-ଚେତନ ହୋଇ ତଳେ ପଡ଼ି ଯାଉ ଯାଉ ଭାଇ ଯମୁନାଲାଲଙ୍କ ହାତ ମୋତେ ବାନ୍ଧିଦେଲା···ତାଙ୍କ କାନ୍ଧ ଉପରେ ପଡ଼ି ମୁଁ ଆସିଲି ଘରକୁ । ହାୟ ସେଇ ରାତି !

ପୂର୍ବରୁ କହିଛି, ମା' ମରିବା ଆଗରୁ ମୋର ଏକ ହାସ୍ୟକର ତଥା ଭ୍ରାନ୍ତ ଧାରଣା ଥିଲା, ସବୁଆଡ଼େ ସମସ୍ତଙ୍କ ଘରୁ ଲୋକ ମରିବେ, କିନ୍ତୁ ଆମ ଘରୁ କେହି ମରିବେ ନାହିଁ । ମୋର ଏହି କମ୍ବୁତକମାକାର ଅବାସ୍ତବ ଧାରଣାର ସୌଧକୁ ମୃତ୍ୟୁ ତାର ଗୋଟିଏ ଫୁତ୍କାରରେ ଉଡ଼ାଇ ଦେଇଥିଲା । ସେଇଦିନ ମା'ର ମୃତ୍ୟୁ ପରେ ଜାଣିଲି ଦୁନିଆରେ କେହି ଅମର ନୁହନ୍ତି—ସମସ୍ତେ ମରି । ମୋର 'ସ୍ୱର୍ଗାଦପି ଗରୀୟସୀ' ଜନନୀଙ୍କ ପରେ ନିଶ୍ଚୟ ପାଳିପଡିବ ଅନ୍ୟମାନଙ୍କର, କିନ୍ତୁ ତାର ନିର୍ଦ୍ଦିଷ୍ଟ ଦିନ ଥିଲା ଅଜଣା । ତେବେ ପ୍ରବହମାନ ଦିବସଗୁଡ଼ି ମଧ୍ୟରୁ ଗୋଟିଏ ଦିନ ବା ରାତି ନିଶ୍ଚିତ ଭାବରେ ହେବ ସେହି ନିର୍ଦ୍ଦିଷ୍ଟ ଲଗ୍ନ । ଏହା ମୋର ଧାରଣା ମଧ୍ୟରେ ପ୍ରବେଶ କରିଥିଲା ସେହିଦିନ । ଅନାଗତ ସେହି ଦାରୁଣ ତଥା ଦୁଃଖାବହ ଲୋତକାପ୍ଲୁତ ଲଗ୍ନକୁ ସହ୍ୟ କଲା ଭଳି ମାନସିକ ପ୍ରସ୍ତୁତିର ପ୍ରାପ୍ତ ସୃଷ୍ଟି ହେବାକୁ ଆରମ୍ଭ କରିଥିଲା । ପୃଥିବୀରୁ··· ଜୀବନ ପାଖରୁ ମା'ର ବିଦାୟ ବେଳେ ମୁଁ ନଥିଲି ତା' ପାଖରେ । ତା ଚିତାଗ୍ନିର ଅନନ୍ତ ନାଗଫଣାର ଆଶୀର୍ବାଦ ମୋର ଊର୍ଦ୍ଧ୍ୱରେ ଲହ ଲହ ହୋଇ ମୋତେ ଦେଇଥିଲା ଏକ ଅଗ୍ନିମନ୍ତ୍ର, ଜୀବନ ସଂଗ୍ରାମ ତଥା ଆଦର୍ଶଗତ ଲଢ଼ାଇରେ ଜୟଯୁକ୍ତ ହେବାପାଇଁ । ଅଭାବ, ଶୂନ୍ୟତା, ଅନାଦାର, ଅବହେଳା, ଅଶିକ୍ଷା (କୁଶିକ୍ଷା ନୁହେଁ)ର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଲାଳିତ ପାଳିତ ମୋର ଶୈଶବ । ଯିଏ ଏହି ତତ୍ତ୍ୱାବଧାନରେ ବଢି ଉଠେ, ତା ଭିତରେ ଭବିଷ୍ୟତ ସଂଗ୍ରାମ

ସଙ୍ଘାତ ପାଇଁ ରସଦ ତଥା ରସେକୌଶଳ ମହଜୁଦ ହୁଏ । ତା ନହେଲେ ତାର ସ୍ଥିତି ଅସମ୍ଭବ ହୋଇ ଉଠନ୍ତା । ଏହିପରି ସ୍ଥିତିବାନ ମଣିଷଙ୍କ ସଂଖ୍ୟା ଧରାପୃଷ୍ଠରେ ଯଦିଓ ସ୍ୱଳ୍ପ ତଥା ମୁଷ୍ଟିମେୟ ; ତଥାପି ସେମାନଙ୍କ ଭିତରୁ ଜଣେ ହେଇ ପାରିଥିବାରୁ ମୋ ନକ୍ଷତ୍ର ନିୟନ୍ତା ପାଖରେ ମୁଁ କୃତଜ୍ଞ । ସେ ଯଦି ମୋ ପ୍ରତି ନିର୍ଦ୍ଦୟ ହୋଇ ନ ଥାନ୍ତା, ତା ବଦଳରେ ବାଲ୍ୟାବସ୍ଥାରୁ ମୋ ପାଇଁ ଖଞ୍ଜି ଦେଇଥାନ୍ତା ଦୁଗ୍ଧଫେନନିଭ ସୁକୋମଳ ଶଯ୍ୟା, ଆଦର, ଅଭ୍ୟର୍ଥନା, ପରିପୂର୍ଣ୍ଣତା, ସ୍ନେହଶ୍ରଦ୍ଧା, ସ୍ୱାଚ୍ଛନ୍ଦ୍ୟ, ତ ହେଲେ ଆଜ ମୋର ସମାଲୋଚକ ବନ୍ଧୁ ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ ଚର୍ବିବା ମେଦବହୁଳତାର ଓଜନରେ ମୋ କବିତ୍ୱର କଳଟି ଦଳ ଚକଟି ନିଃଶେଷିତ ହୋଇ ଯାଇଥାନ୍ତା । "ଅସଙ୍କୋଚ ପ୍ରକାଶରେ ଦୁରନ୍ତ ସାହସ" ବାଧା ପ୍ରାପ୍ତ ହୋଇ ଜୀବନର ଗତି-ଧାରା ହୋଇଥାନ୍ତା ଅନ୍ୟ ପ୍ରକାରର । (୩)

---

(୩) "ମାତ୍ର ଏ ସବୁ ସତ୍ତ୍ୱେ ସେ କବିତା ରାଜ୍ୟରେ ଯେପରି ଜବରଦସ୍ତ ପ୍ରତିଷ୍ଠା ଲାଭ କରିଛନ୍ତି, ତାହା ଓଡ଼ିଆ ପାଠକମାନଙ୍କ ପକ୍ଷରେ ଯେତିକି ଆନନ୍ଦର ବିଷୟ, ମୋ ପକ୍ଷରେ ତାହା ତତୋଧିକ । ବସ୍ତୁତଃ ମୋର ମନେହୁଏ କବି-ଚେତନା ଏକ ଅରଖ ନିଆ ସିଲାଟ ପରି···ତା ଉପରେ ତତ୍ତ୍ୱ, ତଥ୍ୟ ଓ ବ୍ୟାକରଣର ଶାର ପଡ଼ିଗଲେ ସେଥିରେ 'ଭଞ୍ଜ କାବ୍ୟ' ବା ଅଳଂକାର ଶାସ୍ତ୍ର ଲେଖା ଚଳିପାରେ, ମାତ୍ର ସେ ସିଲଟରେ 'ଶକୁନ୍ତଳା' ଉତୁରିବା ସମ୍ଭବ ହୁଏ ନାହିଁ । ନୋବେଲ ପୁରସ୍କାର ପ୍ରାପ୍ତ କବି ଜର୍ଜ ସେଫାରେସ୍ (୧୯୬୩) ଥରେ କହିଥିଲେ—

**'If I had to have a kind of motto for my Poetry, I suppose it would be something like In my poetry is my strength.'**

ଜର୍ଜ ସେଫାରେସ କହିଥିଲେ ଶରୀରର ଦାରିଦ୍ର୍ୟର କଥା । ମାତ୍ର ପକେଟର ଦାରିଦ୍ର୍ୟ ମଧ୍ୟ କବିର ଶ୍ରେଷ୍ଠ ସମ୍ବଳ ହୋଇପାରେ । × × ଦାରିଦ୍ର୍ୟ, ଉପେକ୍ଷା ଓ ବଂଚନା ମଧ୍ୟରେ କ୍ରମେ ଆମେ ଦହଗଞ୍ଜ ହୋଇ ପଡ଼ିଗଲୁ···ମାତ୍ର କବିତ୍ୱର ଲୌହପିଣ୍ଡକୁ ତାହା ଶାଣିତ ଇସ୍ପାତରେ ପରିଣତ କରିଦିଏ ।"

—ସୁରେନ୍ଦ୍ର ମହାନ୍ତି ( 'ପାଦଟୀକା' ଗ୍ରନ୍ଥର ମୁଖବନ୍ଧ ଦ୍ରଷ୍ଟବ୍ୟ ) ।

ଘାଟରୁ ତେଲ ସରିଆସିଲେ ଦୀପଶିଖା ଯେପରି ନିଷ୍ପ୍ରଭ ହୋଇ ଆସେ ମା'ର ମୃତ୍ୟୁରେ ବାପା ଠିକ୍ ସେହିପରି ହୋଇ ଯାଉଥିଲେ । ଏ ବିରାଟ ଦୁନିଆରେ କେବଳ ମୁଁ ସେତେବେଳେ ହୋଇ ଉଠିଥିଲି ତାଙ୍କର ସୁଖଦୁଃଖର ସଙ୍ଗୀ । ମା'ର ଦେହାନ୍ତ ପରେ ଯେତୋଟି ଦିନ ସେ ବଞ୍ଚି ରହିଥିଲେ ତାହା କେବଳ ଉଦ୍ଦିଷ୍ଟ ଥିଲା ମୋ'ର ସୁରକ୍ଷା ପାଇଁ । ଯୁଆଡ଼େ ସିଏ ଯାଆନ୍ତି, ଯୋଉଠି ଏକୁଟିଆ ଘରବାରେ ବସି ବସି କ'ଣ ଭାବନ୍ତି, ଛାୟା ପରି ମୁଁ ଥାଏ ତାଙ୍କ ପାଖେ ପାଖେ । କହିବାକୁ ଗଲେ ତାଙ୍କ ମାନସ ରାଜ୍ୟରେ ଜୀବନ ଓ ମରଣ ଭିତରେ ସେତେବେଳେ ଚାଲିଥିଲା ଏକ ହାତାହାତି ସଂଘର୍ଷ । ମୋ'ର ପାଇଁ ସେ ବଞ୍ଚିଥିଲେ ଆଉ ମୋ'ର ପାଇଁ ସେ ମରି ପାରୁ ନଥିଲେ । ମାତ୍ର ବଞ୍ଚି ରହିବା ପାଇଁ ଅଉ ତାଙ୍କର ବାସନା ବି ନଥିଲା । ତାଙ୍କ ରୁଟିନ୍ ବନ୍ଧା ଜୀବନରେ ଦେଖା ଦେଇଥିଲା ବ୍ୟତିକ୍ରମ । ରାତି ଚାରିଟାରୁ ନିଦରୁ ଉଠିବା ବଦଳରେ ସୂର୍ଯ୍ୟୋଦୟ ପରେ ସେ ନିଦରୁ ଉଠିବା ଆରମ୍ଭ କଲେ । ଆହାର ପ୍ରାୟ ତିନି-ଚତୁର୍ଥାଂଶ କମିଗଲା । ଭାତର ମୁଖଦର୍ଶନ କରିବାକୁ ସେ ଆରମ୍ଭ କଲେ ୮।୧୦ ଦିନରେ ଥରେ । ତା'ର ଭିତରେ ନବାପାଟଣା ଗାଁକୁ କେନ୍ଦ୍ର କରି ମୋତେ ସାଙ୍ଗରେ ଧରି ଆଖପାଖର କେତେକ ଅଞ୍ଚଳକୁ ଯାନ୍ତି ଅନୁସନ୍ଧାନ ଉଦ୍ଦେଶ୍ୟରେ । ଘରକୁ ଫେରି ହାତରେ ରୋଷେଇ କରନ୍ତି । କିଛି ନଥିଲେ ଭାତ ଓ ଆଳୁସିଝା କରି ମୋତେ ଖାଇବାକୁ ଦେଇ ନିଜେ ଖାଆନ୍ତି । ଆଖିକୁ ନିଦ ନ ଆସିଲେ ତାଙ୍କର ପ୍ରିୟଗ୍ରନ୍ଥ "ସତ୍ୟାର୍ଥ ପ୍ରକାଶ", "ମହାନାଟକ", "ଭଗବଦ୍ ଗୀତା" ବସି ବସି ପଢନ୍ତି । ମୁଁ ଯଦି ଶୋଇ ପଡ଼ୁଥାଏ, ମଝିରେ ମଝିରେ ପଢ଼ା ବନ୍ଦ କରି ମୋ ମୁଣ୍ଡରେ ହାତ ବୁଲାନ୍ତି ।

ଆଜି ମନେପଡ଼ୁଛି, କି ମର୍ମାନ୍ତିକ ନିଃସଙ୍ଗତା, କି ଦୁଃସହ ଜୀବନ ସେ ବିତାଉ ନଥିଲେ ସତେ !

ମା ମରିଥିଲା ୧୯୪୭ ସାଲରେ—ଶାମ୍ବଦଶମୀ ଥିଲା ମାତ୍ର ୩ଦିନ ବାକି । କିନ୍ତୁ ମରଣର ଲୁଚକାଳି ଖେଳ ଆମ ପରିବାର ଭିତରେ ଅବ୍ୟାହତ ଥିଲା ଆମ ସମସ୍ତଙ୍କ ଅଲକ୍ଷ୍ୟରେ ।

# ଦୁର୍ବାସାର ଅଭିଶାପ

ଦିନ ଥିଲା, ସାନ ଦାଦା ଅର୍ଥାତ ବାପାଙ୍କର ସାନଭାଇ ସାଧୁଚରଣ ସିଂ ଥିଲେ ବାପାଙ୍କର ଅତି ଆଦରଣୀୟ । ପରେ ତାଙ୍କର ଓ ତାଙ୍କ ସ୍ତ୍ରୀଙ୍କର କର୍ମକାଣ୍ଡ ଆମ ପରିବାର ଭିତରେ କିପରି ଦୁର୍ବିପାକକୁ ଡାକି ଆଣିଥିଲା ତାହା ପୂର୍ବରୁ ବର୍ଣ୍ଣିତ ହୋଇଛି । ସାନ ଦାଦାଙ୍କ ସହିତ ବାପା ତାଙ୍କର ଶେଷଦିନ ପର୍ଯ୍ୟନ୍ତ କଥାବାର୍ତ୍ତା ବି କରୁ ନଥିଲେ । ସେ ଯେଉଁଦିନ ତାଙ୍କ ସହିତ କଥା କହିଥିଲେ ସେ ଦିନଟି ସାନ ଦାଦାଙ୍କ ଜୀବନର ଅନ୍ତିମ ଦିବସ କହିଲେ ଅତ୍ୟୁକ୍ତି ହେବନାହିଁ ।

ମାଘ ମାସର କନକନିଆ ହାଡ଼ଭଙ୍ଗା ଶୀତ ।

ଅପରାହ୍ନ ସେତେବେଳେ । ସାନଦାଦାଙ୍କୁ ଝିଙ୍କଣି ଜ୍ୱର ହେବା ଯୋଗୁଁ ସେ ଆସି ଗାଁରେ ଥାନ୍ତି । ମନେଅଛି, ସେଦିନ ସେ ଘର ବାରଣ୍ଡାରେ ଆପାଦ-ମସ୍ତକ ଢାଙ୍କି ହୋଇ ବସିଥିଲେ । ବାପା ଯଦିଚ ଜାଣନ୍ତି ସେ ଅସୁସ୍ଥ ତଥାପି କିଛି କହନ୍ତି ନାହିଁ । ସେଦିନ ବରଡ଼ ହାଟରେ ହେଉଥିବା ମାଘସପ୍ତମୀ ମେଳାକୁ ଯିବା ପାଇଁ ବାହାରିଥାନ୍ତି ବାପା । ମୁଁ ବି ତାଙ୍କ ସହିତ ଯିବା ପାଇଁ ପ୍ରସ୍ତୁତ ହୋଇ ରହିଥାଏ । ଯାହାର ପ୍ରାକ୍‌କାଳରେ ଆଶ୍ଚର୍ଯ୍ୟର କଥା, ବାପା ସିଧାହେଲାଖି ଠିଆହୋଇ ଅନେଇଲେ ବସିଥିବା ସାନଦାଦାଙ୍କୁ । ମୁଁ ଲକ୍ଷ୍ୟ କରିଛି ଆଖି ଦୁଇଟି ତାଙ୍କର ସତେ ଯେପରି ଦାଉ ଦାଉ ହୋଇ ଜଳୁଥିଲା । ବହୁକାଳ ପରେ ନିଜର ସାନଭାଇ ଉଦ୍ଦେଶ୍ୟରେ ତାଙ୍କ ମୁହଁ ଫିଟିଲା : "ସାଧୁ," ଏ ଡାକରେ ଦାଦା ଚକିତ ହୋଇ ଚାହିଁଲେ । ତାଙ୍କ ମୁହଁ ଫିଟିଲା ନାହିଁ । ବାପା ପୁଣି କହିଲେ, "ତୋର କଣ ହୋଇଚି ? ଜର ?" ଦାଦା ନୀରବରେ ମୁଣ୍ଡହଲାଇ ସମ୍ମତି ଜଣାଇଲେ । "ଠିକ୍ ଅଛି" ବାପା ପୁଣି କହି ଉଠିଲେ, "ମୁଁ ଯାଉଛି କାଲି ଫେରିବି । ଫେରିଲା ବେଳକୁ ତୁ ଯେମିତି ଆଉ ନଥିବୁ···" ଏତକ କହିଦେଇ ସେ ମୁହଁ ବୁଲେଇ ଦ୍ରୁତ ପଦକ୍ଷେପରେ ବାହାରିଗଲେ, ଆଉ ମୋତେ ତାଙ୍କ ପଛେ ପଛେ ଯିବାକୁ ସଂକେତ ଦେଲେ ।

ଆମେ ଦୁହେଁ ପାଦରେ ଚାଲି ଚାଲି ସେଦିନ ବରଡ଼ ହାଟ ପର୍ଯ୍ୟନ୍ତ ଯାଇଥିଲୁ । ଅନେକ ଦୂର ପର୍ଯ୍ୟନ୍ତ ବାପା ନୀରବରେ ଚାଲିଥିଲେ—

ମୋ ସମ୍ଭବତ ପଦେମାତ୍ର କଥା ମଧ୍ୟ କହି ନ ଥିଲେ । ଅବାକ୍ ବିସ୍ମୟରେ ଏ ଘଟଣାକୁ ମୁଁ ସେତେବେଳେ ଅନୁଭବ କରିଥିଲି । ବାପା କାହିଁକି ଦାଦାଙ୍କୁ ତାଙ୍କର ଏପରି ଅବସ୍ଥାରେ ଏପରି କଥା କହି ଘରୁ ବାହାରି ଆସିଲେ ସେ କଥା ପଚାରିବାକୁ ସାହସ ହେଲା ନାହିଁ ମୋର ।

ତା ତହିଁଆର ଦିନ ଅପରାହ୍ଣରେ ଆମେ ଘରକୁ ଫେରୁଥିଲୁ । ଗଛପତ୍ରରେ ମହଲଣ ଖରା । ସେକ୍ପାଟଣା ଚଟିପି ଆମେ ପ୍ରବେଶ କଲୁ କେନ୍ଦାଳ ହାଟ ପଡ଼ିଆରେ । ଦୂରରୁ ବାପାଙ୍କ ଦୃଷ୍ଟି ପଡ଼ିଲା ଗାଁର ଝାଡ଼ପ୍ରଦ ଶ୍ମଶାନ 'ଭୁଲୁଭୁଲିଆ କୁଦ' ଉପରେ । ତା' ଉପରେ ଶାଗୁଣାମାନେ ଚକ୍କର ଦେଉଥିଲେ । କାଳେ ମୁଁ ଡରିବି, ସେଥିପାଇଁ ବାପା ମୋତେ ପାଖକୁ ଟାଣିନେଇ ତାଙ୍କର ଗୋଟିଏ ହାତକୁ ମୋ କାନ୍ଧ ଉପରେ ରଖିଲେ ଆଉ କହିଲେ, "କିଏ ଗୋଟାଏ ମରିଛି ଆଜି । ଆ, ଚାଲିଆ ।"

ଶ୍ମଶାନ ଭିତରର ସେହି ମଣିଷ ଚଲନ୍ତା ବାଟ ଦେଇ ଆମେ ନବାପାଟଣା ଗାଁ ଭିତରେ ପଶିଲୁ । ଘରେ ପାଦ ଦେଉଁ ଦେଉଁ, ସାନଦାଦାଙ୍କ ଝିଅ ପୁଅ ଓ ତାଙ୍କ ସ୍ତ୍ରୀଙ୍କର ଆକୁଳ ବୁକୁଫଟା କାନ୍ଦଣା—ଘଟଣା କ'ଣ ? ମୁଁ ଓ ବାପା ଅବାକ୍ ହୋଇଗଲୁ । ଘରଆଡେ ଗୋଟାଏ ଥମ ଥମ ଭାବ । ପଡୋଶୀମାନେ ନୀରବ । ବାପା ମହାମେରୁ କପିଳାସର ମୂକଚୂଡ଼ା ପରି ଘରର ଅଗଣାରେ ଠିଆ ହୋଇଥିଲେ—ତାଙ୍କ ପାଖକୁ ଲାଗି ମୁଁ । ହଠାତ୍ ବାପାଙ୍କ ପାଦତଳେ ଆସି କଚାଡ଼ି ହୋଇ ପଡ଼ିଲେ ସାନଦାଦାଙ୍କ ବଡ଼ଝିଅ ହାରାମଣି, ମଝିଆଁ ଝିଅ ଶାନ୍ତି । ସାନଝିଅ କାମିନୀ ଓ ପୁଅ କୈଳାସ ତା'ଙ୍କ ବିଧବା ମା ପାଖରେ ବାରଣ୍ଡାରେ ଠିଆହୋଇ ଅତି ଅକୁଳରେ କାନ୍ଦୁଥିଲେ । ପ୍ରକାଶ ଥାଉକି ଦାଦାଙ୍କର ମଝିଆଁ ଝିଅ ଶାନ୍ତିକୁ ବାପା ଅନ୍ତରିକ ଭାବେ ଭଲ ପାଉଥିଲେ । ତାଙ୍କ ସାନ ଝିଅ କାମିନୀକୁ ମୁଁ ଏତେ ଭଲ ପାଉଥିଲି ଯେ, ଶତ ଦୁଃଖ ଯନ୍ତ୍ରଣା ଭିତରେ ତାକୁ ନ ଦେଖିଲେ ମୁଁ ଅସ୍ଥିର ହୋଇଉଠେ । ସେ ମଧ୍ୟ ମୋତେ ସେହି ପରିମାଣରେ ଭଲ ପାଉଥିଲା । ସେଥିପାଇଁ ତା'ର ମା ତାକୁ ଦେଉଥିଲା ଅଶେଷ ଯନ୍ତ୍ରଣା । ବାପାଙ୍କ ଦେହାନ୍ତ ପରେ ମୁଁ ଯେତେବେଳେ ଘରଛାଡ଼ି ପଳାଇ ଆସିଲି, କାମିନୀ ମୋତେ ଝୁରିଝୁରି ଶୀର୍ଣ୍ଣ ହେଲା । ପରିଶେଷରେ ସେ ହେଲା ଶଯ୍ୟାଶାୟୀ । ତାକୁ ଦେଖିବା ପାଇଁ ବାଧ୍ୟ ହୋଇ ଗାଁକୁ ଆସି ତାର

ଶିଶୁ ଶବକୁ କାନ୍ଧରେ ପକାଇ ଶ୍ମଶାନକୁ 'ଉପହାର' ଦେଇ ଆସିଥିଲି । ବଡ଼ ବେଦନାଦାୟକ ସ୍ମୃତି ସିଏ । ଆଜି ସାନଦାଦାଙ୍କ ସେ ଦୁଇ ଝିଅ, ତାଙ୍କ ସ୍ତ୍ରୀ, ସେ ନିଜେ କେହି ନାହାନ୍ତି, କେବଳ ଅଛି ତାଙ୍କର ଏକମାତ୍ର ପୁତ୍ର ସନ୍ତାନ ହତଭାଗ୍ୟ କୈଳାସ ଯେ ଗଭୀର ଅନ୍ଧକାର ଭିତରେ ନବାପାଟଣା ଗାଁର ମୋର ସେହି ପୈତୃକ ଘରଡ଼ିହଟି ଉପରେ ।

ହାର ଆଉ ଶାନ୍ତି ବାପାଙ୍କ ପାଦ ତଳେ କାନ୍ଦି କାନ୍ଦି ଗଡ଼ୁଥିଲେ । ସେମାନଙ୍କର ଆକୁଳ କାନ୍ଦଣା ଯେପରି ବାପାଙ୍କୁ କହୁଥିଲା, "ବଡ଼ବାପା, ତମ ଅଭିଶାପରେ ଆମେ ଅନାଥ ହୋଇଛୁ, ଆମକୁ ରକ୍ଷାକର ।" ସେଦିନର ସେହି ଶୋକାବହ ସନ୍ଧ୍ୟାର ଲମ୍ବୁ ଅନ୍ଧକାର ମଧ୍ୟରେ ବାପା ଥିଲେ ଗମ୍ଭୀର— ଦଣ୍ଡାୟମାନ । ସେହି ଦୁର୍ବାସା ତା' ପୂର୍ବ ଦିନ ଅପରାହ୍ଣରେ ନିଜର ସହୋଦର କନିଷ୍ଠ ଭାଇକୁ ଦେଇଥିଲା ଅଭିଶାପ । ସେ ଅଭିଶାପ ମାତ୍ର କେତେ ଘଣ୍ଟା ଭିତରେ ଫଳବତୀ ହୋଇଛି—ନିଜର କନିଷ୍ଠ ସହୋଦରର ମରଦେହ ଶ୍ମଶାନ ଶୃଗାଳମାନଙ୍କର ଉଦରସ୍ଥ ହୋଇ ସାରିଛି । ବାପାଙ୍କ ଦେହଟି ଧୀରେ ଅବନତ ହେଲା···ସେ ନଇଁ ପଡ଼ି ଦାଦାଙ୍କର ଦୁଇ ଝିଅଙ୍କୁ ତଳୁ ଉଠାଇ ସେମାନଙ୍କୁ ସାନ୍ତ୍ୱନା ଦେଲେ, ସେମାନଙ୍କ ମୁଣ୍ଡରେ ହାତ ବୁଲାଇଲେ, ନିଜର ଲୁହ ପୋଛିଲେ । ଦୁର୍ବାସାର ଆଖିରେ ଲୁହ···କହିଲେ, "ସାଧୁ, ମୁଁ କହିଦେଲି ବୋଲି ତୁ ସତରେ ଚାଲିଗଲୁ ! ଯାଅ, ସମସ୍ତେ ଯାଅ, ମୁଁ ବି ଯିବି ।" ତା'ପରେ ତାଙ୍କର ଦୁଇଝିଅ ଓ ବିଧବା ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ କହି ଉଠିଲେ, "ଚିନ୍ତା କରନି । ମୁଁ ଅଛି । ତମେ ମୋ ଭାଇର ପିଲା । ସବୁ ଭୁଲିଯାଅ···" ଆଉ ସେ କହି ପାରିଲେ ନାହିଁ ।

ସାନଦାଦାଙ୍କ ଅନ୍ତ୍ୟେଷ୍ଟି କ୍ରିୟା ସରିଲା ।

ସମୟର ସ୍ରୋତ ବହିବାକୁ ଆରମ୍ଭ କଲା ଦ୍ରୁତ ଗତିରେ । ବାପା ହୋଇ ଉଠିଲେ ଅଧିକରୁ ଅଧିକ ଉଦାସୀନ । ତାଙ୍କ ଆଖି ଆଗରେ ଉଡ଼ୁଥିଲା

ସର୍ବନାଶର ଉଡ଼ନ୍ତ ପତାକା । ସ୍ତ୍ରୀ ଗଲା, ସାନଭାଇ ଗଲା । ବାଙ୍କି ରହିଲେ ନିଜର ଅଭିଜଣେ କନିଷ୍ଠ ଭାଇ ଯଦୁମଣି ସିଂହ, ବଡ଼ ପୁଅ ଯମୁନାଲାଲ, ମୁଁ ଆଉ ସେ ନିଜେ ଏବଂ ମୃତ ସାନଭାଇର ବିଧବା ସ୍ତ୍ରୀ ଓ ତା'ର ଅନାଥ ପୁତ୍ର-କନ୍ୟା । ଏହି ଦୁର୍ଦ୍ଦିନରେ ମଝିରେ ମଝିରେ ଦୁର୍ଗା ପିଉସୀ ଆସି ବେଳେବେଳେ ଆବିର୍ଭୂତ ହୁଏ । ଦୁର୍ଗା ପିଉସୀ—ବାପାଙ୍କର ବିଧବା ଭଉଣୀ । ବାପାଙ୍କର ତେଜସ୍ୱିତା, ଭାବଭଙ୍ଗୀ, ପ୍ରକୃତି ସବୁ ତାଙ୍କଠାରେ ବିଦ୍ୟମାନ ଥିଲା । ବିଶୁଷ୍କ କାଳ—ନିଜର ଏକମାତ୍ର କନ୍ୟା ସନ୍ତାନର ଅକାଳ ବିୟୋଗରେ । ତାଙ୍କୁ ବାପା ଗୋଟିଏ ନଡ଼ିଆଗଛ ଦେଇଥିଲେ । ସେ ଗଛରେ ଯାହା ନଡ଼ିଆ ଫଳିବ ତା ବ୍ୟତୀତ ଅନ୍ୟ କେହି ନେଇ ପାରିବେ ନାହିଁ । କିନ୍ତୁ ବାପାଙ୍କ ଦେହାନ୍ତ ପରେ ତାଙ୍କୁ ସେଥିରୁ ବଞ୍ଚିତ କରିଥିଲା ସାନଦାଦାଙ୍କ ସ୍ତ୍ରୀ । ଏହି ଦୁର୍ଗା ପିଉସୀ ମୋର ସ୍ମୃତିରେ ଅବିସ୍ମରଣୀୟ । ଏଇ ହିଁ ୧୯୩୪ ମସିହାର ସରସ୍ୱତୀ ପୂଜା ପ୍ରତ୍ୟୁଷରୁ ମୋର ଜନ୍ମ ପରେ ମୋତେ ଅମ ବାରିପଟ କାଳି ଆମ୍ବଗଛ ମୂଳ ଖତଗଦାରୁ ଟେକି ପଡ଼ୋଶୀ ହରି ସାହୁଙ୍କ ଘରକୁ ଆଣିଥିଲା । ବାପା ସେତେବେଳେ ପାଟଣା କ୍ୟାମ୍ପ ଜେଲ୍‌ରେ ବନ୍ଦୀ । ବାପାଙ୍କ ମୃତ୍ୟୁ ପରେ ସାନଦାଦାଙ୍କ ସ୍ତ୍ରୀଙ୍କର ମୋ ଉପରେ ଚରମ ନିର୍ଯ୍ୟାତନା ଯୋଗୁଁ ଦୁଃଖରେ ଦୁର୍ଗା ପିଉସୀ ଇହଧାମରୁ ବିଦାୟ ନେଇଥିଲେ ।

## ପୂର୍ଣ୍ଣିମାର ଅନ୍ଧକାର

ମାର୍ଚ୍ଚ ମାସ
ଦୋଳ ପୂର୍ଣ୍ଣିମାର ସକାଳ···
୧୯୪୭ ମସିହା ।

କୌଣସି ବୈଲକ୍ଷଣ ନାହିଁ । ସବୁଦିନ ପରି ସୂର୍ଯ୍ୟ ଉଦୟ ହୋଇଛି । ସବୁଦିନ ପରି ସ୍ୱାଭାବିକ ଜୀବନଯାତ୍ରା ଆରମ୍ଭ କରିଛି ନବାପାଟଣା ଗାଁ । ମୁଁ ସେଦିନ ଡେରିରେ ନିଦରୁ ଉଠିଲି । ଉଠି ଦେଖିଲି ବାପା ତାଙ୍କ ନିତ୍ୟକର୍ମ ସାରି ଆସିଲା ପରେ ମୋତେ କହିଲେ ସେ ନିଜ ହାତରେ ଅଙ୍କ ରୋଷେଇ କରିବେ—ଭାତ ଖାଇବାକୁ ତାଙ୍କର ଭାରି ଇଚ୍ଛା ହେଉଛି । ରୋଷେଇର ପ୍ରସ୍ତୁତି ଆରମ୍ଭ ହେଲା ।

ଦିନ ୧୨ଟା ସୁଦ୍ଧା ଶେଷେଇ ସରିଲା ।

ଘିଅ, ଅଳୁସିଝା, ଡାଲି ଥିଲା ସେଦିନର ଆହାର । ଏକା କଦଳୀ-ପତ୍ରରେ ବାପାଙ୍କ ସହିତ ସେଦିନ ମୁଁ ଖାଇଥିଲି । ଖାଇ ସାରି ବାପା ବାରଣ୍ଡାରେ ଶୋଇ ପଡ଼ିଲେ । ମୁଁ ତାଙ୍କ ପାଦ ଆଉଁସି ଦେଉ ଦେଉ ତାଙ୍କର ପାଖରେ ଶୋଇପଡ଼ିଲି ।

ଦିନ ୩ଟା । ବାପା ନିଦରୁ ଉଠି ମୋତେ ଉଠାଇଲେ । ମୁହଁ ଧୋଇ ସାରିଲା ପରେ ସେ ମୋତେ କହିଲେ ଅଗଣାରେ ସଜନା ଗଛ ଛାଇରେ ମସିଣାଟା ପକାଇ ଦେବାକୁ । ମୁଁ ମସିଣାଟିଏ ବିଛାଇ ଦେଲି । ସେ ଯାଇ ବସିଲେ । ପାନ ଦାଦାଙ୍କ ଝିଅ ଶାନ୍ତି ନାଲି ଚା ତିଆରି କରି ତାଙ୍କ ପାଖରେ ଥୋଇ ଦେଇଗଲା । ବାପା ତାଙ୍କର ପ୍ରିୟ 'ସତ୍ୟାର୍ଥ ପ୍ରକାଶ' ଗ୍ରନ୍ଥ ଖୋଲି ସେତେବେଳେ ପଢ଼ିବାକୁ ଆରମ୍ଭ କରିଥିଲେ । ସଦ୍ୟ ପ୍ରସ୍ତୁତ ନାଲି ଚା'ରୁ ବାମ୍ଫ ଉଠୁଥିଲା, ମୁଁ ବସିଥିଲି ବାପାଙ୍କ ଡାହାଣ ପାଖରେ । ତେଣେ ଘର ମଥାନ ଉପରେ ଚଢ଼ିଥିଲେ ମଝିଆଁ ଦାଦା ଯଦୁମଣି ସିଂ । ପୂର୍ବଦିନ ମାଙ୍କଡ଼ମାନେ ଚାଳରୁ ନଡ଼ା ଓଲଟି ପକେଇ ଥିବାରୁ ସେ ତାକୁ ମରାମତି କରୁଥିଲେ । ଚା' ତକ ଗଳାଧଃ କରିସାରି ବାପା ହଠାତ୍ ମୋ ମୁହଁକୁ ଅନାଇଲେ । ମୁଁ କିଛି ବୁଝିପାରିଲି ନାହିଁ । ଅପରାହ୍ଣ ସୂର୍ଯ୍ୟର ତିର୍ଯ୍ୟକ ରଶ୍ମି ଗଛ ପତ୍ର ଫାଙ୍କ ଦେଇ ଆସି ବନ୍ଧ କରୁଥିଲା ଅଗଣାକୁ । ଆକାଶର ବହୁ ଉଚ୍ଚରେ ପଲେ ଶାଗୁଣା ଚକ୍ରବତ୍ ଘୂରୁଥିଲେ । ହଠାତ୍ ବାପା ମୋ ଉଦ୍ଦେଶ୍ୟରେ କହି ଉଠିଲେ, "ଦେବ, ମୋ ନାକ ଅଗଟା ଦେଖା ଯାଉନାହିଁ ।" ଏକଥା ଶୁଣି ମୁଁ ବିବ୍ରତ ହୋଇ ପଡ଼ିଲି । କାରଣ ଅନେକ ଦିନ ତଳେ ସେ କଥା ଛଳରେ ଜଣକ ଆଗରେ କହିଥିବା ମୁଁ ଶୁଣିଥିଲି, ନାକଅଗ ଦେଖା ନଯିବା ଅର୍ଥ ମୃତ୍ୟୁ ଆସନ୍ନ । ନାନା ଅଶୁଭ କଥା ଓ ଚିନ୍ତା ଜମାଟ ବାନ୍ଧି ମୋର ଶିଶୁ ମନରେ ସେଦିନ ଏକ ବିରାଟ କଳାମେଘର ଗୋଟାଏ ସୂର୍ଯ୍ୟ ଉଦୟ ହେଲା । ଆତଙ୍କ ଏବଂ ଆଶଙ୍କାରେ ବୁଡ଼ ରହିଥିବା ବେଳେ ବାପାଙ୍କର ଡାହାଣ ହାତଟି ଅସି ମୋ ମୁଣ୍ଡକୁ ଆଉଁସିବାକୁ ଆରମ୍ଭ କଲା । ବାଷ୍ପବିଜଡ଼ିତ ଭିତରକୁ ଫେରି ଆସି ବାପା କହିବାର ଶୁଣିଲି, "ବାବୁରେ, ତୋ ପାଇଁ ମୁଁ କିଛି କରିଯାଇ ପାରିଲି ନାହିଁ । ଯମୁନା ପାଇଁ ବହୁତ କିଛି କରିଛି । ସେଇଟା

ମଣିଷ ହେଲିନାହିଁ । ଭଗବାନ ତୋର ଭରସା । ମୁଁ ତତେ କଲ୍ୟାଣ କରୁଛି··· ବିରାଟ ମଣିଷ ହେବୁ ତୁ···" କଥା ସରିଲା ନାହିଁ, ବାପାଙ୍କ ଆଖିରୁ କେତେ ବୁନ୍ଦା ଲୁହ ଟପ୍‌ଟାପ୍ ଶବ୍ଦରେ ଗଡ଼ି ପଡ଼ିଲା ଖୋଲା "ସତ୍ୟାର୍ଥ ପ୍ରକାଶ" ଗ୍ରନ୍ଥର ପୃଷ୍ଠା ଉପରେ । ତା'ପରେ ତାଙ୍କର ଛାତି ମନ୍ଥି ଉଠିଲା ଏକ ପ୍ରଚଣ୍ଡ କାଶର ହାବୁକା । ମୋର ଆଖି ଆଗରେ କାଶି କାଶି ସେ ଭୂଇଁରେ ଗଡ଼ିଗଲେ ଅଗଣାର ଏ ମୁଣ୍ଡରୁ ସେମୁଣ୍ଡ । ମୁଁ ଏକ ବିରାଟ ଚିତ୍କାର କରି ଉଠିଲି । ଘର ମଥାନ ଉପରୁ ଓହ୍ଲାଇ ଆସିଲେ ମଝିଆଁ ଦାଦା ଯଦୁମଣି ସିଂ । ସାନ ଦାଦାଙ୍କ ପିଲାମାନେ କାନ୍ଦି ଉଠିଲେ । ଗଡ଼ିଯାଉଥିବା ଅବସ୍ଥାରେ ବାପା ମୋତେ ହାତରେ ଇଙ୍ଗିତ ଦେଉଥା'ନ୍ତି ତାଙ୍କ କଣ୍ଠନଳୀରେ ଅଟକି ଥିବା କଫକୁ ମୁଁ ହାତପୂରାଇ ଯେପରି କାଢ଼ିଆଣେ । ମୁଁ ତାଙ୍କ ପାଟିରେ ହାତ ପୂରାଇବାକୁ ଯାଉଛି, କିଛି ଦୂରରୁ କିଏ ମୋତେ ଶାସନ କଲା ପରି ଗମ୍ଭୀର କଣ୍ଠରେ ବାଧାଦେଲା "ନା, ହାତ ପୂରାନା । ଦାନ୍ତି ଜାକି ପଡ଼ିଯିବ ।" ଅଚଳ, ସ୍ଥବିର, ନିର୍ବାକ୍ ଗୋଟାଏ ଗ୍ରାନାଇଟ୍ ମୂର୍ତ୍ତି ପରି ସ୍ଥିର ହୋଇ ରହିଗଲି । ମୁହୂର୍ତ୍ତକରେ ମୋର ଆଗରେ ସବୁ ସରିଗଲା । ସ୍ପନ୍ଦନ, ଆଲୋଡ଼ନ, ଯନ୍ତ୍ରଣା, ଅଶ୍ରୁ, ଦୀର୍ଘଶ୍ୱାସ ସବୁ କିଛି ନୀରବ । ବାପାଙ୍କର ନିଶ୍ଚଳ ମୃତ ଦେହ ପଡ଼ିରହିଲା ଅଗଣା ମଝିରେ । ମନେ ଅଛି, ଗୋଟାଏ ଆର୍ତ୍ତ ଚିତ୍କାରରେ ମୁଁ ଲମ୍ଫ ଦେଲି ତାଙ୍କର ସେହି ମୃତ ଦେହର ଛାତି ଉପରକୁ । ମୁଣ୍ଡ ପିଟିବା, ବିଳାପ କରିବା, କାନ୍ଦିବା ଭିତରେ ମୋ ଚାରିପାଖରେ ସବୁକିଛି ଥିଲା ଘନଘୋର ଅନ୍ଧକାର । ଧୀରେ ଧୀରେ ମାଡ଼ି ଆସୁଥିଲା ରାତି । ଥୋଡ଼ାଏ ଦୂରରେ ବାରଣ୍ଡାରେ ସାନଦାଦାଙ୍କ ସ୍ତ୍ରୀ ତାଙ୍କ ପିଲାମାନଙ୍କୁ ନେଇ ମୂକ ପାଲଟି ବସିଥିଲେ । ମଝିଆଁ ଦାଦା ନିଜ ଛାତିରେ ହାତ ବାଡ଼େଇ ବିଳାପ କରୁଥିଲେ । ମୁଁ ବସିଥିଲି ଅଗଣା ମଝିରେ ବାପାଙ୍କ ଶବ ଉପରେ ମୁଣ୍ଡକୁ ଥୋଇ । କିଛି ଦୂରରେ ଏକ କରୁଣ ଶିଖାରେ କଳାଧାସ ସୃଷ୍ଟି କରି ଜଳୁଥିଲା ଲଣ୍ଠନଟି । ଗଲା··· ମୋର ଶେଷ ସମ୍ବଳ, ଶେଷ ଭରସା, ଶେଷ ମରୁଦ୍ୟାନଟି ବିଲୁପ୍ତ ହେଲା ଚିରଦିନରେ । ଏଥର ଧୂ ଧୂ ସାହାରାର ବାଲି, ପ୍ରଚଣ୍ଡ ବାଲିଝଡ଼ ଆଉ ଗରମ ଲୁ'ର ବଂଶୀଧ୍ୱନି, ଅନନ୍ତ ଅଜ୍ଞାତ ଭବିଷ୍ୟତ ହିଁ ଏକମାତ୍ର ଭରସା । ହେ ମରଣ ! ତମେ ସେଦିନ କ'ଣ କଲ ? ଜୀବନ-କଳିକାର ପ୍ରସ୍ଫୁଟନ ବେଳେ ଇଏ କି ପାଷାଣର ଗୁରୁଭାର ? ପୂର୍ଣ୍ଣିମାର ପୂର୍ଣ୍ଣଚନ୍ଦ୍ର କାଳି ଆମ୍ବଗଛ ଫାଙ୍କରେ ମୋତେ ସେତେବେଳେ ଦେଖୁଥିଲା ନୀରବରେ—ମୁଁ ବସିଥିଲି "ପିତାସ୍ୱର୍ଗ"ର

ଅତି ପାଖାପାଖି । ଦୁନିଆର ସମସ୍ତ ଆବେଗ ଶୋକ, ଲୋତକର ସମସ୍ତ ଦୀର୍ଘଶ୍ୱାସ, କାରୁଣ୍ୟର ସବୁ କଣ୍ଟଟା ଆସି ସେଦିନ ସେଠି ଏକାଠି ହୋଇଥିଲା ମୋ' ପାଇଁ । ଏ ବନାନୀବିଭୂଷା, ଲୌହଗର୍ଭା ସର୍ବଂସହା ବସୁଧାର ବହୁଜନ ଭିତରେ ମୁଁ ସେଦିନ ଭୟଙ୍କର ଭାବରେ ନିଃସଙ୍ଗ ତଥା ଅସହାୟ ହୋଇ ପଡ଼ିଥିଲି । ବାପାଙ୍କର ମୃତ୍ୟୁ, ମୋର ଚରମ କ୍ଷତି । ହେଲେ ବି, ତାହା ସେତେବେଳେ ଘଟିବା ଠିକ୍ ହୋଇଥିଲା । କାରଣ ଭାରତୀୟ ଜାତୀୟ ଆନ୍ଦୋଳନର ସେହି ନିରଳସ ଯୋଦ୍ଧା ତଥା ନୀତିନିଷ୍ଠ, ମହାନ ତ୍ୟାଗୀ, ଚିର ବିଦ୍ରୋହୀ, ପ୍ରଗତିଶୀଳ-ଆତ୍ମା ପରଲୋକଗତ ରାମଚନ୍ଦ୍ର ସିଂ, ଯାହାଙ୍କର ମୁଁ ଆତ୍ମଜ ଓ ବଂଶଧର, ଯିଏକି ଦେଶର ଜାତୀୟ ମୁକ୍ତି ପାଇଁ ନିଜକୁ କେବଳ ସଂଗ୍ରାମର ଅଗ୍ନିକୁଣ୍ଡରେ ଆହୁତି ଦେଇନଥିଲେ, ତା ସହିତ ମୋର ଭବିଷ୍ୟତକୁ ପୀଡ଼ିତ କରି ଫିଙ୍ଗି ଦେଇଥିଲେ ଅଜ୍ଞାତ ଅନ୍ଧକାରର ଗହ୍ୱର ଭିତରକୁ—ସେ ସ୍ୱାଧୀନତା ଦିବସ ଅର୍ଥାତ୍ ୧୯୪୭ ମସିହାର ଅଗଷ୍ଟ ତା ୧୫ରିଖ କୁ ନିଜ ଆଖିରେ ଦେଖି ଯିବାର ସୁଯୋଗ ପାଇଲେ ନାହିଁ—ତାର ଛ' ମାସ ପୂର୍ବରୁ ଜୀବନ ପାଖରୁ ବିଦାୟ ନେଲେ । ଆଜି ଭାବୁଛି ନ ଦେଖି ଯିବାଟା ତାଙ୍କ ପକ୍ଷରେ ଉତ୍ତମ ହୋଇଛି । ଆଜି ଯଦି ସେ ଜୀବିତ ଥାନ୍ତେ, ସେ ଯେଉଁ ଧାତୁରେ ଗଠିତ ମଣିଷ, ସେ ନିଶ୍ଚୟ ଅଧିକ ଅବହେଳିତ, ନିର୍ଯ୍ୟାତିତ ହେଉଥାନ୍ତେ ସ୍ୱାଧୀନ ସରକାରର ଦଣ୍ଡଛାୟା ତଳେ । କାରଣ ସ୍ୱାଧୀନ ମନ, ପ୍ରଗତିବାଦୀ ଚେତନା ଏ ସବୁ ଆଜି ଜୀବନର ନିରାପତ୍ତାକୁ ପ୍ରତି ପାଦେପାଦେ ବିପନ୍ନ କରୁଛି—ଯାହାର ମୂର୍ତ୍ତିମନ୍ତ ପ୍ରତୀକ ହେଉଛି ମୁଁ ନିଜେ । ଦୀର୍ଘ ୩୩ବର୍ଷ ତଳେ ତାଙ୍କ ଜୀବନ ନାଟକର ଅନ୍ତିମ ଯବନିକା ମୋ ଅନାଥ ଶିଶୁର ଆଖି ଆଗରେ ନଇଁ ଆସିଥିଲା ଅତି କରୁଣ, ଅସହାୟ, ଅବହେଳା ମଧ୍ୟରେ । ସେଇ କଥା ଆଜି ଯେତେବେଳେ ମୋର ମନେ ପଡ଼ୁଛି, ଠିକ୍ ସେତିକି ବେଳେ ୧୯୩୦ ମସିହାର ଲବଣ ସତ୍ୟାଗ୍ରହର ସୁବର୍ଣ୍ଣ ଜୟନ୍ତୀ ପାଳନ ହେବା ସଙ୍ଗେ ସଙ୍ଗେ ତାର ସ୍ମାରକୀକୁ ବହନ କରି କଟକ ଜିଲ୍ଲାର ଏରସମା ଥାନାର ଗୋଡ଼ା ଠାରୁ ପଦଯାତ୍ରୀ ଦଳ ଆସି କଟକ ନଗର ଉପକଣ୍ଠରେ ପହଞ୍ଚୁଛନ୍ତି ଏବଂ ସେଥିରେ ଅଛନ୍ତି ବାପାଙ୍କର ବନ୍ଧୁ ସହକର୍ମୀ । ଲବଣ ଆନ୍ଦୋଳନ ସମ୍ପର୍କରେ ଦୈନିକ ସମ୍ବାଦପତ୍ରମାନଙ୍କର ପୃଷ୍ଠା ଭରି ଉଠୁଛି ନାନା ନିବନ୍ଧ—ପ୍ରବନ୍ଧାଦିରେ । କିନ୍ତୁ ସେଥିରେ ତାଙ୍କର ନାମଗନ୍ଧ ବି ମୁଁ ଦେଖିବାକୁ ପାଇନାହିଁ । ଅଥଚ ସେ ଥିଲେ ସେହି ଲବଣ

ଆନ୍ଦୋଳନର ଅଗ୍ରଗାମୀ ପୁରୋଧା । ଆଜିର ବହୁ ଗଣ୍ୟମାନ୍ୟ ନେତାଙ୍କର ସେ ଥିଲେ ପ୍ରେରଣାର ଉତ୍ସ । (୪) ପୂର୍ବଗାମୀ ପଥିକୃତ୍ ମାନଙ୍କୁ ଭୁଲିଯିବାଟା ଆଜି ଅବଶ୍ୟ ଏକ 'ମୂଲ୍ୟବୋଧ'ରେ ପରିଣତ ହୋଇଛି । ତା ନହେଲେ "ସ୍ୱୟଂଭୂ" ବା କଥା ଓଡ଼ିଆରେ "ଭୁଇଁଫୋଡ଼୍"ମାନଙ୍କର କୌଣସି ଗୁରୁତ୍ୱ ରହିବ ନାହିଁ । କାଏମୀ ସ୍ୱାର୍ଥ (Vested Interest)ର ଦର୍ଶନ କୁହେ ଯିଏ ମହାନ୍, ଯାହାର ଅବଦାନର ତୁଳନା କରାଯାଇ ପାରିବ ନାହିଁ, ଯିଏ ମାତୃଭୂମି, ତାକୁ ଚିହ୍ନି ଥିଲେ, ଜାଣିଥିଲେ ବି "ଚିହ୍ନି ନାହିଁ", "ଜାଣିନାହିଁ" ବୋଲି କୁହ, ତାର ସମସ୍ତ ଆଗ୍ନେୟ ଇତିହାସକୁ ଜନଚକ୍ଷୁରୁ ଦୂରେଇ ରଖ— ଯେପରି ଆଗାମୀ ବଂଶଧରଗଣ ତାର ଟେର ନପାନ୍ତି । ତା ନହେଲେ ତମର ସ୍ୱାର୍ଥ ପ୍ରତି ପଦେ ପଦେ ବଣ୍ଟିତ ହେବ, ତମର କୌଣସି ମୂଲ୍ୟ ରହିବ ନାହିଁ, ପରନ୍ତୁ ତମେ ହେୟ ବୋଲି ପରିଗଣିତ ହେବ । କେବଳ ମୋର ପରଲୋକଗତ ପିତାଙ୍କ କ୍ଷେତ୍ରରେ ଏହା ଘଟିନାହିଁ, ସମଗ୍ର ଜାତିର ଗୌରବୋଜ୍ଜ୍ୱଳ ବିପ୍ଳବୀ ଇତିହାସ ତଥା ତାର ବୀର ଯୋଦ୍ଧାମାନଙ୍କ କ୍ଷେତ୍ରରେ ତାହା ଘଟିଛି ଓ ଘଟୁଛି । ଏହା ଏକ ଆତ୍ମହନନ ପ୍ରବଣତା ବ୍ୟତୀତ ଆଉ କ'ଣ ହୋଇପାରେ ? "ପୂଜ୍ୟପୂଜା" ନାମରେ ଆଜି ସେହିମାନେ ନିଜେ ଯୋଗାଡ଼ ଯନ୍ତ୍ର କରି "ପୂଜିତ" ହେଉଛନ୍ତି ଯେଉଁମାନେ କି ଖୁରୁ, ପଳାୟନପନ୍ଥୀ, ନୈତିକ କୁଷ୍ଠରୋଗୀ

---

(୪) । I left my studies and joined the nonco-operation movement in 1921 and went to work as a teacher in the National School of Jagatsinghpur. That is how I came to know Sree Rama Chandra Singh of Nabapatana very intimately. He made a deep impression on my young mind by his spirit of sacrifice. He was in the forefront of the freedom struggle till the last days of his life and went to jail several times in 1930, 1932 to 1934. He was one of the very few amongst us who had sacrificed practically, all had for the country."

Nabakrushna Choudhury
12. 3. 1972

ସାଲିସଧର୍ମୀ ଏବଂ ସମନ୍ୱୟବାଦୀ । ଏହା ବିଦ୍ରୋହୀ କବି ନଜରୁଲ ଇସଲାମ୍‌ଙ୍କର ସେହି ଉକ୍ତିର ଯଥାର୍ଥତାକୁ ପ୍ରତିପାଦିତ କରୁଛି—"ଯେ ଯତ ଭଣ୍ଡ, ଧଡ଼ିବାଜ୍ ଆଜ୍ ସେଇ ତତ ବଳବାନ୍ ।"

ବାପାଙ୍କ ଶବ ସେଇମିତି ଅଗଣା ମଝିରେ ପଡ଼ିଛି, ନୀରବ, ନିଶ୍ଚଳ ଭାବରେ । ଶବ ପାଖକୁ ଲାଗି ସ୍ତବ୍ଧ ହତବାକ୍ ହୋଇ ବସି ରହିଛି ମୁଁ—ରାତି ବଢ଼ୁଛି । ତା'ର ଭିତରେ ମଝିଆଁ ଦାଦା ଯାଇଛନ୍ତି ସାନଦାଦାଙ୍କ ଶ୍ୱଶୁର ଘର ଗାଁ ବଗଗୋଲକୁ ମଡ଼ା କାନ୍ଧେଇବାକୁ ଲୋକ ଆଣିଲେ ବାପାଙ୍କ ଶବସଂସ୍କାର ହେବ । ଆକାଶରେ ଦୋଳପୂନେଇଁର ଚନ୍ଦ୍ର ମଳିନ-ଭସାବାଦଲ ଫାଙ୍କରେ ତା'ର ଲୁଚକାଳି ଖେଳ ଖେଳୁଛି । କାନ୍ଦ ମୋର ବହୁତ ବେଳୁ ଥମି ଯାଇଛି । ମୁଁ ବାପାଙ୍କ ଶବ ପାଖରେ ବସିଛି ଏକୁଟିଆ, ମୋ ପାଖକୁ କେହି ଆସୁନାହାନ୍ତି ।

ରାତି ଦି ପହରବେଳକୁ ମଝିଆଁ ଦାଦା ମଡ଼ାକାନ୍ଧିଆ ଲୋକ ନେଇ ପହଞ୍ଚିଲେ । ଶବାଧାର ପ୍ରସ୍ତୁତ ସରିଲା । ଚାରିଜଣ ଲୋକଙ୍କ କାନ୍ଧକୁ "ହରିବୋଲ" ଧ୍ୱନି ମଧ୍ୟରେ ଉଠିଲା ଶବାଧାର । ବାପାଙ୍କର ସେହି ଅନ୍ତିମ ଯାତ୍ରା ମୋ ପକ୍ଷରେ ଆଖିଖୋଲି ଦେଖିବା ସେଦିନ ସମ୍ଭବ ନଥିଲା । ଦୁନିଆର ସମସ୍ତ କରୁଣ ହାହାକାର ଓ ଆର୍ତ୍ତନାଦ ଆଉ ଥରେ ମୋର କର୍ଣ୍ଣନଳ ଫଟାଇ ବାହାରି ଆସିଲା ବେଳକୁ ସାନଦାଦାଙ୍କ ବିଧବା ସ୍ତ୍ରୀ ଓ ଝିଅମାନେ ମୋ ହାତରେ ବିଡ଼ାଏ ଜଳନ୍ତା ନଡ଼ା ଜୋରକରି ଧରାଇ ଦେଲେ ମୁଖାଗ୍ନି ଦେବାର ବିଧି ରକ୍ଷା କରିବା ପାଇଁ । ସେହି ଧୂମପୁଞ୍ଜ ଅଗ୍ନିର ଆଲୋକରେ ଲୋତକାପ୍ଲୁତ ନୟନରେ ସେଦିନ ଶେଷଥର ପାଇଁ ମୁଁ ଦେଖିଥିଲି ବାପାଙ୍କର ମୁହଁ । ଶବାଧାର ସହିତ ଶ୍ମଶାନକୁ ମୁଁ ଯାଇନାହିଁ—ଯାଇପାରିଲି ନାହିଁ—ଯାଇ ପାରିନଥାନ୍ତି । ଦଶଗୋଟି ପାଦ ଗତିଶୀଳ ହେଲା ଶ୍ମଶାନ ଅଭିମୁଖେ । ଶବାଧାରର ସମ୍ମୁଖଭାଗରେ ଥିଲେ ମଝିଆ ଦାଦା । ବାପାଙ୍କର ଶେଷଯାତ୍ରା—ମୋର ଶେଷ ବନ୍ଧନ । ତାପରେ ସେହିଦିନ ଠାରୁ ବାହାରୁ, ଭିତରୁ ଚତୁର୍ଦ୍ଦିଗରୁ ଜଳିଛି, ହସିଛି, ଅଟ୍ଟହାସ କରିଛି, ଜାଳିଛି, ପୋଡ଼ିଛି, ବିଦ୍ରୂପ କରିଛି ମୃତ୍ୟୁକୁ—ଯଦିଓ ମୃତ୍ୟୁ ମୋର ପ୍ରତି ପଦକ୍ଷେପରେ ହୋଇଛି ସହଯାତ୍ରୀ ।

ଦିନ ଅତିବାହିତ ହେଲା ।

ବିପର୍ଯ୍ୟସ୍ତ ଶୋକାକୁଳ ଅନାଥ ମନ ମୋର ଧୀରେ ଧୀରେ ପୋଷା ମାନିଲା ଅବସ୍ଥାଚକ୍ରରେ । ଅନୁସନ୍ଧାନ କଲି—ପଥ କାହିଁ ? ନିରୁପାୟ ହୋଇ ମୋତେ ରହିବାକୁ ହେଲା ମୋ ପରିବାରର ସାକ୍ଷାତ ଡାକିନୀ ସାନଦାଦାଙ୍କ ବିଧବା ସ୍ତ୍ରୀର ହେପାଜତରେ । ଅସହାୟ ଅନାଥ ବାପା-ମା ଛେଉଣ୍ଡ ବାଳକ ମୁଁ । ଆଜନ୍ମରୁ ଦେଖିଆସିଛି ଶତ୍ରୁଣୀର କୂଟନୀତି ଭୂମିକା । ସେଇ ଭୂମିକାର ଶିକାର ହୋଇଛନ୍ତି ମୋର ବଡ଼ ଭାଇ । ମୁଁ କିନ୍ତୁ ଯେହେତୁ ସେ ଜାଲରେ ପଡ଼ି ନାହିଁ ସେହେତୁ ବାପାଙ୍କ ମୃତ୍ୟୁ ପରେ ତାର ପ୍ରତିଶୋଧ ନେବାର ଅପୂର୍ବ ସୁଯୋଗ ସମାଗତ ହେଲା ।

ରାତି ପାହି ସକାଳ ହେଲେ ପାକସ୍ଥଳୀ ଗୃହେଁ କିଛି ଖାଦ୍ୟ । କିନ୍ତୁ ମାଗିବି କାହାକୁ ? କିଏ ଅଛି ? ମାଝିଆଁ ଦାଦା ଦୁଇ ତିନି ଦିନରେ ଥରେ ମୁଁ ଖାଇଛି କି ନାହିଁ ଖବର ନିଅନ୍ତି ଉତ୍ତରତର ନିଜ ଦ୍ୱିତୀୟପକ୍ଷ ସ୍ତ୍ରୀ ଏବଂ ସାନଦାଦାଙ୍କ ବିଧବା ସ୍ତ୍ରୀର ଉପରେ । ସାନଦାଦାଙ୍କ ସ୍ତ୍ରୀକୁ ଖାଇବାକୁ ମାଗିବା ଆଗରୁ ମୋତେ ଅନ୍ତତଃ ଶହେଥର ଚିନ୍ତା କରିବାକୁ ପଡ଼େ । ସାଇପଡ଼ିଶାର ଲୋକଙ୍କ ମଧ୍ୟରୁ କୃଷ୍ଣଚନ୍ଦ୍ର ନାୟକ ଓରଫ୍ 'କୁଣିଆ ଦାଦା' ମୋ ପ୍ରତି କିନ୍ତୁ ଥିଲେ ଅତି ସଦୟ । ମଝିରେ ମଝିରେ ସେ ମୋତେ ଘରକୁ ଡାକି ଯାହାଥାଏ ଖାଇବାକୁ ଦିଅନ୍ତି । ସକାଳୁ ପ୍ରାୟ ମୋ କପାଳରେ କିଛି ଖାଦ୍ୟ ଜୁଟେ ନାହିଁ । ଗଛପତ୍ରମାନଂଙ୍କ ଉପରେ ଖରା ପଡ଼ିବା ପରେ ମୁଁ ବାହାରି ଯାଏ କେନ୍ଦାଳ ହାଟ ପଡ଼ିଆକୁ । କେନ୍ଦାଳ ହାଟ ପଡ଼ିଆ—ବିରାଟ ଏକ ପ୍ରାନ୍ତର ସେ । ପାଖକୁ ଲାଗି ଗାଁର ସେହି ଭୀତିପ୍ରଦ ଶ୍ମଶାନ 'ଭୁରୁଭୁରିଆକୁଦ' । କେନ୍ଦାଳ ହାଟ ପଡ଼ିଆରେ ଦଶ୍‌ବାରଂଟି ତାଳବରଡ଼ା ଛୁଆଣି କୁଡ଼ିଆ । ପ୍ରତି ବୁଧବାର ଓ ଶନିବାର ଦିନ ହାଟ ବସେ । ବାକି ଅନ୍ୟାନ୍ୟ ଦିନ ଗୁଡ଼ିକରେ ସାରା ପ୍ରାନ୍ତରଟି ଥାଏ ନିର୍ଜନ । ହାଟ ମଝିରେ ଠିଆ ହେଲେ ଶ୍ମଶାନର ହୁତ୍‌ପିଣ୍ଡ ଆଖିରେ ପଡ଼େ । ବହୁବାର ଏକାକୀ ଠିଆହୋଇ ସେହି ଶ୍ମଶାନର ନିସ୍ପନ୍ଦ-ହୁତ୍‌ପିଣ୍ଡକୁ ଦୂରରୁ ଦେଖିଛି ନୀରବରେ ବାପା ଓ ମା'ଙ୍କ ମୃତ୍ୟୁ ପରେ । ମନରେ ଆସିଛି;

ଭବାନ୍ତର, ଶୋକ । ସେହି ଶ୍ମଶାନ ଭୂମି—ଯେଉଁଠି ଅଞ୍ଚଳରେ ଜଳିଥିଲା ମା'ର ଚିତାଗ୍ନି, ବାପା ମଧ୍ୟ ସେଠି ତା'ର କୋଳରେ ଚିରକାଳ ଲାଗି ବିଶ୍ରାମ ନେଇଥିଲେ । ବର୍ଷେ ନପୂରୁଣୁ ମୋ ପରିବାରର ଅଧିକାଂଶ ସଭ୍ୟଙ୍କୁ ଏହି ମୌନ ମୃତ୍ୟୁପୀଠ ଟାଣି ଆଣିଛି ତାର ବୁକୁ ଉପରକୁ ।

କେନାଲ ହାଟପଡ଼ିଆରେ କାହିଁ କେଉଁ ଆଦିମ କାଳରୁ ସ୍ଥିତପ୍ରଜ୍ଞ ଯୋଗୀ ପରି ଶାଖାପ୍ରଶାଖା ମେଲି ଠିଆ ହୋଇଛି ଝୁଂକାଳିଆ ବଟବୃକ୍ଷ କେତୋଟି । ତାର ସେହି ଗହଳିଆ ଡାଳହାଡ଼ରେ ଶାଗୁଣାମାନଙ୍କର ବସା । ହାଟର ଗୋଟିଏ ପାଖରେ କୂଅଟିଏ । ପାଖରେ 'ଟୁଂଗିବାଣ' ନାମରେ ଅନ୍ୟ ଏକ ସ୍ଥାନ । ୧୦/୨୦ଟି ଆମ୍ବଗଛ ସେଠି । କେନାଲ ହାଟ ପ୍ରାନ୍ତର ଫଲଗୁ ମଠଟିଏ । ବିଶାଳ ତାର ଇଲାକା । ତା ଭିତରେ ପୋଖରୀଟିଏ, ଆମ୍ବବଣ, ମୃତ ସାଧୁ ସନ୍ଥମାନଙ୍କର ସମାଧି । ସେ ମଠରେ ସେତେବେଳେ ଯେଉଁ ବାବାଜୀ ଥିଲେ, ଭାରି ଭଲ ପାଉଥିଲେ ମୋତେ । ଟିକେ ଦୂରରେ ବହିଯାଉଛି ମଚ୍ଛଗାଁ କେନାଲର ଏକ ଶାଖା । ସେଥିରେ ଚମତ୍କାର କାଚକେନ୍ଦୁ ପରି ପାଣି । ପିଲାଦିନେ ସେହି କେନାଲରେ ଶୀତ ଥାଉଣୁ ବାପା ମୋତେ ଗାଧୋଇ ଦେଉଥିଲେ । କଟକ-ଜଗତସିଂହପୁର ପ୍ରଧାନ ସଡ଼କରୁ କେଳାପାହ୍ନ ପାଖରୁ କଚୁରାସ୍ତାଟିଏ ବାହାରି ସେହି କେନାଲକୁ ଅତିକ୍ରମ କରି କେନାଲ ହାଟ ପଡ଼ିଆ ମଝିଏ ମଝିଏ 'ଭୁରୁଭୁରିଆ କୁଦ' ପାଖଦେଇ ବାଙ୍କି ଆମ ଗାଁ ଭିତରକୁ ପଶିଯାଇଛି । ହାଟ ଯୋଉ ଦିନ ନଥାଏ; ଅର୍ଥାତ ଶନିବାର ଓ ବୁଧବାର ଦିନ ବ୍ୟତୀତ ସମଗ୍ର କେନାଲ ହାଟ ପଡ଼ିଆର ସମ୍ରାଟ ହେଉଛି ଭିକାରିଆ । ଭିକାରିଆ ଜାତିରେ ଗଉଡ଼, ଶ୍ରୀ ଅକ୍ଷର ବିବର୍ଜିତ—ଦେଖିବାକୁ କଳିକାଳର ଭୀମ ସଦୃଶ, କଳା ମୁଗୁନି ପଥର ପରି ଏକ ଅତିକାୟ ମୂର୍ତ୍ତି ସେ । ଦେହରେ ଅମିତ ଶକ୍ତି । ଭିକାରିଆ ଯେତେଦିନ ଜୀବିତ ଥିଲା, ସେତେଦିନ ଫୁଙ୍ଗୁଳା ଦେହରେ, ଝଡ଼,ବର୍ଷା, ଖରାରେ ଦିନ ତମାମ ଏହି କେନାଲ ହାଟ ପଡ଼ିଆରେ ବୁଲୁଛି ଗୋରୁପଲଙ୍କ ମେଳରେ । ସେଇଟା ଥିଲା ତାର ଜୀବିକା । ଗାଁର ବିଭିନ୍ନ ଲୋକଙ୍କ ଗୋରୁ ସେ ଜଗେ । ମାସକୁ ପାଏ ତିନିଅଣା କରି । ତା ନିଜ ହାତରେ କେଇଟା ଆଙ୍ଗୁଠି ଅଛି ପଚାରିଲେ କହିପାରିବ ନାହିଁ ଭିକାରିଆ । ସକାଳ ହେବାର କିଛି ପରେ ସେ

ବିକଂସା ଖଣ୍ଡେ ପଖାଳ ଲୁଣ ସାହାଯ୍ୟରେ ଗର୍ଭସ୍ଥ କରି ଗୋରୁ ଓ ମେଣ୍ଢା ପଲକୁ ଧରି ପାଞ୍ଚଣ ହଲାଇ ହଲାଇ ବାହାରି ପଡ଼େ, ଆଉ ଯାଇ ହାଜରି ହୁଏ କେନାଲ ହାଟପଡ଼ିଆରେ । ତା ଗୋରୁ ଓ ମେଣ୍ଢାପଲ ଆସିବା ଏବଂ ଯିବା ବେଳେ ଯଦି ପଲ ଭିତରୁ କୌଣସି ମେଣ୍ଢା ବା ଗୋରୁ ଯୂଥଭ୍ରଷ୍ଟ ହୁଏ, ତାହେଲେ ସେହି ଗୋରୁ ଓ ମେଣ୍ଢାର ମାଲିକର ଚୌଦପୁରୁଷକୁ ଉଦ୍ଧାର କରେ ଦୋ' ଅକ୍ଷରି ଭାଷାରେ । ଏଥିରେ ଅନେକ ଅସନ୍ତୁଷ୍ଟ ହୁଅନ୍ତି । ଯଦି କେହି ପ୍ରତିବାଦ କରି ଭିକାରିଆକୁ ଏପରି ଭାଷା ବ୍ୟବହାର ନକରିବାକୁ ତାଗିଦ୍ କରେ, ତାର ଫଳ କିନ୍ତୁ ହୁଏ ଓଲଟା । ପ୍ରତିବାଦକାରୀକୁ ତ ଭିକାରିଆ ଯାହା କହେ କହେ, ତା ଗୋରୁ ବା ମେଣ୍ଢାକୁ "ସ୍ୱତନ୍ତ୍ର ଅଭ୍ୟର୍ଥନା" କରେ ଦିନ ତମାମ୍ । ଗୋଠରୁ ତା ଗୋରୁ ବା ମେଣ୍ଢାକୁ ଅଲଗା କରି ଗୋଟାଏ ଗଛରେ ବାନ୍ଧି ରଖେ ୨।୩ ଦିନ । ଧରି ନିର୍ଧୂମ ଛେଚେ, ଆଉ ତା ଅଭିଧାନର ସମସ୍ତ ଭାଷାକୁ ମାଲିକ ଉଦ୍ଦେଶ୍ୟରେ ଉଜାଡ଼ି କରିଦିଏ । ଭିକାରିଆର ସ୍ତ୍ରୀ ସୁକ୍ରୀ କିନ୍ତୁ ବୁଦ୍ଧିମତୀ । ଭିକାରିଆ ମାସ ତମାମ ଗାଈ ଜଗେ । ପାରିଶ୍ରମିକ କିନ୍ତୁ ଗାଈର ମାଲିକମାନଙ୍କ ଠାରୁ ହିସାବ କରି ଆଣେ ସୁକ୍ରୀ । 'ଡ଼ମି' ଆଉ 'କମି' ଭିକାରିଆର ଦୁଇ ଝିଅ ।

ସେମାନେ ଥିଲେ ମୋର ବାଲ୍ୟ ସାଥୀ । ସେମାନଙ୍କୁ ଭିକାରିଆ ମଝିରେ ମଝିରେ ଗୋରୁଭଳି ଛେଚେ, ପଘାରେ ବାନ୍ଧି ଗୁହାଳରେ ରାତି ସାରା ପକାଇ ଦିଏ । ତାକୁ ମୁଁ ଡାକୁଥିଲି "ଭିକାରିଆ ଅଜା" । ସେ ମୋତେ ଅତି ଅସଭ୍ୟ ଭାଷାରେ ଥଟ୍ଟା-ତାମସା ବି କରୁଥିଲା । ମୋର ବ୍ୟଥାଭରା ଅନାଥ ବାଲ୍ୟ ଜୀବନରେ ଭିକାରିଆର ଦୈନନ୍ଦିନ ଜୀବନ ମୋ ଓଠରେ ହସ ଫୁଟାଉଥିଲା । ଦିନେ ଦିନେ ସେ ସଞ୍ଜବେଳେ ଗୋରୁଗୋଠ ନେଇ ଘରକୁ ଫେରି ବିଳାପ କରେ ଜରି ବାଉଳାରେ । ଲୋକେ କୁହନ୍ତି ତାକୁ ଡାଆଣୀ ଲାଗିଛି । ଆଉ ଦିନେ ଦିନେ ସେ ମଜାଦାର କାମ କରେ । ମଶାଣି 'ଭୁରୁଭୁରିଆ କୁଦ'ରେ ତା ମେଣ୍ଢା ଚରୁଥିବା ବେଳେ ସେଥିରୁ କେତୋଟିକୁ ବିଲୁଆ ଖାଇଯିବାରୁ ଭିକାରିଆ ଦିନେ ବିଲୁଆ ସମାଜ ବିରୁଦ୍ଧରେ ବିଦ୍ରୋହ ଘୋଷଣା ପୂର୍ବକ ମଶାଣି ମଝିରେ ପଡ଼ିଥିବା କୋକେଇ ବାଉଁଶକୁ ନୂଆ କୋକେଇ ଭଳି ସଜାଇ ତା'ଉପରେ ନିଜେ ମୁର୍ଦ୍ଦାର ପରି ଘୋଡ଼ଘାଡ଼ ହୋଇ ପାଖରେ ଗୋରୁବାଡ଼ିଆ ପାଞ୍ଚଣକୁ ସଯତ୍ନରେ

ରଖି ଶୁଏ । ବିଲୁଆମାନେ ପାଖ କଅଁବୁଦା ତଳୁ ଦେଖନ୍ତି ଶବ ପଡ଼ିଛି । ଧୀର ପଦକ୍ଷେପରେ ଯେତେବେଳେ ସେମାନେ ଶବାଧାରର ପାଖାପାଖି ହୁଅନ୍ତି ଭକାରିଆ ଭୂତ ପରି ଉଠି ତାଣ୍ଡବ ନୃତ୍ୟ କରି ନିର୍ଧୁମ ପିଟି ଦେଇଯାଏ । ୨।୩ଟି ବିଲୁଆ ଏକାଥରକେ ଖତମ୍ । ପୁଣି କେବେ କେବେ ସେ ସେଇମିତି ଶୋଇ ରହିବା ଫଳରେ ଆକାଶରୁ ଶାଗୁଣା ମାନେ ଖସି ତା ଦୁଇପାଖେ ବସିଯାଆନ୍ତି । ଭକାରିଆ ଉଠି ପଡ଼ି ସେମାନଙ୍କ ଭିତରୁ ୩।୪ଟାକୁ ଖତମ୍ କରି ତାକୁ ନେଇ ଶବାଖିଆମାନଙ୍କୁ ବିକି ଦିଏ ଗୋଟାକୁ ଦୁଇପଇସା ଦରରେ । ଦିନେ ଦିନେ ଦେଖାଯାଏ କେନ୍ଦାଳ ହାଟ ପଡ଼ିଆରେ ଗୋରୁଗୋଠ ଭିତରେ ଗୋଟାଏ ଷଣ୍ଢ ଉପରେ ବସିଛି ଭକାରିଆ । ଷଣ୍ଢଟା ବି ବିନା ପ୍ରତିବାଦରେ ମହାଦେବଙ୍କ ପରି ତାକୁ ବହନ କରିଛି । ଯିଏ ଦେଖେ ସିଏ ହସେ । ମୁଁ ବି ହସି ହସି ବହୁବାର ଗଡ଼ି ଯାଇଛି । ସେହି ଦୃଶ୍ୟରେ ଯଦି କେହି କେବେ ତାକୁ ତାର ବୃଷଭ ଆରୋହଣର କାରଣ ପଚାରେ ସେ କହେ, "ମୁଁ ଦିନପାଇଁ ଗାଈ ଜଗିବି, ଏ ଶଳାଟା ଟାଙ୍ଗିପଲ ଭିତରେ ପଶି ଫାଇଦା ଉଠାଇବ । ସେଥିପାଇଁ ମୁଁ ତାକୁ କାମରେ ଲଗାଇଛି ।" ଦିନେ ଦିନେ ସେ ଷଣ୍ଢ ଉପରେ ବସି ଗାଁ ଭିତରକୁ ଆସେ ଗୋଠ ନେଇ । ପିଲାମାନେ ତା ପଛରେ ତାଳି ମାରନ୍ତି, ଦୌଡ଼ନ୍ତି । ଭକାରିଆ ସ୍ତ୍ରୀ ସୁକୀ କନ୍ଦୁ ବିଗିଡ଼ିଯାଇ କହେ 'ଯୋଗଣିଖିଆକୁ ଦେବି ଦି ଖଣ୍ଡ ମୁଷାଟି । ଷଣ୍ଢଟା ଉପରେ ଚଢ଼ି ଗାଁକୁ ଆଇଚୁ ? ଆଉ ଏ ଯୋଗଣିଖିଆ ଷଣ୍ଢଟା ବି କିଛି କହୁନାହିଁ ।"

ଭକାରିଆ ଅଜା—ସେ ଏକ ବିଚିତ୍ର ସ୍ମୃତି ମୋ'ର । ସେ ଆଜି ଇହଧାମରେ ନାହାନ୍ତି ।

ପିଲାଦିନରୁ ମୁଁ ନିର୍ଜନତା ପ୍ରିୟ ।

ସକାଳୁ ଘରୁ ବାହାରି ମୁଁ ସେହି କେନ୍ଦାଳ ହାଟ ପଡ଼ିଆରେ ଯାଇ ହାଜର ହୁଏ । ଦିନ ତମାମ୍ ସେଠି ରହେ । ଘୂରି ବୁଲେ ।

ବାଲି ଘର କରି ଖେଳେ, ଚଢ଼େଇମାନଙ୍କ କିଚିରି ମିଚିରି ଶବ୍ଦକୁ କାନପାରି ଶୁଣେ । ସେମାନଙ୍କ ଗତିବିଧିକୁ ଲକ୍ଷ୍ୟକରେ । ବେଳେ ବେଳେ ଦୂରରୁ ଗାଁ ମଶାଣିକୁ ଚାହିଁ ବାପା ଓ ମା'ଙ୍କ କଥା ମନେ ପକାଇ ଅସହାୟ ଭାବରେ କାନ୍ଦେ । ଭୋକ ହେଲେ ପାଚିଲା ବରଫଳ ଖାଏ, ପାଖରେ ଥିବା କୂଅ ଭିତରେ ପଶି ଅଞ୍ଜୁଳା କରି ପାଣିପିଏ, କେବେ କେବେ କ୍ଳାନ୍ତିରେ ସେହି ବରଗଛମାନଙ୍କର ପାଦ ଦେଶରେ ନିଘୋଡ଼ ନିଦରେ ଶୋଇ ପଡ଼େ । ଅନାଥ ବାଲ୍ୟ ଜୀବନରେ ସେହି ପ୍ରାନ୍ତର, ସେହି ବଟବୃକ୍ଷ; ତା'ର ଲାଲ ଲାଲ ଫଳ, ସେହି ନିର୍ଜନତା, ସେହି କୂପର ସୁଶୀତଳ ଜଳ ଏସବୁ ଥିଲେ ମୋର ସଙ୍ଗୀ, ଆଶ୍ରୟଦାତା, ରକ୍ଷାକାରୀ । ଏମାନଙ୍କର ଅବଦାନରେ ଅନ୍ତର ମୋର ଋଣୀ । ଏମାନଙ୍କର ଋଣଭାର ପରିଶୋଧ ହୋଇପାରିବନା । କ୍ଳାନ୍ତ ନିଦ୍ରାର ଶ୍ରାନ୍ତ କୋଳରେ କ୍ଷୁଧାର ଜ୍ୱାଳାରେ ଏମାନଙ୍କ ଭୁଜବନ୍ଧନ ଭିତରେ ଦିନ ଦିନ ଧରି ଯେତେବେଳେ ମୋର ଶିଶୁ ଦେହକୁ ମୁଁ ଲୋଟାଇ ଦେଇଛି ସେତେବେଳେ ସେହି ବଟବୃକ୍ଷର ପଲ୍ଲବ ଆବେଦନ; ଧୀରଶାନ୍ତ ସମୀରଣ, ବିହଙ୍ଗମକୁଳର କୂଜନ, ସବୁ ମୋ ଉପରେ ଅଜାଡ଼ି ହୋଇପଡ଼ି ମୋତେ ଦେଇଛନ୍ତି ସେମାନଙ୍କର ଉତ୍ତରାଧିକାର, ନିର୍ଜନତା ଦେଇଛି ନିତ୍ତନିଷ୍ଠା । ଆଜି ବି ସେମାନେ ଅଛନ୍ତି । କିନ୍ତୁ ସେମାନେ ମୋର ଇତିହାସ । ସେମାନଙ୍କର ହୃତ୍ପିଣ୍ଡ ନାହିଁ । ଥିଲେ ସେମାନେ କୁହନ୍ତେ ହଁ, ଗୋଟିଏ ଅନାଥ ବାଳକ ଏକଦା ଥିଲା ଆମର ଆଶ୍ରିତ, ତାକୁ ଆମେ ଜାଣୁ, ଚିହ୍ନୁ । ବଡ଼ ଦୁଃଖୀ ଜୀବନ ତାର । ମୃତ୍ୟୁ ତାକୁ ଅନାଥ କରିଥିଲା, ଆତ୍ମୀୟମାନେ ଚାହିଁଥିଲେ ତାର ଅସ୍ତିତ୍ୱକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବା ପାଇଁ, ତାର ଶିଶୁ ପେଟଟିରେ ଜଳୁଥିଲା କ୍ଷୁଧାର ଦାବାନଳ । ସେ ଛୁଟି ଆସିଥିଲା ଆମମାନଙ୍କ ପାଖକୁ । ଆମେ ତାର କାନ୍ଦଣା ଶୁଣିଛୁ । ମୁଁ ଆକାଶ—ତାକୁ ଦେଇଛି ଅଶେଷ ଆଶୀର୍ବାଦ; ମୁଁ ବଟବୃକ୍ଷ—ତାକୁ ଦେଇଛି ମୋ ପଲ୍ଲବର ଛାୟା, ମୁଁ ଧୂଳି—ତାର ହୋଇଛି ଖେଳଣା, ମୁଁ ପାଚିଲା ବରଫଳ—ତାର ହୋଇଛି କ୍ଷୁଧାର ଅନ୍ନ; ମୁଁ ସମୀରଣ—ତାକୁ ଦେଇଛି ଶୀତଳ ସାନ୍ତ୍ୱନା, ମୁଁ ବିହଂଗମ—ତାର ଦୁଃଖରେ ଏଠୁ ବହୁବାର ଉଡ଼ିଯାଇଛି ଦୂରକୁ, ମୁଁ 'ଭୂରୁଭୂରିଆ କୁଦ' ଭୀଷଣତମ ଗ୍ରାମ୍ୟ ଶ୍ମଶାନ, ଯଦିଚ ତାକୁ ଅନାଥ କରିଛି ତଥାପି ତାକୁ ଦେଇଛି ଅଭୟ, ଶୋକରୁ ଶ୍ଳୋକ, ବେଦନାର ବୀଣାଝଂକାରରୁ ଯାହା ଆଦି ବିପ୍ଳବର ମହାକାବ୍ୟ ରୂପ

ପ୍ରତିଶ୍ରୁତ । ମୁଁ କୃପଜଳ—ତାର ଶ୍ରେଷ୍ଠ ହାତ ପାପୁଲିର ଅଞ୍ଜୁଳାରେ ମୁଁ ପରିପୂର୍ଣ୍ଣ ହୋଇ ତାର ପ୍ରାଣଧାରକ ତନ୍ତ୍ରୀକୁ ଦେଇଛି ଜୀବନୀଶକ୍ତି ।

ମୋର ବାଲ୍ୟକାଳର ସେହି ଶାନ୍ତ ପୃଥିବୀର ଭାଷା, ତାର ଦାନ, ତାର ନୀରବ ପ୍ରେରଣା ସବୁ ହିଁ, ମୋର ସ୍ମୃତିର ଅମୂଲ୍ୟ ସମ୍ପଦ ହୋଇ ରହିଛି । ସେମାନଙ୍କୁ ମୋର ଅଶେଷ ପ୍ରଣତି ଓ ଅର୍ଘ୍ୟ ।

ସନ୍ଧ୍ୟା ପରିକ୍ରୁ ଘରେ ଯାଇ ପାଦଦେବା ଆଗରୁ ମୋର ମନେହୁଏ ମୁଁ ଏକ ଅବାଞ୍ଛିତ ବାଳକ । ମୋର ଏଠି କେହିନାହାଁନ୍ତି, ଖୁଡ଼ୀ ଏବଂ ତା ଝିଅମାନଙ୍କ ଦୟାରେ ମୁଁ କେବଳ ଆସିଛି ଏ ଘରକୁ ରାତିରେ ମୁଣ୍ଡ ଗୁଞ୍ଜିବା ପାଇଁ । ସାରା ଦିନର ମାନସିକ ଅବସାଦ, ଭ୍ରମଣ, ପାଚିଲା ବରଫଳ ଭକ୍ଷଣ ପରେ ଘର ଇଚ୍ଛାହୁଏ ମୁଠାଏ ଭାତ ଖାଇବା ପାଇଁ । ମୁହଁ ଖୋଲି ମାଗେ । ମିଳେ ଖୁଡ଼ୀର ବଡ଼ ଝିଅ 'ହୀରାମଣି'ର ଖାଇ ଛାଡ଼ି ଯାଇଥିବା ଅଇଁଠା କଂସାରେ ଅଧିକା ମୁଠାଏ ପଖାଳ । ଆଃ । ଅଇଁଠା ହେଲେ ବି କି ଚମତ୍କାର ସ୍ୱାଦ ତାର । କ୍ଷୁଧା ! ଏ ସ୍ୱାଦ କେବଳ ତୁମରି ମହିମା । ସେତିକି ଗଳାଧଃ କରି ହାତ ଧୋଇ ନିଜର କ୍ଳାନ୍ତ ଅବଶ ଦେହକୁ ଲେଟାଇ ଦିଏ ଘରର ବାରଣ୍ଡାରେ । ରାତିର ଚକଟା ଅନ୍ଧକାର ଭିତରେ ଗାଢ଼ ତନ୍ଦ୍ରା । ସେହି ତନ୍ଦ୍ରା ଭିତରେ ମା', ବାପାଙ୍କୁ ସ୍ୱପ୍ନ ଦେଖେଁ । ନିଦ ଭାଙ୍ଗି ଯାଏ, ଉଠି ବସି ମନକୁ ମନ କାନ୍ଦେ । ସେତେବେଳେ ସାରା ଗାଁ ଥାଏ ନିଦ୍ରାରେ ଆଚ୍ଛନ୍ନ । ରାତିର ଘନ ଅନ୍ଧାର ଭିତରେ ଆମ ବାଡ଼ପଟର ନଡ଼ିଆ ଗଛମାନେ ଆହୁରି ବଡ଼ ଦେଖାଯାନ୍ତି । କେନ୍ଦାଳ ହାଟ ପଡ଼ିଆରୁ ବିଲୁଆମାନଙ୍କର ଚିତ୍କାର ମନଟାକୁ ଆହୁରି ନିଃସଙ୍ଗ କରିଦିଏ । ପୁଣି ମୁଁ ଶୋଇପଡ଼େ । ଖୁଡ଼ୀ ତେଣେ ତାର ପିଲାମାନଙ୍କୁ ନେଇ ଘର ଭିତରୁ କବାଟ ଦେଇ ଶୋଇଥାଏ । ସକାଳୁ ମୋର ନିଦ ଭାଙ୍ଗିବାକୁ ଡେରି ହେଲେ ଗାଳି ଏବଂ ଝାଡୁ ପାହାରରେ ନିଦ ଭାଙ୍ଗେ । ନିଦ ଭାଙ୍ଗିବା ସାଥେ ସାଥେ କେନ୍ଦାଳ ହାଟ ପଡ଼ିଆ ମୋତେ ଜଣାଏ ତାର ନୀରବ ଆମନ୍ତ୍ରଣ । ସେଠି ହିଦବସର ପ୍ରେତ ପରି ମୁଁ ଘୂରି ବୁଲୁଥିବା ବେଳେ ଗାଁର କେତେକ ହୃଦୟୀ ଲୋକେ ମୋତେ ଦେଖନ୍ତି ଆଉ ଖୁଡ଼ୀକୁ ଆସି କହି ତାକୁ ଭର୍ତ୍ସନା କରନ୍ତି ।

କିନ୍ତୁ ସେଥିରେ ମୋର ଦଶା ଅଧିକ ଖରାପ ହୁଏ । ସନ୍ଧ୍ୟାରେ ଦେଖିଲୁ ଫେରି ଯେଉଁ ଅଇଁଠା ତୋରାଣୀ ଟୋପାଏ ମୁଁ ପାଇବା କଥା, ତାହା ମିଳେନାହିଁ ।

ଦିନେ ଏସବୁ ଘଟଣା ବଡ଼ଭାଇ ଯମୁନାଲାଲଙ୍କୁ ଚିଠି ଦ୍ୱାରା ଜଣାଇ ଥିଲି । ସେ ସେତେବେଳେ ଲାହୋରରେ । ମନେପଡ଼ୁଛି ଉତ୍ତର ପାଇଥିଲି, "ଯେଉଁଠି ସେଇମିତି ମାଡ଼ମକଚ ହେଇ ରହ । ତତେ ସେଇଆ ଦରକାର ।"

ଦିନ ପୁଣି ବିତି ଗଲା ।

ଆସିଲା ଅକ୍ଟୋବର ମାସ । ଦଶହରା ଦିନ ମହିଆଁ ଦାଦା ଟେଦୂର୍ଣ୍ଣି ସିଂ ଆଖି ବୁଜିଲେ । ତାଙ୍କ ଶବସଂସ୍କାର ପୁରୋଭାଗରେ ଥିଲି ମୁଁ । ଏଥର ଆଉ କାହାର ପାଳି ? ମୃତ୍ୟୁ କିନ୍ତୁ ନୀରବ ।

## ॥ ନିଜ ବାସ ହେଲା ଚିର ପରବାସ ॥

ତା ହେଲେ ପଥ କାହିଁ ?

ଯିବ କୁଆଡ଼େ ?

ଜୀବନର କଳି ବିକଶିତ ହେଲା ବେଳେ ନିଷ୍ଠୁର ନିୟତି ତା ଉପରେ ଯେଉଁ ପାଷାଣର ସ୍ତୂପ, ଯେଉଁ ଗୁରୁଭାର ଲଦି ଦେଇଛି ତାକୁ ପିଙ୍ଗି ଦେଇ ବାଟ ଚାଲିବା ଯେ ସମ୍ଭବ, ତାହା ମୋର କଳ୍ପନାତୀତ ଥିଲା ସେତେବେଳେ । ଥିବାଟା ସ୍ୱାଭାବିକ । ତହିଁରୁ ଜନ୍ମଲାଭ କରିଥିବା ହୀନମନ୍ୟତା ଯେତିକି ମୋତେ ମ୍ରିୟମାଣ କରୁଥିଲା, ତାର ଏକ ବିପରୀତ ମନ ମଧ୍ୟ ତା'ର ଅନ୍ତରାଳରେ ଲୁଚି ରହି ଶକ୍ତି ସଂଗ୍ରହ କରୁଥିଲା । ସେ ମନ ସେତେବେଳେ ମୋର ଥିଲା ଅଜଣା । ଚିହ୍ନିବା, ତାକୁ ଜାଣିବା ପରି ଜ୍ଞାନ ନଥିବାରୁ ମୋତେ ଚାରିଧାର ସେତେବେଳେ ଦିଶିଥିଲା ଘନଘୋର ଅନ୍ଧକାର । ଜଗତ

ସୁଦୂର ଅତୀତର ଗୃହତ୍ୟାଗ ବେଳର ସେହି ବେଦନାଦାୟକ ସ୍ମୃତି ଆଜି ମୋର ସ୍ମୃତିକୋଷକୁ ଯେତେବେଳେ କୋଟି କୋଟି ହାତୁଡ଼ିରେ ଆଘାତ ହାଣୁଛି ସେତେବେଳେ ମୁଁ ଭାବିପାରୁ ନାହିଁ ମୁଁ ସେଦିନର ସେହି ଅସହାୟ, ଅଲୋଡ଼ା, ଅନାଥ ଶିଶୁ-ପଥିକ ନା ଅନ୍ୟ କିଏ ?

ମନେପଡ଼ୁଛି…

ସେଦିନକୁ ମିଶାଇ ଦୁଇଦିନ ହେବ ମୋ ଆହାର ଆଉ ନିଦ୍ରାର କୌଣସି ଠିକ୍ ଠିକଣା ନଥିଲା । ଖୁଡ଼ିର ବୈରତାପୂର୍ଣ୍ଣ ବ୍ୟବହାର; ତାର ଝିଅମାନଙ୍କର ନାଲିଆଖି ଓ ନିର୍ଯ୍ୟାତନା ସେତେବେଳେ ମୋର ଅସହାୟ ଅନାଥ ଜୀବନ ଉପରେ ଏକ ଅନ୍ୟ ଧରଣର ଶୋକର ଆବିର୍ଭାବ ଘଟାଇଥିଲା । ସେତେବେଳେ ମୋ ଘରପାଖର ପ୍ରତିଟି ମୁହଁର ପେଶୀ, ପ୍ରତିଟି ଆଖିର ଚାହାଣି, ପ୍ରତିଟି କଣ୍ଠର ଭାଷା—ଆଜି ବୁଝୁଛି, ଯେତେବେଳେ ମୋତେ ଏକ ଅବାଧ ଭାଷାରେ ସତେ ଯେପରି କହୁଥିଲା … ଆରେ ଶିଶୁ ଭୋଳାନାଥ, ତୋର ଏଠି କେହି ନାହାନ୍ତି । ଆମେ ତୋର ଅସ୍ତିତ୍ୱକୁ ପେଷି ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବାକୁ ସର୍ବଦା ସଚେଷ୍ଟ । ତୁ ଏଠୁ ପଳା । ଏଠୁ ନଗଲେ ତୋର ଅସ୍ତିତ୍ୱ ଧ୍ୱଂସ ପାଇବ । ଯଦିଚ ତୋର ଜନ୍ମଭୂମି ଏଇ ଗାଁ, ଏଇ ମାଟି; ତଥାପି ତତେ ଯିବାକୁ ହେବ ଆଗରୁ ଆଗକୁ —ଏକ କଲ୍ଲୋଳିତ ପାରାବାର ଉଦ୍ଦେଶ୍ୟରେ । ଏ କଥନ, ଏ ସାଙ୍କେତିକ ଭାଷା ଯଦି ମୁଁ ସେଦିନ ବୁଝି ପାରିଥାନ୍ତି, ତାହେଲେ ମୋ ଅସ୍ତିତ୍ୱ-କାତର ମଣିଷ, ସେମାନଙ୍କ ରକ୍ତମାଂସର ଗୁଡ଼ିକୁ ହସି ହସି କହିଥାନ୍ତି : ସାଧୁ ସାଧୁ ! ମୋର ପ୍ରକୃତ ବନ୍ଧୁ ତୁମେମାନେ । ତୁମମାନଙ୍କର ଅଭିଶାପ, କୁବଚନ, ଅସୂୟା ମୋତେ ଶାଣିତ ଇସ୍ପାତର ଦୀକ୍ଷା ଦେବ ଭବିଷ୍ୟତରେ, ତୁମମାନଙ୍କର ସମସ୍ତ ସୃଷ୍ଟ ମଳିନତା ମଧ୍ୟରୁ ଝଂକୃତ, ପଲ୍ଲବିତ ହୋଇ ଉଠିବ ମୋର ପ୍ରତିଭାର ମହାଦ୍ରୁମ ଏକ ସବୁଜ ପଲ୍ଲବ ଆବେଦନ ନେଇ । ତେଣୁ ତୁମେମାନେ ମୋର ଆଗାମୀର ମହାର୍ଘ ରସଦ । କିନ୍ତୁ ମୋ ଭିତରର କ୍ଷୁଦ୍ର ଅନ୍ତର୍ମଣିଷଟିର ସେତେବେଳେ ସେ ବୋଧଶକ୍ତି ନଥିବାରୁ ସେ ଆର୍ତ୍ତନାଦ କରି ଉଠିଥିଲା— ଅଭିମାନ, କ୍ରୁଦ୍ଧଶୋକକୁ ପାଥେୟ କରି ଏକ ତୀବ୍ର ଅନଳକଣା ସଦୃଶ ତାକୁ ଛିଟିକି ପଡ଼ିବାକୁ ହୋଇଥିଲା ପୃଥିବୀର ପଥପ୍ରାନ୍ତରେ ।

୧୯୪୭ ମସିହାର ଶେଷଭାଗ ।
କେତେ ତାରିଖ—ମନେ ନାହିଁ ।

ମନଟା ଥିଲା ଅତିଶୟ ଭାରାକ୍ରାନ୍ତ—ଦେହଟା ମଧ୍ୟ ଥିଲା ଅବସନ୍ନ । ଦିନମଣି କେତେବେଳେ ଅସ୍ତାଚଳ କୋଳକୁ ଚାଲିଗଲେଣି । ଦିନସାରା ଦମକା ପବନ ବହୁଥିଲା ଅବିଶ୍ରାନ୍ତ । ବର୍ଷା ମଧ୍ୟ ହେଉଥିଲା ଗୁଡ଼ାକୁ ଗୁଡ଼ା । ତା'ର ଭିତରେ ନଇଁ ଆସିଲା ସନ୍ଧ୍ୟା । ନବାପାଟଣା ଗାଁର ଓଦା ନଡ଼ା ଛୁଆଣି ଚାଳଘର ମଥାନମାନଙ୍କରୁ ଉଠୁଥିଲା ସେଇମିଇ ଆରମ୍ଭର ଧୂଆଁ । ଚୂପ ଚାପ୍ ହୋଇ ବସିଥିଲି ଘରଟିର ବାରଣ୍ଡାରେ । ମୋ ସାଥିରେ କାହାର କଥାବାର୍ତ୍ତା ନଥିଲା—ନା ଖୁଡ଼ୀର ନା ତାର ଝିଅମାନଙ୍କର । ବିଗତ ଦୁଇଦିନ ଭିତରେ ଥରେ ମାତ୍ର ମୁହଁ ଖୋଲି ଖୁଡ଼ୀକୁ ଖାଇବାକୁ ମାଗିଥିଲି । କିନ୍ତୁ ମିଳିନାହିଁ । ସେଇ ଦୁଇଦିନ ଭିତରେ 'କୁଣିଆ ଦାଦା' (ଂ କୃଷ୍ଣଚନ୍ଦ୍ର ନାୟକ)ଙ୍କ ସ୍ତ୍ରୀ 'କଂଙ୍କାଖୁଡ଼ୀ' ମୋତେ ଘରକୁ ଡାକି ଲୁଚାଇ କରି ଥରେ କିଛି ଚୁଡ଼ାଭଜା, ଆଉଥରେ ଦି'ପଟ ଚକୁଳି ପିଠା ଖାଇବାକୁ ଦେଇଥିଲେ । କ୍ଷୁଧା, ଅନାହାର ଯୋଗୁଁ ମୋର ବାଳକ-ଚାରଗ୍ରହୀର ବୈକଲ୍ୟ ସେଦିନ ଆଜୀବନ କାଂଗ୍ରେସ ସେବୁ ମହୀୟସୀ ମହିଳା ଜଣକୁ ବ୍ୟଥିତ କରିଥିଲା । ମନେପଡ଼ୁଛି ଘରର ବାଡ଼ିପଟ ବାଟେ ମୋତେ ସନ୍ତର୍ପଣରେ ଡାକିନେଇ ନିଜ ପିନ୍ଧାଲୁଗା କାନିରେ ମୋ ମୁହଁକୁ ଆଦରରେ ପୋଛିଦେଇ, ମୋତେ ପାଖରେ ବସାଇ, ଦିପଟ ଚକୁଳି ପିଠା ଉପରେ ପାଣିଆ ଗୁଡ଼ଟିକେ ଦେଇ ସେ ଯେତେବେଳେ ମୋତେ ସ୍ନେହକ ଖୁଆଉ ଥିଲେ, ମୁଁ ସେତେବେଳେ ମା କଥା ମନେ ପକାଇ କାନ୍ଦି ଉଠିଥିଲି । 'କଂଙ୍କାଖୁଡ଼ୀ' ଆଜି ଦୁନିଆରେ ନାହାନ୍ତି । ସେ ଥିଲେ ତାଙ୍କର ସ୍ୱାମୀର ପ୍ରଥମା ସ୍ତ୍ରୀ । ତାଙ୍କ ପରେ ଅନ୍ୟ ଦୁଇଜଣ ମହିଳା କୁଣିଆ ଦାଦାଙ୍କ ଜୀବନରେ ଆସି-ଥିଲେ । ବହୁ ଦୁର୍ଦ୍ଦିନରେ, ବହୁ ଶୋକାବହ ଦିନଗୁଡ଼ିକରେ କୁଣିଆ ଦାଦା ଓ ତାଙ୍କ ପ୍ରଥମା ସ୍ତ୍ରୀ ସେମାନଙ୍କ ଶକ୍ତି ମୁତାବକ ମୋ ପ୍ରତି ସଦୟ ହୋଇଛନ୍ତି, ମୋତେ ସାହାଯ୍ୟ କରିଛନ୍ତି । ଏ ବିରାଟ ଦୁନିଆରେ ଅତ୍ୟନ୍ତ ଅଲୋଡ଼ା ସେମାନ-ଙ୍କର ସ୍ମୃତି । ହୋଇଲେବି, ମୋ ଜୀବନ ଇତିହାସରେ ସେମାନେ କେବଳ ସ୍ମରଣୀୟ ନୁହନ୍ତି—ସ୍ପର୍ଶକାତର ଚରିତ୍ର ଦୁଇଟି । ହଁ, ସେଦିନ 'କଂଙ୍କାଖୁଡ଼ୀ'ଙ୍କ ପ୍ରଦତ୍ତ ଦି'ପଟ ଚକୁଳି ଏବଂ ତା ଉପରେ ସେହି ପାଣିଆ ଗୁଡ଼ ଟିକକ ଆଜି ବି ମୋ ଆଖି ଆଗରେ ନାଚି ଉଠୁଛି । ମୋ ଦେହର ଶିରା-ପ୍ରଶିରାରେ ପ୍ରବହମାନ

ରକ୍ତସ୍ରୋତର କେଉଁ ଅତଳ ତଳେ ସେହି ଚକୁଳି ପିଠା ଦି' ପଟର ଖାଦ୍ୟ ଗୁଣ ତଳେଇ ଯାଇଛି ବହୁକାଳରୁ । କିନ୍ତୁ ସାମାନ୍ୟ ହେଲେ ବି ଅସାମାନ୍ୟ ତାର ମୂଲ୍ୟବୋଧ ମୋ ରକ୍ତସ୍ରୋତ ପାଖରେ, ମୋର ସ୍ମୃତିରେ, ମୋର ଦୀର୍ଘ ଯାତ୍ରାପଥରେ । ଅସାମାନ୍ୟ ଇନ୍ଧନ ତାହା ମୋ ଜୀବନ ବର୍ତ୍ତିକାର । ସେଉଁ ସ୍ନେହ ନରମ ବାଁ ହାତ ପାପୁଲିରେ ସେଦିନ ଚକୁଳି ଦି'ପଟକୁ ଧରି ମା କଥା ମନେ ପକେଇ ମୁଁ କାନ୍ଦି ଉଠିଥିଲି ସେ ହାତ ପାପୁଲି ଆଜି ବି ଅଛି, କିନ୍ତୁ ତା ନରମ ହୋଇନାହିଁ, ହୋଇ ଉଠିଛି କଠୋର । ସେଥିରେ ଥିବା ଅଙ୍ଗୁଳିଗୁଡ଼ିକ ଆଜି ଧାରଣ କରିଛି ଲେଖନୀ ରୂପକ ଏକ ବେସାଲସୀ କରବାଳ "ସୃଷ୍ଟି ସୁଖର ଉଲ୍ଲାସ"ରେ—ସେହି ହାତ ଜୀବନ ତମାମ୍ ମୁକାବିଲା କରି ଆସୁଛି ବହୁ ଅସୁନ୍ଦର, ବହୁ ଅ-ଶିବ, ବହୁ ଜାନ୍ତବ ପାଶବିକତାର । ମୋର ପ୍ରାଣଧାରକ ତନ୍ତ୍ରୀ ତଳେ, ମୋର ରକ୍ତଝରା ସଂଗ୍ରାମର ଅଭ୍ୟନ୍ତରରେ ସେହି ଚକୁଳି ପିଠା ଦି'ପଟର ଦାନ ଅତୁଳନୀୟ । ସେହି କଥା ଆଜି ମନେ ପକାଇ ତା'ର ସ୍ମୃତିକୁ କାଗଜ କଲମରେ ରୂପାୟିତ କଲି ବେଳେ 'କଂକାଖୁଣ୍ଡୀ', ତମ କଥା ମନେପଡ଼ୁଛି ବାରମ୍ବାର, ମନେପଡ଼ୁଛି ତମରି ସେହି ଅବଗୁଣ୍ଠନ ତଳର ଗୋରା ତକ ତକ ହଳଦଳିଆ ସ୍ନେହିଆ ମୁହଁଟି । ତମେ ଆଜି ନାହିଁ, କିନ୍ତୁ ତମର ସ୍ମୃତି ଅଛି, ଆଉ ମୁଁ ସେହି ସ୍ମୃତିର ଧାରକ ଏବଂ ବାହକ । ମୋର ଶ୍ରଦ୍ଧା, ପ୍ରଣାମ, ଭକ୍ତି ଗ୍ରହଣ କର, ଆଶୀର୍ବାଦ କର ମୋତେ । ତମରି ପରି ବହୁ ନରନାରୀ ମାତୃବର୍ଗର ମୋର ଚଲାବାଟରେ ମୋତେ ଯୋଗାଇ ଦେଇଛନ୍ତି ଅକ୍ଷୟ ଜୀବନୀ-ଶକ୍ତି । ସେମାନଙ୍କ ମେଳରେ ମୁଁ ଚିରକାଳ ଦେଖିଛି ତମକୁ···ତମରି ସ୍ୱାମୀଙ୍କୁ । ମୋର ଏଇ ଦେଖିବା ଭିତରେ ଅଛି କୃତଜ୍ଞତା ଭରା ଆଖିର ଅଲୋକ, ମୋର ପ୍ରାଣର ପ୍ରଚଣ୍ଡ ଆବେଗ । ଏହାହିଁ ତମ ପ୍ରତି ମୋର ସାମାନ୍ୟ ପ୍ରତିଦାନ ।

ବେଶ୍ ଅନ୍ଧକାର ହୋଇଯାଇଥିଲା ।

ଝଡ଼ ବର୍ଷା ପାଗରେ ସାରା ନବାପାଟଣା ଗାଁ ନୀରବ ନିଶ୍ଚୁନ୍ । କ୍ରମବର୍ଦ୍ଧମାନ ପବନ ଓ ବର୍ଷାର ବେଗ ମଧ୍ୟରେ ଭିକାରିଆ ଗଉଡ଼ର ଗୁହାଳରୁ

ଭସିଆସୁଥିଲା ଧେନୁବସ୍ତାର ଆକୁଳ ହମ୍ବାରଡ଼ି । ମୁଁ ବସିଥିଲି ଘର ବାରଣ୍ଡାରେ ଚୁପ୍ ଚାପ ହୋଇ । ଘର ଭିତରେ ଆଳୁଅ ଜାଳି ଖଣ୍ଡୀ ତାର ପିଲାମାନଙ୍କୁ କ'ଣ ଖାଇବାକୁ ଦେବା ପରି ମନେ ହେଉଥିଲା । ହଠାତ୍ ଆରମ୍ଭ ହେଲା ମୂଷଳଧାରାର ବର୍ଷା ସହିତ ପବନ ଆଉ ତୋଫାନ । ଭିତରୁ କବାଟ ପୁରାପୁରି ବନ୍ଦ ହେଲା । ଉଠି ଠିଆ ହେଲି । ଅଣ୍ଟା ଠାରୁ ପାଦ ପର୍ଯ୍ୟନ୍ତ ଓଦା । ପବନର ଅଘାତ ଏବଂ ବର୍ଷା ପାଣିର ଛାଟ—ଯାଏ କୁଆଡେ ? ଖଣ୍ଡୀକୁ ଯଦି ଡାକେ ତାହେଲେ ଯନ୍ତ୍ରଣାର ଶେଷ ହେବ ନାହିଁ । ଦୁଇଦିନର ଅର୍ଦ୍ଧାହାରୀ—ଅନାହାରୀ ଦେହ, ମନରେ କ୍ରୋଧ, ଘୃଣା, ଅଭିମାନ, ଶୋକ ସହିତ ଆଖିରେ ଆସିଏ ଲୁହ । ଦେହରେ ଖଦଡ଼ର ଫୁଲ ହାଫ୍‌ପ୍ୟାଣ୍ଟ, ମଇଳା ରଫୁକରା ଗେରୁଆ ରଙ୍ଗର ଖଦଡ଼ ହାଫ୍ ସାର୍ଟ । ଖଣ୍ଡେ ଗାମୁଛା ଓ ଅଧିକା ପ୍ୟାଣ୍ଟ ସାର୍ଟ ଦି'ଖଣ୍ଡ ଗୁଳରେ ଗୁଞ୍ଜି ରଖିଥାଏ । ବର୍ଷାର ଯଦିଓ ବିରାମ ନଥିଲା, ତଥାପି ବହୁ ସମୟ ପରେ ଅଶାନ୍ତ ପ୍ରକୃତି ଟିକେ ଶାନ୍ତ ହେଲା । ମୁଁ ସେହି ବାରଣ୍ଡାର ଟିକେ ଶୁଖିଲା ଜାଗାକୁ ଘୁଞ୍ଚିଯାଇ କାନ୍ଥକୁ ଆଉଜି ବସିଲି । ବସୁ ବସୁ ଆଖିପଲ୍ଲବକୁ ଆଚ୍ଛନ୍ନ କରି ଘୋଟିଆସିଲା ନିଦ—ସେଇଠି ତଳେ ଜାକିଜୁକି ହୋଇ କେତେବେଳେ ଶୋଇପଡ଼ିଛି, ସେକଥା ମୋ ନିଜକୁ ଜଣା ନଥିଲା ।

ରାତି ସେତେବେଳକୁ ବେଶ୍ ଗାଢ଼ ।

ବାହାରେ ବିରାମହୀନ ବର୍ଷା । ମଝିରେ ମଝିରେ ବର୍ଷା ଛାଟ ମୁଁ ଅନୁଭବ କରୁଥିଲେ ମଧ୍ୟ ସେଇମିତି ଶୋଇ ରହିଥିଲି ।

ହଠାତ୍ ଏକ ଦୁଃସ୍ୱପ୍ନ ।

ତାହା ଆଜି ପର୍ଯ୍ୟନ୍ତ ମୋର ନିଖୁଣ ଭାବରେ ମନେଅଛି । ତାହାହେଲା—କେତେଟା ବଳଶାଳୀ ପାର୍ଦ୍ଧ ହାତ ମୋତେ ଟାଣି ଟାଣି ନେଇ ଯାଉଛି । ତାପରେ ଗୋଟାଏ ନିର୍ଜନ ପ୍ରାନ୍ତରରେ ମୁଁ ଯାଇ ଠିଆ ହେଲି । ହାତଗୁଡ଼ାକୁ ଆଉ ଦେଖିଲି ନାହିଁ । ମାଟି ତଳୁ ଶୁଣାଗଲା ଏକ ପ୍ରଚଣ୍ଡ ଗର୍ଜନ । ତାପରେ ଆକାଶଟା ଧୀରେ ଧୀରେ ନଇଁ ଆସିଲା, ପୁଣି ଉପରକୁ ଉଠିଗଲା । ଶୁଣାଗଲା ଏକ ଅଟ୍ଟହାସ । ଅଟ୍ଟହାସଟି ମିଳେଇ ଯିବା ପରେ ପୁଣି ସେହି

ବଳଶାଳୀ ହାତ କେଉଁଟା ମୋ ଅଣ୍ଟକୁ ଚାରପାଖରୁ ଆଗେଇ ଆସିଲା । ମୋତେ ଶୂନ୍ୟ ଶୂନ୍ୟ ଟେକି ଫିଙ୍ଗି ଦେଲା ବହୁ ଦୂରକୁ । ମୁଁ ମାଟିରେ ପଡ଼ିବା ଆଗରୁ ଚିତ୍କାର କରି ଉଠିଲି । ଏତିକି ବେଳେ ନିଦଟା ଚାଉଁକିନା ଭାଙ୍ଗିଗଲା । ଉଠି ବସିପଡ଼ିଲି ।

କିନ୍ତୁ ସେ କ'ଣ ?

ସାମ୍ନାରେ କାହାକୁ ଦେଖୁଛି ?

କିଏ ଠିଆ ହୋଇଛି ସେଠି ? ମୁଁ ତ ଆଉ ସ୍ୱପ୍ନ ଦେଖୁ ନାହିଁ ! ନିଦରୁ ଉଠି ବସିଛି ସେ !! ବାଳ ମୁକୁଳା···ମୁହଁ ଦେଖାଯାଉ ନଥିଲେ ମଧ୍ୟ ନିଃସନ୍ଦେହରେ ଏକ ନାରୀମୂର୍ତ୍ତି—ତାହାର ହାତଟି ଉର୍ଦ୍ଧ୍ୱକୁ ଉତ୍ତୋଳିତ । ସେ ହାତରେ ଗୋଟାଏ କ'ଣ ଧରିଛି ! ରକ୍ତ ହିମ ହୋଇ ଆସୁଥିଲା- ଏତିକିବେଳେ ମାରିଲା ଝଲକାଏ ବିଜୁଳି । କ୍ଷଣିକାର ସେହି କ୍ଷଣିକ ଆଲୋକ ଭିତରେ ଦେଖିଲି, ମୂର୍ତ୍ତିଟି ଅନ୍ୟ କେହି ନୁହେ ସାନଦାଦାଙ୍କ ବିଧବା ସ୍ତ୍ରୀ —ଖୁଡ଼ୀ । ହଠାତ୍ ହାତରୁ ତାର ଧରିଥିବା ପଦାର୍ଥଟି ଖସିପଡ଼ିଲା । ଚିତ୍କାର କରି ଉଠିଲି, "କିଏ, ଖୁଡ଼ୀ ? କ'ଣ ମୋତେ ମାରିବାକୁ ଆସିଚୁ ?···" ମୋ କଥା ନସରୁଣୁ ସେ ଝଡ଼ବେଗରେ ଘର ଭିତରେ ପଶି ଭିତରୁ ବନ୍ଦ କଲା କବାଟ ।

ଦେହରେ ଲାଗି ରହିଥାଏ କମ୍ପନ । ଅତି ଅଳ୍ପ ସମୟ ଭିତରେ ଏକ ଲୋମହର୍ଷକ ନାଟକର ଅଭିନୟ ଘଟିଗଲା । ପୁଣି ମାରିଲା ଝଲକାଏ ବିଜୁଳି । ତାପରେ ପ୍ରଚଣ୍ଡ ଏକ ମେଘ ଗର୍ଜନ ସହିତ ପୁଣି ଆରମ୍ଭ ହେଲା ମୂଷଳ ଧାରାର ବର୍ଷା ଆଉ ପବନ । ନଡ଼ିଆ ଗଛଗୁଡ଼ାକ ଝଡ଼ର ମଦ ପିଇ ମାତାଲଙ୍କ ପରି ରାତିର ଅନ୍ଧକାର ଭିତରେ ଦୋହଲୁଥିଲେ । ନାଃ ଆଉ ମୁହୂର୍ତ୍ତେ ଏଠି ରହିବା ସମ୍ଭବ ନୁହେଁ । ଯିବାକୁହିଁ ହେବ । ମନରେ ଏକ ଅଜଣା ଦାମ୍ଭିକତାର ଉଦୟ ସାଥେ ସାଥେ ଅପସରି ଗଲା ଭୟ । ତା ବଦଳରେ ଆସିଲା ବାଟ ଚାଲିବାର, ଘର ଛାଡ଼ିବାର ଏକ ପ୍ରଚଣ୍ଡ ପ୍ରବଣତା ।

ନଇଁପଡ଼ି ଆକାଶକୁ ଚାହିଁଲି ।

ବର୍ଷାର ବେଗ ଅବ୍ୟାହତ ଥିଲେ ବି ପବନର ବେଗ କମିଛି । ନିଷ୍ପତ୍ତି ନେବାକୁ ହେବ ଅତି ଶୀଘ୍ର । ଆଉ ଏହି ନିଷ୍ପତ୍ତି ନିୟନ୍ତ୍ରଣ କରିବ

ମୋର ସମଗ୍ର ଜୀବନକୁ । ତାହାହିଁ ହୋଇଥିଲା । ମୁଁ ଯେପରି ଠିକ୍ ସେହି ବିଦ୍ରୋହୀ କବି ନଜରୁଲଙ୍କ "ପଥଚାରୀ" କବିତାର ବର୍ଣ୍ଣିତ ମଣିଷ, ଦୁରନ୍ତ ଏକ ବାଟୋଇ—ଯିଏକି ଚାଲୁ ଚାଲୁ କହୁଥିଲା—

"କେଜାଣି କୁଆଡେ ଚାଲିଅଛି ଭାଇ ମୁସାଫିର୍, ପଥଚାରୀ
ଦି'ଧାରେ ଦି'କୂଳ ଦୁଃଖ ସୁଖର ମଧ୍ୟେ ମୁ ସ୍ରୋତ ବାରି ।

× × ×

ନିଜ ବାସ ହେଲା ଶିର ପରବାସ ଜନ୍ମ ଲଗନ ପରେ
ବାହାରିଲି ପଥେ ଗିରି ପର୍ବତେ—ଫେରି ନାହିଁ ଆଉ ଘରେ ।
ଜନନୀରେ ଭୁଲି ଯେପଥେ ପଳାଏ ମୃଗଶିଶୁ ବେଣୁ ଶୁଣି
ଯେ ପଥେ ପଳାଏ ଶଶକର ଦଳ ଶୁଣି ଝରଣାର ଧ୍ୱନି,
ପକ୍ଷୀ ଉଡ଼ିଯାଏ ଛାଡ଼ି ତା କୁଲାୟ ସୀମାହୀନ ନଭ ପଥେ
ସମୁଦ୍ର ଛାଡ଼ି ମେଘ ଶିଶୁ ଦଳ ପଳାଏ ଆକାଶ ରଥେ ।
ସେହି ପଥ ଧରି ପଳାଇଲି ମୁହିଁ ! ସେହି ଠାରୁ ଅଛି ଚାଲି
ଗିରି ଓ ଦରିଆ ମଞ୍ଜୀର ହୁଆ ସରଳ ଜଟିଳ ଗଳି ।
କେଉଁ ଗ୍ରହ ଠାରୁ ଛାଡ଼ି
ଉଲ୍କା ସମାନ ଛୁଟିଅଛି ଦେଇ ସୌରଲୋକର ସିଡ଼ି ।

× × ×

ଜାଣି ନାହିଁ ହାୟ, ଚାଲିଅଛି କାହିଁ ଅଜଣା-ଆକର୍ଷଣେ
ଚାଲିଅଛି ଯେତେ ଅଥଳ ତ ସେତେ ବଢେ ଜଳ କ୍ଷଣେ କ୍ଷଣେ ।
ସମ୍ମୁଖ ଟାଣେ ଛୁଟେ ଅବିରାମ, ନାହିଁ ନାହିଁ ଅବସର
ଛୁଇଁଲେ ହରାଇ—ଏଇ ଅଛି ନାହିଁ—ଏଇ ଘର ଏଇ ପର ।"

ପଥଚାରୀ ଜୀବନର ଏଇ ଅଦ୍ଭୁତ ସାଦୃଶ୍ୟ ଓ ମେଳ ମୋତେ ଆଜି ବିସ୍ମିତ ଏବଂ ହତବାକ୍ କରେ । ସେତେବେଳେ ଦୂରାଗତ କାହାର ବଂଶୀଧ୍ୱନି ମୋ ପରି ଏକ ଅନାଥ ମୃଗଶିଶୁକୁ ଉଥପୁ କରିଥିଲା—ଆଜି ବି କରୁଛି ; କିନ୍ତୁ ପଥର ଶେଷ ନାହିଁ । ବନ ପରେ ବନ, ପ୍ରାନ୍ତର ପରେ ପ୍ରାନ୍ତର ଅତିକ୍ରମ କରି ମୁଁ ଚାଲିଛି । ମୋ ଗିରି-ଜନନୀର ଅସ୍ତିତ୍ୱ ଆଜି ନାହିଁ—ମୁଁ ତାର ପଳାତକା—ସ୍ରୋତଶିଶୁ ; ଯିଏକି ଜନ୍ମର ପର ମୁହୂର୍ତ୍ତରୁ

ଜନନୀର କୋଳ ଛାଡ଼ି ଛୁଟିବାକୁ ଆରମ୍ଭ କରିଥିଲି ବହୁ ଉତ୍‌ଥାନ-ପତନ, ବହୁ ଶିଳା-ବନ୍ଧୁର ପଥରେ । ମୁଁ ସେଇ କ୍ଷୁଦ୍ର ଗିରିନଦୀଟି—କ୍ରମେ କେଉଁଠି ମୋର ବିଶାଳ କାୟା ମେଲିଛି ତ, କେଉଁଠି ହୋଇ ଯାଇଛି ସଙ୍କୁଚିତ, କେଉଁଠି ମୋର ବୁକୁ ଗଭୀରରୁ ଗଭୀରତର ହୋଇଛି ତ କେଉଁଠି ନଇଁଲା ହୋଇ ଉଠିଛି ମୋର ହୃଦୟ । ତଥାପି ମୁଁ ବହିଚାଲିଛି କୁଳୁ କୁଳୁ ସ୍ୱନରେ । କେଉଁଠି ମୋର ତଟଦେଶରେ ହୁଳହୁଳି ଦେଉଛନ୍ତି ମରାଳ-ଗମନା, ପୁରବାଳାକୁଳ, ତାହା ମୋତେ ଶୁଭୁନାହିଁ—ତାକୁ ଶୁଣିବା ପାଇଁ ଅବସର ନାହିଁ ମୋର । କେତେବେଳେ ଅବା ମଣିମାଣିକ୍ୟପୂର୍ଣ୍ଣ ପୋତକୁ ସୌଦାଗର ମୋର ଗଭୀର ଜଳରେ ଭସାଇ ଦେଉଛି ! କିନ୍ତୁ ମୋର ଅଥଳ ଜଳସ୍ରୋତ ତାକୁ ଭ୍ରୂକ୍ଷେପ ନକରି ଅପସରି ଯାଉଛି ଦୂରରୁ ଦୂରକୁ । ମୁଁ ନଦୀ···ମୋ କୂଳକୁ ଗୋଟିଏ ନିଶୀଥରେ ଆସିଛି ଅଭିଗମ୍ୟ । ମୁଁ ତାକୁ କହୁଛି ; ବଧୂ ଗୋ ! ଚାଲ ମୋର କଳ କଳ ଛଳ ଛଳ ସ୍ରୋତ ସାଥିରେ ପାଦ ମିଳାଇ । ତୁ ମୋର ପରିଚିତା, ତୋତେ ମୁଁ ଜାଣେ । ଆ, କୂଳ ତ୍ୟାଗୀ ଚାଲିଆ ଗୋ ଅଭିସାରିକା ମରଣ-ଅକୂଳରେ ଭାସି ଭାସି ।

ରାତି ଅଧ ।

ବାତ୍ୟା ବିକ୍ଷୁବ୍ଧ ଅନ୍ଧକାର···ବିଜୁଳିର ଘନ ଘନ ଝଲକ ଭିତରେ ଶେଷଥର ପାଇଁ ଦେଖିନେଲି ପ୍ରିୟ ହସକାନ୍ଦ ଭରା ଜନ୍ମମାଟିକୁ । —ବିଦାୟ ।

ନିଗ୍ରୋଦେହୀ ମେଘର ବୁକୁରେ ବିଦ୍ୟୁନ୍ନଟୀର କ୍ଷଣିକ ଝଲକମାନ ଥିଲା ସେଦିନ ମୋର ପଥପ୍ରଦର୍ଶକ । ସେହି ଶକ୍ତିଶାଳୀ ଝଲକ ମୋତେ ଚିରକାଳ ଲାଗି ବାଟ କଢ଼ାଇ ଆଣି ଛାଡ଼ି ଦେଇଥିଲା ଅର୍ଥସର୍ବସ୍ୱ, ଧନତାନ୍ତ୍ରିକ ବିଶ୍ୱବ୍ୟବସ୍ଥାର ବୁକୁରେ ଏକ ଅଗ୍ନିମନ୍ତ୍ର ଦେଇ ।

ଏକ ଚୁଢ଼ଶୋକ ସନ୍ତପ୍ତ ମନରେ ଗଭୀର ଦୃଢ଼ତା ନେଇ ପାଦ ବଢ଼ାଇଲି । ଆକାଶରୁ ଅବିଶ୍ରାନ୍ତ ଝରୁଥିଲା ବର୍ଷାର ଅସରନ୍ତି ଧାର ।

ଗୃହହୀନ ମାନବ ଜଣକ୍ - ବର୍ଷାର ମେଘମଲ୍ଲାର ଧ୍ୱନି ବଂଶୀତ ଗାଁ ଦାଣ୍ଡରେ ପ୍ରବଳ ଜଳସ୍ରୋତ—ତା'ର ଭିତରେ ମୁଁ ଚାଲିଛି ଆଗକୁ ଏକ ସାଗର ସନ୍ଧାନୀ ନଦୀର ଆତ୍ମା ନେଇ। ଆଗରେ ସେହି ଭୟଙ୍କର ବେଣୁବନର ସ୍ତୂପ। ଡାହାଣ ହାତ 'ପାଟରା ପୋଖରୀ'। ବାଁ ପାଖରେ କିଆବଣ ଏବଂ ଧାନବିଲ। 'ମାଙ୍କଡ଼ ଗାଡ଼ିଆ' ବନ୍ଧରେ ଆସି ମୋର ପାଦ ପଡ଼ିଲା। 'ମାଙ୍କଡ଼ ଗାଡ଼ିଆ' ଗୋହିରିରେ ପ୍ରବଳ ବନ୍ୟା। ଦିନବେଳେ ଲୋକେ ଏ ବାଟରେ ଯିବାକୁ ଡରନ୍ତି। କାରଣ, ଏଠି ଚମ୍ପା ଏବଂ ଗୋଖର ସାପମାନଙ୍କର ଅବାଧ ବିଚରଣ। ଦୁଇ ପାଖରେ କିଆ ଗଛର ଜଙ୍ଗଲ। ସହଜେ ତ ବର୍ଷା ଆଉ ତୋଫାନର ରାତି। ବିଜୁଳିର ଝଲକରେ ସ୍ପଷ୍ଟ ଆଖିରେ ପଡ଼ୁଥାଏ, ସାପମାନେ ପାଣିରେ ସିଆର କାଟି ଏ ପାଖରୁ ସେପାଖ ଯିବା ଆସିବା କରୁଛନ୍ତି। ଦଣ୍ଡେ ଠିଆ ହେଲି। ମୁଣ୍ଡ ବାଳରୁ ଧାର ଧାର ବର୍ଷାପାଣି ସମଗ୍ର ଦେହ ଦେଇ ମାଟିରେ ମିଶୁଥିଲା। ବର୍ଷାର ବେଗ ପୁଣି ବଢ଼ିଲାଣି। ଆଗରେ ସୀମାହୀନ ଅନନ୍ତ ସମ୍ମୁଖର ଆହ୍ୱାନ, ପଛରେ ଆକର୍ଷଣହୀନ, ନିଃସ୍ୱ ଏବଂ ସକରୁଣ ବ୍ୟଥାଭରା ଅଶ୍ରୁଳ ଅତୀତ। ନାଃ : ଯିବାକୁ ହେବ। ବର୍ଷାର ଧାରା ଶରବତ୍ ବିଦ୍ଧ କରୁଥାଏ ଲୋମକୂପକୁ—ପ୍ରବଳ ଶୀତରେ ଥରି ଉଠୁଥାଏ ହାଡ଼ପଞ୍ଜରା। ପଶିଲି ଗୋହିରୀ ପାଣିରେ। ଅଣ୍ଟାଏ ପାଣିରେ ପଶି ଗୋଟାଏ ଫର୍ଲଂ ଏହି ଗୋହିରୀକୁ ଅତିକ୍ରମ କରି ବର୍ଷପାଣି ପୂର୍ଣ୍ଣ ଧାନକ୍ଷେତ ଉପରେ ଯେତେବେଳେ ଆସି ପାଦ ଦିଏ, ମନରେ ଟିକେ ଭୀତି ସଞ୍ଚାର ହେଲା। କାରଣ, ଆଗରେ ଗାଁର ଭୀତିପ୍ରଦ ମଶାଣି ସେହି 'ଭୁରୁଭୁରିଆ କୁଦ'। ପିଲାଦିନେ ଏଇ ମଶାଣି ବାଟେ ବାପାଙ୍କ ସାଙ୍ଗରେ ଗଲାବେଳେ ବହୁବାର ତାଙ୍କୁ ଭୟରେ ମୁଁ ଜାବୁଡ଼ି ଧରୁଥିଲି। ବାପା ମୋତେ ଅଭୟ ଦେଇ ଭୂତ-ପ୍ରେତ ସବୁ ମିଛ କଥା ବୋଲି ବାରମ୍ବାର ବୁଝାଉଥିଲେ। ନିର୍ଜନ ରାତିରେ ମା' କୋଳରେ ଶୋଇଥିଲା ବେଳେ ଯେତେବେଳେ ଅଣ୍ଡିରା ବିଲୁଆ ବୋବାଏ, ସେତେବେଳେ ମା' ମୋ ମୁଣ୍ଡକୁ ତା ନିଜ ହାତରେ ଚକ୍କି ଟେକି ଧରେ, ଆଉ କହେ, ଭୁରୁଭୁରିଆ କୁଦରେ ସିଏ ବୋବାଉଛି—ତୁ ଶୋଇପଡ଼। ମୁଁ ପରା ତୋ ପାଖରେ ଶୋଇଛି।" ସେଇ 'ଭୁରୁଭୁରିଆ କୁଦ' ହେଇ ଆଗରେ। ଦିନବେଳେ ଦେଖିଥିବା ତାର ଛବିଟି ଯେତେବେଳେ ମନରେ ପ୍ରତିଭାତ ହେଲା : ମଣିଷ ମୁଣ୍ଡ, ହାଡ଼, ଶବାଧାରର ଅଂଶବିଶେଷ, ହାଣ୍ଡି, ମାଠିଆ, ମୁର୍ଦାର-ପୋଡ଼ା ଅଙ୍ଗାର ସବୁ ବିପର୍ଯ୍ୟସ୍ତ ହୋଇ ପଡ଼ିଛି। ଦୂରରେ ମଶାଣି ମଝିରେ

ସେଇ ଝଙ୍କାଳିଆ ବରଗଛ—ସେ ଗଛ ପାଖକୁ ପ୍ରାୟ କେହି ଏକୁଟିଆ ଯାଆନ୍ତି ନାହିଁ । ସେଠି ବ୍ରହ୍ମରାକ୍ଷସ ରହେ ବୋଲି କଥିତ ଅଛି ।

ପୁଣି ଦାଣ୍ଡେ ଠିଆହେଲି ।

ଫେରିବାର ପଥ ରୁଦ୍ଧ । ଅନ୍ଧକାର ଆଉ ବିଜୁଳି ଓ ମେଘ ଗର୍ଜନ । ଧାନକ୍ଷେତ ଭିତରେ ମଣିଷ-ଚଲନ୍ତି-ବାଟ ପର୍ଯ୍ୟନ୍ତ ବର୍ଷା ପାଣିରେ ବୁଡ଼ିଯାଇଛି, କିନ୍ତୁ ସ୍ପଷ୍ଟ ବାରି ହୋଇ ପଡ଼ୁଛି ତାର ସୁସ୍ପଷ୍ଟ ରେଖା । ବିଜୁଳିର ଅବିରାମ ଝଲକରେ ସେହି ପଥରେଖାକୁ ବାରି ପାଣି ଭିତରେ ସଶବ୍ଦରେ ପୁଣି ଚାଲିଲି । ମଶାଣି "କୁରୁଡ଼ୁଙ୍ଗିଆ କୁଦ"ର ସୀମାନାକୁ ସ୍ପର୍ଶ କଲି ପାଦ । ସେବାଟେ ଦେଇ 'ଛନ୍ଦଚିଅର' ମଠର ଷ୍ଟାଣ୍ଡ ଯାଏଁ ଯିବା ବ୍ୟତୀତ ଅନ୍ୟ କୌଣସି ଗତ୍ୟନ୍ତର ନାହିଁ ।

ପୁଣି ଝଲକାଏ ବିଜୁଳି ମାରିଲା ।

ଗୋଟାଏ ପ୍ରଳୟଙ୍କରୀ ବଜ୍ର ଧ୍ୱନିରେ ଆର୍ତ୍ତନାଦ କରି ଉଠିଲା ଗିରିଦରୀ । ତା'ର ସେହି କ୍ଷଣିକ ଆଲୋକରେ ମୋର ଦୃଷ୍ଟିଗୋଚର ହେଲା ସେହି ଥୁଣ୍ଟା ଖଜୁରୀ ଗଛଟି । ଯାହାର ପାଦ ଦେଶରେ ମୋ ମାଆର ସେହି ସ୍ମରଣୀୟ ଚିତାଚୁଲ୍ଲୀ । ତାହା ମୋର ଆଖିରେ ପଡ଼ିବା ମାତ୍ରେ ଡର, ଭୟ ସବୁକିଛି କୁଆଡେ଼ ଉଭେଇଗଲା– ତା ବଦଳରେ ଆସିଲା ସାହସ, ଦମ୍ଭିକତା ତଥା ଅଗ୍ରଗତିର ଉଦ୍ଦାମ ପ୍ରେରଣା । ଚିତା ଚୁଲ୍ଲୀଟି ଭିତରେ ବର୍ଷା ପାଣିର ଘାଉଁଶୀ ପୋଡ଼ା କୁଟାକାଠି ଓ ଅଙ୍ଗାର ଖଣ୍ଡମାନ ଭାସୁଥିଲେ ଚକ୍ରାକାରରେ । ଧୀର ମନ୍ଥର ଗତିରେ ଗଲି···ହଠାତ୍ ବସି ପଡ଼ିଲି ଜଳପୂର୍ଣ୍ଣ ଚିତାଚୁଲ୍ଲୀଟି ଭିତରେ । ପାଣି ମୋର ପେଟକୁ ଛୁଇଁଲା । ଅଜାଣତରେ ପାଟିରୁ ବାହାରି ଆସିଲା, "ମା" ! ସତରେ ସେଦିନ ମୋର ସେହି ମୁହୂର୍ତ୍ତରେ ମନେ ହୋଇ-ଥିଲା ପୁଣି ଥରେ ମା'ର ଦେଖା ମୁଁ ପାଇଛି, ତା କୋଳରେ ବସିଛି—ମୋର ଆଉ କାହାକୁ ଭୟ ନାହିଁ । କେତେ ସମୟ ଯେଉଁମିତି ଚିତାଚୁଲ୍ଲୀଟି ଭିତରେ ବସି ରହିଲି ଜାଣେନା । ଫଗ କଆବୁଦା ଭିତରୁ ଗୋଟାଏ ବଲୁଆ ଓଦା ସର ସର ହୋଇ ମୋ ପାଖ ଦେଇ ଚାଲିଗଲା ବେଳେ ଫେରିଆସିଲି ବାସ୍ତବର ବାସ୍ତବତା ଭିତରକୁ । ଦୀର୍ଘଶ୍ୱାସ ନିର୍ଗତ କରି ଉଠି ଠିଆହେଲି, ଚିତା ଚୁଲ୍ଲୀ ଭିତରୁ ଉଠିଆସି ପୁଣି ଥରେ ସେହି ନୀରବ ମାତୃକୋଳକୁ ଦେଖିନେଲି

ମନପ୍ରାଣ ଭରି । ଉପରେ, ତଳେ, ଚତୁର୍ଦ୍ଦିଗରେ ପୂର୍ଣ୍ଣଯୌବନା ମେଘ-ମେଦୁରିତ ନିଶୀଥ ରାତି । ସେଦିନର ସେହି ମେଘ ମେଦୁରିତ ନିଶୀଥ, ବଜ୍ରବିଦ୍ୟୁତ୍ ମୁଖରିତ ଗୃହତ୍ୟାଗ ଅବସରଟି ମୋ ଶିଶୁ ମନରେ ଯେଉଁ ଅସହାୟତା ତଥା କାରୁଣ୍ୟ ସୃଷ୍ଟି କରି ମୋତେ ଆଣି ଫିଙ୍ଗି ଦେଇଥିଲା ଏକ ରକ୍ତକ୍ଷୟୀ ସଂଗ୍ରାମର ମଇଦାନରେ ତାକୁ ଏବେ ଭାଷାରେ ବର୍ଣ୍ଣନା କରିବାର ଶକ୍ତି ମୋ କଲମର ନାହିଁ । ଯାହାକୁ ବର୍ଣ୍ଣନା କରିବାକୁ କେବଳ ସମର୍ଥ ମହାନ୍ ଲେଖକ ଭିକ୍ଟର ହ୍ୟୁଗୋଙ୍କ ଶକ୍ତିଶାଳୀ ଲେଖଣୀ ।

ଆଗରେ କେନ୍ଦାଲ ହାଟ ପଡ଼ିଆ ।

ମୋର ଅନାଥ ଅନାଦୃତ ବାଲ୍ୟ ଜୀବନର ହସକାନ୍ଦର ସାକ୍ଷୀ ଏଇ ନିର୍ଜନ ବଟବୃକ୍ଷ ଘେରା ପ୍ରାନ୍ତରଟି । ହାୟ, ଏଇ ପ୍ରାନ୍ତର କୋଳରେ ଏକାକୀ ଅର୍ଦ୍ଧାହାର, ଅନାହାରରେ ନୀରବରେ କେତେ ଉଦାସିଆ ଦ୍ୱିପ୍ରହର କଟାଇ ଦେଇଛି—ଭୋକ ହେଲେ ଗଛରୁ ବାଦୁଡ଼ିଙ୍କ ଆଘାତରେ ତଳେ ଝଡ଼ିପଡ଼ିଥିବା ପାଚିଲା ଲାଲ ବରଫଳ ଗୋଟାଇ ଖାଇଛି, ବଟବୃକ୍ଷର ଘନ ଛାୟା ତଳେ ଧୂଳି-ଶଯ୍ୟାରେ ଲୋଟାଇ ଦେଇଛି ଅବଶ ଦେହକୁ । କେହି ଡାକିବାକୁ ନାହିଁ, କେହି ଖୋଜିବାକୁ ନାହିଁ—ଏଇ ପ୍ରାନ୍ତରଟି ଅନ୍ୟ ଏକ ଜନନୀ ପରି ମୋତେ ନେଇଛି ତାର କୋଳକୁ । ଆଜି ଗମ୍ଭୀର ନିଶୀଥରେ ତା'ରି ଗ୍ରୀବା ଉପର ଦେଇ ମୋର ଯାତ୍ରା । ବର୍ଷା କଣ ଥମିବ ନାହିଁ ? ମେଘକନ୍ୟାର ସଜଳ ନୟନରେ ଏତେ ଅଶ୍ରୁ ଜମାଟ ଥିଲା !

କେନ୍ଦାଲ ହାଟ ମଝି ଝଙ୍କା ବରଗଛ ତଳେ ଯେତେବେଳେ ଯାଇ ପହଞ୍ଚିଲି, ସେତେବେଳେ ଜୋରରେ ଗୋଟାଏ ଘଡ଼ଘଡ଼ି ମାରିଲା । ବଟବୃକ୍ଷ ଶାଖାରୁ ଭାସି ଆସିଲା କେତୋଟି ପକ୍ଷୀ ଶାବକଙ୍କର ଭୟାର୍ତ୍ତ କାତର ଧ୍ୱନି ! ଏମାନେ ହେଲେ ମୁଗ୍ଧ ଶାବକ । ବର୍ଷା ତୋଫାନ ରାତିରେ ଯଦିଓ ଏମାନେ କାତର ହୋଇ ପଡ଼ିଛନ୍ତି, ତଥାପି ମୋ ପରି ଅସହାୟ ଏବଂ ନିଃସଙ୍ଗ ନୁହନ୍ତି ଏମାନେ । ଏମାନଙ୍କର ସହାୟ ଅର୍ଥାତ୍ ମାଉ ଅଛି, ଅଛି ଜନନୀର ପକ୍ଷ ଉତ୍ତାପ । ଏ ଦୁର୍ଦ୍ଦିନର ରାତି ହୁଏତ ଅପସରି ଯିବ ସୂର୍ଯ୍ୟୋଦୟ ପରେ—ସକାଳର କଅଁଳ ସୁନେଲି ନରମ ଖରାରେ ଏମାନେ ମାଆ ପାଖରେ ବସି ଝାଡ଼ଝୁଡ଼ ହେବେ । ମୋ ଜୀବନରେ କାଲି··· ?

ଏଥି ଭିତରେ କେତେବେଳେ ଆସି ତ୍ତନତ୍ତଅରର ଅନୁ ସାହୁ ଗୁଡ଼ିଆ ଦୋକାନ ପାଖରେ ପହଞ୍ଚି ଗଲଣି—ଜଣା ନଥିଲା। ସଚେତନ ହୋଇ ଚାହିଁଲି ଆଗକୁ। ବିଦ୍ୟୁତାଲୋକରେ ଦେଖିନେଲି କଟକ ଅଭିମୁଖେ ଲମ୍ବି ଯାଇଥିବା ବର୍ଷାଧୂଆ ଟେରୁଆ ସଡ଼କକୁ। କାଳ ବିଳମ୍ବ ନକରି ଚାଲିବାକୁ ଆରମ୍ଭ କରିବା ଆଗରୁ ପଛକୁ ବୁଲି ଶେଷଥର ପାଇଁ ଦେଖିନେଲି ଅନୁ ସାହୁ ଦୋକାନକୁ। ପ୍ରାୟ ମୁଁ ମଝିରେ ମଝିରେ ଏଠିକି ଆସେ। ନାଲି ଧୂଳି ଉଡ଼ାଇ ମଟର ଯେତେବେଳେ ଜଗତ୍‌ସିଂହପୁରରୁ ଆସି ଏଠି ଅଟକେ ଓ ପୁଣି ଛୁଟେ, ସେ ଦୃଶ୍ୟ ଦେଖିବାକୁ ମୋତେ ଖୁବ୍ ଭଲ ଲାଗେ। ଆଜିଠାରୁ ତ ଆଉ ଏଠି ପାଦ ପଡ଼ିବ ନାହିଁ। ପାଦ ଫଟା ଠଣ୍ଡାରେ ପ୍ରାଣହୀନ ପରି ଲାଗୁଥାଏ। ସାରାରାତିର ବର୍ଷା ତୋଫାନ ଯାଇଛି ଦେହ ଉପରେ। ଯା ହଉ, ଯିବାକୁ ତ ହେବ। ବର୍ଷାର ଆଉ ସେ ପୂର୍ବର ପ୍ରଚଣ୍ଡତା ନାହିଁ। ତଥାପି ବିଜୁଳି ମାରୁଛି ଅବିରାମ। ରାତି କେତେବେଳେ ପାହିବ, ବର୍ଷା କେତେବେଳେ ଛାଡ଼ିବ, ସୂର୍ଯ୍ୟାଲୋକରେ କେତେବେଳେ ଆଲୋକିତ ହେବ ଚାରିଦିଗ—ତାହାହିଁ ଥିଲା ମୋର ଭାବନା।

## "ମୋତେହିଁ ତୁମ୍ଭ ରକ୍ଷା କର"

କଇଜଙ୍ଗା ବଜାରରେ ପାଦଦେଲା ବେଳକୁ ପୂର୍ବ ଆକାଶରେ ସିନ୍ଦୁର ଫାଟୁଛି। ଏଥି ଭିତରେ ପଛରେ ରହି ଗଲଣି ତରକୁନ୍ଦ, ଜଇଶେଳ, ବସନ୍ତପୁର, ଅଟେକଆ, ବରଡ଼, ମଧ୍ୟ ଶାସନ। ଆକାଶଟା ଦେଖା ଯାଉଛି ମେଘମୁକ୍ତ। ଭୋରର ହେମାଳ ପବନକୁ ଦେହ ଆଉ ମୋଟେ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲା। ପାଦ ମଧ୍ୟ ଆଉ ପାଦେ ଆଗକୁ ଯିବାକୁ ନାରାଜ। ଦେହଟା ବର୍ଷା ପବନ ମାଡ଼ରେ ଶୋଥା ହୋଇଯାଇଛି—ବରଡ଼ା ପତର ପରି ଥରୁଛି ସର୍ବାଙ୍ଗ। ଖାଦ୍ୟ ନପାଇ କ୍ଷୁଧା ପେଟ ଭିତରକୁ ମନ୍ଥୁଛି—ଶପୁଡ଼ି ଦେଉଛି ଅନ୍ତନାଡ଼ିକୁ। ମର୍ମାନ୍ତକ ସେ ଅବସ୍ଥା।

ବେଶ୍ ସକାଳ ହୋଇଯାଇଛି। ଲୋକ ଚଳାଚଳ ଆରମ୍ଭ ହୋଇ ଗଲଣି। କଇଜଂଗା ବଜାରର ଗୋଟିଏ ଦୋକାନ ଆଗରେ ପଡ଼ିଥିବା କାଠ ବେଞ୍ଚ ଉପରେ ଯାଇ ବସିଲି। ଇଚ୍ଛା ହେଉଥାଏ ସେଇଠି ଲୋଟାଇ ଦେହ

ନିଜକୁ । କମ୍ପମାନ ଦେହକୁ କ୍ଳାନ୍ତ ଅବଶ ପାଦ ଦୁଇଟି ଆଉ ବହନ କରି ନେବାକୁ ନାରାଜ । ଦେଖିଲି, ୮।୧୦ ହାତ ଦୂରରେ ଗୋଟାଏ ଖାଲି ଶଗଡ଼ ଠିଆ ହୋଇଛି—କଟକ ଆଡ଼କୁ ମୁହଁ କରି । ବଳଦ ଦୁଇଟି ନିଜ ପୁଚ୍ଛ ସାହାଯ୍ୟରେ ଦେହରୁ ମାଛି ହୁରୁଡ଼ାଇବା ସାଥେ ସାଥେ ପାଗୁଳି କରୁଥିଲେ । ଏତିକିବେଳେ ଶଗଡ଼ର ମାଲିକ ବା ଚାଳକ ଆସି ଗୋଟାଏ କୁଦାରେ ଶଗଡ଼ ଉପରକୁ ଉଠିଲା । ଶଗଡ଼ର ଚକ ହ'ଟା ବୁଲିବା ଆଗରୁ ମୁଁ ବସିବା ଥାନରୁ ଉଠିଯାଇ ଶଗଡ଼ ପାଖରେ ପହଞ୍ଚିଲି । ଶଗଡ଼ ମାଲିକ ଠାରୁ ବୁଝିଲି, ଶଗଡ଼ ଯିବ କଟକ ମାଲ୍ ଗୋଦାମକୁ । ମୁଁ ସେତେବେଳେ ଅତ୍ୟନ୍ତ କ୍ଷୀଣ-କଣ୍ଠରେ ତଥା ଆକୁତି ସୂଚକ ସ୍ୱରରେ ମୋତେ ଦୟାକରି କଟକ ଯାଏଁ ନେଇଯିବା ପାଇଁ ଚାଳକକୁ ଅନୁରୋଧ କଲି, ସେ କିଛି ନକହି ମୋର ଆପାଦମସ୍ତକ ଥରେ ଭଲ କରି ଦେଖିନେଲା । ତା'ପରେ କହିଲା, "ଆ, ଚାଲିଆ !" କିନ୍ତୁ ଶଗଡ଼ ଉପରକୁ ଯିବି କିମିତି ? ଉଠିବାର ଶକ୍ତି ନାହିଁ । ଅନାବିଳ ଅନୁନୟରେ କହିଲି, "ମତେ ଟିକେ ସାହାଯ୍ୟ କରନ୍ତୁ ନାହିଁ । ମୁଁ ଉଠିପାରିବି ନାହିଁ ।" ଶଗଡ଼ ଚାଳକ ତା'ର ଦୁଇ ହାତକୁ ଉପରୁ ମୋ ଉଦ୍ଦେଶ୍ୟରେ ବଢ଼ାଇ ଦେଲା, ଆଉ ମୁଁ ମୋ ଦୁଇ ହାତକୁ ତା ଆଡ଼କୁ ଉଚ୍ଚ କରି ବଢ଼ାଇ ଦେଲି ମାତ୍ରେ ସେ ମୋତେ ଟେକି ନେଇଗଲା ଶଗଡ଼ ଉପରକୁ । ସେଦିନର ସେହି ଦୟା ଓ ସହାନୁଭୂତି ପ୍ରବଣ ଶଗଡ଼ ଚାଳକ ଜଣକ ନିଜେ ସଚେତନ ନଥାଇ ପାରେ, କିନ୍ତୁ ତଦ୍ୱାରା ସେ ଚିରକାଳ ପାଇଁ ମୋ ମନରେ ଏକ ଛାପ ରଖି ଦେଇଛି । ମୁଁ ଥିଲି ସେଦିନ ଗୋଟିଏ ଲକ୍ଷ୍ୟହୀନ ପଥିକ, ଅନାଥ, କ୍ଳାନ୍ତ, କ୍ଷୁଧାର୍ତ୍ତ ଏବଂ ପତିତ ନିଃସ୍ୱାର୍ଥ ଅନାବିଳ ବାଳକ । ଶଗଡ଼ ଚାଳକ ରୂପରେ ସେହି ପତିତପାବନ ମଣିଷଟି ମୋତେ ସେଦିନ ଅର୍ଦ୍ଧପଥରୁ ହାତ ବଢ଼ାଇ ଟେକି ନେଇଥିଲା । ପଶୁ ଆଉ ମଣିଷ ଭିତରେ ଏଇଟି ତ ପାର୍ଥକ୍ୟ ! ଏଇତ ମାନବିକ ବୁନିୟାଦ ବା ମାନବିକ ମୂଲ୍ୟବୋଧ । ପ୍ରକୃତ ଅର୍ଥରେ ମଣିଷ ନିଃସଙ୍ଗ, ଉପୁଙ୍କର ଏକାକୀ !

ଶଗଡ଼ ଚକ ଦୁଇଟାର ସମ୍ମୁଖ ଆବର୍ତ୍ତ ଆରମ୍ଭ ହେଲା ।

ମୋଚନ କଲି ଏକ ସ୍ୱସ୍ତିର ଦୀର୍ଘଶ୍ୱାସ । କିନ୍ତୁ ଦେହଟା ଭୀଷଣ ଭାବରେ ଥରୁଛି । ଓଦା ପ୍ୟାଣ୍ଟ୍ ସାର୍ଟ ଦେହରେ ଥାଇ ଅଧା ଶୁଖି ଆସିଲାଣି ।

ମୋର ଏଇ କମ୍ପମାନ ଅବସ୍ଥାକୁ ଦେଖି ଶଗଡ଼ ଗୁଳକ ମୋର ଇତିବୃତ୍ତ ଜାଣିବାକୁ ଚେଷ୍ଟା କଲା । ଅତି ସଂକ୍ଷେପରେ ତାକୁ ସବୁ କଥା କହିଲି । ସେ ଯେତେବେଳେ ଅନୁଭବ କଲା, ମୁଁ ଭୋକରେ ଥରୁଛି, ସେତେବେଳେ ସେ କନ୍ଦରପୁର ବଜାରରେ ଶଗଡ଼ ଦ' କର ଗୁରପଇସାର ମୁଢ଼ି ଆଉ ଦୁଇପଇସାର ଚୂଡ଼ାଭଜା ମୋ ପାଇଁ କଣି ତା'କୁ ନିଜ ଗାମୁଛାରେ ବାନ୍ଧି ପାଣିରେ ଭିଜାଇ ମୋତେ କହିଲା ଖାଇବା ପାଇଁ ।

ମୁଁ ଆଉ ବସି ପାରିଲି ନାହିଁ ।

ଚଳନ୍ତା ଶଗଡ଼ ଉପରେ ଶୋଇଗଲି ବଡ଼ାଏ ଛଣ ମୁଣ୍ଡ ତଳେ ଦେଇ । ଶୋଇଛି ତ ଶୋଇଛି···ଚେତା ନାହିଁ । ସୂର୍ଯ୍ୟ ଆସି ମୁଣ୍ଡ ଉପରେ ହେଲେଣି । ଶଗଡ଼ ମାଲିକର ଡାକରେ ଉଠି ବସିଲି । ଆକାଶ ଅତ୍ୟନ୍ତ ମେଘମୁକ୍ତ । ଗତ ରାତିରେ ପ୍ରଳୟଙ୍କରୀ ବର୍ଷା ତୋଫାନ ଯେ ହୋଇ-ଥିଲା ଏକଥା ବିଶ୍ୱାସ କରି ହେବ ନାହିଁ । ସେ ଯା ହଉ, ଦେଖିଲି, ନୂଆବଜାରରେ ଆସି ପହଞ୍ଚି ଯାଇଛି ଶଗଡ଼ । ଶଗଡ଼ ମାଲିକ ମୋତେ କହିଲା, ଏଠି ସେ ସନ୍ଧ୍ୟାଯାଏଁ ରହିବ । ଏତିକି କହି ସେ ମୋତେ ପଚାରିଲା, ମୁଁ କୋଉଠିକି ଯିବି, ରାତିରେ କୋଉଠି ରହିବି । କି ଉତ୍ତର ମୁଁ ଦେଇଥାନ୍ତି ତାକୁ ? କହିଲି, "ଜଣେ ଚିହ୍ନା ଲୋକ ଅଛି, ତା'ର ପାଖକୁ ଯାଉଛି ।" ଏତିକି କହି ଓହ୍ଲାଇଲି ଶଗଡ଼ରୁ । ଆଗକୁ ପାଦ ବଢ଼ାଇବା ପୂର୍ବରୁ ଶଗଡ଼ ମାଲିକ କେଜାଣି କାହିଁକି ଦୟାପରବଶ ହୋଇ ପଛରୁ ମୋତେ ଡାକି ଗୋଟିଏ ଦୋଅଣି ବଢ଼ାଇ ଦେଲା ମୋ ହାତକୁ । ମୁଁ ତାକୁ, ତାର ମୁହଁକୁ ଅବାକ୍ ବିସ୍ମୟରେ ଦେଖୁଥିବା ବେଳେ ସେ କହିଲା, "ନେ ଯା, ତୋ ଦେହ ଭଲ ନାହିଁ । ରଖିଥା ପାଖରେ ।" ସେତେବେଳେ ଦୋଅଣିଟାଏ ବା ଦୁଇଅଣା ପଇସାର ମୂଲ୍ୟ ଆଜି ତୁଳନାରେ ଯଥେଷ୍ଟ ବେଶି । ତା ଛଡ଼ା ଦ' ଅଣା ପଇସା ମୋ ହାତରେ ପଡ଼ିବା ମାନେ ସ୍ୱର୍ଗର ଚାନ୍ଦ ଆସି ମୋତେ ଧରା ଦେବା ସହିତ ସମାନ । ବାପା'ଙ୍କ ଦୋକାନ୍ ଘରର ପଇସା ମୁଁ କେବେ ନିଜ ହାତରେ ଧରି ନାହିଁ । ଶଗଡ଼ ଗୁଳକକୁ ମନେ ମନେ କୃତଜ୍ଞତା ଜଣାଇଲି । ଗୁଳକ ଆଗକୁ । ପାଦ କିନ୍ତୁ ମୋତେ ଆଗକୁ ଯିବା ପାଇଁ ନାରାଜ । ସମ୍ପୂର୍ଣ୍ଣ ଅବସନ୍ନ । ଯା ହଉନା କାହିଁକି, ମୋର ଶୋଇବା ନିହାତି

ଦରକାର—ଯେ କୌଣସି ସ୍ଥାନ ହେଲେ ବି ଚଳିବ । ମୁଣ୍ଡଟା ଘାରି ଘାରି ଲାଗୁଛି, ବାନ୍ତି ମଧ୍ୟ ମାଡ଼ୁଛି, ଶୀତ ବି ହେଉଛି । ବୋଧହୁଏ ଜ୍ୱରର ଆଗମନ ! ତଥାପି କଷ୍ଟେ ମଷ୍ଟେ ଆଗେଇଲି । ବର୍ତ୍ତମାନ ଯେଉଁଠି ଓ. ଏମ୍. ପି. ଛକ, ସେଠି ସେତେବେଳେ ଏତେ ଜନଗହଳି ନଥିଲା । ୨।୩ଟି ଖଣ୍ଡ ଦୋକାନ ଥିଲା । ଗୋଟିଏ ଦୋକାନର ଏକ ପ୍ରଶସ୍ତ ବାରଣ୍ଡା—ଦୋକାନଟି ସେଦିନ କାହିଁକି କେଜାଣି ବନ୍ଦ ଥିଲା । ସାମ୍ନାକୁ କାହାର ଆସିଥିବା ନୁଆଁଣିଆ ଚାଳ ତଳେ ଗୋଟାଏ କାଠବେଞ୍ଚ୍, ତା'ତଳେ ଶୋଇଥିଲେ ଦି'ଟା ବୁଲା କୁକୁର । ସେମାନଙ୍କ ଦେହରେ ଗୋଟିଏ ହେଲେବି ଲୋମ ନଥିଲା । ସେଇ ବେଞ୍ଚ୍ ଆଡ଼କୁ ଆଗେଇ ଗଲା ବେଳେ କୁକୁର ଦି'ଟା ମୋ ମୁହଁକୁ ସତର୍କ ତଥା ସନ୍ଦେହୀ ଦୃଷ୍ଟିରେ ଅନାଇଲେ । ମୁଁ ନିର୍ବିକାର ଭାବରେ ବେଞ୍ଚ୍ ଉପରକୁ ଉଠି ତା ଉପରେ ପଡ଼ିଥିବା ଧୂଳି ଓ କୁଟା କାଠିକୁ ଫୁଙ୍କି ସଫା କରି ତା'ଉପରେ ନିଜକୁ ଲୋଟାଇ ଦେଲି ।

ଦିନ ପ୍ରାୟ ବାରଟା ହେବ ।

ନିଦଟା ଭାଙ୍ଗିଗଲା । ବଡ଼ କଷ୍ଟରେ ଉଠି ବସିଲି । ଦେହର ପ୍ରତିଟି ଗଣ୍ଠି ଆଜି କଟକଟିରେ ଅସମ୍ଭବ ଯନ୍ତ୍ରଣା । ଦେହରେ ଖାଇଫୁଟା ତାତି । ଆଉ କେତେଘଣ୍ଟା ପରେ ମାଡ଼ି ଆସିବ ରାତି । ତା ପୂର୍ବରୁ ରାତି ଆଶ୍ରୟ ସ୍ଥଳର ଏକାନ୍ତ ପ୍ରୟୋଜନ । ବସି ବସି ଚିନ୍ତା କରି ସ୍ଥିର କଲି କଟକ ରେଳ ଷ୍ଟେସନର ପ୍ଲାଟଫର୍ମକୁ ଯିବି । ତା ଛଡ଼ା ଅନ୍ୟ କୌଣସି ଉପାୟ ନାହିଁ । ତିଂଟି ଅଠା ହୋଇଯାଉଛି, ଚଳବଳ୍ ଦୂରୁଛି ବୃହପାଖର ପୃଥିବୀ । ଘର ଛାଡ଼ିବା ପର ଠାରୁ ଅନାହାର, କ୍ଲାନ୍ତ, ପଥଶ୍ରାନ୍ତ ମୋତେ ଟିକେ ହେଲେ ବି ମାନସିକ ଭାବରେ ଦୁର୍ବଳ କରି ପାରି ନଥିଲା । ମାତ୍ର ଓ: ଏମ୍: ପି: ଛକର ସେହି ଦୋକାନ ପାଖ କାଠବେଞ୍ଚ ଉପରେ ଜ୍ୱରାକ୍ରାନ୍ତ ଅବସ୍ଥାରେ ବସି ସେଦିନ ମୁଁ ଅନୁଭବ କରିଥିଲି— ମୁଁ ଭୟଙ୍କର ଭାବରେ ବାସ୍ତୁହରା, ନିଃସଙ୍ଗ ଏବଂ ଅସହାୟ । କାହାର ଅବସର ଅଛି, କିଏ ବା ଶୁଣିବ ମୋ ଅନାଥ-ଜୀବନର କରୁଣ କାହାଣୀ—କିଏ ବା ସାହାଯ୍ୟ କରିବାକୁ ଆଗେଇ ଆସିବ ମୋତେ ? କାହିଁକି ବା ଆସିବ ? ସମ୍ମୁଖରେ ଅନନ୍ତ ଅନିଶ୍ଚିତ ପଥ । ମୁଣ୍ଡଟା କେମିତି ଗୋଳମାଳିଆ ହୋଇ ଯାଉଥିଲା ।

ଅଧଘଣ୍ଟାଏ ଖଣ୍ଡେ ବସି ରହିଲି ସେଇଠି ସେଇମିତି । ଦେହରୁ ଝାଳ ବୋହି-ବାର ଉପକ୍ରମ ହେଲା—'ଜର ତାହାହେଲେ ଛାଡ଼ୁଛି ।' ମୋର ଦେହ ଏବଂ ମନର ଅବସ୍ଥା ସେଦିନ ଯେପରି ଥିଲା, ସେଥିରେ ମୋର ଏକମାତ୍ର ନିରାପଦ ଆଶ୍ରୟ ହେବା କଥା ଡାକ୍ତରଖାନାର ଖଟିଆ । ତା ସତ୍ତ୍ୱେ ସେଦିନ ମୁଁ ଓ: ଏମ୍: ପି. ଛକରୁ ନିଜକୁ ନିଜେ କେମିତି ଟାଣିଟାଣି କଟକ ରେଳ ଷ୍ଟେସନର ପ୍ଲାଟଫର୍ମକୁ ନେଇ ଯାଇଥିଲି, ସେକଥା ଆଜି ଚିନ୍ତା କଲେ ନିଜ ଚୋଖରେ ନିଜେ ବିସ୍ମିତ ହୁଏ ।

ସାରାଦିନର ଜ୍ୱଳନ୍ତ କ୍ଳାନ୍ତ ଦିବାକର ଧୀରେ ଧୀରେ ଢଳି ପଡ଼ୁଥିଲେ ଅସ୍ତାଚଳ କୋଳରେ । ବିହଙ୍ଗମ ଦଳ ଫେରୁଥିଲେ ସେମାନଙ୍କର ନୀଡ଼କୁ । ମୁଁ ପହଞ୍ଚି ଯାଇଥିଲି ଷ୍ଟେସନର ସୀମାନାରେ । ସନ୍ଧ୍ୟାର ଜନଗହଳି ଭିତରେ ପ୍ରବେଶ କଲି ପ୍ଲାଟଫର୍ମରେ । ଯେଉଁ ସିମେଣ୍ଟ ବେଞ୍ଚଟିରେ ସେଦିନ ଯାଇ ପ୍ରଥମେ ବସିଥିଲି ତା'ର ଠିକ ଦୂରକୁ ପାଣିକଳ । ସ୍ୱଚ୍ଛ ରୂପେଲି ଜଳଧାରା ଅବିରତ ଝରୁଥିଲା ତଳେ । କଳ ପାଖକୁ ଯାଇ ପେଟେ ପାଣି ପିଇଗଲି । ତା'ପରେ ଫେରି ଆସିଲି ସେହି ବେଞ୍ଚଟିର କୋଳକୁ । ବାଁ କର ମାଡ଼ି ନିଜକୁ ଲୋଟେଇ ଦେଲି । ତା'ପରେ କ'ଣ ଘଟିଛି ଜାଣେନା । ଗୋଟାଏ ମାଲ୍‌ଗାଡ଼ି ଇଂଜିନର ବିକଟ ଗର୍ଜନରେ ଯେତେବେଳେ ନିଦ ଭାଙ୍ଗେ, ସେତେବେଳକୁ ରାତି ଚାରିଟା । ମୁଣ୍ଡ ଟେକି ଚାରିଆଡ଼କୁ ଅନାଇଲି । ଦେଖିଲି, ମୁଣ୍ଡ ପାଖରେ ଜଣେ କିଏ ବସିଛି ! ଉଠି ବସି ଲୋକଟିକୁ ଲକ୍ଷ୍ୟ କଲି, । ମଧ୍ୟ ବୟସୀ ଲୋକଟିଏ, ତା' ପାଦ ପାଖରେ ଥୁଆ ହୋଇଛି ଗୋଟାଏ ବେଡ଼ିଂ । ଲୋକଟି ଗ୍ରାମାଞ୍ଚଳର ଏକ ଖାନ୍‌ଦାନୀ ଲୋକ ଭଳି ମାଲୁମ ହେଲା । ମୁଁ ଉଠି ବସିବା ଦେଖି ସେ କହିଲା, "ଶୋ, ଶୋ, ଉଠିଲୁ କାହିଁକିରେ ବାବା ?" ମୁଁ କିଛି ନ କହି ପୁଣି ତାକୁ ଚାହିଁଲି । ଲୋକଟି ଫେଣାଏ ପାଚିଲା କଦଳୀ ଧରିଥିଲା ବାଁ ହାତରେ, ଆଉ ଡାହାଣ ହାତରେ ସେଥିରୁ ଗୋଟିଏ ଗୋଟିଏ ଛଡ଼ାଇ ଖାଉଥିଲା । ମୋ ଚାହାଣିରୁ କ'ଣ ସେ ଅନୁମାନ କଲା କେଜାଣି, ଫେଣାରୁ ଭାଙ୍ଗି ଚାରିଟି କଦଳୀ ନୀରବରେ ମୋ ଆଡ଼କୁ ବଢାଇ ଦେଲା । ମୁଁ ପ୍ରଥମେ ନେବାକୁ ଅସମ୍ମତ ହେଲି । ସେ କିନ୍ତୁ ନଛୋଡ଼ବନ୍ଧା, "ନେ, ଆରେ ଲାଜ କରୁଚୁ କାହିଁକି ? କୁଆଡେ, କୋଉ ଗାଡ଼ିରେ ଯିବୁ ?"

"ମୁଁ କୁଆଡ଼େ ଯିବ ନାହିଁ—" ବାକ୍ୟଟି ସମ୍ପୂର୍ଣ୍ଣ କରିବା ସମ୍ଭବ ହେଲା ନାହିଁ—ଆଖି ଲୁହ ଛଳ ଛଳ ହୋଇ ଉଠିଲା । ଏତିକି ବେଳେ ଯାତ୍ରୀ-ବାହୀ ଟ୍ରେନ୍ ଆସିବାର ସଙ୍କେତ ଦେଇ ବାଜି ଉଠିଲା ପ୍ଲାଟ୍‌ଫର୍ମରେ ଶେଷ ଘଂଟି । ପ୍ଲାଟ୍‌ଫର୍ମରେ ଦେଖାଗଲା ଚଞ୍ଚଳ୍ୟ—ଲୋକଟି ମଧ୍ୟ ଉଠି ଠିଆ ହେଲା । ସେତେବେଳେ ଗାଡ଼ି ପ୍ଲାଟଫର୍ମ ଭିତରେ ପଶୁଛି । ଲୋକଟି ପଞ୍ଜାବୀର ମଧ୍ୟାଂକିତ ଗୋଟିଏ ଆଠଣି ମୋ ହାତରେ ଗୁଞ୍ଜି ଦେଇ ମିଶିଗଲା ଜନଗହଳି ଭିତରେ । ମଣିଷ ମୁଣ୍ଡର ଅସ୍ଥିର-ଅରଣ୍ୟ ମଧ୍ୟରେ ତାକୁ ମୁଁ ଦେଖି ପାରିଲି ନାହିଁ । ଆଠଣିଟିକୁ ଥରେ ଆଖି ବୁଲାଇ ଦେଇ ଲୋକଟି କଥା ଭାବି ବିସ୍ମିତ ହେଲି । ଦୁନିଆରେ ଅନେକ ସହୃଦୟ ଲୋକ ତାହେଲେ ଅଛନ୍ତି ! ସେମାନଙ୍କର ଉପସ୍ଥିତି ତ ବାଟ ଚାଲିବାର ଏକ ମହାର୍ଘ ଉପାଦାନ ଯାତ୍ରୀ ପକ୍ଷରେ । ଲୋକଟି ଦେଇଥିବା କଦଳୀ ଚାରୋଟିରୁ ଯୋଡ଼ିଏ ବସି ବସି ଖାଇଲି, ବାକି ଯୋଡ଼ିକୁ ପ୍ୟାଣ୍ଟ ପକେଟରେ ସଞ୍ଚିତ କରି ରଖିଲି ଆଗାମୀ କାଲି ପାଇଁ । ଆଗାମୀ କାଲି—ଯାହାର ମୁଖ ବିବର୍ଣ୍ଣ, ଯାହାର କଣ୍ଠସ୍ୱର କ୍ଷୀଣ ତା ପାଇଁ ଦୁଇଟି ମାତ୍ର ପାଚିଲା କଦଳୀ !

ରାତି ପାହୁଛି ।

ପୂର୍ବ ଆକାଶରେ ପ୍ରଚଣ୍ଡ ଏକ ଅଗ୍ନି ଦାହର ଆଭା । ଦେହଟା ଅତ୍ୟନ୍ତ ଦୁର୍ବଳ । ଧୀରେ ଉଠି ପାଣିକଳ ପାଖକୁ ଗଲି । ମୁହଁ ଧୋଇଲି । ଦାନ୍ତ ଘଷିବାର କୌଣସି ବ୍ୟବସ୍ଥା ନ ଥିବାରୁ ତାହା ସ୍ଥଗିତ ରହିଲା । ପୁଣି ଫେରି ଆସିଲି ବେଞ୍ଚ୍‌ଟି ଉପରକୁ । ବସି ବସି ଭାବିଲି : ଯିବି କୁଆଡ଼େ, କରିବି କ'ଣ ? ବଞ୍ଚି ରହିବା ପାଇଁ କିଛି ତ ଗୋଟାଏ ଅବଲମ୍ବନ ଦରକାର : ଅସହାୟ ଭାବରେ କାହା ପାଖରେ ବା ହାତ ପାତିବି ? କାହାଁକି ବା କିଏ ସାହାଯ୍ୟ କରିବ ମୋତେ ? ପିଲାଦିନେ ମୁଁ ଥିଲି ସ୍ୱାସ୍ଥ୍ୟବାନ, ଯେଉଁ ସ୍ୱାସ୍ଥ୍ୟ ସମ୍ପଦ ଯୋଗୁଁ ଗୃହତ୍ୟାଗର ବଜ୍ର-ବିଦ୍ୟୁତ୍ ମୁଖରିତ ରାତିର ଝଡ଼ବର୍ଷା ମୋତେ ଧରାଶାୟୀ କରିପାରି ନଥିଲା । ତା ଛଡ଼ା ମୁଁ ଥିଲି ସ୍ୱାବଲମ୍ବୀ । ନିଜ କାମ ନିଜ ହାତରେ କରିବା ପାଇଁ ବାପା ମୋତେ ସବୁବେଳେ ତାଲିମ କରିଥିଲେ । ସ୍ଥିର କଲି କିଛି ଗୋଟେଏ କରିବାକୁ ହେବ । ସେହି "କିଛିଗୋଟାଏ" ହେଲା କୁଲିଗିରି । ପିଲାଦିନୁ ମୋର ଚରିତ୍ର ହେଲା

କୌଣସି କଥା ସନ୍ଧାନସିଦ୍ଧ ହେବା ମାତ୍ରେ କର୍ମାନୁଷ୍ଠାନ ପ୍ରକ୍ରିୟା ଆରମ୍ଭ କରିବା । କାଳ ବିଳମ୍ବ ନକରି ଗଲି ବାହାରକୁ । ବାହାରେ ଠିଆ ହେଲି । ସମସ୍ତ ସକାଳ ସାତଟା ଖଣ୍ଡେ ହେବ । ଆଖିରେ ପଡିଲା ଜଣେ ମୋଟା ମାରୁଆଡି ଗୋଟାଏ ହାତଟେକା ରିକ୍‌ସାରୁ ଓହ୍ଲାଇଲା ବେଳେ "କୁଲି, କୁଲି—" ବୋଲି ଚିତ୍କାର କରୁଛନ୍ତି । ତା ସାଙ୍ଗରେ ଅଛି ଗୋଟାଏ ବଡ ଟ୍ରଙ୍କ୍ । ତେଣେ କଲିକତାଗାମୀ ଗାଡ଼ି ଆସି ଷ୍ଟେସନରେ ଠିଆ ହୋଇଛି । ମୁଁ ହଠାତ୍ ଏକ ମାନସିକ-ଲମ୍ଫରେ ହାବୁଡ଼ି ଗଲି ତା ସାମ୍ନାରେ । ଟ୍ରଙ୍କ୍ ଟାକୁ ସେ ଟେକି ଦେଲେ ମୋ ମୁଣ୍ଡକୁ । ମୁଣ୍ଡରେ ଠେକା ନଥିବାରୁ ଯଦିଓ କଷ୍ଟ ହେଲା, ତଥାପି ଟ୍ରଙ୍କ୍ ଟା ବେଶି ଓଜନ ନଥିଲା । ହେଲେ ବି ମୁଁ ତ ଅଭ୍ୟସ୍ତ ନୁହେଁ ଏ ସବୁ କାମରେ । କଷ୍ଟ ମଷ୍ଟ ଟ୍ରଙ୍କ୍ ଟିକୁ ନେଇ ଥୋଇଲି ଗାଡ଼ିର ଗୋଟିଏ ତବାରେ । ତାପରେ ସଲକ୍ଷ ହୋଇ ଠିଆ ହେଲି ବେଳକୁ ଗାଡ଼ିର ଚକଗୁଡ଼ାକ ସାମ୍ନାକୁ ବୁଲିବା ପାଇଁ ଆରମ୍ଭ କଲେ । ମାରୁଆଡ଼ି ଭଦ୍ରଲୋକ ଟ୍ରଙ୍କ୍ ଟିକୁ ତବା ଦୁଆରୁ ଭିତରକୁ ଟାଣିନେଲେ—ଗାଡ଼ିର ଗତିବେଗ ବଢ଼ିଲା । ମୁଁ ଚଳନ୍ତା ତବାର ଧାରେ ଧାରେ ଦୌଡ଼ୁଛି ମୋର ମୂଲ ପାଇଁ । ମାରୁଆଡ଼ି ଭଦ୍ରଲୋକ ଦୁଆର ମୁହଁରେ ଠିଆ ହୋଇ ଥରେ ଦୁଇ ପାଖକୁ ଦେଖିନେଲେ । କହିଲି ଚିତ୍କାର କରି, "ବାବୁ, ପଇସା ଦିଅନ୍ତୁ ।" ହଠାତ୍ ନୀରବରେ ଗୋଟାଏ ଗୋଇଠା ଆସି ବସିଲା ମୋ ଛାତିରେ । ପଦାଘାତଟିର ପ୍ରାବଲ୍ୟ ଏପରି ଥିଲା ଯେ, ଘୂର୍ଣ୍ଣନଶୀଳ ରେଳ ଚକ ତଳେ ମୋ ଜୀବନ ସବୁ ଶେଷ ହୋଇ ଯାଇଥାନ୍ତା । ଆଉ ଗାଡ଼ି ସହିତ ତାଳ ଦେବା ସମ୍ଭବ ହେଲା ନାହିଁ । ସ୍ତବ୍ଧ ହୋଇ ଠିଆ ହେଲି । ଦୂରରୁ ଦୂରକୁ ଅପସରି ଯାଉଛି ଗାଡ଼ିଟା ଗୋଟାଏ ପରି । ମୋ ପରି ସାମାନ୍ୟ ଅନାଥ ବାଳକ ଆଗରେ ସେ ଅପରାଧୀ, ଏକ ନୈତିକ-ପଙ୍ଗୁ ଯନ୍ତ୍ରଯାନ । କ୍ରୋଧ, ଘୃଣା, ଅପମାନ, ପରିଶେଷରେ ଶୋକ ହୋଇ ଉଠିଲା ମୋର ସମ୍ବଳ । ମୋର ଜୀବନର ସେହି ଅନାଥ ଆଖିର ଅଶ୍ରୁବିନ୍ଦୁ ଯେଉଁ ସ୍ଥାନଟିରେ ଝରିପଡ଼ିଥିଲା, ତାହା ଆଜି ବି ମୋର ସ୍ପଷ୍ଟ ମନେ ଅଛି ।

ତା ପରେ ଆଉ ୨/୩ଟି ଯାତ୍ରୀଙ୍କର ମାଲ ବୋହିଛି ।

ଗାଏ ମୋଟ ରୋଜଗାର କରିଛି ତିନିଟଙ୍କା ବାରଅଣା । ଠିଆ ହୋଇ କ'ଣ ଭାବିବା ବେଳେ ଗୋଟାଏ ବଳୁଆ ହାତ ମୋ ପିଠି

ଥାପୁଡ଼ିଇଲା । ବାସ୍ତବତା ଭିତରକୁ ଫେରି ଆସି ଦେଖେତ ସେ ହାତ ଜଣେ କୃଷ୍ଣକାୟ ବପୁଷ୍ମନ୍ତ ରେଲବାଇ କୁଲିର । ଆଖି ଦୁଇଟା ତାର ଲାଲ—ସେଥିରେ ଅପ୍ରଚୁର ତନ୍ଦ୍ରା ଓ ଲୋଭ । ମୋତେ ଧମକ ଦେବା ପରି ସେ କହିଲା, "କାହିଁକି, କୁଲିଗିରି କେବେଠୁ କଲୁଣି ?" ଲାଇସେନ୍ସ ଅଛି ?" ମୁଁ ଟିକେ ଡରିଗଲି । ମାରିବକି ? ବସିଲି ଯାଇ ମୋର ପୂର୍ବ ଜାଗା ବେଞ୍ଚରେ । ସେ ପୁଣି ଯାଇ ମୋ ଆଗରେ ଠିଆ ହେଲା । ଆଜ୍ଞା ଆଦେଶ ଦେବା ଭଙ୍ଗୀରେ କହିଲା "ନାକଲ ଏଠୁ ଜଲଦି । ପଦ୍ଦାରେ ଯଦି ଦେଖିବି ନା ହାଁ ଚଂଟିଆ ଦବ ।" ଏତକ କହି ସେ ସେଠୁ ଚାଲିଗଲା । ମୁଁ ତାର ଏ କଥାର ମର୍ମାର୍ଥ କିଛି ବୁଝିପାରିଲି ନାହିଁ । ରାସ୍ତା ଉପରକୁ ଚାଲି ଆସି ଦୋକାଏ କଡ଼ରେ ଠିଆ ହେଲି । ଯିବି କୁଆଡ଼େ ? ମୋ ପ୍ରତି କୁଲିର ସେହି ବ୍ୟବହାରକୁ ଦୂରରୁ ଦେଖିଥିଲା ଜଣେ ମେହେନ୍ତର । ହାତରେ ତାର ଝାଡ଼ୁ । ସେ ମୋ ପାଖକୁ ଆସି କହିଲା, "ଆରେ ପିଲା, ତୁ ଏଠି ମାଲପତ୍ର ଉଠାଇଲେ ଏ କୁଲିମାନେ ତୋତେ ରଖିବେ ? ଏଠି କୁଲି-ଗିରି କରିବାକୁ ହେଲେ ଲାଇସେନ୍ସ କରିବାକୁ ପଡ଼େ ।"

ସେତେବେଳେ ଯାଇ ବୁଝିଲି କାଏମୀ ସ୍ୱାର୍ଥର ମହତ୍ତ୍ୱଟିକୁ । ଅନ୍ୟର ସ୍ୱାର୍ଥର ହତାରେ ପାଦ ଦେଲେ କାମୁଡ଼ା ଖାଇବା ସାର ହୁଏ ।

ଏକ ଘୃଣ୍ୟ ଜଂଜାଳବତ୍ କଟକ ଷ୍ଟେସନକୁ ପଛରେ ପକାଇ ସିଧା ରାସ୍ତା କଡ଼େ କଡ଼େ ମାଲଗୋଦାମ ଭିତର ଦେଇ ଚାଲିଲି କଟକ ସହର ଭିତରକୁ ।

## ଆଦି ମଉସା ଓ ସେହି ଶୋକାର୍ତ୍ତ ରବିବାର

କଟକ ରେଲବାଇ ଷ୍ଟେସନ ଛାଡ଼ି ଲକ୍ଷ୍ୟହୀନ ଭାବରେ ମାଲ-ଗୋଦାମ, ଛତ୍ରବଜାର ଭିତର ଦେଇ ଚାଲିଲି ଆଗକୁ । ଦୋଳମୁଣ୍ଡାଇ

ଛକ, ଯାହା ମୋର ସ୍ମୃତିର ତୀର୍ଥଭୂମି, ସେହି ଅଞ୍ଚଳ ଅତିକ୍ରମ କଲାବେଳେ ଥମକି ଦଣ୍ଡେ ଠିଆ ହେଲି । ନା, ଏଠି, ଏ ଅଞ୍ଚଳରେ ଆଶ୍ରୟ ନେଲେ ପଛକଥା, ବାପାଙ୍କ କଥା ମନେ ପଡ଼ିବ । ତେଣୁ ହୋଲମୁଣ୍ଡାଇ ଛକରେ ଆଶ୍ରୟ ନେବା ନୋହିଲା । କିନ୍ତୁ ଭାବିଲି ଥରେ ମାଉସୀଙ୍କୁ ଦେଖା କରିବି । ଦେଖିଲେ ଭାରି ଖୁସି ହେବେ ସେ । ଧୀରେ ଧୀରେ ତା' ରହିବା ଘର ସାମ୍ନାକୁ ଗଲି···ଠିଆ ହେଲି । ମନେ ହେଲା ସେ ସେଘରେ ରହୁ ନାହିଁ । ପରିତ୍ୟକ୍ତ ପରି ଜଣାପଡ଼ିଲା ଘରଟା । ତା ଘର କବାଟରେ ତାଙ୍କୁ ସମ୍ବୋଧନ କରି ଚକ୍ ଖଡ଼ିରେ ଅତି ଅଶ୍ଳୀଳ ଭାଷାରେ କେତେଗୁଡ଼ିଏ ଶବ୍ଦ ଲେଖା ହୋଇଥିବା ଦେଖିଲି । ଦୁଃଖ ହେଲା । ମାଉସୀରେ ପାଦ ବଢ଼ାଇଲି ଆଗକୁ । ବଙ୍ଗାଳୀସାହି, ଗୋପାଳଜୀ ଲେନ୍ ବାଟେ ମ୍ୟୁନିସିପାଲିଟି ଜୁବୁଲି ମାର୍କେଟ ଭିତରେ ପଶି ଯାଇ ପହଞ୍ଚିଲି ଟାଉନହଲ ପାଖରେ । ଟାଉନହଲ ବାରଣ୍ଡାରେ ଦୃଷ୍ଟି ପଡ଼ିବା ମାତ୍ରେ ମନେ ମନେ ଭାବିଲି ସେହି ସ୍ଥାନଟିକୁ ଆଶ୍ରୟସ୍ଥଳ ରୂପେ ବାଛି ନେବି । କିଛି ସମୟ ବସିଲି ଟାଉନହଲର ପାହାଚ ଉପରେ । ପାକସ୍ଥଳୀ ଦରକାର କରୁଥିଲା କିଛି ଖାଦ୍ୟ । "କୁଡ଼ିଆରି ବାଦଶାହ" ପରି ମନରେ ଦମ୍ଭ ଥିଲା ତିନିଟଙ୍କା କାରଣ ଅଛି ପାଖରେ । ଷ୍ଟେସନରେ କୁଲିଗିରି କରି ସେତକ ଅର୍ଜିଛି । ଉଠି ଠିଆ ହୋଇ ପକେଟରୁ ସେତକ କାଢ଼ି ଦେଖିବାକୁ ଗଲାବେଳେ ସାରା ଦେହରେ ଟୋଟାଏ ବିଦ୍ୟୁତର ତରଙ୍ଗ ଖେଳିଗଲା—କାରଣ ଅଛି, ତିନିଟଙ୍କା ଗଲା କୁଆଡେ ? ନା, ତିନିଟଙ୍କା ନାହିଁ । ଦୁଃଖ ହେଲା ମନରେ । ବିନା ଲାଇସେନ୍ସରେ କୁଲିଗିରି କରି ଲାଇସେନ୍ସପ୍ରାପ୍ତ କୁଲି ସର୍ଦ୍ଦାରର ଧମକ ଠାରୁ ଆରମ୍ଭ କରି ମୋଟା ମାରୁଆଡ଼ିର ଗୋଇଠା ସବୁ ଗୋଟି ଗୋଟି କରି ମନେହେଲା । ସେଇ ଗୋଇଠା ଯାହାଫଳରେ କି ଚାଲନ୍ତା ରେଲଗାଡ଼ିର ଚକ ତଳେ ସେଦିନ ସବୁ ସବୁ ଶେଷ ହୋଇଯାଇଥାନ୍ତା, ଦୈବାତ୍ ଅଜ୍ଞାତ ଉଦ୍ଦେଶ୍ୟରେ ବଞ୍ଚିଯାଇ ଅର୍ଜିଥିବା ସାମାନ୍ୟ ଧନଟିକ ହଜିଯିବା ବଡ଼ ଦୁଃଖର ଘଟଣା । ହେ ତିନିଟଙ୍କା : ତୁମେ ଗଲ କୁଆଡେ଼ ? ଆଜିଯାଏ ତମର ଟେର୍ ମୁଁ ପାଇନାହିଁ । ହେଲେବି ମୋ ଜୀବନ ଇତିହାସରେ ତମର ମୂଲ୍ୟ ଅସାମାନ୍ୟ । ଗଭୀର ଦୁଃଖ ନେଇ ପ୍ରେତ ପରି ଟଳି ଟଳି ମ୍ୟୁନସିପାଲିଟି ଜୁବୁଲି ମାର୍କେଟ ଭିତରେ ଗୋଟିଏ ଦୋକାନରୁ ଦଅଣାର ବରା ତରକାରୀ ଗର୍ଭସ୍ଥ କରି ପୁଣି ଫେରି ଆସିଲି ଟାଉନହଲ୍‌କୁ ।

ସନ୍ଧ୍ୟା ନଇଁ ଆସିଲା ।

ଟାଉନହଲ୍‌ର ପ୍ରଶସ୍ତ ବାରଣ୍ଡା ଉପରକୁ ଉଠି କେତେ ହାତ ଜାଗା ବାଛି ନେଲି । ରାତି ବଢ଼ିବା ସାଥେ ସାଥେ ଦେଖିଲି ବାରଣ୍ଡା ଉପରକୁ ଜଣେ ଜଣେ ଉଠିଲେ । ସେମାନେ ସେଠି ରାତିରେ ସ୍ଥାୟୀ ଭାବରେ ଶୁଅନ୍ତି । କିଏ ତାହାଲେ ସେମାନେ ? ସେମାନେ ହେଲେ କୁଷ୍ଠରୋଗୀ, ଦୁଷ୍ଟ ଚକାଣ୍ଡି, ଗଞ୍ଜେଡ଼ି, ମଦ୍ୟପ, ବାସୁହରା । ସେମାନଙ୍କର ଅସିବା, ବାରଣ୍ଡା ଝାଡ଼ି ଶୋଇବା, ବଡ଼ ଟାଣିବା ସବୁକୁ ବସି ନୀରବରେ ଲକ୍ଷ୍ୟ କରୁଥାଏ । ମୋ ପାଖକୁ ଲାଗି ଅଧା ବୟସର ଲୋକଟିଏ ନୀରବରେ ବସିଥାଏ କାନ୍ଥକୁ ଆଉଜି । ତା, ପାଖରେ ଖଣ୍ଡେ ବାଡ଼ି, ଗୋଟାଏ ପୁରୁଣା ଷ୍ଟ୍ରାଡିକୋଟ୍, ତିଣି ଉବାଟିଏ ଏବଂ କନାର ଗୋଟାଏ ପୁଟୁଳା । ଏତିକି ବେଳେ ଆଉ ଜଣେ ଲୋକ ବାରଣ୍ଡା ଉପରକୁ ଉଠିଲା । ହାତରେ ତା'ର ଏକ ଜଳନ୍ତା ଲଣ୍ଠନ । ଲଣ୍ଠନକାଚର ଗୋଟାଏ ପାଖରେ କଳାଧାସ ପଡ଼ିଥିଲା । ସେ ଆସି କାନ୍ଥକୁ ଆଉଜି ବସିଥିବା ଲୋକଟିର ପାଖରେ ସ୍ଥାନ ଦଖଲ କଲା । ଲଣ୍ଠନଟାକୁ ଟିକେ ଟେକି ଦେଇ ଲୋକଟିକୁ କହିଲା—"ମଉସା ବସିଛ, ଆଜି କଟକ ଆଡ଼େ ଯାଇନ କି ?" ଲୋକଟି ସାମ୍ନାକୁ ସ୍ଥିର ଦୃଷ୍ଟିରେ ଅନାଇ ଉତ୍ତର ଦେଲା, "ନାହିଁ ବାବା, କେମିତି ଯିବ ? କିଏ ନବ ମତେ ? କାଲି ଜଣେ ଲୋକ ନେଇ ଯାଇଥିଲା । ଆଜି କେହି ନାହିଁ···" । ପ୍ରଶ୍ନକର୍ତ୍ତାଟି ନୀରବ ରହି ଗୋଟାଏ ଗଞ୍ଜେଇ ପୁଡ଼ିଆ ଅଣ୍ଟାରୁ କାଢ଼ି ତାକୁ ଦଳିବାକୁ ଆରମ୍ଭ କଲା, ଅଣ୍ଟାରୁ ଚିଲମଟାଏ କାଢ଼ି ତଳେ ଥୋଇଲା । ଲୋକଟା ଖଣ୍ଡେ କଟକୀ ବଦ୍ରିବାଲା ବୋଲି ନିଃସନ୍ଦେହ ହେଲି । "ଆଜି କଟକ ଯାଇନ କି" ବୋଲି ଯୋଉ ଲୋକକୁ ସିଏ ପଚାରିଲା ସେ ଲୋକଟି ଅନ୍ଧ । ଜଳୁଥିବା ଲଣ୍ଠନର ହଳଦିଆ ଆଲୁଅରେ ସ୍ପଷ୍ଟ ଦେଖିନେଲି ତା'ର ଧଳା ଆଖି ଦି'ଟିକୁ । ସ୍ଥିର ହୋଇ ସେ ସାମ୍ନାକୁ ଅନାଇ ରହିଛି । ମୁଖମଣ୍ଡଳରେ କରୁଣ ଏକ କରୁଣତାର ଛାପ—ସେ ମୁହଁରେ କଞ୍ଚା କଳାଦାଢ଼ି, ମଧ୍ୟମ ଧରଣର ସ୍ୱାସ୍ଥ୍ୟ, ଗୁଡିଟା ଓସାରିଆ । ଗଞ୍ଜେଇ ଦଳୁଥିବା ଲୋକଟି ମନେ ହେଲା ଅନ୍ଧ ସହିତ ବେଶ୍ ଘନିଷ୍ଠ । ସେମାନଙ୍କ କଥାବାର୍ତ୍ତାରୁ ଅନୁମାନ କଲି ଅନ୍ଧ ବଡ଼ ଅସୁବିଧାରେ ପଡ଼ିଛି । ତାହା ହେଲା— ତା'ର ପ୍ରତିଦିନ କଲିଟେସି କଟକ ହତାକୁ ଯିବା ଦରକାର । ସେଠି ରାସ୍ତା କଡ଼ରେ ବସି ସେ ଲୋକଙ୍କୁ ଭିକ୍ଷା ମାଗିବ, ଆଉ ସନ୍ଧ୍ୟା ପୂର୍ବରୁ ସେ ଫେରି

ଆସିବ ଟାଉନ ହଲ୍ ବାରଣ୍ଡାକୁ । କିନ୍ତୁ ତାକୁ ନେବା ଆଣିବା କରିବା ପାଇଁ ଲୋକ ନାହିଁ । ସେଥିପାଇଁ ସେ ଅନେକ ଦିନରୁ ହତାକୁ ଯାଇ ପାରି ନାହିଁ ।

ଗଞ୍ଜେଇ ଦଳା ସରିଲା ।

ଚିଲମ ମୁହଁକୁ ଖାପିନା ପରେ ନଡ଼ିଆ କତାର କୁଣ୍ଡଳୀ ପ୍ରସ୍ତୁତ ହେଲା—ଗଞ୍ଜେଇଭରା ଚିଲମ ଉପରେ ତାହା ଥୁଆ ହେଲା । ଆଉ ଦୁ'ଜଣ ଖଣ୍ଡେ ଭକ୍ତ ବି ଆସି ଜୁଟି ସାରିଥିଲେ । ଚିଲମରେ ନିଆଁ ଲାଗିଲା । ପ୍ରଚଣ୍ଡ ଶୋଷଣରେ ଦପ୍ କରି ଜଳି ଉଠିଲା ଚିଲମ—ତା'ପରେ ହସ୍ତାନ୍ତରିତ ହେବାକୁ ଲାଗିଲା । କିନ୍ତୁ ଲକ୍ଷ୍ୟ କଲି ଅନ୍ଧ ଗଞ୍ଜିକାଭକ୍ତ ନୁହେଁ ।

ଅନ୍ଧର ଡାହାଣ କଡ଼କୁ ମୁଁ ବସିଥିଲି—ନୂତନ ଅଥଚ ଅପରିଚିତ ଜଣେ ବାଳକ । ଅନ୍ଧ ବୋଧହୁଏ ମୋର ଉପସ୍ଥିତି ଅନୁଭବ କରୁଥିଲା । ସେ ମୋ ଆଡ଼କୁ ସ୍ଥିର ଦୃଷ୍ଟିରେ ଅନାଇଲା ଭଳି ପ୍ରଶ୍ନ କଲା, "କିଏ ବସିଛ ଏଠି ?"

ମୁଁ କହିଲି, "ମୁଁ ଜଣେ ପିଲା ।"

"ଏଠି କାହିଁକି ବସିଚୁ ବାବା ? ତୋ ଘର କେଉଁଠି ?"

ମୁଁ ତାର ଉତ୍ତର ଦେବା ଆଗରୁ ଗଞ୍ଜିକା ସେବନରତ ମଧ୍ୟରୁ ଦୁ'ଜଣ ଅନ୍ଧକୁ ଅନ୍ୟ ଆଲୋଚନା ଭିତରକୁ ଟାଣିନେଲେ । କାଲି କେତେ ରୋଜଗାର ହୋଇଥିଲା, ଆଗାମୀ କାଲି ଅନ୍ଧ କେମିତି କଟକ ସହରକୁ ଯିବ ଇତ୍ୟାଦି କଥାବାର୍ତ୍ତା ପଡ଼ିଲା । ମୁଁ ସେ ଆଲୋଚନାକୁ ଉତ୍କର୍ଣ୍ଣ ହୋଇ ଶୁଣୁ ଶୁଣୁ ଆଖି ପଲ୍ଲବକୁ ଆଚ୍ଛନ୍ନ କରି ମାଡ଼ି ଆସିଲା ଗାଢ଼ ନିଦ୍ରା । ଧୀରେ ନିଜକୁ ଲୋଟାଇ ଦେଲି କ୍ଲାନ୍ତ ନିଦ୍ରାର ଶାନ୍ତ କୋଳରେ ।

ସ୍ୱପ୍ନ ପ୍ରାପ୍ତ ଅଧ ହେବ ।

ହଠାତ୍ ନିଦଟା ଭାଙ୍ଗିଲା । ଉଠି ବସି ପଡ଼ିଲି । ସ୍ତବ୍ଧ ରାତି, ବାୟୁ ଗତିହୀନ । ମେଘ ମୁକ୍ତ ନିର୍ମଳ ଆକାଶର ଅଗଣାରେ ବିସ୍ଫୁଟ ହୋଇ-

ପଡ଼ିଛନ୍ତି ତାଗମାନେ । ଝାଉନ୍‌ହଲ ବାରଣ୍ଡାରେ ଧାଡ଼ିହୋଇ ନିଦ୍ରିତ ଶାୟିତ ମଣିଷ ସବୁ—ସେମାନଙ୍କର ନାସିକା ଧ୍ୱନି କେବଳ ରାତିର ସ୍ତବ୍‌ଧତାରେ ବ୍ୟାଘାତ ଘଟାଉଥିଲା । ଏ ସବୁ ଭିତରେ କିନ୍ତୁ ଆଶ୍ଚର୍ଯ୍ୟ, ସେଇମିତି କାନ୍ଥକୁ ଆଉଜି ବସିଛି ସେହି ଅନ୍ଧ, ନୀରବ, ନିଶ୍ଚଳ ଏକ ଗ୍ରାନାଇଟ୍ ମୂର୍ତ୍ତି ପରି । ମୋର ନିଦରୁ ଉଠିବାଟାକୁ ସେ ଅନୁଭବ କରିଛି । ସେ ମୋତେ ପଚାରିବା ଆଗରୁ ମୁଁ ତାକୁ ପଚାରିଲି, "ମଉସା, ତମେ ସେତିକବେଳୁ ବସିଚ ?"

"ହଁ ନିଦ ଅସୁନାହିଁ । ତୁ ଉଠିଲୁ କାହିଁକି ?" ସେ ମୋତେ ପ୍ରତ୍ୟୁତ୍ତରରେ କହିଲା ଓ ପଚାରିଲା, "କ'ଣ ଡର ମାଡ଼ିଲା ? ଶୋ, ଶୋଇପଡ଼ । କିଛି ଭୟ ନାହିଁ । ମୁଁ ଅଛି ଏଠି ।"

"ନା, ମଉସା, ମତେ ଆଉ ନିଦ ହବନାହିଁ । ତମେ ଶୋଇନା କାହିଁକି ?"

"ମୁଁ ସବୁଦିନେ ଏମିତି ବସେରେ ବାବା !" କହି ଅନ୍ଧ ମଶା ମାରିଲା ।

"ତତେ ମଶା କାମୁଡ଼ୁ ନାହାନ୍ତି ?"

"ହଁ, ଗୋଟାଏ, ଗୋଟାଏ ।"

ତା ପରେ ଅନ୍ଧ ଆବିଷ୍କାର କରିବାକୁ ଚେଷ୍ଟାକଲା, ମୁଁ କିଏ, କୋଉଠୁ ଆସିଛି, କ'ଣ ମୋର ଇତିହାସ ଇତ୍ୟାଦି । ତାର ପ୍ରତିଟି ପ୍ରଶ୍ନ ଏପରି ସମ୍ବେଦନାରେ ପରିପୂର୍ଣ୍ଣ ଥିଲା ଯେ, ମୁଁ ତାକୁ ସବୁକଥା କହିବାକୁ ବାଧ୍ୟ ହୋଇଥିଲି ସେଦିନ । ମୋର ସକରୁଣ ଅନାଥ ଜୀବନର ବିପଦ-ଆପଦ ଭରା ପ୍ରବାହ ଓ ଗତିଧାରାର ନିଖୁଣ ଚିତ୍ର ଯେତେବେଳେ ଅନ୍ଧ ପାଇଲା, ସେତେବେଳେ ତା ଭିତରର ମହାନ ମଣିଷଟି ଆଉ ଆତ୍ମଗୋପନ କରିପାରିଲା ନାହିଁ । ଗୋଟାଏ ନୀରବ ଦୀର୍ଘଶ୍ୱାସ ତାର ସର୍ବାଙ୍ଗ ଦୋହଲାଇ ପଦାକୁ ବାହାରି ଆସିବାର ଲକ୍ଷ୍ୟ କଲି । ତା'ପରେ ତା କଣ୍ଠରୁ ବାହାରି ଆସିଲା, "ଭଗବାନ ବଡ଼ଲୋକ । ଅରକ୍ଷିତକୁ ଦଇବ ସାହା । ସେଇ ତତେ ରକ୍ଷା କରିବେ । ମୁଁ ତୋର ଭଳିଆ ଜଣେ ଦୁଃଖୀରେ ବାବା !" କହି ମହାମେରୁ କପିଳାଶର ମୂକ ଚୂଡ଼ା ପରି ସେଇମିତି କାନ୍ଥକୁ ଆଉଜି ବସି ଅନ୍ଧ ତା'ର

ବ୍ୟଥାଭରା ଜୀବନ କାହାଣୀକୁ ଯେପରି ବର୍ଣ୍ଣନା କଲା, ତାର ସଂକ୍ଷିପ୍ତସାର ହେଲା ଏଇ—

ନାଁଟି ତାର ଆନନ୍ଦ ରାଉଳ । ସେ ଜନ୍ମାନ୍ଧ ନୁହେଁ । ଏକମାତ୍ର ପୁଅ 'ବୁଲୁ'ର ଅକାଳ ମୃତ୍ୟୁରେ ଗଭୀର ଶୋକରେ ସେ ହରାଇ ବସିଛି ତାର ଆଖି ଦୁଇଟି । ଘରଡ଼ିହ ଉପରେ ଖଣ୍ଡେ କୁଡ଼ିଆ ବ୍ୟତୀତ ତାର କୌଣସି ସମ୍ପତ୍ତିବାଡ଼ି ନଥିଲା । ମୂଲଘାଣ୍ଟି ଲାଗି ଚଳୁଥିଲା । ହଠାତ୍ ଗାଁରେ ଲାଗିଲା ହଇଜା । ସେଇ ହଇଜାରେ ମୋ'ରି ବୟସର ପୁଅ 'ବୁଲୁ' ତା'ର କୋଳକୁ ଶୂନ୍ୟ କରି ଚାଲିଗଲା ଚିରକାଳ ପାଇଁ । 'ବୁଲୁ' ଆଗରୁ ତା'ର ମା ମରିଥିଲା ସାପ କାମୁଡ଼ାରେ । ପୁତ୍ରଶୋକରେ ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥିଲା ଆନନ୍ଦ—କିନ୍ତୁ ସଫଳ ହେଲା ନାହିଁ ତାର ସେ ପ୍ରଚେଷ୍ଟା । ତାପରେ ତାର ଆଖିର ଆକାଶରେ ଧୀରେ ଧୀରେ ଘୋଟି ଆସିଲା ଅନ୍ଧକାର—ପରିଶେଷରେ ଆଖିର ତାରକା ଦୁଇଟି ସେଇ ଅନ୍ଧକାର ଭିତରେ ବିଲୀନ ହୋଇଗଲେ ଚିରକାଳ ଲାଗି । ବର୍ଣ୍ଣମୁଖର ବାହାର ଦୁନିଆ କେବଳ ତା ଆଗରେ ରହିଲା "ଅତୀତର ସ୍ମୃତି" ହୋଇ । ଆନନ୍ଦର ପଡ଼ିଶା ଯାହା ଠାରୁ ସେ 'ବୁଲୁ'କୁ ବଞ୍ଚାଇବ ବୋଲି କରଜ ଆଣିଥିଲା ଶହେଟଙ୍କା ହ୍ୟାଣ୍ଡନୋଟ୍ ଲେଖିଦେଇ, ସେଇ ପଡ଼ିଶା ତାକୁ ତା ଟଙ୍କା ବାବଦକୁ ଘରଡ଼ିହଟିକୁ ଅନ୍ୟାୟ ଜବରଦସ୍ତ ଦଖଲ କରିନେଲା ଓ ମାରଧର କରି ବାହାର କରିଦେଲା ତାର ପୈତୃକ ଭିଟାରୁ । ସ୍ତ୍ରୀ, ପୁଅ, ଘର, ପରିଶେଷରେ ଆଖି ଦି'ଟି; ସବୁଗଲା···ମାତ୍ର ଖାଇ ତା ସ୍ତ୍ରୀ ମୁଡ଼ି ରଖୁଥିବା ଟିଣ ଡବାଟି ଏବଂ ବାଡ଼ି ଖଣ୍ଡେ ଧରି ପୃଥିବୀର ରାଜରାସ୍ତାକୁ ବାହାରିଥିଲା ଅନ୍ଧ ଆନନ୍ଦ । ନାନା ମାନବଙ୍କ ସହାୟତା ଯୋଗୁଁ ସେ ଆସି ପାଦ ଦେଇଥିଲା କଟକ ସହର ବୁକୁରେ । ପରିଶେଷରେ ଟାଉନହଲ ବାରଣ୍ଡାକୁ ସେ ତାର ଶାନ୍ତିର ନୀଡ଼ ଭାବି ଆଦରି ନେଇଥିଲା ।

କଥା ଛଳରେ ଅନ୍ଧ ତାର ଭାବାବେଗକୁ ଚାପି ନ ପାରି କହିଲା ତା ମଲା ପୁଅ 'ବୁଲୁ'ର କଣ୍ଠସ୍ୱର ଠିକ୍ ମୋରି କଣ୍ଠସ୍ୱର ପରି । ପରେ ତାହାହିଁ ତାର ମୋ ପ୍ରତି ଗଭୀର ସମ୍ବେଦନଶୀଳ ହେବାର କାରଣ ହୋଇ ପଡ଼ିଥିଲା । ସେ ଯେତେବେଳେ ଜାଣିବାକୁ ପାଇଲା ମୁଁ ଷ୍ଟେସନରେ କୁଲିଗିରି କରି ଗାଏମାତ୍ ତିନିଟଙ୍କା ବାରଣା ରୋଜଗାର କରିଥିଲି, ଆଉ ସେଥିରୁ ତିନିଟଙ୍କା କୁଆଡ଼େ ହଜି ଯାଇଛି, ସେତେବେଳେ ସେ ମୋତେ ଅଭୟ ଦେଲା,

"ବ୍ୟସ୍ତ ହ'ନା । ମୋ ପାଖରେ ବହୁତ ପଇସା ଅଛି । ତୁ ମୋ ବୁଲା । ଏଥର ମୋ ପାଖରେ ରହ, କୁଆଡ଼େ ଯାଆନା । ଏ ଦୁନିଆରେ ମଣିଷ ନାହାନ୍ତିରେ ବାବା, ଆ, ମୋ ପାଖକୁ ଆ !!" କହି ସେହି ଅନ୍ଧାର ଭିତରେ ଅନ୍ଧ ଆହମ୍ମଦ ତାର ଡାହାଣ ହାତକୁ ବଢ଼େଇଲା ମୋ ଆଡ଼କୁ । ମୁଁ ତା ପାଖକୁ ଘୁଞ୍ଚିଗଲି । ସେ ମୋ ମୁଣ୍ଡରେ ହାତବୁଲାଇ ଗମ୍ଭୀର ଆଶୀର୍ବାଦ କରି ତାର ଆଂଗୁଠି ଗୁଡ଼ିକ ସାହାଯ୍ୟରେ ଦେଖି ନେଲା ମୋ ମୁହଁର ପ୍ରକୃତି ପେଶୀକୁ । ଅତି ଅଳ୍ପ ସମୟ ମଧ୍ୟରେ ଆମେ ଦୁହେଁ ଅତି ଆପଣାର ହୋଇଗଲୁ । ରାତି ସରି ଆସୁଥିଲା—ଅନ୍ଧ ମୋତେ ଅନୁରୋଧ କଲା, ମୁଁ ତାକୁ ପ୍ରତିଦିନ କଲେଜରୁ ଫେରି ହାଟକୁ ବାଟ ବତାଇ ନେଇଯିବି, ଫେରି ଛୁଟି ହେଲେ ପୁଣି ତାକୁ ଟାଉନ୍‌ହଲ ବାରଣ୍ଡାକୁ ନେଇ ଆସିବି । ମୁଁ ତହିଁରେ ସମ୍ମତ ହେଲି । ତା ପରଦିନ ଠାରୁ ମୁଁ ହେଲି ଏକ ଜୀବନ୍ତ ତଥା ଚଳମାନ ଅନ୍ଧକାରର ବାହକ । ତା ବାଡ଼ିର ଗୋଟାଏ ମୁଣ୍ଡକୁ ସେ ମୋ ଆଡ଼କୁ ବଢ଼ାଇ ଦିଏ, ମୁଁ ତାକୁ ଧରି ଆଗେ ଆଗେ ଚାଲେ ଆଉ ସେ ଚାଲେ ମୋ ପଛେ ପଛେ । କଲେଜରୁ ଫେରି ହାଟର ରାସ୍ତା କଡରେ ଗୋଟିଏ ଗଛମୂଳେ ମୁଁ ତାକୁ ବସାଇ ଦେଇ ବିଦାୟ ନିଏ, ଫେରି ଛୁଟି ପୂର୍ବରୁ ଯେତେବେଳେ ଆସି ତା ପାଖରେ ହାଜର ହୁଏ, ଆଉ 'ମଉସା' ବୋଲି ଡାକେ, ସେତେବେଳେ ସେ କୋଟିନିଧି ପାଇଲା ପରି ତାର ଦୁଇ ହାତକୁ ମୋ ଆଡ଼କୁ ବଢ଼ାଇଦିଏ ଏବଂ କହେ, "ବୁଲା, ଆସିଲୁ ? ଚାଲ୍ ଯିବା ।" ସେଇମିତି ଆଗପଛ ହୋଇ ଆମେ ଫେରୁ ଟାଉନ୍‌ହଲ ବାରଣ୍ଡାକୁ । ଆଶ୍ରୟ ସ୍ଥଳରେ ପାଦ ଦେଲା ବେଳକୁ କେବେ ସଞ୍ଜ ହୋଇଯାଇଥାଏ ତ କେବେ ଦିନ ରତ ରତ ହୋଇ-ଥାଏ । ନିଜ ସ୍ଥାନରେ ବସି ପଡ଼ି ସେ ମୋତେ ତା ଡବାରେ କଳରୁ ପାଣି ଆଣି ଦେବାକୁ କହେ । ମୁଁ ପାଣି ଆଣି ଦେବା ପରେ ସେ ମୁହଁ ହାତ ଧୁଏ ବାରଣ୍ଡାର ଦାଡ଼କୁ ଘୁଞ୍ଚି ଆସି । ତାପରେ ସେ ମୋତେ ପଚାରେ ବୁଝେ ମୁଁ ଦିନ-ସାରା କ'ଣ ଖାଇଚି । ମୁଁ ନୀରବ ରହିବା ଦେଖି ସେ ମୋ ଆଡ଼କୁ ଚାରିଟା ଅଣି (ଚାରି ଅଣା) ବଢ଼ାଇ ଦେଇ କହେ, "ନେ, ତୁ ରୁଟି ତରକାରୀ ଖାଇବୁ, ଆଉ ମୋ ପାଇଁ ଆଣିବୁ ।" ୧୯୪୭ ମସିହାରେ ଚାରିଅଣା ପଇସାର ଆର୍ଥିକ ମୂଲ୍ୟ କେତେ ହୋଇପାରେ ତାହା ପାଠକେ ହିସାବ କରି ଦେଖନ୍ତୁ । ଦି ଅଣାର ରୁଟି-ତରକାରୀରେ ପେଟ ଭର୍ତ୍ତି ହୋଇଯାଏ । ମୁଁ ଦୋକାନରୁ ଦି ଅଣାର ରୁଟି-ତରକାରୀ ଖାଇ ତା ପାଇଁ ପତ୍ର ପଟରେ ବାକି ଦିଅଣାର ଧରି ଆସେ ।

ସେ ନିପଟକ ତୃପ୍ତିରେ ଖାଇ ଦିଏ । ଦିନ ତମାମ ଲକ୍ଷ୍ୟହୀନ ଭ୍ରମଣ ପରେ ଟାଉନ୍ ହଲର ଖୋଲା ବାରଣ୍ଡା ମୋତେ ଶୀଘ୍ର ଲେଟାଇ ଦିଏ ଗାଢ଼ ନିଦ୍ରାର କୋଳରେ । ଦିନେ ଦିନେ ଝାପ୍ସା ନିଦ ଭିତରେ ଅନୁଭବ କରେ ଅନ୍ଧର ହାତ ନୀରବରେ ମୋ ମୁଣ୍ଡକୁ ଆଉଁସୁଛି । ଏହିପରି ଏକ ବିଚିତ୍ର ଜୀବନର ଯୌଥ ସେଠି ଗଢ଼ି ଉଠିଲା । ଦିନ ଅତିବାହିତ ହେବା ସଙ୍ଗେ ସଙ୍ଗେ ଟାଉନ୍ହଲ ବାରଣ୍ଡାର ଭିତର ବାସିନ୍ଦାମାନେ ଆମର ଆତ୍ମୀୟତାକୁ ଲକ୍ଷ୍ୟ କରି ଦିନେ ଅନ୍ଧକୁ ପଚାରିଲେ, "କ'ଣ ମିଉଆ, ଏ ପିଲାଟି କିଏ ? ଯାକୁ କୋଉଠୁ ପାଇଲ ?"

ଗୋଟିଏ ବାକ୍ୟରେ ଅନ୍ଧ ତାର ଉତ୍ତର ଦିଏ, "ଇଏ ମୋ ବୁଲା ।"

ଅନ୍ଧ ମଉସାକୁ ନଇତି କଟିର ମନ୍ଦାରେ ଛାଡ଼ି ମୁଁ ତାଠୁଁ ବିଦାୟ ନେଇଯିବା ଆଗରୁ ସେ ମୋତେ ଦିଏ ଛ' ଅଣା ପଇସା । ତେଣୁ ଦିନଯାକ ମୋର ଖାଇବା ଚିନ୍ତା ନ ଥାଏ । ସେଇଥିରୁ ଅଣାଏ-ଦିଅଣା ରଖି ଗୋଟିଏ ସ୍ଲେଟ ଟିପାଖାତା, ପେନ୍ସିଲ, ସ୍ଲେଟିଆ ଖଡ଼ି ପିଲଟ ଏବଂ ଖଣ୍ଡେ 'ବର୍ଣ୍ଣବୋଧ' କିଣିଥିଲି । ଏତକ ସାଇତି ରଖିଥିଲି ସେତେବେଳର ଟାଉନହଲ୍ ରକ୍ଷକ କୁଳମଣି ପାଖରେ । କୁଳମଣି ଥିଲା କଟକ ପୌରସଂସ୍ଥାର ବହୁ ପୁରାତନ ତଥା ବିଶ୍ୱସ୍ତ କର୍ମଚାରୀ । ଭାରି ମଜାଦାର ଲୋକ । ତାର କଥନ ଭଙ୍ଗୀ ମଣିଷକୁ ନ ହସାଇ ଛାଡ଼େନା । ଦେଶର ବହୁ ଗୁଣୀ, ଜ୍ଞାନୀ, ନେତାଙ୍କର ଗୋପନ ତଥା ନୈତିକ-ଦୁର୍ବଳତାଠିର ସେ ଥିଲା ଧାରକ ।

ଦିନ ତମାମ ଏଣେତେଣେ ବୁଲିବା ଭିତରେ ମୋର ଦୃଷ୍ଟି ପଡ଼େ କାନ୍ଥବାଡ଼ରେ ମରାଯାଇଥିବା ସିନେମା ପୋଷ୍ଟର, ଲେଖା ଯାଇଥିବା ଶ୍ରେଷ୍ଠ ଶ୍ରେଷ୍ଠ କମ୍ପାନୀମାନଙ୍କର ବିଜ୍ଞାପନ ଉପରେ । ଓଡ଼ିଆ ଏବଂ ଇଂରାଜୀରେ ଲିଖିତ ଏହି ଲେଖା ଓ ବିଜ୍ଞାପନଙ୍କ ଭିତରୁ ଇଂରାଜୀରେ ଲେଖା ଅକ୍ଷରଗୁଡ଼ିକୁ ମୁଁ ପଢ଼ି ପାରୁଥିଲେ ମଧ୍ୟ ସବୁ ଅକ୍ଷର ମିଶାଇ ପୂରା ଶବ୍ଦଟା କ'ଣ ହେବ ଏବଂ ତାର ଉଚ୍ଚାରଣ କିପରି ହେବ ତାହା ମୋତେ ମାଲୁମ ନଥିଲା । ସେତକ ଆୟତ୍ତ କରିବା ପାଇଁ ରାସ୍ତାରେ ଯିବା ଆସିବା କରୁଥିବା ଶିକ୍ଷିତ ଭଦ୍ରଲୋକ-ମାନଙ୍କର ସହାୟତା ମୋତେ ଲୋଡ଼ିବାକୁ ହେଉଥିଲା । ତାହା ଏକ ବିଚିତ୍ର ଦୃଶ୍ୟ । ରାସ୍ତାରେ ଯାଉ ଯାଉ ଅପରିଚିତ ଶିକ୍ଷିତ ପଥିକ ହଠାତ୍ ପଥ

ମଧ୍ୟରେ ଥମକି ଠିଆ ହୁଏ । ତା ଆଗରେ ୧୩ । ୧୪ ବର୍ଷର ଗେଧା ହୋଇ ହାଫ୍ ପ୍ୟାଣ୍ଟ ପିନ୍ଧା ଗୋଟିଏ ପିଲା ଅତି ଆପଣାର ପରି ତାର ଗତିରୋଧ କରି ପଚାରେ, "ଆଜ୍ଞା, ଏ କାନ୍ଥରେ ଲେଖାଥିବା ଅକ୍ଷର ଗୁଡ଼ାକ ମୁଁ ପଢ଼ିପାରୁଛି । ହେଲେ ସବୁ ଅକ୍ଷରକୁ ମିଶାଇ କେମିତି ପଢ଼ିବାକୁ ହେବ ମୁଁ ଜାଣିନି । ଟିକେ ଦୟାକରି କହିଦେବେ ?" ପିଲାଟିର ଏହି ଅତର୍କିତ ପଥରୋଧ ଏବଂ ପ୍ରଶ୍ନରେ ଅପରିଚିତ ଶିକ୍ଷିତ ଭଦ୍ର ସହୃଦୟ ପଥିକ ହଠାତ୍ ବିସ୍ମିତ ହୋଇ ପିଲାଟାର ତାଳୁରୁ ତଳିପା ପର୍ଯ୍ୟନ୍ତ ଆଖି ବୁଲେଇ ନିଏ, ଆଉ ଶବ୍ଦଟିର ଉଚ୍ଚାରଣ ବତାଇ ଦେଲା ପରେ ଖୁସି ହୋଇ ତା ପିଠି ଖାପଡ଼ାରେ ତାକୁ ତର ତର କରି ଟିପି ନିଏ କୁଆଡ଼କୁ ନିଶ୍ଚୟ । କେହି କେହି ପଥିକ ପିଲାଟାକୁ 'ପାଗଳ' ବୋଲି ମନେ କରି ତା'ର ଆବେଦନକୁ ପ୍ରତ୍ୟାଖ୍ୟାନ କରିଛନ୍ତି ନିର୍ମମ ଭାବରେ, ବିରକ୍ତ ହୋଇଛନ୍ତି ଶାନ୍ତିଭଙ୍ଗ ଲାଗି । ହେଲେ ବି ସେମାନଙ୍କ ସଂଖ୍ୟା ଅତ୍ୟନ୍ତ ନଗଣ୍ୟ । ପ୍ରାୟ ୩୨ । ୩୫ ବର୍ଷ ତଳେ ଧରଣୀର ପଥ ପ୍ରାନ୍ତରେ ଉଦ୍‌ଭ୍ରାନ୍ତ ପରି ବୁଲି ଆପଣାର ଜ୍ଞାନ ଆହରଣର ଦୁରନ୍ତ ପିପାସାକୁ ମେଣ୍ଟାଇବା ପାଇଁ ଅପରିଚିତଙ୍କୁ ପରିଚିତ ଓ ଆପଣାର ମନେ କରି ଯେଉଁ ପିଲାଟା ସେଦିନ ତା'ର ସହାୟତା ନେଉଥିଲା, ଆଉ ତା' ପ୍ରତି କିଏ କ'ଣ ଭାବିଲା ନ ଭାବିଲା ସେଥି ପ୍ରତି ନଜର ନ ଦେଇ ଲକ୍ଷ୍ୟ ହାସଲ ଦିଗରେ ଅବିଚଳ ଥିଲା, ସେହି ବାଳକ ଜଣକ ମୁଁ—ଆଜିର ବିଖ୍ୟାତ ତଥା କୁଖ୍ୟାତ, ପ୍ରତିଷ୍ଠିତ ତଥା ଅନାଦୃତ, ଲଢ଼ୁଆ ତଥା ଦୁର୍ବଳ ଏବଂ ବହୁ ମନଗଢ଼ା ବିଶେଷ ସବୁ କିମ୍ବଦନ୍ତୀର ନାୟକ ରବି ସିଂ । ଆଜିର ଭିତିଭୂମି ଉପରେ ଠିଆ ହୋଇ ସେଦିନର ଘଟଣା ସମୂହକୁ ଯେତେବେଳେ ରୂପ ଦେବାକୁ ଚେଷ୍ଟା କରୁଛି ଠିକ୍ ଚଳଚ୍ଚିତ୍ରର ଦୃଶ୍ୟ ପରି ଆଖି ଆଗରେ ନାଚି ଉଠୁଛନ୍ତି ସଂସାରର ସେହି ଅପରିଚିତ ଶିକ୍ଷିତ ମଣିଷମାନେ, ସେମାନଙ୍କର ମୁହଁ । ସମୟର ଘୂର୍ଣ୍ଣି-ଝଡ଼ରେ ହୁଏତ ସେମାନେ କର୍ମ କ୍ଷେତ୍ରରେ ନାନା ସ୍ଥାନରେ କିଏ କୋଉଠି ବିକ୍ଷିପ୍ତ ହୋଇ ପଡ଼ି ରହିଛନ୍ତି । ଯଦି ସେମାନଙ୍କ ମଧ୍ୟରୁ ଆଜି କେହି ହୁଏତ ଜୀବିତ ଥିବେ, ତା' ନ ହେଲେ ସେମାନେ ହୁଏତ ଠିଆ ହୋଇଥିବେ ଜୀବନର ଉପାନ୍ତରେ, ସେମାନଙ୍କର ସେହି ବିଶେଷ ଦୃଶ୍ୟ ହୁଏତ ମନେ ନ ଥିବ—କିନ୍ତୁ ମୋର ମର୍ମପଟରେ ତାହା ଖୋଦିତ ହୋଇ ରହିଛି ଶିଳାଲେଖ ପରି । ସେହି ସହୃଦୟ ମଣିଷମାନେ ମୋ ଜୀବନ-ବିଦ୍ୟାଳୟର କ୍ଷଣିକ-ଶିକ୍ଷକର ଦଳ । ସେମାନଙ୍କର ଅବାଧ ବିସ୍ମୟରେ ମୋ ପ୍ରତି ସହାୟତା, ସମ୍ବେଦନଶୀଳତା,

କାହାର କାହାର ରକ୍ତିମ ନୟନରେ ବଚିତ୍ର—ସବୁ କିଛି ମୋ ଜୀବନ ଭଣ୍ଡାରର ଅମୂଲ୍ୟ ସଂପଦ ହୋଇ ରହିଛି । ସେମାନଙ୍କ ମଧ୍ୟରୁ ଆଜି ଯେଉଁମାନେ ଥିବେ ବା ନ ଥିବେ, ସମସ୍ତଙ୍କର ମାନବିକ ଜୟଗାନ କରୁଛି ଆଜି ମୋର ଅବଜ୍ଞାତ ଲେଖନୀ । ମୋର ଚିର ଉନ୍ନତ ଶିରକୁ ମୁଁ ଆଜି ସେମାନଙ୍କ ଉଦ୍ଦେଶ୍ୟରେ ସମ୍ମାନର ସହ ଅବନତ କରୁଛି ଗଭୀର କୃତଜ୍ଞତା ନେଇ । ମୋ ପ୍ରତିଭାର, ମୋ ଅନ୍ତର୍ନିହିତ ଶକ୍ତିର, ମୋ ସ୍ୱପ୍ନର ବୃନ୍ଦାବନର ଅଜ୍ଞାତ ସନ୍ଧାନୀ ସେମାନେ । ଏ ଲେଖା ଯଦି ସେମାନଙ୍କ ମଧ୍ୟରୁ କାହାର ଆଖିରେ ପଡ଼େ ଏବଂ ତଦ୍ଦ୍ୱାରା ଯଦି ଅତୀତର ସେହି ଦୃଶ୍ୟପଟ ମନକୁ ଆଲୋଡ଼ିତ କରେ କ୍ଷଣକ ପାଇଁ ଭାବିନେଲେ ଉଚିତ ମନେ କଲେ ମୋତେ ତାହା ଜଣାଇବାକୁ ସବିନୟ ଅନୁରୋଧ । ସେଥିରେ ଅଧିକ ପ୍ରେରଣା, ଅଧିକ ଜୀବନୀଶକ୍ତି ପାଇବ ମୋର ଲେଖନୀ । ହେ ମୋର କ୍ଷଣିକ-ଶିକ୍ଷକର ଦଳ ! ଆପଣମାନଙ୍କ ଉଦ୍ଦେଶ୍ୟରେ ମୋର କୋଟି କୋଟି ପ୍ରଣାମ ।

ଅନ୍ଧ ଆଉ ମଞ୍ଜାଙ୍କୁ କଣଗ ହତାରେ ଗୁଡ଼ ଦେଇ ମୁଁ ଆସେ ଟାଉନହଲ ସନ୍ନିକଟ ରଘୁନାଥଜୀଉ ମନ୍ଦିରକୁ । ମନ୍ଦିର ଭିତରେ ଥିବା ଗମ୍ଭୀରାକୃତି ମଣ୍ଡପ ଭିତରେ ବସେ । ଛିପାଖାତାରେ ଛପିଥିବା ଇଂରାଜୀ ଶବ୍ଦର ଉଚ୍ଚାରଣଗୁଡ଼ିକୁ ସିଲଟରେ ଆଉ ଥରେ ଲେଖି ଘୋଷେ । ହସ୍ତାକ୍ଷର ଭଲ ହେବା ପାଇଁ ଅନବରତ ସିଲଟରେ ଅକ୍ଷର ସବୁ ଲେଖି ମଡ଼ାଏ । ସେଠାରୁ ଧୀରେ ଆବିଷ୍କାର କଲି ହଜାରୀଗଳି ପାଖ ସ୍ୱର୍ଗତ କ୍ଷେତ୍ରମୋହନ ସ୍ୱାଇଁ ଓକିଲଙ୍କ ଘର ନିକଟରେ ଜଣକ ଘର ବାରଣ୍ଡାରେ ଏକ ଚଟଶାଳୀ ଖୋଲିଛି । ଯାଇ ଦେଖିଲି ୧୦ । ୧୨ଟି ପିଲାଙ୍କୁ ଧରି ଜଣେ ଲୋକ ପାଠ ପଢ଼ାଉଛନ୍ତି । ଶିକ୍ଷକ ପୁରୁଣାକାଳିଆ ଲୋକ—ହୁଏତ ପଞ୍ଜିକା-ବ୍ରାହ୍ମଣ ବା ଅବଧାନ । ଦେହର ରଙ୍ଗ ଚିକ୍କଣ କଳା, ଡାହାଣ ଗୋଡ଼ଟି ଗୋଦର, ସେଥିରେ ସମାନ ଅବତରଣି କଲା ପରି ଦଳଦଳ ମାଛି ଆସି ବସୁଥିଲେ । ତାଙ୍କ ହାତରେ ନହନହକା ବେତ । ସେ ବେତକୁ ଦେଖି ସେଦିନ ମୋର ମନେ ପଡ଼ିଥିଲା ନିଜ ଗାଁ ଚାହାଳୀରେ ପିଲାଦିନେ ମୁତିବାକୁ ଯିବା ଅପରାଧରେ ବେତ ପାହାରର ସ୍ମୃତି । ବାସ୍ତବତା ଭିତରକୁ ଫେରି ଆସି ଦେଖିଲି ଶିକ୍ଷକଙ୍କ ଆଗରେ ଦୁଇ ଜାଗାରେ ଥୁଆ ହୋଇଛି କଞ୍ଚାଲଙ୍କା । କୋଉପିଲା ହୁଏତ ସେତକ ଆଣି ମାଷ୍ଟରଙ୍କ ପାଇଁ ସେଠି ଥୋଇଛି । କେତେଥର ମନେ ମନେ ଭାବୁଛି,

ମାଷ୍ଟରଙ୍କୁ ଯାଇ କହିବ ସେ ମୋତେ ପିଲଙ୍କ ମେଳରେ ଟିକେ ବସିବାକୁ ଅନୁମତି ଦେବେ । କିନ୍ତୁ ଦୁଇଟି କଥା ମୋର ସେ ଭାବନାକୁ ପ୍ରତିହତ କରନ୍ତି । ପ୍ରଥମଟି ହେଲା ବିନା ପଇସାରେ ସେ ମୋତେ ପଢ଼ାଇବେ କି ? ଦ୍ୱିତୀୟଟି ହେଲା, ଯଦି ଦୟା ପରବଶ ହୋଇ ପଢ଼ାଇବେ ତା'ହେଲେ ତାଙ୍କ ହାତର ସେଇ ବେତଟା କ'ଣ ମୋ ପ୍ରତି ଦୟାର୍ଦ୍ର ହେବ ? ଏହି ଚାଟଶାଳୀ ସାମ୍ନାରେ ଗୋଟାଏ ଘୋଡ଼ାଗାଡ଼ି କୋଉକାଳୁ ପଡ଼ିଛି ଖୋଲା ଜାଗାରେ । ତା ଉପର 'ହୁଡ଼୍'ଟା ଠିକ୍ ଅଛି । ରଘୁନାଥଜୀଉ ମନ୍ଦିର ଭିତରର ଗମ୍ବୁଜାକୃତି ମଣ୍ଡପ ଛାଡ଼ି ସେଇ ଘୋଡ଼ାଗା'ଡ଼ି ଭିତରେ ଯାଇ ବସିବାକୁ ଆରମ୍ଭ କଲି । ଚାଟଶାଳୀରେ ପିଲାମାନେ ସମସ୍ୱରରେ ଘୋଷୁଥିବା ଓଡ଼ିଆ ବର୍ଣ୍ଣମାଳାର ଶବ୍ଦ, ଧ୍ୱନି, ଛନ୍ଦ ଆଦିକୁ ନୀରବରେ ଗ୍ରହଣ କରି ବୃଳାଳା ପ୍ରାପ୍ତ ମାନସ ଖଣ୍ଡେ । କଚିରି ଛୁଟି ପୂର୍ବରୁ ଅନ୍ଧ ମଉସା ପାଖରେ ଯାଇ ପହଞ୍ଚିବାକୁ ହେବ ଯେ ! ତେଣୁ ଇଚ୍ଛା ଥିଲେ ବି ନ ବସି ଉଠି ଆସେ । ଶେଷ ବେଳକୁ କେତେକ ଲୋକଙ୍କ ନଜରରେ ପଡ଼ିଲି : ଘୋଡ଼ାଗାଡ଼ି ଭିତରେ ଗୋଟାଏ ପିଲା କୋଉଠୁ ଆସି ବସି ପାଠ ପଢ଼ୁଛି । ତେଣୁ ଅନ୍ୟମାନଙ୍କର ଦର୍ଶନୀୟ ବସ୍ତୁ ହେବା ଆଗରୁ ମୋର ସେଠାକୁ ଯିବା ଚିରତରେ ବନ୍ଦ ହେଲା ।

କଚିରି ଛୁଟି ଆଗରୁ ମୁଁ ଦିନେ ଅନ୍ଧ ଆଦି ମଉସା ସାମ୍ନାରେ ଯେତେବେଳେ ଯାଇ ଠିଆ ହେଲି ଆଉ ମୋର ଉପସ୍ଥିତି ଜଣାଇବାକୁ ଯାଇ ଡାକିଲି, "ମଉସା, ଯିବା ଆସ !" ସେତେବେଳେ ନିଜ ସ୍ଥାନରୁ ମୋ ହାତ ଧରି ଉଠୁ ଉଠୁ ସେ ପଚାରିଲା "ମତେ ଏଠି ଛାଡ଼ି ଦେଇ ଦିନ ସାରା ତୁ ଯାଉଛୁ କୁଆଡେ ?" ମୁଁ ତାକୁ ଯେତେବେଳେ କହିଲି ପାଠ ପଢ଼ୁଛି, ସେତେ-ବେଳେ ସେ ଠିଆ ଠିଆ ମୋ ମୁଣ୍ଡକୁ ତା ଛାତି ଉପରେ ଆଉଜେଇ ନେଇ କହି ଉଠିଲା, "ଆରେ ତୁ କଏରେ, ଆଖି ଥିଲେ ତତେ ମନ ପୂରେଇ ଦେଖିଥାନ୍ତିରେ ବାବା ... ।"

ଅନ୍ଧ ପ୍ରତିଦିନ କଚିରି ଛାଡ଼ିବା ଆଗରୁ ଓ ମୁଁ ତା' ପାଖରେ ଯାଇ ହାଜର ହେବା ପୂର୍ବରୁ ସେ କଦଳୀଟାଏ ହେଉ ବା ପିଜୁଳୀଟାଏ ହେଉ କିଣି ତା ପୁରୁଣା କୋଟ୍ ପକେଟରେ ପୂରେଇଥାଏ । ଟାଉନହଲ୍ ବାରଣ୍ଡାକୁ ଫେରି ଆସିବା ପରେ ସେ ସେତକ ଯେତେବେଳେ ମୋତେ ଦିଏ, ମୁଁ ଖୁସି

ହୋଇ ସେତକ ତା ହାତରୁ ନେଇ ଏକ ବାତ୍ସଲ୍ୟ କଥନରେ ତାଙ୍କୁ ଅନୁରୋଧ କରେ, "ମଉସା, ତମେ ଅଧା ନିଅ—ମତେ ଅଧା ଦିଅ ।"

"ଆରେ ମୁଁ କ'ଣ ପିଲା ହୋଇଛି ?" ତାପରେ ସେ ପୁଣି କହେ, "ହଉ, ଦେ ଆଣ୍ !"

ମୁଁ କଦଳୀ ବା ପିଜୁଳୀରୁ ଅଧା ଦାନ୍ତରେ କାମୁଡ଼ ଯେତେବେଳେ ତାଙ୍କୁ ଖୁଆଇ ଦିଏ ସେତେବେଳେ ତାର କଳା ଦାଢ଼ିଭରା ମୁହଁ ଭିତରୁ ଏକ ହସ ଫୁଟି ପଦାକୁ ବାହାରି ଆସେ ନିରୋଗଦେହୀ ମେଘର ବୁକୁରେ ବିଦ୍ୟୁତର ତରବାରୀ ନାଚିଲା ପରି । ଏହିମିତି ପ୍ରତିଦିନ, ପ୍ରତି ମୁହୂର୍ତ୍ତରେ ଆମର ଆତ୍ମୀୟତା, ଏକାତ୍ମତା ବଢ଼ି ଉଠୁଥିଲା ଧରଣୀର ପଥପ୍ରାନ୍ତରେ । ବୈଚିତ୍ର୍ୟମୟ, ବିସ୍ମୟକର ସେ ଅନୁଭୂତି, ସେ କାହାଣୀ ।

ଦିନେ ରାତିରେ ସମସ୍ତେ ଶୋଇପଡ଼ିଲା ପରେ ଅନ୍ଧ ମୋତେ କହିଲା, ତା ଗୋଡ଼ ଦି'ଟା ଘାରି ବନ୍ଧୁଛି । ସେ କାନ୍ଥ ଆଡ଼କୁ ମୁହଁ କରି ଶୋଇଲା । ମୁଁ ତା ପାଦକୁ ହାତରେ ଚିପି ଦେବାକୁ ଆରମ୍ଭ କଲି । ତାହା ଯଥେଷ୍ଟ ନ ହେବାରୁ ସେ କହିଲା ମୁଁ ତା ପାଦ ଉପରେ ଠିଆ ହେବାକୁ । ସେ ଶାନ୍ତିରେ ଏକ ନିଃଶ୍ୱାସ ପକାଇ ଉଠି ବସିଲା । କେଜାଣି କାହିଁକି ମୋତେ ପାଖକୁ ଡାକି ଫୁସ୍ ଫୁସ୍ କରି କହିଲା, "ଶୁଣ୍, ମୋ କୋଟ୍ ପକେଟରେ କେତେ ଟଙ୍କା ଅଛି ଜାଣୁ ? ତିନିଶହ ଟଙ୍କା । ଏ କଥା କେହି ଜାଣନ୍ତି ନାହିଁ । ପଇସାଏ ଅଧଲାଏ ମାଗି ମୁଁ ଏତକ ଜମାଇଛି । ତତେ ଆଜି କହିଲି । ଭୁଲରେ ଏକଥା କାହାକୁ କହିବୁ ନାହିଁଟି ! ତୁ ମୋର ସବୁ । ଆଉ କିଏ ଅଛି ଯେ ସେଟାକୁ କାହାକୁ ଦେବି ?"

ତାର ଏପରି କଥନରେ ମୁଁ ଆଶ୍ଚର୍ଯ୍ୟ ହୋଇଥିଲି ସେଦିନ । ତିନିଶହ ଟଙ୍କା···ବାପ୍‌ରେ ବାପ୍ ! ତିନି ଗୁଣ ପରସ୍ତ କାଗଜ ଆଉ କନାରେ

ଗୁଡ଼ିଆ ହୋଇ ତା କୋଟ୍‌ର ଭିତର ପକେଟ୍‌ରେ ତାହା ସୁରକ୍ଷିତ ହୋଇଥିଲା ନୋଟ୍ ଆକାରରେ । ଏତକ ଦେଖିଲା ଓ ଶୁଣିଲା ପରେ ମୁଁ ତାକୁ କହିଥିଲି, "ମଉସା, ତମ ପାଖରେ ଏତେ ପଇସା ଥାଉ ଥାଉ ତମେ ସବୁଦିନେ କଟରି ଯାଉଚ କାହିଁକି ?"

ଉତ୍ତର ପାଇଥିଲି, "ଆରେ, ବସି ଖାଇଲେ ନଈବାଲି ସରେ । ମୁଁ ତ ଅନ୍ଧଟାଏ, ପୁଣି ପ୍ରଭୁ ଚତେଇ ଆଣି ମୋ ହାତରେ ଦେଇଛନ୍ତି···ତୁ ମଣିଷ ହବୁ କେମିତି ?"

ଆଜିର ରବି ସିଂ ମନ ଦେଇ ଯେତେବେଳେ ଏହି କଥାଟିକୁ ଭାବୁଛି, ସେତେବେଳେ ଆଜିର କୁତ୍ସିତ ସମାଜ, ତାର ଯାନ୍ତ୍ରିକ ଜୀବନ ଉପରେ ହାଣିବାକୁ ଇଚ୍ଛା ହେଉଛି କୋଟି କୋଟି ପଦାଘାତ—ତାର ବଡ଼ପଣ୍ଡା-ମାନଙ୍କ ରକ୍ତରେ ଲାଲେ ଲାଲ୍ କରିବାକୁ ଇଚ୍ଛା ହେଉଛି ସମାଜର ଦରବାରକୁ । ଅନାବଶ୍ୟକ ଏ ସମାଜ, ତାର ନୀତିନିୟମ, ଅବାଞ୍ଛିତ ତାର ବଡ଼ପଣ୍ଡାମାନେ । ଗୋଟିଏ ଅନ୍ଧ ସେହି ଆହ୍ଲାଦକନ୍ଦ ଯିଏ ଏକଦା ଛୁଟିକି ପଡ଼ିଥିଲା ଏକ ନ୍ୟକ୍କାରଜନକ ଅନଳକଣା ସଦୃଶ କଟକ ଟାଉନ୍‌ହଲ ବାରଣ୍ଡାରେ— ଠକ, ଚୋର, ତସ୍କର, କୁଷ୍ଠରୋଗୀ ବାରବୁଲାଙ୍କ ମେଳରେ । ତା'ର ସତ୍ତ୍ୱ ଯଦି ପୃଥିବୀର ମାନବସମାଜ ଉପରେ ନିଜର ମାନବିକ ଶାସନ ଜାରି କରନ୍ତା ଆଉ ମୁଁ ଯଦି ହୁଅନ୍ତି ତା ସେନାବାହିନୀର ପ୍ରଧାନ ସେନାପତି ତାହେଲେ କାଳ୍ପନିକ "ସ୍ୱର୍ଗ"ର ସେବାଦାସୀ ହୁଅନ୍ତା ନାହିଁ ମାତା ମେଦିନୀ ବସୁମତୀ—ପ୍ରଚଣ୍ଡ କମାଣ ଗର୍ଜନ, ଅଗ୍ନିବୋଳା ବାରୁଦର ଧୂମ ଭିତରେ "ସ୍ୱର୍ଗର" ଅସ୍ତିତ୍ୱକୁ ଛିନ୍‌ଛତ୍ର କରି ଏକ ସାମ୍ୟଶାନ୍ତିର ଧରାସ୍ୱର୍ଗର ନିର୍ମାଣ ହୁଅନ୍ତା ଆମର ପ୍ରଥମ କର୍ତ୍ତବ୍ୟ । ମଣିଷ କାହାକୁ କହନ୍ତି, ମନୀଷା କି ଧରଣର ବସ୍ତୁ, ଯଦି ଜାଣିବାକୁ ଚାହିଁ ତାହେଲେ ହେ ଗବେଷକ, ହେ ପ୍ରେତତତ୍ତ୍ୱର ଭକ୍ତ, ହେ ଅଦେହୀ ଆତ୍ମାର ବିଶ୍ୱାସୀର ଦଳ, ପଣ୍ଡିତ ବର୍ଗ, ସ୍ୱର୍ଗତ ଅନ୍ଧ ଆହ୍ଲାଦକନ୍ଦର ଭାବମୂର୍ତ୍ତିକୁ ଦେଖ, ତାକୁ ଅଧ୍ୟୟନ କର, ମୋ ସହିତ ଆସ, ମୁଁ ତମମାନଙ୍କୁ ନେଇଯିବି କଟକ ଟାଉନ୍‌ହଲର ସେହି ବାରଣ୍ଡାକୁ—ଯେଉଁଠି ସିଏ ବସିଥିଲା—ସେହି ସ୍ଥାନକୁ ପଚାର, ସବୁ ସ୍ମୃତି, ସବୁ ଅତୀତ ସେଠି ଗଚ୍ଛିତ ଅଛି : ମୁଁ ଆଜି ଶ୍ରେଣୀ ସଂଗ୍ରାମ ତଥା ଧନବାଦର ସଶସ୍ତ୍ର ରକ୍ତବିପ୍ଳବ ଏବଂ ଏକ ସାମ୍ୟବାଦୀ ନବଭାରତ

ଜଗତରେ ଅକ୍ଲାନ୍ତ ବିଶ୍ୱାସୀ । ଆଜ ନହେଲେ ବି କାଲି, ମୋ ଅନ୍ତେ, ମୋର ବଂଶଧରଙ୍କ ଅନ୍ତେ ଦିନେ ନା ଦିନେ ଭାରତବର୍ଷ ବିପ୍ଳବର କଲ୍ଲୋଳିତ ପାରାବାରରେ ଅବଗାହନ କରିବ, କାରଣ ତାହାହିଁ ମାନବ ଜୀବନର ଏକମାତ୍ର 'ମହୋତ୍ସବ' । ଅନାଗତ ଭାରତୀୟ ମହାବିପ୍ଳବର ସେହି ଲାଲ ଅଗ୍ରବାହିନୀ, ତମମାନଙ୍କ ପାଇଁ ଏ ଅନୁରୋଧ, ଏ ଆବେଦନ ବାଡ଼ିଗଲି, ଯଦି ପାର, ମ.ନବିକତାର, ମଣିଷ ପଣିଆର, ହୃଦୟବତ୍ତାର ମହାନ୍ ପୀଠମିଢ଼ି ସାମାନ୍ୟ ଅଖ୍ୟାତ ସେହି ଅନ୍ଧ ଆଦିକନ୍ଦର ମନୀଷାକୁ ସମ୍ମାନ ଦେବାରେ କୌଣସି କାର୍ପଣ୍ୟ କରିବ ନାହିଁ ଏବଂ କଟକ ଟାଉନହଲର ସେହି ବାରେଣ୍ଡାକୁ ରୂପାନ୍ତରିତ କରିବ ମାନବିକତାର ମହାନ ପୀଠରେ । ତାହାହିଁ ଥିଲା ମୋ ବିପ୍ଳବୀ କାବ୍ୟ ଦିବାକରର ଉଦୟ-ଦିଗନ୍ତ । ଟାଉନ୍‌ହଲ ବାରଣ୍ଡା, ଅନ୍ଧ ଆଦିକନ୍ଦ ଆଉ କବି ରବି ସିଂ ଏ ତିନି ବସ୍ତୁକୁ କଥାର କରି ବିଗ୍ଭର କଲେ ଗୁରୁତର ପ୍ରମାଦ ଘଟିବ ସିନା !

ଦିନକର କଥା ।

କଟକର ହତାରେ ଆଦି ମଉସାକୁ ଛାଡ଼ି ଦେଇ ମୁଁ ଚୌଧୁରୀ ବଜାର ବାଟେ ରଘୁନାଥଜୀଉ ମନ୍ଦିରକୁ ଯାଉଛି, ଆମ ଗାଁର କୃଷ୍ଣଚନ୍ଦ୍ର ବେହେରା ଦେଖା ହେଲେ ବାଟରେ । ତାଙ୍କର ଠାରୁ ଶୁଣିଲି ମୋ ବଡ଼ଭାଇ ଯମୁନାନନ୍ଦ ଛୁଟିରେ ଘରକୁ ଆସିଛନ୍ତି । ହଠାତ୍ ମନରେ କ୍ଷୋଭ, ଦୁଃଖ, କ୍ରୋଧ ସବୁକିଛି ଉଙ୍କି ମାରିଲା । ଭାବିଲି ଗାଁକୁ ଯାଇ ଭାଇଙ୍କ ଆଗରେ ଖୁଡ଼ୀ ମୋ ପ୍ରତି କରିଥିବା ଅତ୍ୟାଚାର, ମୋର ଘର ଛାଡ଼ିବାର କାହାଣୀ ସବୁ କହିଆସିବି ।

ମଙ୍ଗୁଳିଦିନ ପର ସନ୍ଧ୍ୟା ପୂର୍ବରୁ ସେଦିନ ଆଦି ମଉସାକୁ କଟକରୁ ଆଣି ଟାଉନ୍‌ହଲ ବାରଣ୍ଡାରେ ପହଞ୍ଚାଇଲି । ରାତି ହେଲା । ତା ଠାରୁ ପଇସା ନେଇ ନିଜେ ଖାଇ ତା ପାଇଁ ଖାଇବାକୁ ଆଣିଦେଇ ଶୋଇବାକୁ ଗଲାବେଳେ କହିଲି, "ମଉସା, ମୁଁ କାଲି ସକାଳୁ ଟିକେ ଆମ ଗାଁକୁ ଯିବି । ମୋ ଭାଇ ଛୁଟିରେ ଆସିଛନ୍ତି । ତାଙ୍କୁ ସବୁ କଥା କହି ପରଦିନ ଫେରିଆସିବି । ତମେ ଗୋଟେ ଦିନ କଟକ ଯାଇ ପାରିବ ନାହିଁ ?"

"ବାବାରେ, ପୋଡ଼ଗଲା ତଅଣରେ ଆଉ ସୁଆଦ ନ ଥାଏ। କାହିଁକି ଆଜ ଯେଠିକି ଯିବୁ? ସେମାନେ ମଣିଷ ନୁହଁନ୍ତି। ଯାଆନା। କିଛି ଲାଭ ନାହିଁ।"

"ହିଁ, ମଉସା: ସତ କଥା। ହେଲେ ଭାଇତ ସବୁକଥା ଜାଣନ୍ତି ନାହିଁ। ଅରେ ଯାଇ ତାଙ୍କୁ ସବୁକଥା କହି ପରେଲଇ ଆସିବ। ତମକୁ ଛାଡ଼ି ମୁଁ କଣ ରହିପାରିବ ?"

ଦେଖିଲି ନୀରବ ରହିଲା ଅନ୍ଧ। କେବଳ ନିର୍ଗତ କଲା ଗୋଟାଏ ଦୀର୍ଘଶ୍ୱାସ। କେବଳ କହିଲା, "ହ—ଉ ତୋ ଇଚ୍ଛା···"

ରାତି ପାହି ସକାଳ ହେଲା।

ଟାଉନ୍‌ହଲ ପୋଖରୀରେ ଟାଧୋଇ ପଡ଼ି ଆହ ମଉସାକୁ କିଛି ଚୂଡ଼ା ଗୁଡ଼ ଆଣି ଦେଇ, ନିଜେ ସେଥିରୁ କିଛି ଖାଇ ପ୍ରସ୍ତୁତ ହେଲି। ସେଦିନ ଥିଲା ଶୁକ୍ରବାର। ମୋର ବର୍ଣ୍ଣବୋଧ, ସିଲଟ, ଖଡ଼ି ଆଦି ରଖିବା ପାଇଁ ଆହ ମଉସା ମୋତେ କିଣି ଦେଇଥିଲା କନାର ଗୋଟାଏ ଥଳି। ସେ ଥଳିଟିକୁ ତା ଜମା ଧରାଇ ଦେଇ ବାହାରିଲି ବେଳେ ଅନ୍ଧ ଲୁଗାଟଙ୍କାର ଖାଲି ଖୁଉକର ଗୋଟିଏ ପୂଡ଼ିଆ ମୋ ଆଡ଼କୁ ବଢ଼ାଇ ଦେଲା ଯିବା ଆସିବା ବାଟ ଖର୍ଚ୍ଚ ପାଇଁ। କହିଲା, "ତୁସିଆର ହୋଇ ଯିବୁ। କାଲି ନିଶ୍ଚେ ଆସି ପହଞ୍ଚିବୁ ସଞ୍ଜ ଆଗରୁ। ଏଁ? ମନେ ରହିଲା?"

"ହିଁ।" ବୋଲି କହି ପାଦ ବଢ଼େଇଲି ଆଗକୁ।

ଆହ ମଉସା ବସିଥିଲା ଟାଉନ୍‌ହଲ ବାରଣ୍ଡାରେ ସେଇ କାନ୍ଥକୁ ଆଉଜି।

ଗାଁରେ ପହଞ୍ଚିଲା ବେଳକୁ ସୂର୍ଯ୍ୟ ଠିକ୍ ମଧ୍ୟ ଗଗନରେ।

ଘରେ ପହଞ୍ଚି ଭାଇଙ୍କୁ ଦେଖି ଭେଁ ଭେଁ ହୋଇ ମୁଁ କାନ୍ଦି ଉଠିଲି। ଆଇ ପଡ଼ିଶା, ପିଲା ମାଇପେ ସବୁ ଜମା ହୋଇଗଲେ। ନାନା ଭଗର

ଠାକୁରଅା ସାନ୍ତ୍ୱନା ଦେଲେ ଭାଇ, ଖୁଡ଼ୀ ମୋର ଘରେ ପହଞ୍ଚିବାରେ ବଡ଼ ବିବ୍ରତ ହୋଇ ପଡ଼ିଥିବା ଲକ୍ଷ୍ୟ କଲି—କାରଣ, ସତ୍ୟ ପ୍ରକାଶ ପାଇଯିବ । ସଞ୍ଜ ବୁଡ଼ ବିତି ଆସିଲା । ସବୁକଥା ଗୋଟି ଗୋଟି କରି ବର୍ଣ୍ଣନା କଲି ଭାଇଙ୍କ ଆଗରେ । ଖୁଡ଼ୀ କିନ୍ତୁ ସବୁକଥା ଅସ୍ୱୀକାର କରି ଚାଲିଥାଏ । ଶେଷରେ ଦେଖିଲି, ଭାଇ ସବୁ ଦୋଷକୁ ମୋ ମୁଣ୍ଡରେ ଚାପିଲେ । ଅନୁତାପ ଆସିଲା, ଆଦି ମଉସା ଠିକ୍ କହିଥିଲେ—ପୋଡ଼ଗଲା ତଅଣରେ ସୁଆଦ ନ ଥାଏ । ନଆସିଥିଲେ ଭଲ ହୋଇଥାନ୍ତା । ମନେ ମନେ ଦୌଡ଼ି ଆସିଲି ମୁହୂର୍ତ୍ତକ ଭିତରେ ଟାଉନ୍‌ହଲ ବାରେଣ୍ଡାକୁ । ଅନ୍ଧକାର ଭିତରେ ଆଖି ପୂରାଇ ଦେଖି-ନେଲି ଆଦି ମଉସାକୁ । ସେ ବସିଛନ୍ତି କାନ୍ଥକୁ ଆଉଜି ।

ରାତିସାରା ନିଦ ଆସିଲା ନାହିଁ ।

ସକାଳ ହେଲା—ଶନିବାର । ପ୍ରସ୍ତୁତ ହେଲି କଟକ ଫେରିବି । କିନ୍ତୁ ଭାଇଙ୍କର ପ୍ରବଳ ବାଧା ଆଜି ରହିଯା, ବୁଝିବା ସବୁ କଥା, ମନରୁ ଅହଙ୍କାର ଛାଡ଼ ଇତ୍ୟାଦି । ବାଧ୍ୟ ହୋଇ ରହିଲି । କିନ୍ତୁ ଅନବରତ କାନ ପାଖରେ ଧ୍ୱନିତ ହେଉଥିଲା ଆଦି ମଉସାର ଡାକ । ଶନିବାର ଦିନ ତମାମ୍ ସେଇ ଚେଷ୍ଟା, ସବୁ ଦୋଷ ମୋର ।

ରବିବାର ଅତି ପ୍ରତ୍ୟୁଷ ।

କେହି ଉଠିବା ଆଗରୁ ସମସ୍ତଙ୍କ ଅଗୋଚରରେ ବାହାରି ଆସିଲି ଘରୁ । ଭାରାକ୍ରାନ୍ତ ମନ ନେଇ ଓଳିଆରରେ ପହଞ୍ଚିଲି ବେଳକୁ ସଙ୍ଗେ ସଙ୍ଗେ ପ୍ରଥମ କଟକ ବସ୍ ମିଳିଗଲା । ବସ୍‌ଠାରୁ କୋଟି କୋଟି ଗୁଣ ବେଗରେ ମନ ଦୌଡ଼ୁଥାଏ ଆଦି ମଉସା ପାଖକୁ । ଚନ୍ଦରପୁର ପାଖରେ ଖରାପ ହେଲା ବସ । ମରାମତି କାମ ସରି କଟକ ପହଞ୍ଚିଲା ବେଳକୁ ଦିନ ୨ଟା । ଗୌରିଶଙ୍କର ପାର୍କ ପାଖରୁ ବସ୍‌ରୁ ଦ୍ରୁତଗତିରେ ଅଣନିଶ୍ୱାସୀ ହୋଇ ଛୁଟିଲି ଟାଉନ୍‌ହଲକୁ ।

ମ୍ୟୁନିସିପାଲିଟି ଜୁବୁଲି ମାର୍କେଟ୍‌ର ପ୍ରଧାନ ଫାଟକ ଭିତରେ ପଶି ଟାଉନହଲ ଆଡ଼କୁ ଆଗେଇଲା ବେଳେ ଦୂରରୁ ଦେଖିଲି ମ୍ୟୁନିସିପାଲିଟି

ପୋଖରୀବନ୍ଧ ଗୃହପାଖରେ ଅସଂଖ୍ୟ ମଣିଷର ସମାଗମ। ଭାବିଲି, ମାଛଧରା ହେଉଛି। ସେ ଆଡ଼କୁ ଆଉ ନଜର ନଦେଇ ଟାଉନହଲ ବାରଣ୍ଡାର ଅତି ପରିଚିତ ଆମର ଆଶ୍ରୟ ସ୍ଥାନରେ ଯାଇ ପହଞ୍ଚି ଦେଖିଲି ଆଉ ମଞ୍ଜୁସାର ଚିହ୍ନବର୍ଣ୍ଣ ନାହିଁ। ଆଜି ରବିବାର। କଚେରି ବନ୍ଦ। ସିଏତ ଏଠି ବସିରହିବା କଥା। ଗଲା କୁଆଡ଼େ? ତା ଜନକପକ୍ଷ ବି ତ ନାହିଁ। କଥା କ'ଣ? ଅବାକ୍ ବିସ୍ମୟରେ ବାରଣ୍ଡା ତଳକୁ ଓହ୍ଲାଇ ଟାଉନହଲ ଚତୁଃପାର୍ଶ୍ୱରେ ଖୋଜିଲି, କିନ୍ତୁ ପାଇଲି ନାହିଁ। ଧୀରେ ଧୀରେ ମ୍ୟୁନିସିପାଲିଟି ପୋଖରୀ ବନ୍ଧରେ ଜମିଥିବା ଅସଂଖ୍ୟ ମଣିଷର ଭିଡ଼ ପାଖକୁ ଆସି ଦେଖିଲି ଆଉ ମଞ୍ଜୁସାର ଦେହ ପରିଚିତ ଚିଣ ଡ଼ବା, ବଂକୁଲିକାଡ଼ି, ମଇଳା ଚିରା ରଫ୍କରା ଫ୍ରୋକ୍ ଆଉ କନାର ପୁଟୁଳା ସବୁ ବିପର୍ଯ୍ୟସ୍ତ ହୋଇ ପଡ଼ିଛି ପୋଖରୀ ବନ୍ଧର ସିମେଣ୍ଟ ବେଂଚ୍ ପାଖରେ। ଭିଡ ଫାଙ୍କରୁ ଦେଖିଲି ପୋଖରୀ ମଝିରେ ଭାସୁଛି ଆଉ ମଞ୍ଜୁସାର ଶବ। ହଠାତ୍ ମ୍ୟୁନିସିପାଲିଟି-ପୋଖରୀ ବନ୍ଧରେ ଜମିଥିବା ମଣିଷ, ପୋଖରୀର ପାଣି, ମୁଣ୍ଡଉପରର ଆକାଶ, ପାଦ ତଳର ମାଟି ପ୍ରବଳ ବେଗରେ ଦୋହଲିଲେ, ମାତ୍ର ଟାଉନ୍‌ହଲଟା ମନେ ହେଲା ଆର୍ତ୍ତନାଦ କରି ଭୂଷୁଡ଼ି ପଡ଼ୁଛି, ମୋ ଆଖିରୁ ବାହାରି ଗଲେ ପଲେ ଜୁଳୁଜୁଳିଆ ପୋକ···ଗୋଟାଏ ଆର୍ତ୍ତ ଚିତ୍କାର ହୃଦପିଣ୍ଡ ମୋ କଣ୍ଠ ଫଟାଇ ବାହାରି ଆସିଥିଲା! ତା' ନ ହେଲେ ଜମିଥିବା ଦେଖଣାହାରୀମାନଙ୍କର ଦୃଷ୍ଟି ଏକାବେଳକେ ମୋ ଉପରେ ଆସି ନିବଦ୍ଧ ହେଲା କାହିଁକି? କାନରେ ବାଜିଥିଲା, କିଏ ଜଣେ ପଛରୁ କହିବାର ଶୁଣିଥିଲି, "ଇଏ ତା ପୁଅ।"

୩୩/୩୪ ବର୍ଷ ତଳର ଏହି ମର୍ମାନ୍ତିକ ଘଟଣା, ଏହି ବେଦନାଦାୟକ ନାଟକର କୌଣସି ଆଦିଅନ୍ତ ମୁଁ ପାଇଲି ନାହିଁ ଆଜଯାଏଁ। ୩୩/୩୪ବର୍ଷ ପରେ ମୁଁ ଆଜି ତମକୁ ପଚାରୁଛି ତମେ ସେଦିନ କ'ଣ କଲ? କାହିଁକି ଏମିତି କଲ? ତମ ପାଖରୁ କେତୋଟି ଘଣ୍ଟା ମୋର ଅନୁପସ୍ଥିତି ତମକୁ କ'ଣ ଏତେ ମୃତ୍ୟୁର ହିମ ଶୀତଳ କୋଳକୁ ସତରେ ଠେଲି ଦେଇଥିଲା ସେଦିନ? ମାନୁଛି, ଅମାନିଆ ହୋଇ "ପୋଡ଼ିଗଲା ଭାଅଣ"ର ସ୍ୱାଦ ବୁଝିବା ଲାଗି ମୁଁ ତମ କଥାର ଅବମାନନା କରିଥିଲି। ଯଦି ତମେ ସେଥିରେ ଦୁଃଖିତ ହୋଇଥିଲ, ତା' ହେଲେ ମୁଁ ତମ ପାଖକୁ ଫେରି ଆସିଲା ପରେ ତମେ ମୋତେ ଚଟକାଘାତ କରି ପାରିଥାଅନ୍ତ। ବିନା ଆପତ୍ତିରେ ମୁଁ ତାକୁ ମାନି ନେଇଥାଆନ୍ତି ମଞ୍ଜୁସା!

ଫେରିବାକୁ ଗୋଟାଏ ଦିନ ଡେରି···ସେଥିରେ ତମେ ଆରମ୍ଭ କଲ ତମର ମହାଯାତ୍ରା ! ଯଦି ତମର ସେ ମହାଯାତ୍ରା ମୂଳରେ ଏହି କାରଣ ନିହିତ ନାହିଁ, ତା'ହେଲେ ଆଉ କ'ଣ କାରଣ ଅଛି କୁହ । ତମେ ଏକୁଟିଆ ପୋଖରୀକୁ ଯାଇଥିଲ କାହିଁକି ? ସାଙ୍ଗରେ ତମର ଜନୈକପଦ ବା ଗଲ କମିତ ? ତମ କୋଟ୍ ପକେଟରେ ମୋର "ମଣିଷ ହେବା ପାଇଁ" ଗଚ୍ଛିତ ଥିବା ଭିକ୍ଷାର୍ଜିତ ତିନିଶହ ଟଙ୍କାର ନୋଟ୍ ପାଇ କୌଣସି ଦୁଷ୍କୃତକାରୀ କ'ଣ ତମକୁ ହତ୍ୟା କଲେ ? ମଉସା, ଚିରକାଳ ଲାଗି ଅଜ୍ଞାତ, ଅନାବିଷ୍କୃତ ରହିଗଲା ତମ ତିରୋଧାନର କାହାଣୀ । ମଉସା, ତମେ ଜାଣ, ଜୀବନଟା ମୋର ଏକ ସାକ୍ଷାତ କ୍ଷତିର ଖତିଆନ୍ । ତମେ ସେହି ଖତିଆନରେ ଆଉ ଏକ ବଡ଼, ଅପୂରଣୀୟ କ୍ଷତିର ଅନୁଚ୍ଛେଦ । କ'ଣ ପାଇଲ ଏଥିରୁ ? ଅନାଥକୁ ଅନାଥ କରିବାରେ କି ଲାଭ ହେଲା କାହାର ? ହେ ମହାପ୍ରାଣ ! ହେ ମାନବିକ ମୂଲ୍ୟବୋଧର ଗୌରବ ଧାରକ ! ୩୩/୩୪ବର୍ଷ ତଳେ ମରଣ ତମକୁ ନିଜର କରିନେଇଛି । ତା'ର ବେଦନାତାପୂର୍ଣ୍ଣ ଚିତ୍ର, ତମର ମୋର ଅବିସ୍ମରଣୀ ନୈକଟ୍ୟର ସ୍ମୃତି-ଚିତ୍ରକୁ ଆଙ୍କିବା ପାଇଁ ମୋ କଲମ ଆଜି ଅକ୍ଷମ—ମୁଁ ହରାଇ ବସିଛି ସମସ୍ତ ଭାଷା । ବିଦ୍ୟୁତ୍‌ର ଝଲକ ପରି ଦେଖିବାକୁ ତମକୁ ଭେଟିଥିଲି ପ୍ରଚଣ୍ଡ ଏକ କାଳବୈଶାଖୀର ସାମିଆନା ତଳେ । ତମେ ହୋଇ ଉଠିଥିଲ ମୋର ଭରସା··· ମରୁଯାତ୍ରୀର ଏକ ସବୁଜ ମରୁଦ୍ୟାନ । ତମେ ହଠାତ୍ ଅଦୃଶ୍ୟ ହେଲ ।··· ତା' ପରେ ପ୍ରଚଣ୍ଡ ମେଘ-ଗର୍ଜନ, ପ୍ରବଳ ବର୍ଷାର···ବାତ୍ୟାତାଡ଼ ଝଡ଼··· ତୋଫାନ । ତମକୁ ଯେତେବେଳେ ପାଇଥିଲି, ତମକୁ ଯେତେବେଳେ ହଜାଇଲି ସେତେବେଳେ ଅଳ୍ପ ଦିନ ମୋର ନଥିଲା କବିତା । ତଥାପି ମନେ ପଡ଼ୁଛି, ତମର ଦାନ ଧନରେ କିଣିଥିବା ସିଲଟରେ ତମ ଠାରୁ ତମର କାରଣ ସାଙ୍ଗରେ ବିଦାୟ ନେଇ ଯେଉଁ ଦିନ ନିଜ ଗାଁକୁ ଗଲି, ତା'ର ଦୁଇଦିନ ଆଗରୁ ଆଠଧାଡ଼ି କବିତାଟିଏ ଲେଖିଥିଲି । ତାକୁ ସିଲଟରୁ ନ ଲିଭାଇ ସିଲଟ ସହିତ କନା ଥଳି ଭିତରେ ପୂରାଇ ତମ ଜିମା ଦେଇ ଯାଇଥିଲି । ଫେରିଲା ପରେ ତମକୁ ସେ କବିତାଟିକୁ ଶୁଣାଇ ଥାଆନ୍ତି । କିନ୍ତୁ ତା' ହେଲା ନାହିଁ, ତମେ ତାହା ଶୁଣିଲ ନାହିଁ—ଗୁଳିଗଲ । ଆଜି ୩୩/୩୪ବର୍ଷ ପରେ ମୋର ଜରାଗ୍ରସ୍ତ ସ୍ମୃତିକୋଷରୁ ସେଇ ଆଠ ଧାଡ଼ି କବିତା ତୁମକୁ ଶୁଣାଉଛି—

"ଦାଡ଼ିଆ ମୋର ଆଦ୍ୱ ମଉସା
ପାଏ ସେ ମନେ ଭଲ
ନ ଦେଖି ମନେ ପାଗଳ ହୁଏ
ମୋ ପାଇଁ କଣେ ଫଲ ।
ମୁହଁରେ ତା'ର ବଡ଼ିଆ ଦାଢ଼ି
ବାଡ଼ ମୁଁ ତା'ର ଧରେ
କଣରେ ନେଇ ତାକୁ ମୁଁ ଆଣେ
ନିଇତ ସଞ୍ଜ ହେଲେ ।"

ମଉସା ! ତମର ବଦାପ୍ୟର ସେହ୍ନ ଦିନଟି— ମୋ ଜୀବନର ବେଦନା-ଦାୟକ ସେହ୍ନ ଶୋକାର୍ତ୍ତ ରବବାର—ଯାହା ପରବର୍ତ୍ତୀକାଳରେ ଈଶ୍ୱରଙ୍କ ସତ୍ତା ବିରୁଦ୍ଧରେ ଘୋଷଣା କରିଥିଲା ପ୍ରଚଣ୍ଡତମ ଏକ ବିଦ୍ରୋହ—ମାତ୍ର ୨୪ଘଣ୍ଟା ଭିତରେ "ଭଗବାନ"ଙ୍କୁ ଦେଇଥିଲା 'ଚରମପତ୍ର' ଗୋଲକ ସିଂହାସନ ତ୍ୟାଗ କରିବା ପାଇଁ, ସେଥିରେ ସ୍ୱାକ୍ଷରିତ ହୋଇଥିଲା ଓଡ଼ିଶାର ବାଣୀ-ମୂଳକ । ମୋର ସେହ୍ନ ବିଦ୍ରୋହୀ କାବ୍ୟ ପୁରୁଷ ତା' ପର ଠାରୁ ଆଜି ପର୍ଯ୍ୟନ୍ତ କୋଟି କୋଟି ଜୟ-ପରାଜୟ, ପରାଜୟ-ଜୟ, ପୁନର୍ବାର ପରାଜୟ, ପୁନର୍ବାର ବିଜୟର ଦ୍ୱାନ୍ଦ୍ୱିକ କ୍ଷେତ୍ର ଭିତରେ ଅର୍ଜନ କରିଛି ବିସ୍ମୟକର ସାରସ୍ୱତ ସାଫଲ୍ୟ । ତମେ ଯଦି ଆଜି ଜୀବନ୍ତ ଥାଆନ୍ତ ମଉସା, ଏଥିରେ ତମେହିଁ ହୋଇଥା'ନ୍ତ ଏକାନ୍ତ ସୁଖୀ । ବିପ୍ଳବର ଅଗ୍ନିମୟ ପଥରେ ମୁଁ ଅଜି ହରାଇ ବସିଛି ମୋର ସବୁକିଛି ପାର୍ଥିବ ସମ୍ବଳ । କେବଳ ପୈତୃକ ପ୍ରାଣଟି ବ୍ୟତୀତ ମୋର ଅନ୍ୟ କିଛି ହରାଇବାର ନାହିଁ । ମୁଁ ତମର ସେହ୍ନ ଆଦରର "ବୁଲି"—ଆଜିବି ବୁଲୁଛି । ମୋର ଏହ୍ନ ବୁଲିବା, ଏହ୍ନ ଘୂର୍ଣ୍ଣନ ମୂଳରେ ଅଛି ତମର ପ୍ରଦତ୍ତ ଅପରାନ୍ତ ଇନ୍ଧନ । ଏ ଇନ୍ଧନ କ୍ୱଚିତ ମିଳେ ମଣିଷ ଜୀବନରେ । ଯିଏ ଯାକୁ ପାଏ, ତା'ର ତୃତୀୟ ନୟନ ଖୋଲିଯାଏ । ମୋ ଜୀବନ କାହାଣୀର ଏହ୍ନ ଅଂଶଟିର ପ୍ରଥମ ପାଠିକା ମୋର ସଗ୍ରାମ ନିପୁଣା ସହଧର୍ମିଣୀ, ଯିଏ କି ତମକୁ ନ ଦେଖି ଦେଖିଛି ମୋ ଭାଷା-ବେଦନାର ଅକୂଳ ଦରିଆକୁ, ସେ କହୁଛି, "ତମେ ତାଙ୍କର ସେହ୍ନ ପୁରୁଣା କୋଟ୍ ଖଣ୍ଡିକ ସ୍ମୃତି ଚିହ୍ନ ସ୍ୱରୂପ ରଖି ପାରିଲ ନାହିଁ !!" ମଉସା ! ତମର କି ସ୍ମୃତି ମୁଁ ସେତେବେଳେ ରଖିଥାଆନ୍ତି ? ତମେ ତ ନିଜେ ମୋ ଜୀବନର ମହାସ୍ଥାନ ସ୍ମୃତି !

ତମର ସେଦିନର ଭାସମାନ ଶବ, ତମର ଜନଷଠଣ ସବୁକୁ ଦେଖିଦେଇ ଉଲ୍‌କା ବେଗରେ ସେଠୁ ଧାବିତ ହୋଇଥିଲି ବୁଦ୍ଧମାଚୌକ ଆଡ଼କୁ । କାରଣ, ସେ ଦୃଶ୍ୟ ଦେଖି ପାରିବି ନାହିଁ ବୋଲି । ଯଦି ସେତେବେଳେ ଜାଣି ପାରିଥାନ୍ତି ତମର ମହାର୍ଘ ଆଶୀର୍ବାଦ ମୋତେ କାବ୍ୟଗଗନର ଅଧିକାରୀ କରିବ, ତମ ଅନ୍ତେ ବି ମୁଁ "ମଣିଷ ହେବି", ତାହାହେଲେ ତମର ସେହି ଝିଣଡ଼ିବା, ବାଡ଼ି, କୋଠ୍ ସବୁକୁ ସାଇତି ରଖିଥାନ୍ତି ।

ଆଦି ମଞ୍ଜୁଷା, ପ୍ରଶାନ୍ତ ନାଅ ! ପ୍ରଶାନ୍ତ ନାଅ ତମ ସାବାଳକ ପ୍ରୌଢ଼ "ବୁଲ୍"ର—କବି ରବି ଫିରି, ତାର ବେପାଳସୀ ଲେଖମାର । ସେ ଆଜି ବି ନିଃସଙ୍ଗ । ହେଲେ ବି ତାର ସାମରିକ ଉଦ୍‌ବେଗ ସମବର୍ଦ୍ଧମାନ । କାରଣ ସେ ପଦାତିକ ।

# ଦ୍ୱିତୀୟ ଅଧ୍ୟାୟ

## ରାଜନୀତିର କଣ୍ଟପଥେ

ଅନ୍ଧ ଆଦି ମଞ୍ଜୁଷାକୁ ଚିରକାଳ ପାଇଁ ହରାଇ, ତା'ର ଭାସମାନ ଶବକୁ ସ୍ୱଚକ୍ଷୁରେ ଦେଖି ଚାଲି ପରେ ଏକମୁହାଁ ହୋଇ ଶୋକାଚ୍ଛନ୍ନ ଅବସ୍ଥାରେ ଦୌଡ଼ି ଦୌଡ଼ି ଯାଇ ପହଞ୍ଚିଥିଲି କଟକ ବୁଦ୍ଧମାଚୌକ ଛକରେ । ସେଦିନ ସାରାରାତି ନ ଶୋଇ, ନ ଖାଇ ମୋତେ କଟାଇବାକୁ ହୋଇଥିଲା ଦର୍ପଣୀ ରଜାଙ୍କ ପ୍ରାସାଦ ବାରଣ୍ଡାରେ । ଭାବନା ପରେ ଭାବନା, ଚିନ୍ତା ପରେ ଚିନ୍ତାର ଢେଉ ମୋ ମନ-ଉପକୂଳରେ ଆଘାତ ହାଣୁଥିଲା ସମାଗତ । ସେ ସମସ୍ତର ମୁଖ୍ୟ କାରଣ ଥିଲା ଅନ୍ଧ ଆଦିକନ୍ଦ ରାଉଳ ବା ମୋର ପ୍ରିୟ 'ଆଦି ମଞ୍ଜୁଷା' ଏବଂ ତା'ର ହଠାତ୍ ବିଦାୟ । ତା'ର ଉଦାରତା, ମଣିଷ ପଣିଆ ବାସ୍ତବରେ ଥିଲା ବିରଳ ଆଉ ବିସ୍ମୟକର ।

ସ୍ତବ୍ଧ ରାତି, ଗତିହୀନ ବାୟୁ, ଏକୁଟିଆ ଦର୍ପଣୀ ପ୍ରାସାଦ ବାରଣ୍ଡାରେ ମୁଣ୍ଡ ତଳେ ଦୁଇ ହାତଟିକୁ ତକିଆ କରି ଚିତ୍ ହୋଇ ସେତେବେଳେ ଭାବ

ଦେଇଥିଲି—ଆଜି ତ ଆଦି ମଞ୍ଜୁସାକୁ ପାଇବି ନାହିଁ, ସେତେବେଳେ ଏକ ବିରାଟ ଶରୀସୃପ-ଶୂନ୍ୟତା ମୋତେ ଗ୍ରାସ କରି ବସୁଥିଲା ରାହୁ ପରି । ଦୈହିକ କଷ୍ଟ, ଅନାହାର, ଉପେକ୍ଷା, ବଞ୍ଚନା, ସବୁକିଛୁ ଅପେକ୍ଷା ସେତେବେଳେ ଏକ ଆତ୍ମିକ ଯନ୍ତ୍ରଣା ମୋର ଅନାଥ ତଥା ଉଦ୍‌ଭ୍ରାନ୍ତ ଜୀବନକୁ ଦୁଷ୍ଟ କୀଟବତ୍ ତିଳ ତିଳ କରି କାଟୁଥିଲା ଅବିରାମ । ଆଜି ସେହି ବିଗତ ଦିନ ଗୁଡ଼ିକର କଥା ଚିନ୍ତାକଲେ ବିଶ୍ୱାସ ହୁଏନା ସେତେବେଳେ ସେ ଯନ୍ତ୍ରଣାକୁ ମୁଁ ସହ୍ୟ କରୁଥିଲି ନା ଅନ୍ୟ କିଏ ? ଘର ନାହିଁ, ଦ୍ୱାର ନାହିଁ, ନିରାପତ୍ତା, ଆଶ୍ରୟ ପୃଷ୍ଠପୋଷକତା କିଛି ହେଲେ ବି ନାହିଁ—ବିନା ବେଢ଼ଷଣରେ ନାଗଅଇଷର ଜଙ୍ଗଲ ପରି ମୁଁ ବଢ଼ି ଉଠିଥିଲି ଏହି ଅର୍ଥ ସର୍ବସ୍ୱ ସମାଜର ଗହ୍ୱରତାରେ । ମହାନ ଆତ୍ମା ଅନ୍ଧ 'ଆଦି ମଞ୍ଜୁସା'କୁ ହରାଇବାର ଶୋକ ଆଜି ଦୁଃଖ ପ୍ରାପ୍ତ ବହୁକାଳ ଯାବତ୍ ଏପରିକି ମୋ ଯୌବନର ପ୍ରାରମ୍ଭ ପର୍ଯ୍ୟନ୍ତ ଅଚ୍ଛନ୍ନ କରି ରଖିଥିଲା ମନଧମ୍ମିଲକକୁ । ଆଜି ମଧ୍ୟ ଜୀବନର ଚଲାପଥରେ ଅନ୍ଧମାନଙ୍କୁ ଦେଖିଲେ ମୋ ମନରେ ଏକ ସ୍ୱତଃସ୍ଫୂର୍ତ୍ତ ସମବେଦନା ଜାଗିବା ସଙ୍ଗେ ସଙ୍ଗେ ସେମାନଙ୍କ ଭିତରୁ ମୁଁ ଆବିଷ୍କାର କରିବାକୁ ଚେଷ୍ଟା କରେ ଅନ୍ଧ ଆଦିକନ୍ଦର ମହାନ୍ ଭାବମୂର୍ତ୍ତିକୁ । ଇସ୍, କି ଭୟାନକ ଭାବରେ ଅଭିଶପ୍ତ ତଥା ଅସହାୟ ସେମାନଙ୍କର ଜୀବନ ସତେ ! ଘନଘୋର ଚକଟା ଅନ୍ଧକାର ସେମାନଙ୍କ ଜୀବନର ଜାଆଁଳା ଭାଇ । ସେମାନଙ୍କ ପ୍ରତି ନିପୁତର ନିଷ୍ଠୁର ପରିହାସ କଥା ଭାବି ବସିଲେ ମନେ ପଡ଼ିଯାଏ ୧୯୮୦ ମସିହାର ପ୍ରାରମ୍ଭରେ ଭାରତର ରାଜଧାନୀ ଦିଲ୍ଲୀ ନଗରୀରେ ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧୀଙ୍କ ବାସଭବନ ଆଗରେ ଅନ୍ଧ ଶୋଭାଯାତ୍ରା ଉପରେ ପୁଲିସର ନିର୍ମମ ଆକ୍ରମଣ ତଥା ଲାଠିମାଡ଼ର ପାଶବିକ ଘଟଣା । ଶାସନ ଯନ୍ତ୍ରର ଏହି ଶୋଚନୀୟ କାପୁରୁଷତାରେ ବ୍ୟଥିତ ହେବା ପରିବର୍ତ୍ତେ ମୋ ପାଖରେ ସାରା ଧରଣୀର ଅନ୍ଧ ସମାଜ ହୋଇଉଠେ ମହନୀୟ ଆଉ ପ୍ରଣମ୍ୟ ।

ହଁ, ଅନ୍ଧ ଆଦିକନ୍ଦର ଉତ୍ତରାଧିକାର ମୋତେ ଦେଇଥିଲା ସାରାଟି ଜୀବନ ଲାଗି ନାନାବିଧ ଉପାଦାନ । ତହିଁରେ ନାନା ଭାବରେ ଧନୀ ହୋଇ-ଥିଲା ମୋର ଅନାଥ ତଥା ଅନାଦୃତ ଯାଯାବର ବାଲ୍ୟକାଳ, ଯୌବନ ଏବଂ କାବ୍ୟ ପୁରୁଷ । ପରବର୍ତ୍ତୀ କାଳରେ ମୋର ଅବଧାରିତ ବିଦ୍ରୋହୀ କବି ଜୀବନରେ ଯେତେବେଳେ ମୁଁ ମୋର ସୃଜନଶୀଳ କାବ୍ୟକର୍ମକୁ ସାମୟିକ

ସ୍ଥଗିତ ରହି ଅନ୍ଧ-ମନସ୍ତତ୍ତ୍ୱ ଉପରେ ଲିଖିତ ବିଶ୍ୱବିଖ୍ୟାତ ସ୍ବନ୍ଦେଶୀୟ ଲେଖକ ଭ୍ଲାଦିମିର କୋରୋଲେଙ୍କୋ (N G. Korolenko)ଙ୍କ ଉପନ୍ୟାସ "The Blind Musician"ର ଓଡ଼ିଆ ଅନୁବାଦରେ ହାତ ଦିଏ, ସେତେବେଳେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କଟକ ଟାଉନ୍‌ହଲ ବାରଣ୍ଡାର ସେହି ଅନ୍ଧ ଆଦକନ୍ଦ ଅର୍ଥାତ୍ ମୋର ଷତ ଠାରୁ ବଳି ଆପଣାର ଆଦ ମଉସାର ତଥା ସମଗ୍ର ଅନ୍ଧ ସମାଜର ଆତ୍ମଯନ୍ତ୍ରଣା, ଭାବମୂର୍ତ୍ତି ମୋ ଆଖି ଆଗରେ ପ୍ରେତ ପରି ନାଚି ଉଠୁଥିଲା ଅବିରାମ । ଫଳରେ "ଅନ୍ଧକାରର ସଙ୍ଗୀତ" ନାମରେ ଓଡ଼ିଆ ଭାଷାରେ ୧୯୭୪ ମସିହା ମାର୍ଚ୍ଚ ମାସରେ କଟକ ଟ୍ରେଡ଼ିଂ କମ୍ପାନୀ ଦ୍ୱାରା ଯେତେବେଳେ 'The Blind Musician"ର ଓଡ଼ିଆ ସଂସ୍କରଣ ପ୍ରକାଶିତ ହୁଏ, ସେତେବେଳେ ଏକ ଗଭୀର ଆତ୍ମପ୍ରଶାନ୍ତି ମୁଁ ଅନୁଭବ କରିଥିଲି । ତା' ପୂର୍ବରୁ ମୋର ଏକ ବଦ୍ଧମୂଳ ଧାରଣା ଥିଲା, ଅନ୍ଧମାନଙ୍କ ଅନ୍ଧକାରମୟ ଦୁନିଆ ଭିତରେ ଏକ ସ୍ଥାୟୀ ଆଲୋକର ଅଭାବବୋଧ ବିରାଜମାନ କରେ । କିନ୍ତୁ ମହାନ ଲେଖକ କୋରୋଲେଙ୍କୋ (୧୮୫୩-୧୯୨୧)ଙ୍କ ସମ୍ପୃକ୍ତ ଉପନ୍ୟାସଟି ମୋର ସେ ଧାରଣାର ସୌଧକୁ ଭାଙ୍ଗି ଛିନ୍ନଛିନ୍ନ କରିଦେଇଥିଲା । ଉପନ୍ୟାସଟିକୁ ପ୍ରାୟ ଦଶଥର ପଢ଼ି ଆତ୍ମସ୍ଥ କରି ପାରିବା ପରେ ଗୋଟିଏ ଜନ୍ମାନ୍ଧ ଶିଶୁର ମାନସିକ ବିକାଶର ଅପରୂପ ମନୋରମ ଆଲେଖ୍ୟଟିକୁ ନିଜ ମାତୃଭାଷାରେ ରୂପାନ୍ତରିତ ବା ଅନୁବାଦ କଲାବେଳେ ମୋର ପୂର୍ବ ପ୍ରତିଷ୍ଠିତ ସେହି ଧାରଣା ଉପରେ ପ୍ରଚଣ୍ଡ ଏକ ଆଘାତ ଅନୁଭବ କଲି ଏହି କାରଣରୁ ଯେ, "ଜନ୍ମାନ୍ଧମାନଙ୍କ କ୍ଷେତ୍ରରେ ଆଲୋକ ପିପାସାର ପ୍ରଶ୍ନ ଉଠି ପାରେନା । ସେମାନେ କେବେହେଲେ ଆଲୋକ ଦେଖି ନାହାନ୍ତି, ସେ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ ସେମାନେ । ସୁତରାଂ ଆଲୋକର ଅଭାବବୋଧ ସେମାନଙ୍କର ରହି ନ ପାରେ ।" ମୋର ଏହି ପ୍ରତିଷ୍ଠିତ ଧାରଣାକୁ ନସ୍ୟାତ୍ କରିଥିଲେ ମହାନ୍ ଲେଖକ କୋରୋଲେଙ୍କୋ ତାଙ୍କ ଉପନ୍ୟାସଟିରେ । ସେଥି-ପାଇଁ ଯେଉଁ କାରଣ ସେ ଦର୍ଶାଇଥିଲେ ତା ସହିତ ମୁଁ ଏକମତ ହୋଇଥିବାର

ଫଳଶ୍ରୁତି ହୋଇଥିଲା "ଅନ୍ଧକାରର ସଙ୍ଗୀତ" ଗ୍ରନ୍ଥର ପ୍ରକାଶନ । ସେ କାରଣଟି ହେଲା, "ଏ ଯୁକ୍ତି ମୋ ପାଖରେ ବିଶ୍ୱାସ୍ୟ ନୁହେଁ । ଚଢେଇମାନଙ୍କ ପରି ଆମ୍ଭେମାନେ କେବେହେଲେ ଉଡ଼ିନାହୁଁ; ତେବେ ନଭୋବିଚରଣର ଅନୁଭୂତି କିପରି ବାର ବାର ଆସେ ସ୍ୱପ୍ନରେ, ସମଗ୍ର ଶୈଶବ ଆଉ ଯୌବନଭରି, ତାହା ଆମେ ସମସ୍ତେ ଜାଣୁ ।" ✻ ✻ (୫) (୬)

ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ସେତେବେଳେ ।

ଡଃ ହରେକୃଷ୍ଣ ମହତାବ ମୁଖ୍ୟମନ୍ତ୍ରୀ ମୋର ମୁକ୍ତିଯୋଦ୍ଧା ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତ ପିତାଙ୍କ ସହିତ ତାଙ୍କର ଘନିଷ୍ଠତା ଥିବାର ଘଟଣା ସେତେବେଳେ ମୋର ସ୍ମୃତିକୁ ଆସିଲା । ସ୍ୱାଧୀନତା ଲାଭ ଆଗରୁ ବାପା ଜୀବିତ ଥିବାବେଳେ କଟକ "ସ୍ୱରାଜ୍ୟ ଆଶ୍ରମରେ" "ମହତାବ ନିବାସ"ରେ ବହୁବାର ବାପାଙ୍କ ସହିତ ଯାଇ ମହତାବଙ୍କ ସହିତ ଦେଖା କରିଛି । ଆଜି ସ୍ୱାଧୀନତା ଲାଭ ପରେ ଯେତେବେଳେ ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ସେତେବେଳେ ଯାଇ ତାଙ୍କୁ ଦେଖା କଲେ ଗୋଟାଏ କିଛି କିନାରା ହୁଏତ ହୋଇପାରେ । ଏହି ଆଶା ନେଇ ଦିନେ ବାରବାଟି ଦୁର୍ଗ ମଧ୍ୟସ୍ଥ ମୁଖ୍ୟମନ୍ତ୍ରୀ ମହତାବଙ୍କ ସରକାରୀ ବାସଭବନକୁ ଯାଇଥିଲି । କିନ୍ତୁ ସଶସ୍ତ୍ର ପ୍ରହରୀ କୌଣସିମତେ ମୋତେ ଭିତରକୁ ପାଦେ ଆଗେଇବାକୁ ଦେଲେନାହିଁ । ଭଗ୍ନ ମନୋରଥ ହୋଇ ଫେରି ତା' ପରଦିନ ଯାଇ ହାଜର ହୋଇଥିଲି ପ୍ରଜାତନ୍ତ୍ର ହତାରେ ଥିବା ସ୍ୱର୍ଗତ ବୀରେନ୍ ମିତ୍ରଙ୍କ ଦରବାରରେ ।

୬ ବୀରେନ୍ ମିତ୍ର : ଯେତେବେଳେ ସ୍ମୃତି ରୋମନ୍ଥନ କରି ଏ ସବୁ ଲେଖିବାକୁ ବସିଛି, ସେତେବେଳେ ବୀରେନ୍ ମିତ୍ର ବା ମୋର ପ୍ରିୟ

---

[୫] "ଅନ୍ଧକାରର ସଙ୍ଗୀତ" (କେସେଲେକୋ) "ଷଷ୍ଠ ସଂସ୍କରଣରେ ଲେଖକର ଭୂମିକା"—ପୃଷ୍ଠା "ଚ" ।

[୬] "ଅନ୍ଧକାରର ସଙ୍ଗୀତ" ଷଷ୍ଠ ସଂସ୍କରଣରେ ଲେଖକର ଭୂମିକା"—ପୃଷ୍ଠା "ଚ" ।

‘ବୀରେନ୍ ଦା’ ନାହାନ୍ତି । ବୀରେନ୍ ମିଶ୍ର ଥିଲେ ସେତେବେଳେ କାହିଁକି ବହୁକାଳଯାବତ୍ ଓଡ଼ିଶା ରାଜନୀତିରେ ମହାପ୍ରତାପୀ ମହତାବଙ୍କ ଡାହାଣ ହାତ ଏବଂ କହିବାକୁ ଗଲେ ଜଣେ ନିରଙ୍କୁଂଶ ମୁକୁଟହୀନ ସମ୍ରାଟ । ସ୍ୱର୍ଗତ ମିଶ୍ର ଯଦିଓ ସେତେବେଳେ କୌଣସି ସରକାରୀ ପଦପଦବୀରେ ଅଧିଷ୍ଠିତ ନଥିଲେ ; କିନ୍ତୁ ତାଙ୍କର ତର୍ଜମା ସଂକେତ ଥିଲା ସରକାରୀକଳ ପାଖରେ ଶିରୋଧାର୍ଯ୍ୟ । ସିଏ ଥିଲେ ପ୍ରଭୁ । ତାଙ୍କ ଆରାମ ଚଉକିକୁ କେନ୍ଦ୍ର କରି ଦିନାନ୍ତ ରାତି ଚାରିଟା ଯାଏଁ ଅଗଣିତ ମଣିଷଙ୍କ ଭିଡ଼ । ନାନା ଧରଣର ମଣିଷ ସେମାନେ । ଯଥା : ଧନୀ, ଦରିଦ୍ର, ବାସ୍ତୁହରା, ବେକାର, ସରକାରୀ ଚାକିରିଆ, ବ୍ୟବସାୟୀ, ପୁଞ୍ଜିପତି ଓଗେର । ନିଜ ନିଜର ସମସ୍ୟା, ସ୍ୱାର୍ଥସିଦ୍ଧି ପାଇଁ ନାନା ଧରଣର ଲୋକଙ୍କର ଦୀର୍ଘ ‘କ୍ୟୁ’ ତାଙ୍କ ଦରବାର ସାମ୍ନାରେ ଆପଣାର ପୁଚ୍ଛ ପିଟେ ଅନବରତ । କେବଳ କଟକ ସହର କାହିଁକି, ସାରା ଓଡ଼ିଶା ଥିଲା ତାଙ୍କ ହାତମୁଠାରେ । ପ୍ରତିଦିନ ସେ ସହସ୍ରାଧିକ ଟଙ୍କା ଲୋକଙ୍କୁ ବିତରଣ କରୁଥିଲେ । ମଦ୍ୟପ ଆସେ ତାଙ୍କ ଠାରୁ ପଇସା ନେଇ ମଦପିଇ ମାତାଲ ହେବା ପାଇଁ, ଦରିଦ୍ର ଗୃହସ୍ଥ ଆସେ କିଛି ନେଲେ ତାର ସେଦିନ ଚୁଲି ଜଳିବ । ବେକାର ଆସି ଗୋଡ଼ଭାଙ୍ଗି ଠିଆହୁଏ ନିଜର କର୍ମସଂସ୍ଥାନ ଲାଗି । ସରକାରୀ କର୍ମଚାରୀମାନେ ଆସନ୍ତି ଆପଣାର ବଦଳି ଓ ପଦୋନ୍ନତି ଆଶା ନେଇ, ବ୍ୟବସାୟୀ ତଥା ପୁଞ୍ଜିପତିମାନେ ଆସନ୍ତି ଶ୍ରୀ ମିଶ୍ରଙ୍କ ସହାୟତାରେ ସରକାରୀ କଳ ଠାରୁ ନାନା ସୁବିଧା ସୁଯୋଗ ହାସଲର ମତଲବ ନେଇ । ତା’ର ପ୍ରତିଦାନ ସ୍ୱରୂପ ସେମାନଙ୍କୁ ଶ୍ରୀ ମିଶ୍ରଙ୍କ ଦରବାରରେ ଆର୍ଥିକ ‘ନଜ୍‌ରନା’ ଦେବାକୁ ପଡ଼େ ପ୍ରଚୁର । ସେହି ‘ନଜ୍‌ରନା’ରୁ ଶ୍ରୀ ମିଶ୍ର ଖୋଲାଖୋଲି ଭାବରେ ଅଭାବୀ, ଅନ୍ନକଷ୍ଟ, ବେକାର, ବସ୍ତିବାଲା ମାନଙ୍କୁ ସର୍ବ ସମକ୍ଷରେ କିଛି କିଛି ଟଙ୍କା ବିତରଣ କରନ୍ତି । ତାଙ୍କ ଦରବାରରୁ ନିୟମିତ ଅର୍ଥପ୍ରାପ୍ତି ଦଳେ ଲୋକଙ୍କର ନିତ୍ୟକର୍ମରେ ପରିଣତ ହୋଇଥିଲା କହିଲେ ଚଳେ । ଫଳରେ ଯୁବକ, ବେକାର, କର୍ମଠ ବସ୍ତିବାଲା ମାନଙ୍କ ଠାରେ ଭିକ୍ଷାଭ୍ୟାସର ଏକ ମହାଦ୍ରୁମର ଶାଖା ପ୍ରଶାଖା ମେଲି ସେମାନଙ୍କ କର୍ମପ୍ରବଣତାକୁ ପଙ୍ଗୁ କରିଦେଇ ସେମାନଙ୍କୁ ସମାଜବିରୋଧୀ ତଥା ଦୁଷ୍କୃତକାରୀ ହେବାରେ ଯଥେଷ୍ଟ ମାଲମସଲା ଯୋଗାଇଥିଲା କହିବା ବାହୁଲ୍ୟ । ବ୍ୟବସାୟୀ ତଥା ପୁଞ୍ଜିପତି-ମାନଙ୍କ ଠାରୁ ଶ୍ରୀ ମିଶ୍ରଙ୍କ ପାଖକୁ ଆସୁଥିବା ପ୍ରଚୁର ଅର୍ଥର ସାମାନ୍ୟ ଏକ ଅଂଶ ଯଦିଓ ‘ନର ନାରାୟଣ’ଙ୍କ ସେବାରେ ଲାଗୁଥିଲା, ତଥାପି ଅପାତ୍ରରେ,

ଅପକର୍ମରେ ତାହା ବହୁ ପରିମାଣରେ ବ୍ୟପ୍ତି ହୋଇଥିବା ମୁଁ ନିଜ ଆଖିରେ ବର୍ଷ ବର୍ଷ ଧରି ଦେଖିଛି । କଟକର ମଦ୍ୟପ ଲଫଙ୍ଗା ବସ୍ତିବାଲା ନିଜର ଦାରିଦ୍ର୍ୟ ପ୍ରଦର୍ଶନୀ ଖୋଲି ଶ୍ରୀ ମିଶ୍ରଙ୍କ ପାଖରେ ପହଞ୍ଚି ଯାହା ପାଏ ସେତିକି ଧରି ସିଧା ସଳଖ ଯାଏ ମଦଭାଟିକୁ । ଯେଉଁଦିନ ମିଶ୍ରଙ୍କ ଦରବାରରୁ ତାକୁ କିଛି ନମିଳେ ସେଦିନ ସେ ବାହାରକୁ ଆସି ବାହାରେ ଶ୍ରୀ ମିଶ୍ରଙ୍କ ମା'କୁ ବୋ' ଅକ୍ଷର-ସର୍ବସ୍ୱ ଅଶ୍ଳୀଳ ସମ୍ବୋଧନ କରି ସ୍ଥାନ ତ୍ୟାଗ କରିବା ଆଗରୁ 'ଦେଖିନେବି' ବୋଲି କହିଯାଏ । ଏ ସବୁ କଥା ଜାଣି ମଧ୍ୟ ଶ୍ରୀ ମିଶ୍ର ତାକୁ ପୁଣି ତା' ପରଦିନ ଟଙ୍କା ଦିଅନ୍ତି । କିନ୍ତୁ ମଜାର କଥା ହେଉଛି, ଏତେ ଦାନ ଧ୍ୟାନ, ଦୟା-କରୁଣା ଭିତରେ ବି ସେ (ଶ୍ରୀ ମିଶ୍ର) କୌଣସି ଲୋକକୁ ଏକକାଳୀନ ଟ୫୦୦ ବା ଟ୧୦୦୦ଙ୍କା ଦିଅନ୍ତି ନାହିଁ—ଦେଇ ନାହାନ୍ତି—ଦେଇଥିବାର ଇତିହାସ ମଧ୍ୟ ନାହିଁ । ଏହି ନଦେବା ପଛରେ ଅଛି ଜଣେ ବ୍ୟକ୍ତିଙ୍କର ଚମତ୍କାର ଦର୍ଶନ । ସେ ବ୍ୟକ୍ତି ଜଣକ ହେଲେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ, ବମ୍ବେର ପୂର୍ବତନ ରାଜ୍ୟପାଳ ତଥା ବହୁଭାଷାବାଗାଧୀଶ୍ୱର ଡଃ ହରେକୃଷ୍ଣ ମହତାବ, ଆଉ ସେ ଦର୍ଶନଟି ହେଲା 'ମହତାବୀ ରାଜନୈତିକ ଦର୍ଶନ ।' ସେ ଦର୍ଶନର ମୂଳ ପ୍ରତିପାଦ୍ୟ ବିଷୟଟି ହେଲା—ଯଦି ତମେ ଏକ ଅଭାବୀ, ଦରିଦ୍ର ବା ବେକାର ଲୋକକୁ ଏକକାଳୀନ ଟ୫୦୦ଙ୍କା ବା ଟ୧୦୦୦ଙ୍କା ଦେଇଦେବ ତାହେଲେ ସେ ଲୋକଟି ତା'ର କଳ୍ପନା କରୁ କର୍ମସଂସ୍ଥାନ କରି ବସିଯିବ, ଆଉ ତମ ପାଖକୁ ବା ତମ 'ଦରବାର'କୁ ଦୟାମାଗୁ ହୋଇ ଆସିବ ନାହିଁ । ତେଣୁ ତାକୁ ପ୍ରତିଦିନ ଟ୫।୧୦ଙ୍କା କରି ଦିଅ । ଦେଖିବ, ପ୍ରତିଦିନ ସେ ତମ ଦରବାରକୁ ଆସି ସର୍ବ ସମକ୍ଷରେ ତମକୁ ସଲାମ ଠୋକିବ ଆଉ ନିଜର ଅସହାୟତା ପ୍ରକାଶ କରି ବୁଲିବ । ଫଳରେ ତମର ଅହଂ ତଦ୍ଦ୍ୱାରା ସନ୍ତୁଷ୍ଟ ହେବ। ସଙ୍ଗେ ସଙ୍ଗେ ତମେ ତାକୁ 'ଦୟା' ଦେଖାଇ ତମର ଉଚ୍ଚ ମଧ୍ୟବିତ୍ତ ସୁଲଭ ପୃଷ୍ଠପୋଷକତା ତା ଉପରେ ଜାହିର କରିବ ଏବଂ ତା'ର ଅଭାବର ଧୂ ଧୂ ମରୁଭୂମିରେ କିଛି 'ନଗଦ ନାରାୟଣ' ଜଳ ସିଞ୍ଚନ ପୂର୍ବକ 'ଦାତାକର୍ଣ୍ଣ' ବନି ଦରକାର ବେଳେ ତାକୁ ଯେ କୌଣସି କର୍ମ-ଅପକର୍ମରେ ବ୍ୟବହାର କରି ପାରିବ । ଏହି ମହତାବୀ ରାଜନୀତିକ-ଦର୍ଶନ ବା ତତ୍ତ୍ୱକୁ ଆପଣାର 'ଲାବୋରେଟୋରି'ରେ ପରୀକ୍ଷାନିରୀକ୍ଷା କରି ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରିଥିଲେ ସ୍ୱର୍ଗତ ବୀରେନ୍ ମିଶ୍ର । ତାଙ୍କ 'ଦରବାର'ରେ ଯେ କେହି ବ୍ୟକ୍ତି, ସିଏ ଜ୍ଞାନୀ, ଗୁଣୀ, ଭଦ୍ର, ସମ୍ମାନୀ ଯାହା ହେଉନା କାହିଁକି ପହଞ୍ଚୁଥିଲେ, ତାକୁ ଶ୍ରୀ ମିଶ୍ର ଓ ତାଙ୍କ

ପାରିଷଦବର୍ଗ ଧରିନେଉଥିଲେ ଯେ ସେ କେବଳ ଆସିଛନ୍ତି ଆର୍ଥିକ ସହାୟ ପାଇଁ । ତେଣୁ ପ୍ରଥମ ଦର୍ଶନରେ ପହଞ୍ଚି ଥିବା ଲୋକଟି ଶୁଣୁଥିଲା ଶ୍ରୀ ମିଶ୍ରଙ୍କର ମେଘଗର୍ଜନ ପରି ଭର୍ତ୍ସିତ କଣ୍ଠସ୍ୱର ସହିତ ତାଚ୍ଛଲ୍ୟ ଏବଂ ମାନହାନୀକର ସମ୍ଭାଷଣ । ଆଗନ୍ତୁକର କୌଣସି ବକ୍ତବ୍ୟକୁ କର୍ଣ୍ଣପାତ ନକରି ଶ୍ରୀ ମିଶ୍ର କହି ଉଠୁଥିଲେ, 'କୁଆଡ଼େ ? ଆରେ ବାବା···ପଇସା କଉଡ଼ି ନାହିଁ । ଟଙ୍କାଗଛ ମିଳିନି ।' ଆଗନ୍ତୁକ ଯେତେବେଳେ କୁହେ, 'ନାହିଁ ଆଜ୍ଞା, ମୁଁ ଟଙ୍କା ପଇସା ପାଇଁ ଆସି ନାହିଁ··,ସେତେବେଳେ ଶ୍ରୀ ମିଶ୍ର ଅଧିକ ଗର୍ଜନ କରି କହି ଉଠନ୍ତି, 'ଯାଓ, ଭାଗୋ, ହଟୋ···no time···'ତାଙ୍କ ମୁହଁରୁ କଥା ନସରୁଣୁ ଦୀର୍ଘକାୟ ବଳଶାଳୀ ଦୁ'ଜଣ ବନ୍ଧୁକିଧାରୀ, ଯେଉଁମାନେ କି ତାଙ୍କର ସେତେବେଳେ ଥିଲେ ଜବରଦସ୍ତ ଆଲ୍‌ସେସିଆନ୍, ସେମାନେ ବିଚାରା ଲୋକଟିକୁ ଉକ୍ତିମାନଙ୍କରେ କୁହନ୍ତି 'ଚାଲ ବାବୁ ବାହାରକୁ ଚାଲ !'

ଅଯଥା ଅମ୍ପୃଶ୍ୟ ବିସର୍ଜନର ଗ୍ଲାନି ନେଇ ଲୋକଟି ବାହାରକୁ ଯିବାକୁ ବାଧ୍ୟ ହୁଏ ।

ଦିନକର କଥା ।

ସେତେବେଳେ ଶ୍ରୀ ମିଶ୍ର ଓଡ଼ିଶାର ଉପ-ମୁଖ୍ୟମନ୍ତ୍ରୀ । ପୂର୍ବଦିନ ସେ ମୋତେ କହିଥିଲେ ତାଙ୍କ ବାସଭବନରେ ଯାଇ ସାକ୍ଷାତ କରିବାକୁ । ସକାଳ ନଅଟାବେଳେ ମୁଁ ଯାଇ ତାଙ୍କ ପାଖରେ ପହଞ୍ଚିଥିଲି । ତାଙ୍କ ଆରାମଚଉକି ପାଖକୁ ଲାଗି ପଡ଼ିଥିବା ଅନ୍ୟ ଏକ ଚଉକିରେ ସେ ମୋତେ ବସିବାକୁ ଇଙ୍ଗିତ ଦେଲେ । ପ୍ରକାଶ ଥାଉକି, ସ୍ୱର୍ଗତ ମିଶ୍ରଙ୍କ ସହିତ ମୋର ସମ୍ପର୍କ ମୋର ଅନାଥ ବାଲ୍ୟକାଳରୁ । ବ୍ୟକ୍ତିଗତ ଭାବରେ ସେ ମୋତେ ଅତି ଶ୍ରଦ୍ଧା କରୁଥିଲେ । ତାଙ୍କ ନିଜ ଗାଁ ଏବଂ ମୋ ନିଜ ଗାଁ ଭିତରେ ବ୍ୟବଧାନ ମାତ୍ର କେତୋଟି ମାଇଲ । ହଁ, ଶ୍ରୀ ମିଶ୍ର ତାଙ୍କ ଆରାମଚଉକିଟି ଉପରେ ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ଅର୍ଦ୍ଧଶାୟିତ ହୋଇ ବସିଥିଲେ । ଶଙ୍କର ବେହେରା, ମୁକାମ କଟକ ସହରର ବାର୍ମିସାହି, ଏକଦା ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟି ସହିତ ସମ୍ପୃକ୍ତ ଓ କଟକ ପୌରସଭାର ସଦସ୍ୟ, ବିଶେଷ ଶିକ୍ଷାଦୀକ୍ଷା ହୀନ, ପରେ ସେ ଶ୍ରୀ ମିଶ୍ରଙ୍କର ବିଶ୍ୱସ୍ତ ଅନୁଚର ପାଲଟି ଥିଲା ।

ସେହି ଶଙ୍କର ସେତେବେଳେ ଶ୍ରୀ ମିତ୍ରଙ୍କର ଜଙ୍ଘ ଠାରୁ ପାଦ ପର୍ଯ୍ୟନ୍ତ ବ୍ୟସ୍ତ-ଥିଲା ମାଲିସରେ । ବାହାରୁ ଶ୍ରୀ ମିତ୍ରଙ୍କ ଆଶ୍ରମ ଚଉକ ପର୍ଯ୍ୟନ୍ତ ଏକ ଦୀର୍ଘ ମଣିଷର 'କ୍ୟୁ' ବା ଧାଡ଼ି ଲମ୍ବିଥିଲା । ସେ ଏକ ବିକଳ ତଥା ବିଚିତ୍ର ଦୃଶ୍ୟ । 'କ୍ୟୁ' ଅନ୍ତର୍ଭୁକ୍ତ ପ୍ରତିଟି ମଣିଷ କିଛି କହିବା ଆଗରୁ ଶ୍ରୀ ମିତ୍ର କିଛି ନ ଶୁଣି ତାଙ୍କର ବିଶ୍ୱସ୍ତ ଅନୁଚର ସ୍ୱର୍ଗତ କପିଲପ୍ରସାଦ ଭଲ୍ଲାଙ୍କ ଉଦ୍ଦେଶ୍ୟରେ ନିର୍ଦ୍ଦେଶ ଦେଉଥିଲେ, "ଦଶ୍ ରୁପେୟା ଦେ ଦୋ ।"

ହଠାତ୍ 'କ୍ୟୁ' ମଧ୍ୟରୁ ଜଣେ ବ୍ୟକ୍ତିଙ୍କ ପାଳି ପଡ଼ିଲା । ବ୍ୟକ୍ତି ଜଣକ ଶିକ୍ଷିତ, ସମ୍ଭ୍ରାନ୍ତ, ଭଦ୍ର, ଏବଂ ପଦସ୍ଥ ବୋଲି ଜଣା ପଡୁଥିଲେ । ସେ ଶ୍ରୀ ମିତ୍ରଙ୍କ ସାମ୍ନାକୁ ଆସି ନମସ୍କାର କରିବା ମାତ୍ରେ ଶ୍ରୀ ମିତ୍ର କପିଲପ୍ରସାଦ ଭଲ୍ଲାଙ୍କୁ ତାଙ୍କ ଧର୍ବାନ୍ଧା କ୍ଲାସିକ ହୁକୁମ ଦେଇ କହିଲେ, 'ବାବୁ କୋ ଦଶ୍ ରୁପେୟା ଦେ ଦୋ ।'

ବ୍ୟକ୍ତିଟି ଅପ୍ରସ୍ତୁତ ହୋଇ କହି ଉଠିଲେ, 'ନାହିଁ ସାର୍ ମୁଁ ଟଙ୍କା ପାଇଁ···'

ତାଙ୍କର ଅସମାପ୍ତ ବାକ୍ୟକୁ ସେ ସମାପ୍ତ କରିବାର ସୁଯୋଗ ପାଇଲେ ନାହିଁ । କାରଣ, ଶ୍ରୀ ମିତ୍ରଙ୍କର କ୍ରୋଧଯୁକ୍ତ ଗର୍ଜନ, 'ନା, ନା, ଟଙ୍କାଗଛ ମରିଲାଣି । ଔର ଜ୍ୟାଦା ନେହିଁ ମିଲେଗା । କପିଲପ୍ରସାଦ ! ବାବୁଙ୍କୁ ପନ୍ଦରଟଙ୍କା ଦେଇଦିଅ !,'

'ନାହିଁ ସାର୍, ମୋର ଟଙ୍କା ଦରକାର···'

ଶ୍ରୀ ମିତ୍ର କିନ୍ତୁ କିଛି ଶୁଣିଲେ ନାହିଁ । ତାଙ୍କ ସାମ୍ନାରୁ ହଟିଯାଇ ପଛଲୋକକୁ ଆସିବାକୁ ନିର୍ଦ୍ଦେଶ ଦେଲେ ।

ଭଦ୍ର ବ୍ୟକ୍ତିଟି 'କ୍ୟୁ'ରୁ ବାହାରି ଗଲା ପରେ କପିଲପ୍ରସାଦ ଭଲ୍ଲା ସମସ୍ତଙ୍କ ଆଖି ଆଗରେ ତାଙ୍କ ହାତରେ ଧରାଇ ଦେଲେ ପାଞ୍ଚଖଣ୍ଡ ଦଶଟଙ୍କିଆ ନୋଟ୍ ଅଜାସ୍ର ଜବରଦସ୍ତ । କହିଲେ ବାହାରକୁ ଯିବା ପାଇଁ । ଭଦ୍ରବ୍ୟକ୍ତି ଜଣକ ହତବାକ୍ ହୋଇ ନୀରବରେ ବାହାରକୁ ଆସି ଦଶଟଙ୍କିଆ ନୋଟ୍

ଚାଷ ଖଣ୍ଡିକୁ ଅତି କରୁଣ ଭାବରେ ଦେଖି ନେଇ ଆଉ ପକେଟରୁ ତୁମାଲ କାଢ଼ି ନଜର ବିଷାଦଗ୍ରସ୍ତ ତଥା ଘର୍ମାକ୍ତ ମୁହଁକୁ ପୋଛୁ ସ୍ଥାନ ତ୍ୟାଗ କରିଥିଲେ । ପ୍ରକାଶ ଥାଉକି, ଉକ୍ତବ୍ୟକ୍ତି ଜଣକ ଜଣେ ଡେପୁଟି ମାଜିଷ୍ଟ୍ରେଟ୍ ପାହ୍ୟାର ଲୋକ । ସେ ତାଙ୍କର ବଦଳି ସମ୍ପର୍କରେ ଶ୍ରୀ ମିଶ୍ରଙ୍କୁ ସାକ୍ଷାତ କରିବାକୁ ଆସିଥିଲେ ।

ସ୍ୱର୍ଗତ ଏରେନ୍ ମିଶ୍ରଙ୍କୁ କେନ୍ଦ୍ର କରି ଘଟିଥିବା ଭିନ୍ନି ଭିନ୍ନି ଘଟଣା-ମାନଙ୍କ ମଧ୍ୟରୁ ଏ ଘଟଣା ହେଉଛି ଗୋଟିଏ ।

ଶ୍ରୀ ମିଶ୍ର ଥିଲେ ଯୌବନରେ ଦୁଃସାହସୀ ଓ ବେପରୁଆ । ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ସ୍ଥିର ସାମ୍ୟ ସହିତ ସ୍ଥିର ଜୀବନରେ ସେ ସମ୍ପୃକ୍ତ ଥିଲେ । ୧୯୪୨ ମସିହାରେ 'ଭାରତ ଛାଡ଼' ଆନ୍ଦୋଳନରେ ଯୋଗ ଦେଇ କାରାବରଣ ମଧ୍ୟ କରିଥିଲେ । ସେ ଥିଲେ ସୁବକ୍ତା, ଉଚ୍ଚ ଶିକ୍ଷିତ, ଏକ ଅବସ୍ଥା ସମ୍ପନ୍ନ ପରିବାରର ସନ୍ତାନ । ସ୍ୱାଧୀନତା ସଂଗ୍ରାମ କାଳରେ ବା ଯୁଦ୍ଧ ଯୁଗରେ ମୁଁ ଯେଉଁବେଳେ ସ୍ୱର୍ଗତ ଜାତୀୟ କବି ବୀରକିଶୋର ଦାସ, ଗଣକବି ବୈଷ୍ଣବପାଣି ମହାନ୍ତି ଏବଂ ମୋର ସ୍ୱର୍ଗତ ପିତାଙ୍କ ରଚିତ ସାମ୍ରାଜ୍ୟବାଦ ବିରୋଧୀ ଜାତୀୟ ସଙ୍ଗୀତମାନ ଗାଇ ବୁଲୁଥିଲି ଓ ବାରମ୍ବାର ପୁଲିସଥାନାର ଅତିଥି ହୋଇ ଫେରି ଆସୁଥିଲି (୭), ସ୍ୱର୍ଗତ ଏରେନ୍ ମିଶ୍ର ସେତିକିବେଳୁ ମୋ ପ୍ରତି ଅତି ଶ୍ରଦ୍ଧାଶୀଳ ହୋଇ ଉଠିଥିଲେ । ସେତିକିବେଳୁ ଆମର ସମ୍ପର୍କ ଗଢ଼ି ଉଠିଥିଲା ।

---

(୭) ଜାତୀୟ କବି ବୀରକିଶୋର ଦାସଙ୍କର ୨ଟି ଚିଠି :

[ ୧ ]

ଭୁବନେଶ୍ୱର

ତା ୧୨-୧-୭୦ ଶକ

ଭାଇ ଦେବେନ୍ଦ୍ର,

ବର୍ଷକରୁ ଊର୍ଦ୍ଧ୍ୱ ହୋଇଗଲା ତମର ମୋର ସାକ୍ଷାତ ନାହିଁ ବା କଥାବାର୍ତ୍ତା ନାହିଁ । ଲେଖାଲେଖି ଜରିଆରେ ଦେଖାଦେଖି ହୋଇ ନାହିଁ । ତୁମର ଯାହା ପ୍ରାପ୍ୟ ତାହା ମୁଁ ଭୁଲି ଯାଇନାହିଁ ।

ତୁମ ପିତାଙ୍କ ସହ ମୋ ପିତାଙ୍କର ଯେଉଁ ସୌହାର୍ଦ୍ଦ୍ୟ ଥିଲା, ତାହା ମୁଁ ମନରୁ ପାଶୋର ଦେଇନାହିଁ । କାଳକ୍ରମେ ତମର ମୋର ସମ୍ବନ୍ଧ ତମେ ବଢ଼ାଇ ଦେଇଛ ।

ଯୁଦ୍ଧ ଯୁଗରେ ତମ କଣ୍ଠରେ ମୋର ଲିଖିତ ଗୀତ ଗୁଡ଼ିକ ବହୁ ଲୋକଙ୍କୁ ଉନ୍ମାଦନା ଦେଉଥିଲା । ବାକ୍‌ଦେବୀଙ୍କ କୃପାରୁ ଶତ ଝଡ଼ଝଞ୍ଜା ଭିତର ଦେଇ ଯେପରି

ପରେ ସେ ସମ୍ପର୍କ ନିବିଡ଼ ହୋଇ ଅନ୍ତରଙ୍ଗତାର ସମ୍ପର୍କ ପର୍ଯ୍ୟନ୍ତ ଆସିଥିଲା । ତାଙ୍କ 'ଦରବାରରେ' ଯେତେବେଳେ ମୁଁ ଯାଇ ଉପସ୍ଥ ହେଉଥିଲି, ସେତେବେଳେ ସେ ମୋତେ ନେଇ ପାଖରେ ବସାଇ ବ୍ୟକ୍ତିଗତ ହାନିଲାଭ କଥା ପଚାରୁଥିଲେ । ତାଙ୍କ ସହିତ ମୋର ବିଜଡ଼ିତ ଥିଲା ନାନା ସ୍ମୃତି । ଗୋଟିଏ ମଜାଦାର କଥା ଏଠି ମନେପଡ଼େ । ୧୯୫୮ ମସିହା ଅକ୍ଟୋବର ମାସ ଦୁର୍ଗାପୂଜା ଉପଲକ୍ଷେ ରଚିତ ମୋର ଏକ କବିତା କେଉଁ ଏକ ପତ୍ରିକାରେ ସେତେବେଳେ ପ୍ରକାଶିତ ହୋଇଥିଲା ତାହା ଅବଶ୍ୟ ମୋର ଆଜ ମନେ ନାହିଁ । କବିତାଟିର ମର୍ମବସ୍ତୁ ଥିଲା ମହିଷାସୁର ବିରୁଦ୍ଧରେ ନାରୀଜାତି ବା ଦୁର୍ଗାକୁଳକୁ ବିଦ୍ରୋହ ଘୋଷଣା କରିବାର ଆହ୍ୱାନ । ସେ କବିତାଟିର କେତୋଟି ଛନ୍ଦ ହେଲା—

---

ଆଗେଇ ଚାଲିଛ, ତାହା ମୋତେ ବିସ୍ମୟ ଲାଗେ । ତୁମେ ନିଜେ ନିଜର ଗୁରୁ ହୋଇ କବି ଆସନରେ ନିଜକୁ ପ୍ରତିଷ୍ଠା କରିପାରିଛ ତାହା ବଡ଼ ଆନନ୍ଦର ବିଷୟ । ମୁଁ ପ୍ରାୟ ୧୪ମାସ ହେଲା କଟକରୁ ବିଦାୟ ନେଇ ଆସିଛୁ । ଦେହ ସେତେ ଭଲ ରହୁନାହିଁ । କେବଳ ମରାମରି ଚାଲିଛୁ । ତମର ସହଧର୍ମିଣୀଙ୍କୁ ମୋର ସ୍ନେହ ସମ୍ଭାଷଣ ଜଣାଇ ଦେବ ।

ଇତି
ତୁମର ଶୁଭକାଂକ୍ଷୀ
ଗୀରକିଶୋର

[ ୨ ]

ଭୁବନେଶ୍ୱର
ତା ୧୭-୯-୭୧ ଇଂ

ପ୍ରିୟ ରବୀନ୍ଦ୍ର ବାବୁ,

ଆଜକାଲି ତୁମେ କେଉଁଠି ରହୁଛ, ତୁମ ଠିକଣା ମୁଁ ଜାଣେନାହିଁ । ମୁଁ କଟକରୁ ଆସି ଦେହ ଅସୁସ୍ଥ ଥିବାରୁ ପୁଅ ପାଖରେ ଅଛୁ । ସମୟେ ସମୟେ ରକ୍ତଚାପ ବଢ଼ି କଷ୍ଟ ପାଉଛୁ । ଆଗେ ଗୋଡ଼ହାତମାନ ମୋର ବୋଲମାନି ଚାଲୁଥିଲେ, ଆଜକାଲି ମୁଁ ତାଙ୍କ କଥା ମାନି ଚାଲୁଛୁ । ଜେଲଖାନା ବନ୍ଦୀ ଅପେକ୍ଷା ଆହୁରି ନିଘୋଡ଼ ବନ୍ଧନରେ ପଡ଼ିଛୁ । ସୂର୍ଯ୍ୟ ଚନ୍ଦ୍ରଙ୍କ ସହ ୭ ମାସ ହେଲା ୪ ଆଖି ହୋଇନାହିଁ । କଥାରେ ଅଛି କଳାପଠା ପାଠିଏ । ମାତ୍ର ଦୁର୍ଭାଗ୍ୟବଶତଃ ଅନେକୋଡ଼ିଏ ଟପି ଚାରିକୋଡ଼ିଏ ହାତ ବଢ଼ାଉଛୁ । ଖାଇବା ପିଇବା ଓ ଔଷଧ ପାଣିରେ ଅସୁବିଧା କିଛି ନାହିଁ । ପୁଅର ଖଣ୍ଡିଏ ଭଲ ଚାକିରୀ ଅଛି । ସେ ବହୁ କୁଟୁମ୍ବୀ ହେଲେ ସୁଦ୍ଧା

"ଆଜି ଏଣୁ ମହା-ମାବଣେ ବସି ଯଦି ମୁଁ ଖୋଜ
ପାହୁଛୁ ଶାନ୍ତି,
କେତେଦିନ ଆଉ ପଡ଼ିଥିବ ହୋଇ ଭ୍ରଷ୍ଟବାକ
ଉଠ ଗୋ ମାତ !

ମାତ ଉଠ ଏଇ ଦୁର୍ଦ୍ଦିନ ବେଳେ କୁଟୀର ତଳୁ,
ବ୍ରେଷଇ ଶାନ୍ତି,
ପଲ୍ଲୀ ନଗର ଜନପଦ ତଳୁ, ପ୍ରେମିକ କୋଳୁ,
ସହର ତଳୁ ।

ଯହିଁ ଯେତେ ଅଛ ଦଳିତା, ପତିତା, ଗଜସ୍ଥ, ଉମ୍ମା,
ସତ୍ୟଭାମା,
ବରହମ୍‌ପୁରେ, କଟକ ନଗରେ ନର୍ସ୍‌ନାମା
ଈଶ୍ୱରମା ।"

[ପ୍ରକାଶ ଥାଉକି, ଶ୍ରୀ ମିଶ୍ର ଥରେ ଅସୁସ୍ଥ ହୋଇ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲରେ ଭର୍ତ୍ତି ହୋଇଥିଲେ । ସେତେବେଳେ ସେଠି ତାଙ୍କର ସେବାଶୁଶ୍ରୂଷା କରୁଥିବା ଜନୈକା ଦକ୍ଷିଣ ଭାରତୀୟ ଖ୍ରୀଷ୍ଟଧର୍ମାବଲମ୍ବିନୀ ନର୍ସ ଈଶ୍ୱରମାଙ୍କୁ ସେ ପରେ ବିବାହ କରିଥିଲେ । ଏ ବିବାହକୁ ସେତେବେଳେ ଶ୍ରୀ ମିଶ୍ରଙ୍କ ପିତା ଅନୁମୋଦନ ନ କରି ତାଙ୍କୁ ତ୍ୟାଜ୍ୟପୁତ୍ର ମଧ୍ୟ କରିଥିଲେ । ଅତି ଉଦାର ଏବଂ ହୃଦୟବାନ ମଣିଷ ହୋଇଥିବାରୁ ସଚ୍ଚେନ୍ ବାବୁ ତା ସତ୍ତ୍ୱେ ଶ୍ରୀମତୀ ଈଶ୍ୱରମାଙ୍କୁ ନେଇ ଗୀତ ରଚନା କରିଥିଲେ କେବଳ ନୁହେଁ,

---

ମୋତେ ଶ୍ରବଣକୁମାର ପରି ସେବା କରୁଛ । ବର୍ତ୍ତମାନ ରାଜନୀତିର ଅବସ୍ଥା ଯାହା ତୁମେତ ଶୁଣୁଛ, ଜାଣୁଛ, ଦେଖୁଛ । ଏଥିଲାଗି କୌଣସି ଦଳରେ ବା କଳରେ ରହିବାକୁ ଆଉ ମନ ବଳିଲ ନାହିଁ । ପୁରାତନ ସ୍ମୃତିସବୁକୁ ବନ୍ଧଣୀରେ ପଢ଼ି ପଢ଼ି ଯାବୁଳି କରୁଛି । ତୁମେ ଜଣେ ମୋର ଅନ୍ତରଙ୍ଗ ବନ୍ଧୁ । ତୁମର ଜନ୍ମ ପ୍ରଶ୍ନ କଢ଼ି-ଧରିବା ପୂର୍ବରୁ ତୁମ ବାପାଙ୍କର ଓ ମୋ ବାପାଙ୍କର ଯେଉଁ ବ୍ୟକ୍ତିଗତ ବନ୍ଧୁତା ଥିଲା ତାହା ତୁମେ ଭୁଲି ନ ଥିବ । ସେମାନେ ଆଜି ଆଉ ଗୋଟିଏ ରାଜ୍ୟରେ । ତୁମକୁ ମୋର ଅନୁରୋଧ, ଭୁବନେଶ୍ୱର ଆସି ମୋ ସହିତ ଦେଖାକରିବ । ଇତି ।

ତୁମର ମହା ଶୁଭାକାଂକ୍ଷୀ ବନ୍ଧୁ
ଦ୍ୱାରକିଶୋର

ତାଙ୍କ ସ୍ତ୍ରୀଙ୍କ ଧର୍ମବିଶ୍ୱାସ ଉପରେ ଜୀବନର ଅନ୍ତିମ ଦିନ ପର୍ଯ୍ୟନ୍ତ ହସ୍ତକ୍ଷେପ କରି ନ ଥିଲେ। ତାଙ୍କ ବାସଭବନରେ ବିନା ବାଧାରେ ପ୍ରଭୁ ଯୀଶୁଙ୍କ ପ୍ରତିକୃତି ଭକ୍ତି ସହକାରେ ସୁରକ୍ଷିତ ହୋଇ ପୂଜିତ ହେଉଥିଲା ।]

ମୋର ଏ କବିତାଟିକୁ ପଢ଼ି କେହି ହୁଏତ ସାରେନ୍ ଦା'ଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ! ଦିନେ ମୁଁ ତାଙ୍କ ପାଖରେ ଯାଇ ପହଞ୍ଚୁ ପହଞ୍ଚୁ ସେ ମୋତେ କହିଉଠିଲେ, "ହଇରେ ରବି ! ତତେ ଆଉ ନାଁ ମିଳିଲା ନାହିଁ ? ମୋ ଘରଜା ନାଁରେ କି କବିତା ଲେଖିଲୁ !!"

ମୁଁ ଫେଁ କରି ହସି ଦେଇ କହିଲି, "ଦାଦା, ପଦ ପଡ଼ୁ ପଡ଼ୁ ଈଶ୍ୱରମା ନାଁ ଟା ପଡ଼ିଗଲା । ଲେଖି ତ ଦେଲି···"

"ଲେଖି ଦେଲୁ ? ଏଁ ? ଘର ବଦ୍‌ମାସ୍ ତୁ ।" ବୋଲି କହି କହି କବିତାଟିକୁ ପୁଣି ଥରେ ତାଙ୍କ ଆଗରେ ଆବୃତ୍ତି କରିବାକୁ ସେ ଜିଦ୍ ଧରିବସିଲେ । ମୁଁ କବିତାଟିକୁ ଆବୃତ୍ତି କରନ୍ତେ ଉପସ୍ଥିତ ଲୋକଙ୍କ ମଧ୍ୟରେ ହାସ୍ୟରୋଳ ସୃଷ୍ଟି ହୋଇଥିଲେ । ସେଥିରେ ଶ୍ରୀ ମିଶ୍ର ମଧ୍ୟ ହୋ ହୋ ହୋଇ ହସି ତାଳି ଦେଇଥିଲେ ।

ସବୁ ସତ୍ତ୍ୱେ ସ୍ୱର୍ଗତ ମିଶ୍ର ନିଜ ଜ୍ଞାତସାରରେ ହେଉ ବା ଅଜ୍ଞାତ ସାରରେ ହେଉ, ମହତାବଙ୍କ ରାଜନୈତିକ ହାତ ବାରିସି ହୋଇ ଜନଜୀବନରେ ଅର୍ଥବଣ୍ଟନ ମାଧ୍ୟମରେ ଦାରିଦ୍ର୍ୟ ବିତରଣ ପୂର୍ବକ ବହୁ ଯୁବକ, ବହୁ ମଣିଷର କର୍ମପ୍ରବଣତାକୁ ପଙ୍ଗୁ କରି ଦେବା ସାଥେ ସାଥେ ଓଡ଼ିଶା ରାଜନୀତିରେ ରାଜନୈତିକ-ଗୁଣ୍ଡାଗିରିର ଶିଳାନ୍ୟାସ କରି ଯାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ପ୍ରଚ୍ଛନ୍ନ ଇଙ୍ଗିତରେ ଏକଦା "ନିଆଁଖୁଣ୍ଟା"ର ସମ୍ପାଦକ ତଥା ଓଡ଼ିଶାର ଅବିସ୍ମରଣୀୟ ସାରସ୍ୱତ ପ୍ରତିଭା ସ୍ୱର୍ଗତ ଗୋଦାବରୀଶ ମହାପାତ୍ରଙ୍କ ଉପରେ ଦୈହିକ ଆକ୍ରମଣ ହୋଇ ସ୍ୱାଧୀନ ସାମ୍ବାଦିକତାର କଣ୍ଠରୁଦ୍ଧ ଉଦ୍ୟମର ଶୁଭାରମ୍ଭ ହୋଇଥିଲା । ଆଜି ଯେତେବେଳେ ସମାଜର ସମସ୍ତ ସାଯୁଜ୍ୟ ବା "ଆସୋସିଏସନ" ଟୁକୁରା ଟୁକୁରା ହୋଇ ଭାଙ୍ଗି ଯାଉଛି, ଅତୀତର ସମସ୍ତ ମୂଲ୍ୟବୋଧ ଭୂଷୁଡ଼ି ପଡ଼ୁଛି । ସେତେବେଳେ ମୋର ଏଇ

ଅପ୍ରିୟ ସତ୍ୟମୂଳକ ସ୍ମୃତିଚାରଣ ସମ୍ପୃକ୍ତ ନେତା, ବ୍ୟକ୍ତି, ସେମାନଙ୍କର ଅନୁଗାମୀମାନଙ୍କୁ ପୀଡ଼ା ଦେଇପାରେ — ଦୈହିକ ତଥା ପାରିବାରିକ ନିରାପତ୍ତା ବିପନ୍ନ ମଧ୍ୟ ହୋଇପାରେ (ଅତୀତରେ ମଧ୍ୟ ହୋଇଛି), ଏ ଆଶଙ୍କା ଥିବା ସତ୍ତ୍ୱେ ସତ୍ୟକୁ, ତଥା ଇତିହାସକୁ ଗୋପନ କରିବା ମୋ ଧର୍ମର ବିରୋଧୀ । ପରିଣତି ଯାହା ହେଉନା କାହିଁକି, ମୋତେ ସତ୍ୟପ୍ରକାଶ କରିବାକୁ ହେବ । ଏ ପର୍ଯ୍ୟନ୍ତ 'ଆସନ୍ନାକାଳ' ପୃଷ୍ଠାରେ ଧାରାବାହିକ ଭାବରେ ପ୍ରକାଶିତ "ନିଃସଙ୍ଗ ପଦାତିକ"ରେ ମୋ ଜୀବନ କାହାଣୀର ବିସର୍ପିଳ ତଥା ଯନ୍ତ୍ରଣା-କାତର ଘଟଣା ବର୍ଣ୍ଣିତ ହୋଇ ଆସୁଥିଲା । ଏଣିକି ଏକ ରାଜନୈତିକ ପରିସ୍ଥିତି ମଧ୍ୟରେ ମୁଁ ପଶିବାକୁ ଯାଉଥିଲି ବେଳେ ଯେଉଁ ନେତା, ସାମାଜିକ ପ୍ରବକ୍ତା, ପଦାଧିକାରୀ ବ୍ୟକ୍ତି, ତୁଙ୍ଗ ତୁଙ୍ଗ ସାହିତ୍ୟିକ, କବି, ସାମ୍ବାଦିକ ମାନଙ୍କର ରୋଷବହ୍ନି ଷଡ଼ଯନ୍ତ୍ର, ଅବରୋଧର ମୁଁ ଶିକାର ହୋଇଥିଲି ସେମାନଙ୍କ ମଧ୍ୟରୁ ଅଧିକାଂଶ ଆଜି ଜୀବିତ ଏବଂ ସମାଜର ନାନା ଶୀର୍ଷ ସ୍ଥାନରେ ଅଧିଷ୍ଠିତ । ସେମାନଙ୍କର ଚରିତ୍ର, ଦ୍ୱିଧାବିଭକ୍ତ ବ୍ୟକ୍ତିତ୍ୱ, ପ୍ରଚଣ୍ଡ ଆତ୍ମକୈନ୍ଦ୍ରିକତା ଯାହା ମୁଁ ଅଙ୍ଗେ ଲଗାଇଛି, ଅନୁଭବ କରିଛି, ତାକୁ ବାଦ୍ ଦେଲେ ମୋ ଜୀବନ-ଇତିହାସର କୌଣସି ମୂଲ୍ୟ ରହିବ ନାହିଁ । ଅତୀତର ସମସ୍ତ ଅଭିଶାପ ଯେତେବେଳେ ମୋତେ "ଆପ୍ଲୁଷ୍ଟାନ" କରିଛି; ସେତେବେଳେ ଅତୀତର ଘଟଣା, ତତ୍କାଳୀନ ପରିବେଶ; ଜୀବନଯାତ୍ରା ସବୁକୁ ଅନାସକ୍ତ ଭାବରେ ମୁଁ ଆଙ୍କିଯିବି । ତଦ୍ୱାରା 'ଆସନ୍ନାକାଳ'ର ସମ୍ପାଦକଙ୍କ ଉପରେ "ନିଃସଙ୍ଗ ପଦାତିକ"ର ଧାରାବାହିକ ପ୍ରକାଶନକୁ ବନ୍ଦ କରି ଦେବା ପାଇଁ ନାନାଆଡ଼ୁ ଚାପ ହୁଏତ ଆସିପାରେ (ଆସିଛି ମଧ୍ୟ) କିନ୍ତୁ ସେ ମୋତେ ଜବାବ ଦେଇଛନ୍ତି, ଶତଚାପ ସତ୍ତ୍ୱେ ସେ ଅବିଚଳ ରହିବେ । ଏହି ଭରସା ଓ ବିଶ୍ୱାସ ନେଇ ଅର୍ଦ୍ଧସୁସ୍ଥ ଅବସ୍ଥାରେ ଏ "ପଦାତିକ"ର ଜୟଯାତ୍ରା ।

ହଁ, ସ୍ୱର୍ଗତ ବାଇରେନ୍ ମିତ୍ର ଥିଲେ କଟକ ସହରର ସାର୍ବଜନୀନ 'ଦାଦା' ଏବଂ ଅଘୋଷିତ ଏକଛତ୍ର ଶାସକ । କଟକ ସହରର ବିଧାନସଭା ନିର୍ବାଚନ ମଣ୍ଡଳୀରୁ ସେ ବାରମ୍ବାର ନିର୍ବାଚିତ ହୋଇ ଆସୁଥିଲେ । ମନ୍ତ୍ରୀରେ

"ଓଡ଼ିଶା ଏଜେଣ୍ଟ" ନାମକ ଏକ ବ୍ୟବସାୟ ପ୍ରତିଷ୍ଠାନ ପ୍ରତିଷ୍ଠା କରି ଶ୍ରୀ ବିଜୁ ପଟ୍ଟନାୟକଙ୍କ "କଳିଙ୍ଗ ଟିଉବ୍‌ସ୍"ର ପାଇପ ଯୋଗାଣର 'ମନୋପଲି' ଦାୟିତ୍ୱ ନେଇ ପ୍ରଚୁର ଧନସମ୍ପତ୍ତି କେବଳ ଠୁଳ କରି ନଥିଲେ, "ଦୈନିକ ଜନଶକ୍ତି" ନାମକ ଏକ ଓଡ଼ିଆ ସମ୍ବାଦପତ୍ର ମଧ୍ୟ ପ୍ରକାଶ କରିଥିଲେ । ୧୯୭୨-୭୩ ସାଲରେ ଅସୁସ୍ଥ ଅବସ୍ଥାରେ କଂଗ୍ରେସ ଦଳରୁ ଇସ୍ତଫା ଦେଇ ସର୍ବଦଳ ସମର୍ଥିତ ସ୍ୱାଧୀନପ୍ରାର୍ଥୀ ଭାବରେ କଟକ ସହର ନିର୍ବାଚନ ମଣ୍ଡଳୀରୁ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ସହିତ ପ୍ରତିଦ୍ୱନ୍ଦିତା କରି ଜୀବନରେ ପ୍ରଥମଥର ପାଇଁ ପରାଜିତ ହୋଇଥିଲେ । ତାଙ୍କ ଘଟଣା ବହୁଳ ବିଚିତ୍ର ଜୀବନର ଗତିଧାରା, ତାଙ୍କ ବିୟୋଗାନ୍ତକ ଜୀବନ ନାଟକର କରୁଣ ଅବସାନ— ସବୁକିଛି ମୋର ଆଖି ଦେଖା ଘଟଣା । "କାଲି ଯେ ରାଜେନ୍ଦ୍ରାସନେ ଆଜି ସେ ଫକୀର" ନ୍ୟାୟରେ ତାଙ୍କ ଜୀବନର ଅନ୍ତିମ ଦିନଗୁଡ଼ିକର କଥା ମନେ ପଡ଼ିଲେ ମୋର ଆଜି ଭାବାନ୍ତର ଜାତ ହୁଏ । ଓଡ଼ିଶାର ଭୂତ ଉପମୁଖ୍ୟମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ତଥା ଆଧୁନିକ 'ଦାତାକର୍ଣ୍ଣ', ଅସୀମ କ୍ଷମତାଧର ଏବଂ 'କିଂ ମେକର' ବା 'କିଂ ବ୍ରେକର' ମଣିଷଟି ନିୟତି ତଥା ଭାଗ୍ୟର ନିଷ୍ଠୁର ପରିହାସରେ ଏତେ ଉଚ୍ଛନ୍ନ ହୋଇଥିଲେ ଯେ ଶେଷରେ ନିଜର ରାଜନୈତିକ ପ୍ରତିଦ୍ୱନ୍ଦ୍ୱୀ ଠାରୁ ନିଜର ଚିକିତ୍ସା ପାଇଁ ୪୫୦୦୦ ଙ୍କା ତାଙ୍କୁ ସାହାଯ୍ୟ ନେବାକୁ ପଡ଼ିଥିଲା ମର୍ମାନ୍ତିକ ବେଦନାରେ । ବୀରେନ ବାବୁ ନିଜ ଜୀବନର ଅନ୍ତିମ ପର୍ଯ୍ୟାୟରେ କଟକ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡ଼ିକାଲର ନର୍ସିଂହୋମରେ ଶଯ୍ୟାଶାୟୀ ଥିଲାବେଳେ ଗୋଟିଏ ବିଚିତ୍ର ଘଟଣା ଘଟିଥିଲା । ଘଟଣାଟି ହେଲା—ଜଣେ ମନ୍ତ୍ରୀ ନିଜର ଅସୁସ୍ଥତା ବଶତଃ ଶପଥ ନେଇ ନପାରି ସେହି ଏକା ନର୍ସିଂହୋମ୍‌ରେ ଚିକିତ୍ସିତ ହେଉଥିଲେ । ପରେ ତାଙ୍କ ଶପଥ ଗ୍ରହଣ ଉତ୍ସବ ସେହି ନର୍ସିଂହୋମରେ ଅନୁଷ୍ଠିତ ହୋଇଥିଲା । ଏ ଉତ୍ସବ ଅନୁଷ୍ଠିତ ହେବା ଆଗରୁ ଶଯ୍ୟାଶାୟୀ ଶ୍ରୀ ବୀରେନ ମିତ୍ର ତାଙ୍କ ଖଟିଆରେ ପଡ଼ି ପଡ଼ି ଆଶା କରିଥିଲେ ଯେ, ଶପଥ ଗ୍ରହଣ ଉତ୍ସବକୁ ବହୁ ପଦସ୍ଥ ବ୍ୟକ୍ତି, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓଗେରେ ଆସିବେ । ସେମାନେ ନିଶ୍ଚୟ ତାଙ୍କୁ (ଶ୍ରୀ ମିତ୍ରଙ୍କୁ) ଦେଖିବାକୁ ଆସିବେ, ଆଉ କିଛି କିଛି ଆର୍ଥିକ ସାହାଯ୍ୟ ମଧ୍ୟ ଦେଇଯିବେ । କିନ୍ତୁ ହାୟ ! ବିଚିତ୍ର ଏ ଦେଶ, ବିଚିତ୍ର ଏହାର ଚରିତ୍ର, ବିଚିତ୍ର ଏହାର ନରନାରୀ ଏବଂ ସାମାଜିକତା ! ଶପଥ ଗ୍ରହଣ ଉତ୍ସବ ମହା ସମାରୋହରେ ନର୍ସିଂହୋମରେ ଅନୁଷ୍ଠିତ ହେଲା । ଯେଉଁମାନେ ସେଥିରେ ଯୋଗଦେବା କଥା ସେମାନେ ସମସ୍ତେ ଯୋଗ ଦେଇଥିଲେ । ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ କିଛି ବି ବାକି ରହି

ନଥିଲା । କିନ୍ତୁ ହାୟ, ସେହି ନର୍ସିଂହୋମର ଅନ୍ୟ ଏକ କୋଠରୀରେ ଗୋଟିଏ ନିର୍ବାଣ ପ୍ରାୟ ସାମାନ୍ୟ ଟିକେ ତୈଳର ଆଶାରେ ନୀରବ ଆକୁତି କରୁଥିଲା । ସେ ଦୀପର ଶିଖାଟି ଏକଦା ଥିଲା ପ୍ରବଳ ଭାବରେ ପ୍ରଜ୍ଜ୍ୱଳିତ । ସେହି ଶିଖାର ଆଲୋକ, ତାର ସହାୟତା ପାଇଁ ସମାଜର ନାନା ଶ୍ରେଣୀର ଲୋକେ ବର୍ଷ ବର୍ଷ ଧରି ତା' ପାଖରେ 'ଲାଇନ' ଦେଇଥିଲେ । ଆଜି ସେହି ଦୀପଶିଖାଟି ମରଣର କାଳ ଅନ୍ଧକାରରେ ଧପ୍ ଧପ୍ ହେଉଛି । କୃତଜ୍ଞତା ବଶରେ ନହେଲେବି ମାନବତା ବଶରେ ଦୟା ପରବଶ ହୋଇ କେହି ବି ଥରେ ଭୁଲରେ ତା ଚକ୍ଷୁଃସୀମା ସ୍ପର୍ଶ କରି ନାହାନ୍ତି । ଏ ରାଜ୍ୟର ଜଣେ ଭୂତ ମୁଖ୍ୟମନ୍ତ୍ରୀ, ଜଣେ ଅତି ପ୍ରତାପଶାଳୀ ରାଜନୈତିକ କ୍ଷମତାଧର ନେତା, ଯାହାର ଅଙ୍ଗୁଳି ସଙ୍କେତରେ ଏକଦା ଓଡ଼ିଶାର ରାଜନୀତି ତଥା ଶାସନକଳ ପରିଚାଳିତ ହେଉଥିଲା ତାର ଦଶା ଯଦି ବର୍ଷ କେତେଟା ଭିତରେ ଏଇଆ ହୁଏ, ତ'ହେଲେ ତମ ଆମ କଥା କିଏ ପଚାରେ ?

ବୀରେନ ଦା ଜୀବନ ପାଖରୁ ବିଦାୟ ନେବା ଆଗରୁ ତାଙ୍କ ଜମି, ପୁଞ୍ଜି, ବ୍ୟବସାୟ ପ୍ରତିଷ୍ଠାନ, 'ଜନଶକ୍ତି' ସଂସ୍ଥା ସବୁକୁ ଆୟକର, ବିକ୍ରିକର ବିଭାଗ ଓ ଅର୍ଥ କର୍ପୋରେସନ ଦଖଲ କରିନେଲେ । ରୁଗ୍ଣ, ଧନହୀନ ତଥା ନିଃସଙ୍ଗ ଅବସ୍ଥାରେ ତିଳ ତିଳ ହୋଇ ସେ ସରିଗଲେ । ଯେଉଁ ବ୍ୟକ୍ତି ଜଣକ ତାଙ୍କୁ ହାତବାରିସି କରି ଓଡ଼ିଶାର ଜନଜୀବନ ତଥା ରାଜନୀତିକୁ ଚଂଚଳ କରିଛନ୍ତି ଓ କରୁଛନ୍ତି, ଯେଉଁମାନେ ତାଙ୍କ 'ଦରବାର'ରୁ ଆର୍ଥିକ ସହାୟତା ନେଇ ପ୍ରତିଷ୍ଠିତ ହୋଇଛନ୍ତି, ଯେଉଁ ପୁଞ୍ଜିପତି ବ୍ୟବସାୟୀ ଗୋଷ୍ଠୀ ତାଙ୍କ ଦ୍ୱାରା ନିଜର ପ୍ରଭୂତ ଫାଇଦା ଉଠାଇଛନ୍ତି, ସେମାନେ କେହି ଜଣେ ହେଲେ ବି ତାଙ୍କୁ ତାଙ୍କର ଅନ୍ତିମ ଅବସ୍ଥାରେ ଆଉ ଆଖିରେ ବି ଅନାଇଲେ ନାହିଁ । ଏହି ଦାରୁଣ ଦୁଃଖ ବେଦନା ଶ୍ରୀ ମିଶ୍ରଙ୍କ ଭିତରେ ତୁଷାନଳ ପରି ଜଳି ଜଳି ନୀରବରେ ତାଙ୍କୁ ନିଃଶେଷ କରିଦେଲା ।

ଦୁଇଟି ଘଟଣା ଆଜି ମୋର ସବୁଠାରୁ ଅଧିକ ମନେ ପଡ଼େ । ଗୋଟିଏ ହେଲା ବୀରେନ ଦା'ଙ୍କ ସହିତ ମୋର ଶେଷ ସାକ୍ଷାତର ଦିନ, ଅନ୍ୟଟି ହେଲା ତାଙ୍କ ବଡ଼ପୁଅ 'ବାବୁଲ'ର ଅକାଳ ତଥା କରୁଣ ମୃତ୍ୟୁ । ଏ ଦୁଇଟି ଘଟଣା ମୋ ମନରେ ଅତ୍ୟନ୍ତ ପୀଡ଼ାଦାୟକ । ୧୯୭୫ ସାଲର କଥା । ତମାମ ଭାରତ ବର୍ଷରେ ଯେତେବେଳେ ଜାତୀୟ ଜରୁରୀ ପରିସ୍ଥିତି ଘୋଷିତ ହେଲା,

ମୋତେ ସେତେବେଳେ ଭାରତରକ୍ଷା ଆଇନ (D.I.R.) ଓ ଅଭ୍ୟନ୍ତରୀଣ ନିରାପତ୍ତାରକ୍ଷା ଆଇନ (MISSA) ବଳରେ ଗିରଫ କରିବା ପାଇଁ ନନ୍ଦିନୀ ସରକାର ଓ୍ୱାରେଣ୍ଟ ଜାରିକଲେ । ଫଳରେ ବାଧ୍ୟ ହୋଇ ମୋତେ ଆତ୍ମଗୋପନ କରିବାକୁ ପଡ଼ିଥିଲା । ମାସାଧିକ ପରେ ମୋତେ ମୋର ଗୋପନ ଘାଟିରୁ ପୋଲିସ ଗିରଫ କରିବାକୁ ସମର୍ଥ ହେଲା । ଦୀର୍ଘ ଦିନ କଟକ ସେଣ୍ଟ୍ରାଲ ଜେଲରେ ଅଟକବନ୍ଦୀ ରହିବା ପରେ ୧୯୭୫ ନଭେମ୍ବର ତା୧୧ରିଖରେ ୬୦ଦିନ ପାଇଁ ମୋତେ ଜବରଦସ୍ତ 'ପ୍ୟାରୋଲ'ରେ ମୁକ୍ତ ଦିଆଗଲା । ସେହି ନଭେମ୍ବର ଶେଷ ସପ୍ତାହରେ ଦିନେ ବୀରେନ ଦା'ଙ୍କୁ ଦେଖା କରିବା ପାଇଁ ତାଙ୍କ କାଠଗଡ଼ାସାହିସ୍ଥ ବାସଭବନକୁ ଯାଇଥିଲି । ଗୋଟିଏ ଆରାମ ଚଉକି ଉପରେ ଉପର ମହଲାରେ ଏକାକୀ ପଡ଼ି ରହିଥିଲେ ବୀରେନ ଦା' । ଦେହଟା ନିରକ୍ତ ଆଉ ଫୁଲା । ଘରଟାରେ ଫିନାଇଲର ତୀବ୍ର ଗନ୍ଧ । ମୁଁ ସାମ୍ନାରେ ଠିଆହୋଇ ତାଙ୍କୁ ଥରେ ଭଲ କରି ଦେଖିନେଲି । ମୋ ଉପରେ ତାଙ୍କର ଦୃଷ୍ଟି ପଡ଼ିବା ମାତ୍ରେ ମୁଁ ନମସ୍କାର କରି ଆଉ ଟିକେ ତାଙ୍କ ସମ୍ନାକୁ ଆଗେଇ ଗଲି । ସେ ତାଙ୍କ ନିରକ୍ତ ମୁହଁରେ ସାମାନ୍ୟ ହସ ଫୁଟାଇ ପାଖରେ ପଡ଼ିଥିବା ଗୋଟିଏ ଟୁଲରେ ମୋତେ ବସିବାକୁ ଇସାରା ଦେଲେ । ବସିଲି । ମୁଁ କେବେ ଖଲାସ ହେଲି, ମୋର ସ୍ତ୍ରୀ ପିଲାମାନେ କେମିତି ଅଛନ୍ତି ଇତ୍ୟାଦି ସବୁ ସେ ପଚାରିଗଲେ, ଆଉ ଜରୁରୀ ପରିସ୍ଥିତି ବିରୁଦ୍ଧରେ ଦୁଇ ପଦ ମନ୍ତବ୍ୟ ଦେଲେ । ମୁଁ ତାଙ୍କର ଭଲ ମନ୍ଦ, ଶରୀର କେମିତି ରହୁଛି ପଚାରନ୍ତେ ସେ କେଡ଼େ ଅସହାୟ ଭାବରେ କରୁଣ ଆଖିରେ ମୋ ମୁହଁକୁ ଅନାଇଲେ । ତାଙ୍କର ସେ ଚାହାଣିର ଭାଷାକୁ ପଢ଼ିବା ପରି ଶକ୍ତି ସେତେବେଳେ ମୋର ନଥିଲା । ସେ ଚାହାଣି ହୁଏତ କହିବାକୁ ଚାହୁଁଥିଲା, କୃତଘ୍ନତା, ବେଇମାନୀ, ଧୋକାବାଜିର ନାରକୀୟ ଇତିହାସକୁ ! ତାଙ୍କ ପାଖରେ ସେଦିନ ବସିଥିଲି ବି ମୁଁ ମନେ ମନେ ଚାଲିଯାଇଥିଲି ବହୁ ସୁଦୂର ଅତୀତକୁ । ଏଇ ବୀରେନ ଦା', ଏଇ ବୀରେନ ମିତ୍ର, ଏକଦା ଯାହାର ମନ୍ଦ୍ର ମେଘର ଗର୍ଜନ, ଯାହାର ତର୍ଜନୀ ସଙ୍କେତ, ଯାହାର ଟେଲିଫୋନ ନିର୍ଦ୍ଦେଶ ସରକାରୀକଳ ତଥା ଅମଲାତନ୍ତ୍ରକୁ ନିୟନ୍ତ୍ରିତ କରୁଥିଲା । ଖୋଲା ଦେହ, ସିଗାରେଟ ଧୂଆଁର ମେଘ, ହାତ ପାଖରେ ୩୦୨ ନମ୍ବର ଟେଲିଫୋନ, କଟକ ତଥା ଓଡ଼ିଶାର ନାନା ଶ୍ରେଣୀର ଲୋକ, ସେମାନଙ୍କର ନାନା ସମସ୍ୟା ଯଥା : ଦୁଃଖ, ଦୈନ୍ୟ, ରୋଗ, ଅନ୍ୟାୟ ଅତ୍ୟାଚାର, ଅମିତର ପ୍ରତିକାର ପାଇଁ ଚଉଠଶତାବ୍ଦୀ କାଳ ଘେରି ରହିଥିଲେ ଯେଉଁ ଲୋକଟିର ଆରାମ ଚଉକି ଚାରିପାଖରେ ଆଉ ସାମ୍ନାରେ, ଆଜି ସେହି

ଲୋକଟି ଅସହାୟ, ଅବହେଳିତ, ଉପେକ୍ଷିତ ଅବସ୍ଥାରେ ଏଠି, ସୁଶକାନ୍ତ ଭିତରେ ଆରାମ ଚଉକିଟି ଉପରେ ପଡ଼ିରହିଛନ୍ତି । ତା'ର ଇତାଲ ନେବାକୁ କେହି ନାହାନ୍ତି । ପାଖରେ କମଣ୍ଡଳ ଶୂନ୍ୟ । ଜଣେ ସାହାଯ୍ୟକାରୀ ନହେଲେ ଆହାର, ନିତ୍ୟକର୍ମ ଆଦି ଅସମ୍ଭବ, ତା ଉପରେ ପୁଣି ପକ୍ଷାଘାତର ଅଭିଶାପ । ହାୟ ନିଷ୍ଠୁର ସମୟ ; ବାସ୍ତବତା ଭିତରକୁ ଫେରିଆସି ଦେଖିଲି, ସୀତେନ ବାବୁଙ୍କ ନିଟୋଳ ଶେଥା ମୁହଁର ହନୁହାଡ଼ ଉପର ଦେଇ ଦୁଇଟି ଲୋତକର ଧାର ବହି ଆସିଛି । ମୁଁ ଏଥିରେ ଆନ୍ଦୋଳିତ ହୋଇ ଉଠିଲି । କହିଲି "ଦାଦା, ଆପଣ କାନ୍ଦୁଛନ୍ତି" ?

ବାଷ୍ପରୁଦ୍ଧ କଣ୍ଠରେ ସେ ମୋତେ କହିଲେ, "ତୁ ତ ଦେଖିଛୁ ରବି ଏଇ ହାତରେ ମୁଁ କାହାକୁ କ'ଣ ସାହାଯ୍ୟ କରିଛି । ଆଜ "

କହୁ କହୁ ସେ ରହିଗଲେ । ମୁଁ କହିଲି, "ପଛ କଥା ଭାବି ଲାଭ କ'ଣ ଦାଦା ?"

"...ଦୁଃଖ ଲାଗୁଛି, ମୋତେ ଠିକେ ଦେଖିବାକୁ କେହି ଆସୁ ନାହାନ୍ତି ।"

ଆହା ! କି ମର୍ମାନ୍ତିକ ବେଦନା ! ହଁ, ମଧୁଚକ୍ରରୁ ଯେତେବେଳେ ମଧୁ ନିଃଶେଷ ହୋଇ ଯାଇଛି ସେତେବେଳେ ତହିଁରେ ଆଉ କି ପ୍ରୟୋଜନ ?

ସବୁଦିନେ ଯେପରି ମୁଁ ତାଙ୍କ ପାଖରେ ୩୦ ମିନିଟରୁ ଅଧିକ ସମୟ ରହୁଥିଲି । ଯେତେବେଳେ ବିଦାୟ ନେବାକୁ ଉଠି ଠିଆ ହୁଏ, ଅଳ୍ପ କୁହେ, "ଦାଦା, ଯାଉଛି । ବାହାରେ ଥିଲେ ଆଉଥରେ ଆସିବି । ଧୈର୍ଯ୍ୟ ଧରନ୍ତୁ, ପଛକଥା ଭାବି ନିଜକୁ କଷ୍ଟ ଦିଅନ୍ତୁ ନାହିଁ" ସେତେବେଳେ ସେ ଗୋଟାଏ ଦୀର୍ଘଶ୍ୱାସ ମୋଚନ କଲେ ଏବଂ ସନ୍ତ୍ରସ୍ତ ହୋଇ ମୋତେ ପଚାରିଲେ, "ତୋ ପାଖରେ ପଇସା ଅଛି ?"

ମୁଁ ଏ ପ୍ରଶ୍ନରେ ସ୍ତମ୍ଭିତ ହୋଇଗଲି । ପଚାରିଲି, "କାହିଁକି ? କ'ଣ ଦରକାର ?"

"ମତେ ଦଶପଇସାର ବଡ଼ା ଆଣି ଦେଇ ଯା !"

ତଳକୁ ଓହ୍ଲାଇ କଟାଏ ଗ୍ରେଟ ଚାପବଡ଼ କିଣି ତାଙ୍କୁ ଦେଇ ବାହାରକୁ ଆସି ବାହାରୁଥିଲି ବେଳେ ମୋର ମାନସିକ ଭାରସାମ୍ୟ କିଛିଟା ମୁଁ ହରାଇ ବସିଥିଲି ।

ଏ ଘଟଣାର କିଛିବର୍ଷ ପରେ । ୧୯୭୮ ମସିହା ଜୁନ ମାସ ତା ୨୪ ରିଖରେ ଶ୍ରୀଯୁକ୍ତ ବୀରେନ ମିତ୍ର ମରିଗଲେ ନାହିଁ ଯେ, ଚାଲିଗଲେ । ଅବଶ୍ୟ ତତ୍କାଳୀନ ଜନତା ସରକାରଙ୍କ ତରଫରୁ ତାଙ୍କ ଶବକୁ ରାଷ୍ଟ୍ରୀୟ ସମ୍ମାନ ପ୍ରଦର୍ଶନ କରା ଯାଇଥିଲା । ତାଙ୍କ ଶବଯାତ୍ରାରେ ଯୋଗ ଦେବା ପାଇଁ ସେଦିନ ହାଇ କୋର୍ଟ ସହରଟା ସତେ ଯେପରି ପାଗଳ ହୋଇ ଉଠିଥିଲା ! ତାଙ୍କ ଚିତାଗ୍ନି ପାଖରେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ, କେନ୍ଦ୍ର ଇସ୍ପାତ ଖଣିମନ୍ତ୍ରୀ ବିଜୁ ପଟ୍ଟନାୟକ, କେନ୍ଦ୍ର ସ୍ୱାସ୍ଥ୍ୟମନ୍ତ୍ରୀ ରବିରାୟ ପ୍ରମୁଖଙ୍କ ଗହଣରେ ଠିଆହୋଇ ତାଙ୍କ ସ୍ମୃତି ପ୍ରତି ନୀରବ ଶ୍ରଦ୍ଧାଞ୍ଜଳି ମୁଁ ଜଣାଇଥିଲି ସେଦିନ ।

ବୀରେନ ବାବୁଙ୍କ ମୃତ୍ୟୁ ପରେ ଅତି ଅପ୍ରତ୍ୟାଶିତ ଭାବରେ ତାଙ୍କର ବଡ଼ ପୁଅ "ବାବୁଲ" ମଧ୍ୟ ଇହଧାମରୁ ଅକାଳରେ ବିଦାୟ ନେଇଥିଲା । "ବାବୁଲ" - ଦୁଗ୍ଧଫେନ ନିଭ ସୁକୋମଳ ଶଯ୍ୟାରେ ଯାହାର ଶୈଶବ ଆରମ୍ଭ ହୋଇଥିଲା, ଯିଏ ଥିଲା ଅଘୋଷିତ ଏକ ସମ୍ରାଟର ଜ୍ୟେଷ୍ଠ ଦୁଲାଳ; ସେହି "ବାବୁଲ" ଦାରିଦ୍ର୍ୟ, ହତାଶା, ଅଭାବ, ଲାଞ୍ଛନା, ଅବହେଳା ମଧ୍ୟରେ କେବଳ ତିଳ ତିଳ କରି ନିଃଶେଷ ହୋଇ ନଥିଲା, ପରିଶେଷରେ ଉଦ୍ଭ୍ରାନ୍ତ ହୋଇ ଆଶ୍ରୟ ନେଇଥିଲା ମଦ ବୋତଲର । ଅବସ୍ଥା ଏପରି ସୀମାକୁ ଉଠିଥିଲା ଯେ, ରାସ୍ତାର ଇତର ଲୋକେ ମଧ୍ୟ ତାକୁ ମାରଧର କରିବାକୁ କୁଣ୍ଠାବୋଧ କରି ନଥିଲେ । ଆପଣାର ଜୀବପତ୍ତିର ସୁରକ୍ଷା ଲାଗି ଓଡ଼ିଶାର ଭୂତ ମୁଖ୍ୟମନ୍ତ୍ରୀଙ୍କର ସେହି ଆଦରର ଜ୍ୟେଷ୍ଠ ଦୁଲାଳ ବାରମ୍ବାର ପୁଲିସ ଥାନାର ଦ୍ୱାରସ୍ଥ ହୋଇଥିଲେ ମଧ୍ୟ ତାର ଆବେଦନ ପ୍ରତି ପୁଲିସ କର୍ଣ୍ଣପାତ କରିନଥିଲେ । ସବୁଶେଷରେ ଦାରୁଣ ଦୁର୍ଦ୍ଦିନରେ ଭାରସାମ୍ୟ ହରାଇ "ବାବୁଲ" ଶେଷରେ ଡାକ୍ତରଖାନାର ଖଟିଆକୁ ଆଶ୍ରା କଲା । ପରିଶେଷରେ ନିଜର ବିଧବା ପତ୍ନୀ, ବୋଧହୁଏ ତିନୋଟି ସନ୍ତାନକୁ ଛାଡି ଦେଇ ବିଦାୟ ନେଇଥିଲା ନିଜର ତରୁଣ ଜୀବନ ପାଖରୁ ।

ହଁ, ସାଦରେନ ମିଶ୍ରଙ୍କ "ଦରବାର"ରେ ଯାଇ ପହଞ୍ଚିଲି ବେଳକୁ ଭିତରେ ମୋର କରଡ଼ ଜଳୁଥିଲା। ନାନା ଧରଣର ଅସଂଖ୍ୟ ମଣିଷଙ୍କ ଭିଡ ଭିତରେ ବହୁ ସମୟ ଅପେକ୍ଷା କଲା ପରେ ଶ୍ରୀ ମିଶ୍ରଙ୍କୁ ଦେଖା କରିବାର ସୁଯୋଗ ପାଇଲି। ପ୍ରଥମ ଦେଖାରେ ସେ ମୋତେ ଚିହ୍ନି ପାରିଲେ ଆଉ ନେଇ ନିଜ ପାଖରେ ବସାଇଲେ। ବହୁ ଆଖିର ଦୃଷ୍ଟି ମୋ ଉପରେ ନିବଦ୍ଧ ହେଲା। ମୁଁ ତାଙ୍କୁ ସଂକ୍ଷେପରେ ବାପାଙ୍କ ମୃତ୍ୟୁ ପରେ ମୋର ଶୋଚନୀୟ ଅବସ୍ଥା କଥା ଜଣାଇବାରୁ ସେ ଦୟାର୍ଦ୍ର ହେଲେ ସତ, କିନ୍ତୁ କୌଣସି ସ୍ଥାୟୀ ବନ୍ଦୋବସ୍ତର ବ୍ୟବସ୍ଥା ନକରି ମୋତେ ପାଞ୍ଚୋଟି ଟଙ୍କା ଦେଇ ମଝିରେ ମଝିରେ ଆସି ତାଙ୍କୁ ଦେଖା କରିବାକୁ କହିଲେ। ପାଞ୍ଚ ଟଙ୍କା—୧୯୪୭ ମସିହାରେ ପୁଣି ପାଞ୍ଚ ଟଙ୍କା ! ବାପ୍‌ରେ ବାପ୍ ! ସେଦିନ ମୁଁ ସେତକ ପାଇ ଗୋଟାଏ କ୍ଷୁଦ୍ର ତଥା ସାମୟିକ ପୁଞ୍ଜିପତି ବନି ଯାଇଥିଲି ମନକୁ ମନ। ମନେ ନାହିଁ, ସେଠୁ ସେଦିନ ଫେରି ରାତିରେ କୋଉଠି ଶୋଇଥିଲି। କିନ୍ତୁ ଏକଥା ଠିକ୍ ମନେ ଅଛି, ସେଦିନ ରାତିରେ ସ୍ଥିର କରିଥିଲି ଆଗାମୀ କାଲି ସକାଳୁ ନିଶ୍ଚୟ ଯାଇ ଦେଖା କରିବି "ବାପୀ" ବା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ। ନବବାବୁ ସେତେବେଳେ ଓଡ଼ିଶାର ରାଜସ୍ୱ ମନ୍ତ୍ରୀ। ମୋର ସେତେବେଳେ ଦରକାର ଥିଲା ବହୁତ କିଛି। ଯଥା : ନିରାପଦ ଟିକେ ଆଶ୍ରୟ, ସ୍ନେହ ଶ୍ରଦ୍ଧା, ନିୟମିତ ଦି'ବେଳା ଦି'ମୁଠା ଭାତ, ଲଜ୍ଜା ନିବାରଣ ପାଇଁ ଦିହଳ ପ୍ୟାଣ୍ଟ-ସାର୍ଟ ଆଉ ପାଠ ପଢ଼ିବାର ବ୍ୟବସ୍ଥା। କିନ୍ତୁ ହାୟ ! ମୋର ଅଲକ୍ଷ୍ୟ ଏବଂ ଅଜ୍ଞାତରେ ମୋର ଦୁର୍ଦ୍ଦୈବ ହୁଏତ ସେଦିନ ମୋତେ ବିଦ୍ରୂପ କରି କହୁଥିଲା—ଆରେ ଲକ୍ଷ୍ମୀଛଡ଼ା, କିଏ ଦେବ ତୋତେ ଏସବୁ ? ତୋ ପାଇଁ ପାଠଶାଳା କାହିଁ ? ତୋ ପାଇଁ ଗୁରୁ କାହାନ୍ତି ? ତୋ ପାଇଁ ଠାବ ବା ଅଛି କୋଉଠି ? ତୋ ଗୁରୁ ଅଛି ତୋ ଭିତରେ। ତୁ ତାଙ୍କୁ ଦେଖିନୁ, ଦେଖିଲେ ବି ଚିହ୍ନି ପାରିନୁ। ଦିନ ଆସିବ, ତୁ ତୋ ଗୁରୁଙ୍କୁ ଚିହ୍ନି ପାରିବୁ,···ଦେଖିବୁ। ଆଉ ଆଶ୍ରୟ ? ଏଇ···ଏଇ ଉଦାର ଆକାଶ ତଳ ତୋର ନିରାପଦ ଆଶ୍ରୟ, ସାରା ସଂସାର··· ତମାମ ମଣିଷ ସମାଜ ଏବଂ ତା'ର ସଂଗ୍ରାମ, ସଂଘାତ, ଆଶାନିରାଶା, ହର୍ଷବିଷାଦ ତୋର ତ ମହାବିଦ୍ୟାଳୟ ! ତୁ ଆଜି କେବଳ ନିଃସଙ୍ଗ ନୋହୁ, ଜୀବନ ତମାମ ତୁ ଏକୁଟିଆ ବାଟୋଇ। ଆରେ ପଦାତିକ ! ତୋର ଜୀବନ ହିଁ ତୋର ସମର ବିଜ୍ଞାନ। ଅଗଣିତ ବ୍ୟକ୍ତିରେକେ ଅନ୍ୟ କୌଣସି ପାଥେୟ ତୋର ନାହିଁ।

ମୋ ନିଷ୍ଠୁର-ଦୁର୍ଦ୍ଦୈବର ଏହି ଭବିଷ୍ୟତବାଣୀ ବା ଅଭିଶାପ ତଥା ବାର୍ତ୍ତା—ଏ ସବୁର ଯଥାର୍ଥତା ଯେ କେତେ, ତାହା ଆଜି ବି ମୁଁ ହାଡ଼େ ହାଡ଼େ ଅନୁଭବ କରୁଛି ।

ଅବଶ, କ୍ଳାନ୍ତ ଦେହର ଭାରକୁ ବହନ କରି ପାଦ ଦ'ଟା ମୋତେ ଆଗକୁ ଯିବା ପାଇଁ ପ୍ରସ୍ତୁତ ନ ଥିଲା ସେଦିନ । କିନ୍ତୁ ମଝିବାଟରେ ହାତ ଗୋଡ଼ ଯୋଡ଼ି ବସିରହିଲେ ତ ଯାତ୍ରାପଥ ଅଜ୍ଞାନ୍ତ ହୁଏନା ବା ଲକ୍ଷ୍ୟସ୍ଥଳ ପାଖକୁ ଆସେନା ।

ସକାଳ ପ୍ରାୟ ଆଠଟା ହେବ ।

କଟକ କ୍ୟାଣ୍ଟନମେଣ୍ଟ ରୋଡ଼ରେ ୧୮ ନମ୍ବର କୋଠିର ଫାଟକ ସାମ୍ନାରେ ଯାଇ ଠିଆ ହେଲି । ଲାଜ ମାଡ଼ୁଥାଏ ଭିତରକୁ ପଶିବା ପାଇଁ । କାରଣ, ପିନ୍ଧିଥିବା ଖଦଡ଼ ସ୍ୟାଣ୍ଡଟି ପଛରୁ ଚିରି ଯାଇଥାଏ । କୋଠି ସାମ୍ନାରେ ଆଉଟନ୍ ଧନ ଭଙ୍ଗୀରେ ସଶସ୍ତ୍ର ପ୍ରହରୀ ଠିଆ ହୋଇଥାଏ । ଦୂରରୁ ଦେଖିଲି, ରାଜସ୍ୱ ମନ୍ତ୍ରୀ ନବବାବୁ ନିଜର ଦୁଇହାତକୁ ପଛପଟେ ଛନ୍ଦି ବାରଣ୍ଡାରେ ଟହଲ ମାରୁଛନ୍ତି । ସଙ୍କୁଚିତ ଭାବେ ଭିତରକୁ ଗଲି । ସିଧାସଳଖ ଯାଇ ବାରଣ୍ଡା ତଳେ ଆଭୂମି ନତ ହୋଇ ପ୍ରଣାମ ଜଣାଇଲି ନବବାବୁଙ୍କୁ । ସେ ମୋତେ ଦେଖି ପକାଇ ବଡ଼ ପାଟିରେ ପଚାରିଲେ, "କିରେ ? ···ତୁ କୋଉଠି ଥିଲୁରେ··?" ତା' ପରେ ସେ "ନୁମା" (ତାଙ୍କ ସହଧର୍ମିଣୀ ଶ୍ରୀମତୀ ମାଳତୀ ଚୌଧୁରୀ)ଙ୍କ ଉଦ୍ଦେଶ୍ୟରେ ପୁଣି ବଡ଼ ପାଟିରେ କହି ଉଠିଲେ, "ନୁମା' ଦେଖିବ ଆସ କିଏ ଆସିଛି ।" ସଙ୍ଗେ ସଙ୍ଗେ ଭିତରୁ "ନୁମା" ଓ "କାଲୁ" (ତାଙ୍କର ଏକମାତ୍ର ସ୍ୱର୍ଗତ ପୁତ୍ର ବିନାୟକ ଚୌଧୁରୀ) ବାହାରି ଆସିଲେ । "ନୁମା" ମୋତେ ଚିହ୍ନି ନ ପାରି କହିଲେ, "କାହିଁ ? କିଏ ?"

"ଆରେ ! ତମେ ଚିହ୍ନି ପାରୁନା ? ଇଏ ପରା ଆମ ରାମ ସିଂଙ୍କ ପୁଅ" କହିଲେ ନବବାବୁ । ସଙ୍ଗେ ସଙ୍ଗେ ଏକ ପ୍ରଚଣ୍ଡ ତାଚ୍ଛଲ୍ୟ ସୂଚକ ମନ୍ତବ୍ୟ ମୋ ଉଦ୍ଦେଶ୍ୟରେ ଉଚ୍ଚାରିତ ହେଲା "ନୁମା" ବା ମାଳତୀ ଚୌଧୁରୀଙ୍କ କଣ୍ଠରୁ, "ଏଇ ଟୋକା ! ଏଇଟା ବଜାରିଆଟାଏ । ମୁଁ ଏହାକୁ ଅନେକ ଥର ରାସ୍ତାଘାଟରେ ଦେଖିଲିଣି । ଛାତ୍ରମାନଙ୍କ ଘରେ ବୁଲୁଛି । ଯା ତା' ପାଖକୁ ଯାଇ ମାଗୁଛି । ଆଜି ଘରେ (ବଡ଼) ଖାଉଛି ।"

ହିଁ, ସତକଥା । ମୁଁ ସେତେବେଳେ ବୁଲୁଥିଲି ।...ଆଜି ମଧ୍ୟ ବୁଲୁଛି । କିନ୍ତୁ ମୋର ଏଇ ବୁଲିବା ବା ଭ୍ରମଣଶୀଳ ଅବସ୍ଥା ପାଇଁ ତ ମୁଁ ଦାୟୀ ନୁହେଁ । ମୋତେ ଅନାଥ କରି ବୁଲାଇବା ପାଇଁ ପ୍ରଥମେ କଷ୍ଟପଥରେ ସ୍ଥାପନ କରିଥିଲି । ମୋର ସ୍ୱର୍ଗତ ପିତା ରାମଚନ୍ଦ୍ର ସିଂହଙ୍କ ଜୀବନ ତମାମ ସାମ୍ରାଜ୍ୟବାଦ ବିରୋଧୀ ସ୍ୱାଧୀନତା ସଂଗ୍ରାମର ଭୂମିକା, ତ୍ୟାଗ ଆଉ ତପସ୍ୟା । ଯେଉଁ କଷ୍ଟପଥରେ ପଡ଼ି ଆଜିଯାଏ ମୁଁ କେବଳ ବୁଲୁଛି ଆଉ ବୁଲୁଛି, ସେ କଷ୍ଟପଥରେ ଅନ୍ୟ ଯେ କେହି ପଡ଼ିଲେ ତାର ବୁଲିବା ବ୍ୟତୀତ ଅନ୍ୟ କୌଣସି ଗତ୍ୟନ୍ତର ନଥାନ୍ତା । କଟକ ଜିଲ୍ଲା ଜଗତସିଂହପୁର ଥାନା ଧେନ୍କପାଟଣା ପାଖ ୧୩ ନମ୍ବର ମାଛଗାଁ କେନାଲ କଡ଼ରେ ଯେତେ ଅତି ଉତ୍ପାଦନକ୍ଷମ ଜଳସେଚିତ ଧାନଜମି ଆଜି ବି ରହିଛି, ତାର ଏକଦା ଯିଏ ମାଲିକ ଥିଲେ, ସେ ଲୋକଟି ମନରେ ଦିନେ ପ୍ରଶ୍ନ ଉଠିଲା ଦେଶପାଇଁ ପ୍ରଥମେ ସ୍ୱାଧୀନତା ଦରକାର ନା ଏଇ ଧାନଜମି ହିଁ ଦରକାର ? ପରିଶେଷରେ ସେ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ପ୍ରଥମେ ସ୍ୱାଧୀନତା ଦରକାର । ସେଥିପାଇଁ ସେ ଆଗପଛ ନ ଭାବି ଦେଶପ୍ରୀତି ତଥା ଜାତୀୟତାବାଦର ଉଦ୍ଦାମ ପ୍ରେରଣାରେ ପାଦ ବଢ଼ାଇଥିଲେ ଆଗକୁ ମରଣପଣ ଶପଥ ନେଇ । ୧୯୪୭ ମସିହାରେ ସ୍ୱାଧୀନତା ଆସିବା ବେଳକୁ ସେ ଓ ତାର ପରିବାର ଉଚ୍ଛନ୍ନ ହୋଇ ସାରିଥିଲେ । କାରାବାସ, ଜମିନିଲାମ, କୋର୍ଟକେସ, ଜୋରିମାନା ଆଦିର ଘନଘଟା ତାଙ୍କୁ କରିଥିଲା ଦାଣ୍ଡର ଭିକାରୀ । ସ୍ୱାଧୀନତା ଆସିବା ୬ମାସ ଆଗରୁ ସେ ଲୋକଟି ବିଦାୟ ନେଇଥିଲେ ଜୀବନ ପାଖରୁ—ପୃଥିବୀର ରାଜପଥ ଉପରେ ଛାଡ଼ି ଯାଇଥିଲେ କେବଳ ୧୩।୧୪ ବର୍ଷର ଏକ ଅନାଥ ବାଳକକୁ । ସେ ବାଳକ ପାଇଁ ନଥିଲା ଆଶ୍ରୟ, ଅନ୍ନ, ବସ୍ତ୍ର, ଶିକ୍ଷା । ସେହି ଲୋକଟି ହେଲେ ମୋ ସ୍ୱର୍ଗତ ପିତା ରାମଚନ୍ଦ୍ର ସିଂହ, ଆଉ ସେହି ଅନାଥ ବାଳକଟି ହେଲି ମୁଁ, ଅର୍ଥାତ୍ ଆଜିର କୁଖ୍ୟାତ ତଥା ବିଖ୍ୟାତ, ଆଦୃତ ତଥା ଅନାଦୃତ, ଦରିଦ୍ର ଅଥଚ ଧନୀ, ମୂର୍ଖ ଅଥଚ ପଣ୍ଡିତ ଏବଂ ବହୁ ମନଗଢ଼ା କିମ୍ବଦନ୍ତୀର ନାୟକ "ବିପ୍ଳବୀ କବି ରବି ସିଂ ।"

ତେଣୁ, ପ୍ରଥମରୁ ମୋର' 'ବୁଲିବା" ଛଡ଼ା ଅନ୍ୟ କୌଣସି ଉପାୟ ନଥିଲା । ଆଜି ବି ନାହିଁ । ଏକଥା ଯେ ସେତେବେଳେ ମାଳଞ୍ଚ ଦେବୀ ଜାଣି ନଥିଲେ, ତାହା ନୁହେଁ ।

ସବୁ ଜାଣି ସୁଦ୍ଧା ସମସ୍ତ ପୃଷ୍ଠଭୂମି ପ୍ରତି ଆଖି ବୁଜି ଦେଇ ମୋର "ପ୍ରଳୟ"ଟାକୁ ଭୁଲ୍ ଭାଷ୍ୟ କରିବା ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ପକ୍ଷରେ ସମୀଚୀନ ଥିଲାକି ନାହିଁ ତାର ବିଚାରକ ମୋର ପାଠକ ଶ୍ରେଣୀ । ତା'ଛଡ଼ା ମୁଁ କୁଆଡ଼େ "ଜନାଶ୍ରୟାଏ" ମାଳତୀ ଦେବୀଙ୍କର ଏ ଅଭିଯୋଗଟା କିନ୍ତୁ ଠିକ ନୁହେଁ । ଯେଉଁ ଦୁଃସମୟର ଜଠର ଭିତରେ ମୁଁ ଏଯାଏ ଏକାକୀ ପିଲଟିନ୍ ଗୁଳି ଆସିଲି. ଆଜି ପର୍ଯ୍ୟନ୍ତ ମୋ ପ୍ରତି, ମୋ ଜୀବନ ପ୍ରତି, ମୋ ପରିବାର ପ୍ରତି ନବବାବୁ. ମାଳତୀ ଦେବୀଙ୍କ ଠାରୁ ଆରମ୍ଭ କରି ସମାଜର ସୁବିଧାଭୋଗୀ ଶ୍ରେଣୀ, ରାଜନୈତିକ ନେତୃମଣ୍ଡଳୀ, ଯଶସ୍ୱୀ ଧନବାନ ମଣିଷ, ସମାଜର ମଣ୍ଡା-ପ୍ରବନ୍ଧକ-ବର୍ଗ ଯେଉଁ କୁତ୍ସିତ ବ୍ୟବହାର ଦେଖାଇ ଆସିଛନ୍ତି ଓ ଆସୁଛନ୍ତି ; ସେଥିରେ ସେମାନଙ୍କର "ସୌଭାଗ୍ୟ" ଯେ, ମୁଁ ଚୋର, ତସ୍କର, ଡକାୟତ, ଖୁଣୀ ବା କ୍ରିମିନାଲ ନ ହୋଇ, ବାମାଗ୍ରସ୍ତ ନ ବନି ହୋଇଛି ଜଣେ ବାମପନ୍ଥୀ ଚିନ୍ତକ, କବି, ସମାଲୋଚକ ତଥା ସାହିତ୍ୟିକ । ଏକଥା କେବଳ ୧୯୪୭ ମସିହା ନୁହେଁ ବହୁକାଳଯାବତ୍ ଚୌଧୁରୀ ପରିବାରର ଥିଲି କଳ୍ପନାର ଅତୀତ, ଯାହାର ଗୁଡ଼ିକାଠି ଆଜିବି ସେମାନେ ଖୋଜି ପାଇ ନାହାନ୍ତି— ପାଇବେ ନାହିଁ ମଧ୍ୟ ।

ପୁଣି ମାଳତୀ ଦେବୀଙ୍କର ଅନ୍ୟ ଅଭିଯୋଗଟି : ମୁଁ ବିଡ଼ି ଖାଉଛି, ହଁ ଅଭିଯୋଗଟି ସତ । ୧୯୪୭ ମସିହାରେ, ତାଙ୍କ ସ୍ୱାମୀଙ୍କ ମନ୍ତ୍ରୀତ୍ୱ କାଳରେ ମୁଁ ରାସ୍ତାକଡ଼ରେ ଭିକାରୀ, ଅନ୍ଧ, ବେଶ୍ୟା, କୁଷ୍ଠରୋଗୀ, କଳାବଜାରୀ, ସିଫିଲିସ ଗନୋରିଆ ରୋଗୀଙ୍କ ମେଳରେ ଜୀବନ ବିତାଉଥିଲି, ଆଉ ଭାତର ମୁଖଦର୍ଶନ କରୁଥିଲି କ୍ୱଚିତ୍ । କଳର ଥଣ୍ଡାପାଣି ଆଉ ବିଡ଼ିଧୂଆଁ ଥିଲା ମୋର ପ୍ରାଣଧାରଣ ତନ୍ତ୍ରୀର ସହାୟକ । ମୁଁ ଆଜିବି ଧୂମପାନ କରୁଛି । କିନ୍ତୁ ତାହା ବିଡ଼ି ନୁହେଁ ସିଗାରେଟ୍ । ମୋ କାବ୍ୟପୁରୁଷର ଭାଷାରେ ସେ ସିଗାରେଟ ହେଲା "ଶର ପରିଚିତ ଧବଳବସନା ସିଗାରେଟ୍-ପ୍ରିୟସୀ !" ଏଠି, ଏ ପ୍ରସଙ୍ଗରେ ଗୋଟିଏ ଘଟଣା ମନେପଡ଼େ । ପରବର୍ତ୍ତୀ କାଳରେ ପ୍ରଚଣ୍ଡ କବି ପ୍ରତିଭାର ଅଧିକାରୀ ହେଲି ପରେ ଓଡ଼ିଶାର ନାନା ସାହିତ୍ୟିକ ତଥା ସାଂସ୍କୃତିକ ଆନ୍ଦୋଳନର ସମ୍ମୁଖ ଭାଗରେ ମୋତେ ଠିଆ ହେବାକୁ ପଡ଼ିଥିଲା । ସେତେବେଳେ ଓଡ଼ିଆ ସାହିତ୍ୟରେ ଚୌର୍ଯ୍ୟବୃତ୍ତି (Plagiarism) ଉଦ୍‌ଘାଟନ କରିବାରେ ମୁଁ ଥିଲି ପଥିକୃତ୍ । ଫଳରେ ବହୁ ଯଶସ୍ୱୀ କବିଯଶ ପ୍ରାର୍ଥୀଙ୍କ କଲମ ଚିରକାଳ ପାଇଁ ବନ୍ଦ ହୋଇ ଯାଇଥିଲା । ଦିନେ ସନ୍ଧ୍ୟାରେ 'ପ୍ରଜାତନ୍ତ୍ର'

ପରିସର ମଧ୍ୟରେ ଡ଼ଃ ହରେକୃଷ୍ଣ ମହତାବଙ୍କ ସାନ୍ଧ୍ୟ ଦରବାରରେ ବସିଥିଲା-ବେଳେ ଆଲୋଚନା ପ୍ରସଙ୍ଗରେ ମହତାବ ବାବୁ ମୋତେ କହିଥିଲେ, “ହେ ରବି ! ତମେ ଏ ଡ୍ରେନ-ଇନ୍‌ସପେକ୍‌ସନ କରୁଛ କାହିଁକି ? ନିଜେ ସୃଷ୍ଟି କରିଯାଅ । ଡ୍ରେନ ଗୁଡ଼ାକ ବଳେ ବଳେ ନିଶ୍ଚିହ୍ନ ହୋଇଯିବ ।” ମୁଁ ତାଙ୍କୁ ସେଦିନ ସ୍ପେକ୍‌ଟୋକ୍ ଉତ୍ତର ଦେଇଥିଲି, “ଆଜ୍ଞା, ରାଜନୈତିକ କ୍ଷମତା, ନାଲିଗାଡ଼ି, ସାମାଜିକ ସମ୍ମାନ, ଖ୍ୟାତି, ସମ୍ବାଦପତ୍ର, ଭଲ ଭଲ ଅନାଘ୍ରାତ ଗୋଲାପ, ସୁନ୍ଦରୀ ରମଣୀ, ବ୍ୟାଙ୍କଜମା, କୋଠାବାଡ଼ି ଆଦି ଦୁନିଆର ଶ୍ରେଷ୍ଠ ବସ୍ତୁ ସବୁକୁ ଆପଣମାନେ ନେଲା ପରେ ଆମ୍ଭମାନଙ୍କ ପାଇଁ କ’ଣ ଆଉ ରହିଲା ? ରହିଲା କେବଳ ନଷ୍ଟଚରିତ୍ରନାରୀକୁଳ, ନର୍ଦ୍ଦମା ବା ଡ୍ରେନ । ସେହି ଡ୍ରେନ ବା ନର୍ଦ୍ଦମା ଆମର ପବିତ୍ରତମ ନର୍ମଦା ଏବଂ ସେହି ନଷ୍ଟଚରିତ୍ରା ନାରୀକୁଳ ଆମର ରମ୍ଭା, ଉର୍ବଶୀ ସଦୃଶ । ତାକୁ ନେଇ ସାର ଏ ଗୁଡ଼ିକ ଉପରେ ବି ଆପଣମାନଙ୍କର ଲୋଭ ?”

ସାଥେ ସାଥେ ଜଳଦ କଣ୍ଠରେ ମହତାବ ବାବୁ କ୍ଷୁବ୍ଧ ହୋଇ ମୋତେ କହିଥିଲେ, “ରାମ, ରାମ, ରାମ, ! ମୁଁ କ’ଣ ତାକୁ ଲୋଭ କରୁଛି ? ହଉ ବାବୁ, ଥାଉ । ମୋର କହିବାଟା ଅପରାଧ ହେଉଛି ।”

ଠିକ ଏହି ବ୍ୟାପାରରେ ଘଡ ଟଣ୍ଡିକ, ଯିଏ ସେତେବେଳେ ମୋତେ ମୋର ଅର୍ଦ୍ଧାହାର-ଅନାହାର ଜର୍ଜ୍ଜର ଶୀତ ରାତିରେ ପଥପ୍ରାନ୍ତରେ ଦେଉଥିଲା ମାତୃ-କୋଳର ଉଷ୍ଣତା, ତା’ ପ୍ରତି ନଜର ପଡ଼ିଥିଲା ରାଜସ୍ୱମନ୍ତ୍ରୀଙ୍କ ସହ ଧର୍ମିଣୀଙ୍କର । ତାଙ୍କ ସ୍ୱାମୀତ ପୁଣି ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଥିଲାବେଳେ ଦାମିକା ସିଗାରେଟ୍ ଖାଉଥିଲେ ! ଅସଲ କଥା ହେଲା ଦରିଦ୍ର, ଘନ, ଅସହାୟ, ଦୁର୍ବଳ, ଅଜ୍ଞ ଲୋକମାନଙ୍କର ସାମାନ୍ୟତମ ବଦଭ୍ୟାସ’ ସାମନ୍ତବାଦୀ ପ୍ରତିକ୍ରିୟାଶୀଳ ମାନଙ୍କର ଗାତ୍ରଦାହର କାରଣ ହୋଇଥାଏ । ଅଥଚ ସେପରି ଦୁନିଆର ସମସ୍ତ ପ୍ରକାର “ବଦଭ୍ୟାସକୁ” ଅଭ୍ୟାସ କରିବାର ପଞ୍ଜା ସେଇମାନେହିଁ ନେଇଛନ୍ତି ! ସେମାନଙ୍କର ସେ “ବଦଭ୍ୟାସ” ଇଲାକାରେ, ତାର ଚଉହଦରେ ଅନ୍ୟ କାହାର ଗ୍ରାସ ପଡ଼ିଲେ ସେମାନଙ୍କର ମାତ୍ର ଢ଼ଏ “ଉପଦେଶ” ଦେବାର ଦୁହା ଘୋଷି ଘୋଷି ।

ପୁଣି ଶ୍ରୀମତୀ ଚୌଧୁରୀଙ୍କର ଆଉ ଏକ ଅଭିଯୋଗ ହେଲା, ମୁଁ କୁଆଡ଼େ ସ୍ୱା ତା ପାଖକୁ ଯାଇ ଭିକ ମାଗୁଛି ! ଏ ଅଭିଯୋଗ କେବଳ ଭିତ୍ତିହୀନ ନୁହେଁ, ଅମୂଳକ ଓ ମିଥ୍ୟା ମଧ୍ୟ । କହିବା ବାହୁଲ୍ୟ, ହେତୁ ପାଇବା ପର ଠାରୁ ମୁଁ

ହୋଇ ଉଠିଥିଲି ଅତ୍ୟନ୍ତ ସ୍ୱାଭିମାନୀ । ମୋର ଏଇ ସ୍ୱାଭିମାନ ପାଇଁ ଖୁଡ଼ୀର ପ୍ରିୟପାତ୍ର ନ ହୋଇପାରି ଝଡ଼ ବତ୍ୟାର ମୁଖରିତ ବର୍ଷାରାତ୍ରରେ ଘର ଛାଡ଼ି ପାଦରେ ଚାଲିଚାଲି ଆସି କଟକ ରେଲଷ୍ଟେସନର ମୁସାଫିରଖାନାରେ ଦେହରେ ଜରର ଖଇଫୁଟା ତାତି ନେଇ କୁଲିଗିରି କରି "ପାରିଶ୍ରମିକ" ବାବଦକୁ ପାଇଥିଲି ମୋଟା ମେହିକଦ୍ଧଳ ମାଟୁଓିଁ।ଡ଼ିର ଗୋଇଠା ଅଭ କୁଲି ସର୍ଦ୍ଦାରର ଧମକ ଆଉ ନାଲିଆଖି । ମୋର ସର୍ବନିମ୍ନ ସାମାନ୍ୟ ଆବଶ୍ୟକତା ତଥା ତାର ସ୍ଥାୟୀ ବନ୍ଦୋବସ୍ତ ଠିକଣା କରି ଦେବା ପାଇଁ ବହୁ ଜ୍ଞାନୀ, ମାନୀ, କ୍ଷମତାଧର ଲୋକଙ୍କୁ ଯେତେବେଳେ ମୁଁ ଆକୁଳ ଆକୁତି କରିଥିଲି ସେତେବେଳେ ସେମାନେ ଅନାୟାସରେ ତାହା ମଧ୍ୟ କରିପାରିଥାନ୍ତେ । କିନ୍ତୁ କେହି ସେଥି ପ୍ରତି କର୍ଣ୍ଣପାତ କରି ନଥିଲେ । ବରଂ ମୋର ପ୍ରଚଣ୍ଡ କୁଣ୍ଠା ସତ୍ତ୍ୱେ ମୋତେ ଦେଇଥିଲେ ଭିକ୍ଷା । ମୋର ସୌଭାଗ୍ୟ ଯେ, ତଦ୍ଦ୍ୱାରା ମୋର ଭିକ୍ଷାଭ୍ୟାସ ହୋଇନାହିଁ । ଏଠି ଏକ କଠୋର ସତ୍ୟ ଯଦି କୁହାଯାଏ, ତାହେଲେ କହିବାକୁ ହେବ, ସ୍ୱର୍ଗତ ପଣ୍ଡିତ ଜବାହରଲାଲ ନେହେରୁ ନିଜର "ଆନନ୍ଦ ଭବନ"କୁ କଂଗ୍ରେସ ଅନୁଷ୍ଠାନକୁ ଦାନ କରିବାର ପ୍ରତିଦାନରେ ଯେପରି ସାରା ଭାରତବର୍ଷକୁ ପୁରୁଷାନୁକ୍ରମେ ପୁତ୍ରପୌତ୍ରାଦି ସୂତ୍ରେ ଭୋଗ ଦଖଲ କରିବାର ସୁବିଧା ହାସଲ କରିଥିଲେ, ଠିକ୍ ସେହିପରି ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ଜମିଦାର ପରିବାର ନିଜର ଜମିଦାରୀ ଅଧୀନ ପ୍ରଜାମାନଙ୍କୁ ନିଜ ଜମିଦାରୀରୁ କିଛି କିଛି ଜମିଜମା ଦେଇଦେଇ ୭ବର୍ଷ କାଳରୁ ଊର୍ଦ୍ଧ୍ୱ ଓଡ଼ିଶାର ରାଜନୈତିକ କ୍ଷମତା ଉପଭୋଗ କରି କ୍ଷମତାରୁ ଗଲା ପରେ ସର୍ବୋଦୟ, ସର୍ବ ସେବାସଙ୍ଘ, ଭୂଦାନ ସମିତି, ଗାନ୍ଧୀ ସ୍ମାରକ ନିଧି, ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ, ଚାଲଗୃଡ଼ ଓ ଖଦୀ ପ୍ରତିଷ୍ଠାନ ଆଦି ନାମରେ ଜନସାଧାରଣଙ୍କ ଦ୍ୱାରାରେ ପୁତ୍ରପୌତ୍ରାଦିକ୍ରମେ ଏଯାବତ୍ ଜୀବନ ନିର୍ବାହ କରି ଆସୁ ନାହାନ୍ତିକି ? ଏହା କି ଧରଣର ଭିକ୍ଷାବୃତ୍ତି ?

"ନୁମା" ବା ଶ୍ରୀମତୀ ମାଳତୀ ଚୌଧୁରୀଙ୍କ କଟୁ ମନ୍ତବ୍ୟରେ ସେଦିନ ମୋର ସମଗ୍ର ଅସହାୟତା ଏକାଠି ହୋଇ ଅର୍ତ୍ତନାଦ କରି ଉଠିଥିଲା । ମୁଁ ସେଦିନ ବିକଳ ଭାବରେ କାନ୍ଦି ଉଠିଥିଲି । ମୋର ସେ କାନ୍ଦଣାରେ ରାଜସ୍ୱମନ୍ତ୍ରୀ ନବବାବୁ ମଧ୍ୟ ଟିକେ ବିବ୍ରତ ହୋଇ ପଡ଼ିଥିଲେ । ଅନେକ ସମୟ ଧରି ମୋର ସେ କାନ୍ଦଣା ବଳବତ୍ତର ରହିଥିଲା । କ'ଣ ପାଇଁ ମୁଁ ତାଙ୍କ ପାଖକୁ ଆସିଛି ବୋଲି ଯେତେବେଳେ ସେ ମୋତେ ପଚାରିଲେ, ମୁଁ ତାଙ୍କୁ କହିଲି, ମୁଁ ପାଠପଢ଼ିବି, ବରିପଦ ଆଶ୍ରୟ ନେଇ କୋଉଠି ରହିବି ତାର

ସବୁ ରକମର ବ୍ୟବସ୍ଥା ସେପରି ସେ କରି ଦେଇଛନ୍ତି । ନିଜର ଯଦଗୃହଣ ଭିତରେ ନବବାବୁ କ'ଣ ଚିନ୍ତା କଲେ, ତାପରେ ମୋତେ ବସିବାକୁ କହି ଭିତରକୁ ଗଲେ ଆଉ ନିଜେ ଟେଲିଫୋନ୍ ଉଠାଇ ୨୧୭ ନଂବର ଫୋନ୍‌କୁ ଟେଲିଫୋନ୍ କଲେ । (ଏ ଫୋନ୍‌ଟି ସେତେବେଳେ ଥିଲା କଂଗ୍ରେସ-ସୋସିଆଲିଷ୍ଟ ପାର୍ଟିର) ଏବଂ "ଚଞ୍ଚଳ ଆସ" କାହାକୁ କହି ବାହାରକୁ ଆସି ମୋତେ କହିଲେ, "ମୁଁ ଦ୍ୱିବେଦୀଙ୍କୁ ଡାକିଛି ! ତୁ ବସିଥା । ସିଏ ଆସୁ ।" ('ଦ୍ୱିବେଦୀ' ବୋଇଲେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ)

୧୫-୨୦ ମିନିଟ୍ ପରେ ।

ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଆସି ୧୮ନଂ କୋଠି ଭିତରେ ପାଇଲେକଲରୁ ଓହ୍ଲାଇଲେ । ପାଦରେ ଚଟି, ସାଧାରଣ ଖଦଡ଼ ଧୋତି ଆଉ ପଞ୍ଜାବୀ । ମୁଁ ଉଠି ଠିଆହୋଇ ତାଙ୍କୁ ନମସ୍କାର କରନ୍ତେ ସେ ହସିଦେଇ ନବବାବୁଙ୍କ ଅଫିସ ଭିତରକୁ ପଶିଗଲେ । ପୁଣି ବିତିଗଲା ୫।୧୦ ମିନିଟ୍ । ତା ପରେ ପିଅନ ଆସି ମୋତେ ଡାକିବାରୁ ମୁଁ ଅଫିସକୁ ଗଲି । ମୋତେ ଦେଖି ନବବାବୁ ଦ୍ୱିବେଦୀଙ୍କ ଉଦ୍ଦେଶ୍ୟରେ କହିଲେ, "ଇଏତ ପିଲାଦିନୁ ପାଠବି ପଢ଼ିଲା ନାହିଁ । ରାମବାବୁ ତ ସବୁ ସାରିଦେଇ ଗଲେ । ବିଚରା ବଡ଼ ଅସହାୟ ଅବସ୍ଥାରେ ବୁଲୁଛି । ସ୍କୁଲ ନେଇ ପାଠଶାଠ ପଢ଼ାଇ ମଣିଷ କର । ଭବିଷ୍ୟତରେ ଇଏ ଭଲ ସୋସିଆଲିଷ୍ଟ ହେବ ।"

ସୋସିଆଲିଷ୍ଟ ହେବା କଥାରେ ମୁଁ ସେଦିନ ପ୍ରତିବାଦ କରିଥିଲି । ମୁଁ ଏକଥା ମଧ୍ୟ କହିଥିଲି, "ମୋତେ ବରି ଆଶ୍ରମକୁ ପଠାଇ ଦିଅନ୍ତୁ । ମୁଁ ସେଇଠି ରହି ପାଠ ପଢ଼ିବି ।" ପ୍ରକାଶ ଥାଉକି ସେତେବେଳେ ବରି ଠାରେ ନବବାବୁଙ୍କ ବଡ଼ଭାଇ ସ୍ୱର୍ଗତ ଗୋପବନ୍ଧୁ ଚୌଧୁରୀଙ୍କ ଦ୍ୱାରା ପ୍ରତିଷ୍ଠିତ ଓ ପରିଚାଳିତ ସେହି ଆଶ୍ରମ ଦେଶରେ ଏକ ଗାନ୍ଧୀବାଦୀ ପୀଠ ରୂପେ ଖ୍ୟାତି ଅର୍ଜନ କରିଥିଲା । କିନ୍ତୁ ମୋ କଥା ପ୍ରତି ନବବାବୁ କର୍ଣ୍ଣପାତ ନକରି ମୋତେ ଦ୍ୱିବେଦୀଙ୍କ ହାତରେ ଅର୍ପଣ କରିଥିଲେ ।

# 'ଯଦୁନାଥ ଭବନ', କଂଗ୍ରେସ-ସୋସଲିଷ୍ଟ ପାର୍ଟି ଓ ମୋର ନିକଟତମ 'ପ୍ରଭୁ'ମାନେ

କଟକ ଓଡ଼ିଆ ବଜାରର "ଯଦୁନାଥ ଭବନ"—ଖପରଛାତ, ଏ ଦୁଇମହଲା କୋଠାଟି ସେତେବେଳେ ଥିଲା "କଂଗ୍ରେସ—ସୋସଲିଷ୍ଟ ପାର୍ଟି"ର ପ୍ରାଦେଶିକ ଦପ୍ତର । ମୁଁ ଯେତେବେଳେ ସୁରେନ୍ଦ୍ର ଦ୍ୱିବେଦୀଙ୍କ ସହିତ ଯାଇ ଏ ଭବନରେ ପାଦ ଦିଏ, ସେତେବେଳେ ଭବନର ସାମ୍ନାରେ ଉଡ଼ୁଥିଲା କଂଗ୍ରେସ ଦଳର ତିରଙ୍ଗା ପତାକା । ପତାକାର ମଧ୍ୟଭାଗରେ ଅଂକିତ ଥିଲା ଚଷଲଙ୍ଗଳ ସନ୍ତକ ।

ଦ୍ୱିବେଦୀଙ୍କ ହେପାଜତରେ ମୁଁ ଏହି ଭବନରେ ଆଶ୍ରିତ ହେବା ପରେ ମୋର ଖାଦ୍ୟପେୟର ବ୍ୟବସ୍ଥା ହୋଇଥିଲା ଗଙ୍ଗାମଣ୍ଡପରେ ଥିବା କୃଷକ ପ୍ରେସର ମେସ୍‌ରେ । ରହିବାର ବ୍ୟବସ୍ଥା ହୋଇଥିଲା "ଯଦୁନାଥ ଭବନ"ର ବାହାର ଘରେ, ଯେଉଁଠିକି ସକାଳୁ ରାତି ୧୨ଟା ଯାଏଁ ବହୁ ଲୋକ, ନେତା, କର୍ମୀମାନଙ୍କର ଯିବାଆସିବା ଲାଗି ରହିଥାଏ, ତାରି ଭିତରେ । ସେ "ରହିବାର ବ୍ୟବସ୍ଥା" କହିଲେ ପଡ଼ିଥିବା ସଜପ ଉପରେ ଦି' ହାତ ଚକକୁ ମୁଣ୍ଡତଳେ ଦେଇ ଶୋଇବା । କାମ ଥିଲା "ପାଠପଢ଼ି ମଣିଷ ହେବା" ନୁହେଁ, ପ୍ରତିଦିନ ସକାଳୁ ଉଠି ଆସିଥିବା ଖବରକାଗଜମାନଙ୍କୁ କାଠ ଡେକ୍ସ ଉପରେ ସଜାଇ ରଖାଇବା, ମାଠିଆରେ ପିଇବା ପାଣି ଆଣି ରଖିବା, ଘର ଝାଡ଼ୁ ଦେଇ ସଜପମାନଙ୍କୁ ଝାଡ଼ି ଆଉଥରେ ବିଛାଇବା, ଏବଂ ନେତାମାନେ ଆସିଲେ (ଦ୍ୱିବେଦୀ, ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ ଓଗେର) ବସିବା ଜାଗାରୁ ଉଠି ଠିଆହେବା, ହାଫ୍ ନେତାମାଙ୍କ ହୁକୁମ ତାମିଲ କରିବା । ଜୀବନର ଚଲାବାଟରେ ଏଇ "ଯଦୁନାଥ ଭବନ" ମୋ ଜୀବନ ଇତିହାସର ଅନ୍ୟ ଏକ ଅଧ୍ୟାୟ ଆରମ୍ଭ କରି ଥିଲା । ଏଇ ଭବନ ଭିତରେ ପଶୁଥିବା, ବାହାରୁଥିବା, ଏଠାରେ ରାତିରେ ରହୁଥିବା ଚରିତ୍ରମାନଙ୍କୁ ମୁଁ ଅତି ନିକଟରୁ ଦୂରରୁ ନୀରବରେ ବର୍ଷ ବର୍ଷ ଧରି ଦେଖିଛି, ଅନୁଭବ କରିଛି ! ସେମାନଙ୍କ ମେଳରେ ଆନ୍ତରିକ ନିଃସଙ୍ଗତା ନେଇ ନିଜକୁ ଗଢ଼ି ତୋଳିଛି ନୀରବରେ ଘୋର ଅବହେଳା, ବାଧା, ଅବରୋଧ, ତୁଚ୍ଛତାଚ୍ଛଲ୍ୟ ତଥା ଅନାଦୃତ ଭାବରେ । କିଶୋର ବୟସରେ ଯେତେବେଳେ ସେଠି ଯେଉଁ ଚରିତ୍ରମାନଙ୍କୁ ଭେଟିଥିଲି,

ଯେଉଁମାନଙ୍କ ନିକଟ ସମ୍ପର୍କରେ ଆସିଥିଲି, ସେମାନଙ୍କ ଭିତରୁ ଅଳ୍ପ କେତେ ଜଣଙ୍କୁ ବାଦ ଦେଲେ ଆଜି ସମସ୍ତେ ଜୀବିତ । ପ୍ରାୟ ୩୪।୩୫ବର୍ଷ ପରେ ସେହି ବିଗତ ଦିନର ସ୍ମୃତି ଓ ଇତିହାସ ଏବଂ ସେହି ଚରିତ୍ର ଗୁଡ଼ିକର କଥା ରୋମନ୍ଥନ କରିବାକୁ ବସିଲା ବେଳେ ମୁଁ ସ୍ପଷ୍ଟ କହି ଦେବାକୁ ଚାହେଁ, କାହାରି ପ୍ରତି ମୋର ଈର୍ଷା, ଅସୂୟା, ଦ୍ୱେଷ ନାହିଁ, ବା ଆକ୍ରୋଶର ବଶବର୍ତ୍ତୀ ହୋଇ କାହାରି ଚରିତ୍ର ହତ୍ୟା ମୁଁ କରିବାକୁ ଯିବି ନାହିଁ । ଅବଶ୍ୟ ସେମାନଙ୍କ ମଧ୍ୟରୁ କେତେକ ମୋ ପ୍ରତି ଯଥେଷ୍ଟ ଅବିଚାର, ଅବହେଳା କେବଳ କରି ନାହାନ୍ତି, ମୋ ଜୀବନର ବିକାଶର ପଥରେ ବାଧା ସୃଷ୍ଟି କରିଛନ୍ତି କ୍ରମାଗତ—ମୋତେ ଆପଣା ସ୍ୱାର୍ଥରେ ବ୍ୟବହାର କରି ମୋର ସମସ୍ତ ଉଜ୍ଜ୍ୱଳତମ ସମ୍ଭାବନାକୁ ନଷ୍ଟ କରି ଦେଇଛନ୍ତି । ତଦ୍ୱାରା ସେମାନଙ୍କର କେତେ ପରିମାଣରେ ଲାଭ ହୋଇଛି, ତାହା ଅବଶ୍ୟ ମୁଁ ଜାଣେନା; କିନ୍ତୁ ମୋ କ୍ଷତିର ପରିମାଣ ଯଥେଷ୍ଟ ଆଜି ଅପୂରଣୀୟ । ତଥାପି ଅତ୍ୟନ୍ତ ଅନାସକ୍ତ ଭାବରେ ଅତୀତର ସେହି ଦିନର ଘଟଣା ଗୁଡ଼ିକୁ ରୂପ ଦେବା ବ୍ୟତିରେକ ମୋର ଅନ୍ୟ କୌଣସି ଗତ୍ୟନ୍ତର ନାହିଁ ।

"ଯଦୁନାଥ ଭବନ"ର ଉପରେ ମହଲାରେ ସେତେବେଳେ ସପରିବାର ରହୁଥାନ୍ତି ଶ୍ରୀ ବାବୁଲାଲ ଯୋଷୀ । ସେ ସମସ୍ତଙ୍କର "ବାବୁଭାଇ" । ସଦା ହାସ୍ୟମୟ, ଗୌରବର୍ଣ୍ଣ, ଚମତ୍କାର ସ୍ୱାସ୍ଥ୍ୟ ସମ୍ପଦ, ଅତି ତରବରିଆ ଭାବରେ କଥା କହନ୍ତି ବାବୁଭାଇ । ପରିହରଣ, ନୀଳ ରଙ୍ଗର ଖଦଡ଼ ହାଫ୍ ପ୍ୟାଣ୍ଟ, ହାଫ୍ ସାର୍ଟ । ପାଦରେ ସାଧାରଣ ହଳେ ଚଟି । ବାଁ ହାତରେ ସୁନା ବ୍ୟାଣ୍ଡ ବନ୍ଧା ହାତଘଣ୍ଟା । ନିଜର କୌଣସି ସନ୍ତାନ- ସନ୍ତତି ନଥିବାରୁ ସର୍ବଦା ଶିଶୁବତ୍ସଳ । କଂଗ୍ରେସ-ସୋସଲିଷ୍ଟ ପାର୍ଟିରୁ ସୋସଲିଷ୍ଟ ପାର୍ଟି, ପ୍ରଜାସୋସଲିଷ୍ଟ ପାର୍ଟି ଯାବତ୍ ସେ ଦଳ ସହିତ ସମ୍ପୃକ୍ତ ଓ ସକ୍ରିୟ ଥିଲେ । ବ୍ୟକ୍ତିଗତ ଭାବରେ "ବାବୁଭାଇ" ଓ ତାଙ୍କ ସ୍ତ୍ରୀ ମୋତେ ଭାରି ଭଲ ପାଉଥିଲେ । "ବାବୁଭାଇ"ଙ୍କ ସ୍ତ୍ରୀ ଥିଲେ ସମସ୍ତଙ୍କର "ବହିନ୍‌ଜୀ" । ଭଦ୍ରମହିଳା ଭାରି ଅଭିମାନିନୀ ଓ ଟିକେ ସ୍ପର୍ଶକାତର । ଟିକେ କେହି କଡ଼ା କଥା କହିଲେ ସେ ତତ୍‌କ୍ଷଣାତ କାନ୍ଦି ପକାନ୍ତି । "ବହିନ୍‌ଜୀ" ସର୍ବଦା ଫ୍ୟାକ୍‌ଟେରି ସମ କର୍ମଚଞ୍ଚଳା, ଅସମ୍ଭବ ଧରଣର ପରିଷ୍କାର ପରିଚ୍ଛନ୍ନ । ତାଙ୍କର ପାକବିଦ୍ୟା ମଧ୍ୟ ଅତି ଚମତ୍କାର । ମୁଁ ବେଳେବେଳେ ତାଙ୍କ ପାଖରେ ବସି ତାଙ୍କ ରୋଷେଇ କରିବା ଦେଖେ । ସେ ତା'ର ଭିତରେ ମୋ ସହିତ ଅଧା-ହିନ୍ଦୀ

ଅମ୍ଳା-ଓଡ଼ିଆ ମିଶା ଭାଷାରେ ଗପସପ କରନ୍ତି, ଆଉ ଚଟାପଟ ଶେଷେଇ ସାର ମୋ ହାତରେ ଧରାନ୍ତି ଦ'ପଟ ସୁନ୍ଦାଗ୍ରୀ ଚପାତି ଆଉ କଞ୍ଚା ଅଗୁର । ଅତି ଚମତ୍କାର ତାର ସ୍ୱାଦ ।

ତଳ ମହଲ ପାର୍ଟି ଅଫିସ ସଂଲଗ୍ନ ଗୋଟିଏ ବଡ଼ ବଖରାରେ ସପରିବାର ରହୁଥିଲେ ଶ୍ରୀ ନୀଳକଣ୍ଠ ସାହୁ । ତାଙ୍କ ପରିବାର ଭିତରେ ଥିଲା ସୀତା । ସୀତା ତାଙ୍କ ଭାଣିଜୀ । ସିଏ ସେତେବେଳେ ବୋଧହୁଏ ଦଶମ ଶ୍ରେଣୀରେ ପଢ଼ୁଥିଲା । ସେହି ସୀତା ସେତେବେଳେ ମୋ ପ୍ରତି ଥିଲା ସଦୟା, ଆଜି ମଧ୍ୟ ଠିକ ସେହିପରି । ସେ ଆଜି କଟକ ଶୈଳବାଳା ମହିଳା କଲେଜର ଜଣେ ନାମୀ ଅଧ୍ୟାପିକା ଏବଂ ଆଡ଼ଭୋକେଟ ଶ୍ରୀ ଘନଶ୍ୟାମ ସାହୁଙ୍କ ସହଧର୍ମିଣୀ । ଆଜି ବି ସୀତା ସହିତ କେବେ ବାଟରେ ଘାଟରେ କେବେ ଦେଖା ହୋଇଗଲେ ସହୃଦୟ ଅନାବିଳ ହସଟିଏ ହସି ଦଣ୍ଡେ ଠିଆ ହୋଇ ମୋର ଭଲମନ୍ଦ ପଚାରେ । ହଁ, ଶ୍ରୀ ନୀଳକଣ୍ଠ ସାହୁ ପୁରୀ ସହରର ଲୋକ । ତାଙ୍କ ପରି କର୍ମଠ, ସକ୍ରିୟ ବ୍ୟକ୍ତି ଯେ କୌଣସି ଦଳର ଏକ ଅମୂଲ୍ୟ ସମ୍ପଦ କହିଲେ ଅତ୍ୟୁକ୍ତି ହେବନାହିଁ । ସେ ଯଦିଓ ବିଶେଷ ଶିକ୍ଷାଦୀକ୍ଷାହୀନ, ତଥାପି ସାଧାରଣ ଲୋକଙ୍କୁ ମୁଗ୍ଧ କଲା ପରି ଭାଷଣ ଦେଇ ପାରନ୍ତି, ରାଜନୈତିକ ସଙ୍ଗୀତ ଗାଇ ପାରନ୍ତି, ସଭା-ସମିତିର ଆୟୋଜନ କରି ପାରନ୍ତି, ପାର୍ଟିର ମୁଖପତ୍ର "କୃଷକ" ଓ ରାଜନୈତିକ ସାହିତ୍ୟ ପୁସ୍ତିକାମାନଙ୍କୁ ବଡ଼ ପାଟିରେ ହକିଂ କରି ବିକ୍ରି କରି ପାରନ୍ତି ବିନା ସଂକୋଚରେ । ଏତଦ୍‌ବ୍ୟତୀତ ଯେ କୌଣସି ବେପାର ବଣିଜ କରିବାରେ ମଧ୍ୟ ସେ ସିଦ୍ଧହସ୍ତ । ମୋ ପ୍ରତି ମଧ୍ୟ ତାଙ୍କ ସହୃଦୟତାର ସୀମା ନଥିଲା । ପରେ ତାଙ୍କୁ ଦେଖିବାକୁ ମିଳିଥିଲା ନାନା ବ୍ୟବସାୟିକ ଧନ୍ଦାରେ, କଟକ ରାମଲୀଳା ପ୍ରଚାର ସମିତିର ସକ୍ରିୟ ସଙ୍ଗଠକ ଭାବରେ, ସ୍ୱର୍ଗତ ବୀରେନ ମିତ୍ରଙ୍କ ଦରବାର ସହିତ ଜଡ଼ିତ ହେବାରେ । ଆଜି ସେ ରକ୍ତଚାପରେ ପୀଡ଼ିତ ।

ଲୋକଟି ଗଡ଼ମଧୁପୁରର । କଂଗ୍ରେସ-ସୋସଲିଷ୍ଟ ପାର୍ଟିରୁ ପ୍ରଜା-ସୋସଲିଷ୍ଟ ପାର୍ଟି ଯାବତ୍ ଥିଲା ପାର୍ଟିର ପିଅନ । ନାମ ଶ୍ରୀ ରଘୁନାଥ ପ୍ରଧାନ । ଅତ୍ୟଧିକ ମଇଳିଆ ଧଳା ଖଦଡ଼ ଲୁଗା ସହିତ ପରିହିତ ହାଫସାର୍ଟ । ଶ୍ୟାମଳବର୍ଣ୍ଣର ଅନୁଚ୍ଚ ମଣିଷଟିଏ । ରହେ "ଯଦୁନାଥ ଭବନ" ଭିତରେ । ଏହି ରଘୁ—ସେତେବେଳେ ଥିଲା ମୋର ନିକଟତମ 'ପ୍ରଭୃତି' ମଧ୍ୟରୁ ଅନ୍ୟତମ 'ପ୍ରଭୁ' । ମୋ ପ୍ରତି ତା'ର ତାଚ୍ଛଲ୍ୟଭରା ବ୍ୟବହାର ପାଇଁ ସେ ମୋ ଜୀବନ ଇତିହାସରେ ଅବିସ୍ମରଣୀୟ । ଅସ୍ୱଚ୍ଛ ଡ଼ାର କାଣି ବାନ୍ଧି

ଯେପରି ଖବରଦାରୀ କରିବାର ପ୍ରବାଦ ରହିଛି, ରଘୁ ବିନା କାରଣରେ ମୋ ଉପରେ ନିଜକୁ ଜାହିର କରୁଥିଲା ସ୍ୱଭାବତ । ମନେ ଯେପରି ମୁଁ ଥିଲି ତା'ର ଏକ କ୍ରୀତଦାସ ! ପାର୍ଟି ଅଫିସରୁ ରାତି ୧୦ଟା ପରେ ଗହଳ ଭାଙ୍ଗିଲା ପରେ ରଘୁ ଅଫିସ ଭିତରୁ କବାଟ କିଳି ଶୁଏ—ମୁଁ ଚଉ ରହେ ବାଟ ଘରା ମଶାକାମୁଡ଼ା ଭିତରେ । ତା' ପରଦିନ ସକାଳୁ ରଘୁର ପାହାଡ଼ ଭାଙ୍ଗିଲା ପରେ ମୁଁ 'ଗଧ'; 'ଅକସ୍ଥା' ବୋଲି ସମ୍ବୋଧିତ ହୁଏ । କେବଳ ସେତିକି ନୁହେଁ, ସେ ବାହାର ଲୋକଙ୍କ ଆଗରେ ବି ମୋତେ ବିଦ୍ରୂପ କରେ, ତା'ର ହୁକୁମ ତାମିଲ କରିବାକୁ ବାଧ୍ୟ କରେ । ମୁଁ ଯଦି ପ୍ରତିବାଦ କଲେ ତା' ନହେଲେ ସେ ମୋର 'ବଡ଼ପ୍ରଭୁ' ସୁରେନ୍ଦ୍ର ଦ୍ୱିବେଦୀ, ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ, ବାଙ୍କ ବିହାରୀ ଦାସଙ୍କ ଆଗରେ ମୋ ନାମରେ ମିଥ୍ୟା ଅଭିଯୋଗ କରେ ଯେ, ମୁଁ ମୋ କାମରେ ଅବହେଳା କରୁଛି; କାହାକୁ ଖାତିର କରୁନାହିଁ, ଖାଲି ଖାଉଛି ଆଉ ଶୋଉଛି । ଏ ଅଭିଯୋଗରେ ଶ୍ରୀ ଦ୍ୱିବେଦୀ ଓ ଶ୍ରୀ ପଣ୍ଡିତ ମୋତେ ଡାକି ନେଇ କହନ୍ତି, ମୋର କିଛି ଭବିଷ୍ୟତ ନାହିଁ ବୋଲି କହନ୍ତି, ପାର୍ଟି ଅଫିସରୁ ମୋତେ ବାହାର କରି ଦିଆଯିବ ବୋଲି ଧମକ ଦିଅନ୍ତି । ମୁଁ କ୍ଷୋଭ ଆଉ ଦୁଃଖରେ ମ୍ରିୟମାଣ ହୋଇଯାଏ । ଏପରି ବ୍ୟବହାର ଏବଂ "ପ୍ରଭୁତ୍ୱ"କୁ ମୁଁ ଆନ୍ତରିକ ଘୃଣା କରି ନିରୁପାୟ ଭାବରେ ନୀରବ ରହେ । ମୋଟାମୋଟି କହିବାକୁ ଗଲେ ଏହି ରଘୁ ସେତେବେଳେ ମୋର ନିତି ଦିନିଆ ଜୀବନରେ ହୋଇ ଉଠିଲା ଏକ ଜୀବନ୍ତ ଯନ୍ତ୍ରଣା । କୌଣସି ଅସୂୟାର ବଶବର୍ତ୍ତୀ ହୋଇ ତା' ସମ୍ପର୍କରେ ମୁଁ ଏସବୁ ଲେଖୁନାହିଁ । ଯାହା ଦେଖିଛି, ଯାହା ଅଙ୍ଗେ ନିଭାଇଛି, ଯାହା ହାଡ଼େ ହାଡ଼େ ଅନୁଭବ କରିଛି, ତାହାହିଁ ଅନାସକ୍ତ ଭାବରେ ଲେଖୁଛି । ରଘୁ—ଶ୍ରୀ ରଘୁନାଥ ପ୍ରଧାନ ଆଜି ବି ମୋର ସ୍ମରଣୀୟ, ଶ୍ରଦ୍ଧାର୍ହ । ଅତୀତରେ ଏକା ଘରେ, ଏକା ପରିବେଶରେ ଓ କର୍ମଭୂମିରେ ବର୍ଷ ବର୍ଷ ଧରି ତା ସହିତ ମୁଁ ଜୀବନ ବିତାଇଛି । ବିଚରା କ୍ଷୁଦ୍ର ଜୀବ ! ତା' ପ୍ରତି ମୋର ବିରାଗ ବା ରହିବ କାହିଁକି ? ସେତେବେଳେ କିଶୋର ସୁଲଭ କ୍ରୋଧରେ ତା' ପ୍ରତି ମୁଁ ବିରୂପ ହୋଇଥିଲି ସ୍ୱଭାବତ । କିନ୍ତୁ ଆଜି ତା' ପ୍ରତି ମୋର ବିନ୍ଦୁମାତ୍ର ଅଶ୍ରଦ୍ଧା ନାହିଁ । ରଘୁର ଏବଂ ହୋମଲିଷ୍ଟ ନେତାମାନଙ୍କର ସେତେବେଳର ମୋ ପ୍ରତି ଅପମାନଜନକ ବ୍ୟବହାର ଯେତେବେଳେ ଆଜି ମୋର ମନେ ପଡ଼େ, ସେତେବେଳେ ମୁଁ ହୋଇଉଠେ ଆକାଶ ପରି ଉଦାର । ପାଠକେ କ୍ଷମାକରିବେ, ମୋର ଏହି ଉଦାରତା ହିଁ "ନିର୍ବୋଧ ମାନଙ୍କ ଉପରେ ବିଜ୍ଞର ପ୍ରତିହିଂସା ।" ମୁଁ

ଏମାନଙ୍କ ଉପରେ କେବେହେଲେ ପ୍ରତିଶୋଧ ନେବାର ଚେଷ୍ଟା କରି ନାହିଁ । ବରଂ ଏମାନେ ବହୁବାର ସ୍ୱେଚ୍ଛା-ପ୍ରାୟଶ୍ଚିତ୍ତ କରିଛନ୍ତି ଏମାନଙ୍କ ଅଜ୍ଞାତ ପାପର । ତା'ର ଭୂରି ଭୂରି କରୁଣ ଦୃଷ୍ଟାନ୍ତ ମୋ ଜୀବନ ଇତିହାସରେ ଭରପୂର ହୋଇ ରହିଛି । ପ୍ରସଙ୍ଗ କ୍ରମେ ତାହା ବର୍ଣ୍ଣିତ ହେବ । ଏଠି ଏକ ମଜାଦାର ତଥା କରୁଣ ଘଟଣା ମନେ ପଡ଼ୁଛି । ଘଟଣାଟି ହେଲା ୧୯୬୪ ମସିହାର ବୋଧହୁଏ ! ଧର୍ମଶାଳା ଥାନାର "ଗୋକର୍ଣ୍ଣିକା ସାହିତ୍ୟ ସମାଜ" ନାମକ ଅନୁଷ୍ଠାନର ଏକ ଉତ୍ସବକୁ ମୁଁ ମୁଖ୍ୟଅତିଥି ଭାବରେ ଯୋଗ ଦେବାକୁ ଯାଇଥିଲି । ବସରୁ ଓହ୍ଲାଇଲା ବେଳେ ମୋତେ ସ୍ୱାଗତ କରିବାକୁ ଉପସ୍ଥିତ ଥିବା ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କ ଗହଣରେ ମୋର ଅଜ୍ଞାତର ଦେହ କ୍ଷତ ଏବଂ ମୂର୍ତ୍ତି ରଘୁ ବା ରଘୁନାଥ ପଧାନକୁ ଦେଖି ମନେ ମନେ ଫେରି ଯାଇଥିଲି କାହିଁ କେଉଁ ସୁଦୂର ଅତୀତକୁ ! ଭାବିଲି, ମୋ କାବ୍ୟକବିତାର ପାଠକ, ମୋ ଆଦର୍ଶର ସ୍ତାବକଦଳଙ୍କ ମେଳରେ ଆଜି ରଘୁ—ସେହି ରଘୁନାଥ ପଧାନର ପୁଣି ଉପସ୍ଥିତି କାହିଁକି ? କାହାକୁ ତାହେଲେ ସ୍ୱାଗତ କରିବାକୁ ରଘୁ ଧାଇଁ ଆସିଛି ଏଠିକି ? ମୋତେ ? ମୁଁ ତା' ଆଗରେ ତାହେଲେ କିଏ । ୧୯୪୭-୪୮ ସାଲର ସେହି ଶିକ୍ଷାଦୀକ୍ଷା ହୀନ "ଗଧ", "ଅଳସୁଆ", ଅନାଥ, ଅନାମଧେୟ କିଶୋର "ରଘୁ" ; ଯିଏ ଥିଲା କଂଗ୍ରେସ-ସୋସାଲିଷ୍ଟ ପାର୍ଟିର ସଦର କାର୍ଯ୍ୟାଳୟରେ ଏକ ନିର୍ଯ୍ୟାତିତ ତଥା ଅପାଙ୍‌କ୍ତେୟ ଅଫିସ ବୟ, ଯାହାର ନିକଟତମ "ପ୍ରଭୁ" ଥିଲି ଏଇ ରଘୁ, ଯିଏକି ଆଜି ତା'ର ପୂର୍ବର ସେହି ବେଶଭୂଷାରେ ଛତାଖଣ୍ଡେ ଧରି ଏଠି ଆସି ଦାଖଲ ହୋଇଛି "କବି ରବିଜି"କୁ ଅନ୍ୟମାନଙ୍କ ସହିତ ସ୍ୱାଗତ ଜଣାଇବା ଲାଗି, ସିଏ କ'ଣ ତାହେଲେ ଭୁଲି ଯାଇଛି ମୁଁ ସେହି ଏକା ଲୋକ ବୋଲି ? ନା, ନା, ସେ ଭୁଲି ନାହିଁ । ଭୁଲିଥିଲେ ସେ ମୋର "ପୁରାତନ ରାଜନୈତିକ ଜୀବନର ସହକର୍ମୀ" ବୋଲି ମୋର ଏଠି ଆସି ପହଞ୍ଚିବା ଆଗରୁ ପ୍ରଚାର କରି ଗର୍ବିତ ହୋଇ ନଥାନ୍ତା । ହାୟ ! ସମୟର କି ନିଷ୍ଠୁର ପରିହାସ ! ରଘୁର ଅବସ୍ଥା ଆଜି ସତେ କେଡ଼େ କରୁଣ ନୁହେଁ ! ସେଦିନ ସେଠି ରଘୁକୁ ଦେଖିବା ମାତ୍ରେ ତା'ର ଆପାଦମସ୍ତକ ଉପରେ ଦୃଷ୍ଟି ବୁଲାଇ ନେଲି ନୀରବରେ । ଚେହେରାର ବିଶେଷ କିଛି ପରିବର୍ତ୍ତନ ହୋଇ ନାହିଁ । ସେହି ଖଦଡ଼ ଧୋତି ଆଉ ସାର୍ଟ, ହାତରେ ଛତା, ପାଦରେ ଚଟି । ପଚାରିଲି, 'କ'ଣ ରଘୁ ବାବୁ, କେମିତି ଅଛ ? ସବୁ ଭଲ ତ ? କ'ଣ କରୁଛ ଅବକା ?" ଚରିବା ଭିତରେ ପୁଷ୍ପମାଲାରେ

ଗର୍ବସ୍ଫାନ୍ତ ହୋଇ ଉଠିଲା ମୋର ଗ୍ରୀବା । ସେଥିରେ ରଘୁ ଅବାକ୍ ହୋଇ ବିସ୍ମିତ ହେଲା କି ନାହିଁ ଜାଣେନା । ମନେ ମନେ ତା' ଉଦ୍ଦେଶ୍ୟରେ କହି ଉଠିଲି—'ହଁ, ରଘୁ ! ଲଜ୍ଜିତ ହୁଅନା । ଦୁଃଖିତ ହୁଅନା । ଅନୁଶୋଚନା କରନା । ଦୁନିଆର ପ୍ରତିଟି କୀଟ ଯେତେବେଳେ ମୋ ଆତ୍ମାରେ ତା'ର ପଦଚିହ୍ନ ଆଙ୍କିଦିବା ପାଇଁ ଥିଲା ଅଗ୍ନିବତ୍ ଉଦ୍‌ଗ୍ରୀବ, ତେବେ ବା ସେଥିରୁ ବାଦ ପଡ଼ିଥାନ୍ତ କିପରି ? ତୁମେ ଯାହା କରିଛ ଠିକ କରିଛ । ମୋ ଜୀବନ-ସଂଗ୍ରାମର ଦୁରନ୍ତ ଯୁଦ୍ଧାଶ୍ୱ ଯେଉଁ ଅଗ୍ନିଦଗ୍ଧ ପଥର କଙ୍କରକୁ ତାର ଇସ୍ପାତର ଖୁରା ସାହାଯ୍ୟରେ ଏଯାଏଁ ଉଖାରି ଚାଲି ଆସିଛି, ସେହି ଯାତ୍ରାପଥର ଅଗଣିତ କଙ୍କରମାନଙ୍କ ମଧ୍ୟରୁ ତୁମେ ଏକ ସାମାନ୍ୟ ଅଂଶ ମାତ୍ର । ହେଲେବି, ତୁମେ ମୋର ସ୍ମରଣୀୟ, ତୁମ ପ୍ରତି ମୋର କୌଣସି ଅଶ୍ରଦ୍ଧା ନାହିଁ ।

ଗୋଟାଏ ମ୍ଳାନହୀନ ହସ ହସି ଦେଇ ରଘୁ ଉତ୍ତର ଦେଲା, "କ'ଣ ଆଜି କରିବ ? ଗାଁରେ ରହି କୃଷିବାସ ଓ ହୋମିଓପ୍ୟାଥି କରୁଛି । ନେତାମାନଙ୍କ ଗତିତ ଦେଖୁଛି । ତୁମେ ଆମର ଏଠିକି ଆସୁଛ ଶୁଣି ଖୁସି ହୋଇ ସହକର୍ମୀ ଭାବରେ ବହୁତ ବେଳୁ ଆସି ଅପେକ୍ଷା କରିଛି । ମୋ ଗାଁଟା ଏଠୁ ଅଳ୍ପ ଦୂରରେ ।" ଜିଭ ଅଗକୁ ଆସି କଥାଟା ମୋର ପୁଣି ଅଟକି ଗଲା । କହିଥାନ୍ତି, "ନା ରଘୁ ! ତୁମେ ମୋର ସହକର୍ମୀ ନଥିଲ । ଥିଲ ମୋର ପ୍ରଭୁ । ମୁଁ ଥିଲି ତୁମର ଦାସ, ଅଧସ୍ତନ ଅସହାୟ ଭୃତ୍ୟବତ୍ । ମିଛ କୁହନା ଆତ୍ମପ୍ରତାରଣା କରନା । ସତ କୁହ ! ସତ କହିଲେ ମୁଁ ଖୁସି ହେବି ଆଜି ତୁମର ଗ୍ଳାନି ତୁମକୁ ଆତ୍ମିକ ପୀଡ଼ା ଦେବ ନାହିଁ ।" କିନ୍ତୁ ସେ ଆହତ ହେବ ଭାବି ନୀରବ ରହିଥିଲି । କେବଳ ସାମାନ୍ୟ ହସି ଦେଇ ମଂଚ ଉପରକୁ ଉଠି ସ୍ଥାନ ଗ୍ରହଣ କରିଥିଲି ।

ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ପାର୍ଟିର ସେତେବେଳେ ସର୍ବେସର୍ବା । ତାଙ୍କର ଭାବମୂର୍ତ୍ତିକୁ ପାର୍ଟିର କର୍ମୀମାନେ ସାଧାରଣରେ ତୋଳିଧରିବା ଥିଲା ସେମାନଙ୍କର "ପବିତ୍ର କର୍ତ୍ତବ୍ୟ" । ଏକ କୃତ୍ରିମ ଗାମ୍ଭୀର୍ଯ୍ୟ ସମ୍ବଳିତ ନେତାଳିଆ ଭାବଭଙ୍ଗି ଶ୍ରୀ ଦ୍ୱିବେଦୀଙ୍କ ଚାଲିଚଳନରେ ଫୁଟିଉଠେ । ପାଦରେ ଚଟି, ଦେହରେ କେତେବେଳେ ଖଦଡ଼ର ଗୈରିକ ଧୂସର, ଧଳା ରଙ୍ଗର ଚଞ୍ଚୋଖା ଶୋଭା ପାଏ । ପହରଣ ସଫା ସରୁ ଖଦଡ଼ର ଧୋତି । ପାଖରେ ଠିଆହେଲେ

ନାକରେ ଆସି ବାଜେ 'ବାର୍ଥଗେଟ୍ କାଷ୍ଟର ଅଏଲ୍'ର ଗନ୍ଧ । ସେ ସର୍ବଦା ଧୋତି ତେଲର ବ୍ୟବହାର କରନ୍ତି । ହାତଘଣ୍ଟା ରିଷ୍ଟ୍‌ର ଚମଡ଼ା ଦେଇ ବନ୍ଧା ହୋଇଥାଏ । କଟକରେ ଥିଲେ ଦ୍ୱିବେଦୀ ଦିନ ୧୦ଟା ସୁଦ୍ଧା ସାଇକେଲ୍ ଯୋଗେ ଚାଲ ତେଲଙ୍ଗା ବଜାରର ତାଙ୍କ ମାମୁଁଘରୁ ପାର୍ଟି ଅଫିସକୁ ଆସନ୍ତି (ସ୍ୱର୍ଗତ ପଣ୍ଡିତ ଆତ୍ମଳ ମିଶ୍ର ତାଙ୍କ ମାମୁଁ) । ଅଫିସ ଦୁଆର ମୁହଁରେ ପହଞ୍ଚିବା କ୍ଷଣି ତାଙ୍କ ହାତରୁ ସାଇକେଲଟିକୁ ନେଇ ରଘୁ ଫର୍ମ ପଛପଟ ଅଗଣାରେ ଥୁଏ । ଦ୍ୱିବେଦୀ ଅଫିସକୁ ପଶନ୍ତି । ମୋ ସମେତ ଅଫିସରେ ଯେଉଁମାନେ ମଜୁରୀ ଥାନ୍ତି, ସେମାନେ ଉଠି ଠିଆହୋଇ ତାଙ୍କୁ ସମ୍ମାନ ଦେଖାନ୍ତି—ଦେଖାଇବାଟା କୁଆଡ଼େ ଏକ ବାଧି ! ଦ୍ୱିବେଦୀ ଅଫିସ ଭିତରେ ବସି ସାରା ପ୍ରଦେଶର ପାର୍ଟିସଂଗଠନ, ପାର୍ଟିର ପ୍ରଶାସନିକ କାର୍ଯ୍ୟକଳାପ କଥା ଶ୍ରୀ ବାଙ୍କ ବିହାରୀ ଦାସଙ୍କ ସହିତ ଆଲୋଚନା କରନ୍ତି । ସିଏ ଅଫିସରେ ଥିବା ବେଳେ ମୁଁ ଅଫିସ ଭିତରକୁ ଯିବାକୁ ଭୟ କରେ । ପୂର୍ବରୁ ସୂଚିତ ହୋଇଛି ରାଜସ୍ୱମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଶ୍ରୀ ଦ୍ୱିବେଦୀଙ୍କ ହାତରେ ମୋତେ ଅର୍ପଣ କରି ମୋତେ ପାଠଶାଠ ପଢ଼ାଇ ମଣିଷ କରିବା ଓ ଜଣେ ଭଲ "ସମାଜବାଦୀ" ହେବା ପାଇଁ ଚେଷ୍ଟା କରିବାକୁ କହିଥିଲେ । କିନ୍ତୁ ଦ୍ୱିବେଦୀ ମୋତେ ତା ବଦଳରେ କରିଥିଲେ "ଅଫିସ ବୟ" ବା କ୍ରୀତଦାସ । ଭୁଲ୍‌ରେ ବି ଦିନେ ହେଲେ ସେ ପଚାରି ବୁଝିବାକୁ ଚେଷ୍ଟା କରି ନଥିଲେ ମୁଁ କେମିତି ଅଛି, କ'ଣ କରୁଛି । ମନେ ପଡୁଛି, ମୋର ପିନ୍ଧା ପ୍ୟାଣ୍ଟ ଖଣ୍ଡିକ ଏକେବାରେ ଚିରି ଯାଇଥାଏ । ବାଧ୍ୟ ହୋଇ ଦିନେ ସାହସ କରି ଅଫିସ ଭିତରକୁ ଯାଇ ଦ୍ୱିବେଦୀଙ୍କୁ ମୋର ଅବସ୍ଥା କଥା କହିଲି । ସେ ସଙ୍ଗେ ସଙ୍ଗେ ଗର୍ଜନ କରିଉଠି ଭାଷଣ ଦେବା ଢଙ୍ଗରେ ନିଜର ଦୁଇ ହାତକୁ ହଲାଇ ମୋତେ କହିଥିଲେ, 'ମୋର କ'ଣ ଜମିବାଡ଼ି ଅଛି ତାକୁ ବିକି ତତେ ଜାମା ପ୍ୟାଣ୍ଟ କରିଦେବି ? ତୁ'ଟା ଗୋଟାଏ ଅଳସୁଆ । ତୋ ନାଁରେ ବହୁତ କଥା ମୁଁ ଶୁଣୁଛି । ଯା, ମୋ ପାଖରେ କିଛି କହନା ।

ବାହାରକୁ ଆସି ସେଦିନ ଅସହାୟ ଭାବରେ କାନ୍ଦିଥିଲି । ଜୀବନରେ କଳକାଠି ବିଜଣୀତ ହେବାବେଳେ ଅତି ନିକଟରୁ ମୁଁ ଏ ଭଦ୍ରଲୋକଙ୍କୁ ଦେଖିଛି —ଦେଖିଛି ଏକ ପ୍ରଚଣ୍ଡ ଦ୍ୱିଧାବିଭକ୍ତ ବ୍ୟକ୍ତିତ୍ୱକୁ । ଆଜି ଦୁଃଖର ସହିତ ଭାବୁଛି, ଶ୍ରୀ ନବକୃଷ୍ଣ ଚୌଧୁରୀ, ଶ୍ରୀ ସୁରେନ୍ଦ୍ର ଦ୍ୱିବେଦୀ ମୋ ଜୀବନର

ସମସ୍ତ ସମ୍ଭାବନାକୁ ଜାଣିଶୁଣି ନଷ୍ଟ କରିଦେବା ପାଇଁ ଏପରି ଷଡ଼ଯନ୍ତ୍ରକାରୀ ଥିଲେ କାହିଁକି ! ମୁଁ ଯେତେବେଳେ ସେମାନଙ୍କର ହାତଗଣ୍ଡ ହୋଇଥିଲି, ସେମାନେ ମୋତେ ସାହାଯ୍ୟ କରିବାକୁ ମନା କରିଦେଇ ପାରିଥା'ନ୍ତେ ! କିନ୍ତୁ କ୍ଷୁଧାର୍ତ୍ତିକୁ ଖାଦ୍ୟର ପ୍ରଲୋଭନ ଦେଖାଇ, ପଥପ୍ରାନ୍ତରୁ ଡାକ ନେଇ, ତା'ର ଥାଳଟିକୁ ଭାଂଗି, ତାକୁ ବନ୍ଦୀ କରି ତା' ଉପରେ ଅନାୟ୍ସ ଜବରଦସ୍ତ ପୃଷ୍ଠପୋଷକତା କରିବାର ଇଏକି ଅଦ୍ଭୁତ ମାନସିକତା ? ମୁଁ ତ ଏମାନଙ୍କର କୋଣସି କ୍ଷତି କରି ନଥିଲି ! କରିବାର ସମ୍ଭାବନା ମଧ୍ୟ ନଥିଲା । କେଉଁଥି ପାଇଁ ତା' ହେଲେ ଏପରି ପ୍ରତିଶୋଧ ? ଏଠାରେ କହିରଖେ, ସୁରେନ୍ଦ୍ର ଦ୍ୱିବେଦୀଙ୍କ ହାତରେ ନବ ଚୌଧୁରୀଙ୍କ ଦ୍ୱାରା ଅର୍ପିତ ହେବା ପୂର୍ବରୁ ସେ (ଦ୍ୱିବେଦୀ) ମୋ ପାଖରେ ଥିଲେ ସେମାଞ୍ଚକର ଏକ କିମ୍ବଦନ୍ତୀର ନାୟକ । "ଭାରତ ଛାଡ଼" ଆନ୍ଦୋଳନରେ ତାଙ୍କର ଭୂମିକା, ତାଙ୍କର ରହସ୍ୟମୟ ଜାତୀୟତାବାଦୀ ବ୍ୟକ୍ତିତ୍ୱ ସମ୍ପର୍କରେ ମୁଁ ପିଲାଦିନେ ବାପାଙ୍କ ଠାରୁ ବହୁତ କିଛି ଶୁଣିଥିଲି । ନୈକଟ୍ୟର ନିଷ୍ଠୁରତା ଯେ ଏତେ ଦୁଃସହ ତାହା ମୁଁ ଅନୁଭବ କରିଥିଲି ହାଡ଼େ ହାଡ଼େ ତାଙ୍କର ଅତି ନିକଟତର ହୋଇ । ସେ ଯାହାହେଉ, ଦ୍ୱିବେଦୀଙ୍କର ସ୍ଥିତାବସ୍ଥା ବିରୋଧୀ ଭୂମିକା ମୋର ଅକ୍ଷି ଆଗରେ(ସ୍ୱାଧୀନତା ପରେ) ଆରମ୍ଭ ହୋଇ ଶେଷ ହୋଇଥିଲା ୧୯୭୩ ସାଲ ବେଳକୁ । କଂଗ୍ରେସ ଭିତରେ ଥିବା ସୋସଲିଷ୍ଟ ଗୋଷ୍ଠି କଂଗ୍ରେସରୁ ଅଲଗା ହୋଇଯିବା ପରେ ୧୯୪୬-୪୭ ମସିହାରୁ ଶ୍ରୀ ଦ୍ୱିବେଦୀ ଜଣେ ଭୁଙ୍ଗ ସୋସଲିଷ୍ଟ ନେତା ଭାବରେ ଓଡ଼ିଶାରେ କାହିଁକି ଜାତୀୟ ସ୍ତରରେ ଖ୍ୟାତ ହେବାକୁ ଆରମ୍ଭ କରିଥିଲେ । ୧୯୭୧ ମସିହା ପର୍ଯ୍ୟନ୍ତ ସେ ସୋସଲିଷ୍ଟ ଦଳର ଟିକେଟ୍‌ରେ ନିର୍ବାଚନ ଲଢ଼ି କ୍ରମାଗତ ଭାବରେ ଲୋକସଭାକୁ ନିର୍ବାଚିତ ହେଉଥିଲେ । ସେହିବର୍ଷ ସେ ପ୍ରଥମ ଥର ପାଇଁ ବିଜୁ ପଟ୍ଟନାୟକଙ୍କ ଉତ୍କଳ-କଂଗ୍ରେସ ପ୍ରାର୍ଥୀ ତଥା ପ୍ରଖ୍ୟାତ ଲେଖକ ଓ ସମାଲୋଚକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ହାତ ପରାଜିତ ହୋଇଥିଲେ । ୧୯୭୫ ମସିହା, (ଯେଉଁ ମସିହାରେ କି ଭାରତବର୍ଷରେ ଜାତୀୟ ଜରୁରୀ ପରିସ୍ଥିତି ଘୋଷିତ ହେଲା) ରେ ତାଙ୍କର ଦୀର୍ଘକାଳର ସହକର୍ମୀ ଶ୍ରୀ ବାଙ୍କବିହାରୀ ଦାସ, ନିଶାମଣି ଖୁଣ୍ଟିଆ ପ୍ରମୁଖ ନିଜର ପ୍ରଜା-ସୋସଲିଷ୍ଟ ଗୋଷ୍ଠୀ ସମେତ ଆନୁଷ୍ଠାନିକ ଭାବରେ କଂଗ୍ରେସରେ ଯୋଗ ଦେଲା ପରେ ସେମାନ କି କି ସୁବିଧା ପାଇଲେ (ଶ୍ରୀ ବାଙ୍କବିହାରୀ ଦାସ ଅର୍ଥମନ୍ତ୍ରୀ ହୋଇଥିଲେ) ସେଥି ପ୍ରତି ନଜର ନଦେଇ ୧୯୭୧ ମସିହାରୁ

ଶ୍ରୀ ଦ୍ୱିବେଦୀ କଂଗ୍ରେସରେ ପଶି ପାରିଥିଲେ ଆଜ ଓଡ଼ିଶା ଯୋଜନାବୋର୍ଡ଼ର ଉପାଧ୍ୟକ୍ଷ ମଧ୍ୟ ହୋଇଥିଲେ । ୧୯୭୨ ସାଲରେ ଆସିଥିଲା ମଧ୍ୟବର୍ତ୍ତୀ କାଳୀନ ବିଧାନସଭା ନିର୍ବାଚନ । ବଣ-ଚେଡ଼ୱବଶ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳର ଟିକେଟରେ ପୁନଶ୍ଚ ନିର୍ବାଚନ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ ଦ୍ୱିବେଦୀ । କିନ୍ତୁ ସ୍ୱତନ୍ତ୍ର କଂଗ୍ରେସ ପ୍ରାର୍ଥୀ ଶ୍ରୀ ପ୍ରହ୍ଲାଦ ମଲ୍ଲିକଙ୍କ ଦ୍ୱାରା ସେ ପୁଣି ପରାଜିତ ହେଲେ । ୧୯୭୪ ମସିହା ଅକ୍ଟୋବର ମାସରେ ତାଙ୍କୁ ଭାରତ ସରକାରଙ୍କ କୃଷି ପରାମର୍ଶଦାତା ଭାବରେ ନିଯୁକ୍ତି ମିଳିଲା । ଠିକ୍ ଏତିକି ବେଳେ ସାରା ଭାରତରେ ଜାଜ୍ୱଲ୍ୟ ଜରୁରୀ ପରିସ୍ଥିତିର ପୂର୍ଣ୍ଣ ଯୌବନ । ବିହାରର ପାଟନା ସହରରେ ସୋସଲିଷ୍ଟ ଦଳର ଆଧିପତ୍ୟ ତଥା ପରେ "ଲୋକନାୟକ" ଜୟପ୍ରକାଶ ନାରାୟଣଙ୍କ ଉପରେ ପୋଲିସର ଲାଠିମାଡ଼ । "ସୋସଲିଷ୍ଟ" ସୁରେନ୍ଦ୍ର ଦ୍ୱିବେଦୀ ସେତେବେଳେ କଂଗ୍ରେସ ନେତା ଭାବରେ ଭାରତ ସରକାରଙ୍କ ଅଧୀନରେ ଚାକିରି କରୁଥିଲେ । ଏପରିକି ୧୯୭୭ ସାଲର ଲୋକସଭା ନିର୍ବାଚନ ବେଳେ ସେ କଂଗ୍ରେସ (ଇ) ସପକ୍ଷରେ ଓଡ଼ିଶାରେ ଖୋଲାଖୋଲି ନିର୍ବାଚନ ପ୍ରଚାର ମଧ୍ୟ କରୁଥିଲେ । ୧୯୭୭ ଲୋକସଭା ନିର୍ବାଚନ ସରିଲା, ଜରୁରୀ ପରିସ୍ଥିତିର ଅବସାନ ହେଲା । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ ତାଙ୍କ ଦଳ କ୍ଷମତାରୁ ଗଲେ । ଦ୍ୱିବେଦୀ ପୁଣି କଂଗ୍ରେସରୁ ଇସ୍ତଫା ଦେଲେ । ସେତେବେଳେ ସାରା ଦେଶରେ ଜନତା ସରକାର ପ୍ରତିଷ୍ଠିତ । ଶ୍ରୀ ଜୟପ୍ରକାଶ ନାରାୟଣ ସେ ସରକାରର ଅଘୋଷିତ ମୁକୁଟମଣି ! ତାଙ୍କ ଆଶୀର୍ବାଦ ବିନା ସୁରେନ୍ଦ୍ର ଦ୍ୱିବେଦୀଙ୍କର ଜନତା ଦଳରେ ପଶିବା କଷ୍ଟକର । ସେ ଦୌଡ଼ିଲେ ଜୟପ୍ରକାଶଙ୍କ ପାଖକୁ । ଧରାଧରି କାମ ଦେଲା । ଜନତା ଦଳରେ ପଶିବା ପାଇଁ ଜୟପ୍ରକାଶଙ୍କ ଠାରୁ ଅନାୟାସରେ ମିଳିଗଲା ପାସ୍‌ପୋର୍ଟ୍ ଧର୍ମୀ ଏକ ଟେଷ୍ଟିମୋନିଆଲ । ଜୟପ୍ରକାଶଜୀ ଲେଖିଲେ, "**I am happy that Sri Surendranath Dwivedy has resigned from the Congress to associate himself with the cause of total revolution.**

"**Suren Babu has worked with me as a collegue for more than three decades. He is a dedicated socialist and during his long years of public service established the reputation of a ceaseless fighter against**

Political corruption. I have no doubt the association of such friends and their active involvement will strengthen the cause of total revolution." (୮)

ଏ ବକ୍ତବ୍ୟ କେତେ ପରିମାଣରେ ସତ୍ୟ ଏବଂ ଯଥାର୍ଥ, ତାହା ଦେଶର ନୀତିବାନ, ଆଦର୍ଶବାଦୀ ଲୋକେ ବିଚାର କରିବେ। ଆଜିର ସମସ୍ତ ସ୍ଖଳନ, ବିଚ୍ୟୁତି, ସୁବିଧାବାଦ ସତ୍ତ୍ୱେ ଯଦି ଜୟପ୍ରକାଶ ନାରାୟଣଙ୍କ ପରି ଦେଶର ତୁଙ୍ଗ ନେତାଙ୍କ ଠାରୁ ଏପରି ସାର୍ଟିଫିକେଟ ମିଳେ, ତାହେଲେ ନିଜର ଆଦର୍ଶ ମାନସିକତା ପ୍ରତି ଅବିଚଳିତ ରହି ତ୍ୟାଗ ତପସ୍ୟା କରୁଥିବା ଲୋକେ ନିଜକୁ 'ପାଗଳ' ବୋଲି ମନେ କରିବା ବିଚିତ୍ର ନୁହେଁ। କହିବା ବାହୁଲ୍ୟ, ଏହିପରି ବ୍ୟକ୍ତିଙ୍କର ପତାକାତଳେ ମୁଁ ହାବୁଡ଼ି ଯାଇଥିଲି ୧୯୪୭ରୁ ୧୯୫୨ ମସିହା ଯାଏଁ। ଯେଉଁବେଳେ ମୁଁ ସେ ପତାକାତଳୁ ଖସିଆସେ ସେତେବେଳେ ମୁଁ ୧୯ ବର୍ଷର ଯୁବକ।

"ଯଦୁନାଥ ଭବନ" ଭିତରେ ଜୀବନ କଟାଉଥିବା ବେଳେ ବହୁ ନେତା, କର୍ମୀ, ସହୃଦୟ ବ୍ୟକ୍ତିଙ୍କ ସାନ୍ନିଧ୍ୟ ଓ ନିକଟ ସମ୍ପର୍କରେ ମୋତେ ଆସିବାକୁ ହୋଇଥିଲା। ସେମାନେ ହେଲେ ବାଙ୍କବିହାରୀ ଦାସ, ବିଶ୍ୱନାଥ ପଣ୍ଡିତ, ନିଶାମଣି ଖୁଣ୍ଟିଆ, ସ୍ୱର୍ଗତ ଡାକ୍ତର ରବି ଘୋଷ, ଅନିଲ ଦେ, ପ୍ରଫୁଲ୍ଲ କିଶୋର ଦାସ, ନୃସିଂହ ଚରଣ ମହାନ୍ତି, ସ୍ୱର୍ଗତ ସାରଙ୍ଗଧର ଦାସ, କୁଳମଣି ମହାପାତ୍ର, ଗୋବିନ୍ଦ ଦାସ, ସ୍ୱର୍ଗତ ଗିରୀଶଚନ୍ଦ୍ର ରାୟ, ଭୂପେନ୍ଦ୍ରକୁମାର ଦାସ, କାହ୍ନୁଚରଣ ଦାସ, ସ୍ୱର୍ଗତ ବିନାୟକ ଚୌଧୁରୀ (କାଲୁ), ନଯ୍ୟାଟେଲ ଗୁପ୍ତା, ଡାକ୍ତର ପି. ପରିଜା, ଶ୍ୟାମଳୀ ଲାହିଡ଼ୀ, ସ୍ୱର୍ଗତ ଗାୟତ୍ରୀ ଦେବୀ, ଗୋଦାବରୀ ଦେବୀ, ସ୍ୱର୍ଗତା ଶାନ୍ତିସୁଧା ଖୁଣ୍ଟିଆ, ରବୀନ୍ଦ୍ର ମୋହନ ଦାସ, ପ୍ୟାରୀମୋହନ ଦାସ, ତ୍ରିଲୋଚନ ସେନାପତି, ସ୍ୱର୍ଗତ ଗୌରଚନ୍ଦ୍ର ଦାସ, ବିଶ୍ୱନାଥ ସାହୁ, ପ୍ରିୟନାଥ ଦେ, କସ୍ତୁରୀଚରଣ ମଲ୍ଲ, ଅଗଣି ସେଠୀ, ଆକୁଳାନନ୍ଦ ବେହେରା, ଲକ୍ଷ୍ମୀକାନ୍ତ ଦାସ, ମୁରଲୀଧର ଜେନା, ବନମାଳୀ ମହାରଣା, ଯୁଧିଷ୍ଠିର ଦାସ, ଦ୍ୱିଜବର ସାହୁ, ସହଦେବ ମିଶ୍ର, ସ୍ୱର୍ଗତ ଧୂଳେଶ୍ୱର ବସ୍ତିଆ, ବ୍ରଜକିଶୋର ସାମନ୍ତରାୟ, ରବିରାୟ, କିଶନ ପଟ୍ଟନାୟକ, ବୈକୁଣ୍ଠନାଥ ମହାନ୍ତି, ରବି

(୮) ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଲିଖିତ "ଜୟପ୍ରକାଶଙ୍କ ଜୟଯାତ୍ରା" ଗ୍ରନ୍ଥ ଦ୍ରଷ୍ଟବ୍ୟ।

ପଟ୍ଟନାୟକ ପ୍ରମୁଖ । ଏମାନଙ୍କ ମଧ୍ୟରୁ ସ୍ୱର୍ଗତ ଗିରିଶଚନ୍ଦ୍ର ରାୟ ଓ 'କାଲୁ' ବା ବିନାୟକ ଚୌଧୁରୀ ଏବଂ ଗୋବିନ୍ଦ ଦାସ ମୋର ଗୋଟିଏ ଗୋଟିଏ ସ୍ମୃତି । ଗିରିଶ ବାବୁ ମୋର ଝପ୍ଲଙ୍ଗା ବାମପନ୍ଥୀ ଚିନ୍ତା ଚେତନାର ଶିଳାନ୍ୟାସ କରିଥିଲେ । 'କାଲୁ' ଥିଲେ ମୋର ଅସହାୟର ସହାୟ । ଗୋବିନ୍ଦ ଦାସ, ଯିଏକି ପରେ ବାରିଷ୍ଟର, "ଅମାବାସ୍ୟାର ଚନ୍ଦ୍ର" ର ଲେଖକ ଓ ସମ୍ପ୍ରତି ଓଡ଼ିଶାର ଆଡ୍‌ଭୋକେଟ୍ ଜେନେରାଲ । ଗୋବିନ୍ଦ ବାବୁଙ୍କ ବାଲ୍ୟକାଳ ମୋର ଆଖି ଦେଖା । ସ୍ୱାଧୀନତା ସଂଗ୍ରାମ ବେଳେ ତାଙ୍କର ବାସଭବନ ମୋର ସ୍ୱର୍ଗତ ପିତାଙ୍କର ଥିଲା ସାମୟିକ ଆଶ୍ରୟ ସ୍ଥଳ । ତାଙ୍କର ବାପା ଓ ମା, ମୋତେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ।

ଦିନ ଗଡ଼ି ଚାଲିଲା ଧୀର ବନ୍ଧା ସ୍ରୋତରେ ।

କ୍ରମେ ମୋର ନିତି ଦିନିଆ କାମରେ ଆଜି ଦୁଇଟି କାମ ଆସି ମିଶିଲା । ପ୍ରଥମଟି ହେଲା ପାର୍ଟିର ସଭା-ସମିତିମାନଙ୍କରେ ରାଜନୈତିକ ସଂଗୀତ ଗାଇବା, ଦ୍ୱିତୀୟଟି ହେଲା, ପାର୍ଟିର ନେତାମାନଙ୍କ ଅଦ୍‌ଭୁତ "ସମାଜବାଦୀତନ୍ତ୍ର" ସମ୍ବଳିତ ପୁସ୍ତିକାମାନଙ୍କୁ ପଢ଼ି ମସ୍ତିଷ୍କ ଧୋଲେଇ କରିବା । ସେତେବେଳେ ପାର୍ଟିର ରାଜନୈତିକ ସଂଗୀତ ରଚୟିତା ଓ ଗାୟକମାନେ ହେଲେ ଡଃ. ପି. ପରିଜା, ବୈକୁଣ୍ଠନାଥ ମହାନ୍ତି; କାହ୍ନୁଚରଣ ଦାସ, ବନମାଳୀ ମହାରଣା । ଗୋଧା ହୋଇ ସୁଲକା ଗାଳିଆ ପିଲାଟିଏ ମୁଁ ସେତେବେଳେ । ପାର୍ଟି ତରଫରୁ ମୋ ପାଇଁ ଖଣ୍ଡେ ନାଲରଙ୍ଗର ଖଦଡ଼ ହାଫ୍-ପ୍ୟାଣ୍ଟ କିଣି ଦିଆ ଯାଇଥିଲା । ସେଇଟି ଏପରି ଢ଼ିଲା ଯେ, ବାଁ ହାତରେ ତାକୁ ମୋତେ ଅଣ୍ଟା ପର୍ଯ୍ୟନ୍ତ ଟେକି ଧରିବାକୁ ପଡ଼େ କ୍ରମାଗତ । ସେଇ ଚେହେରାର ମୋର ଏକ ଆଲୋକ ଚିତ୍ର, ଯାହା ଜୟପ୍ରକାଶ ନାରାୟଣଙ୍କ ଗହଣରେ କଟକ ନାରୀସଙ୍ଘ ସଦନରେ ଉଠା ହୋଇଥିଲା, ତାହା ଅଦ୍ୟାବଧି "ଜନଶକ୍ତି ପୁସ୍ତକାଳୟ"ର ମାଲିକ ଶ୍ରୀ ନୟାମତ ଲାଲ ଗୁପ୍ତାଙ୍କ ଆଲବମ୍‌ରେ ରହିଛି ।

ପ୍ରତିଦିନ ରାତିରେ ପାର୍ଟି ଅଫିସରୁ ଗହଳ ଭାଙ୍ଗିଲା ପରେ ମୁଁ ଟଙ୍ଗାମଣ୍ଡର କୃଷକ ପ୍ରେସର ମେସକୁ ଖାଇବାକୁ ଯାଏ ଓ ଫେରି ଆସି ବାଟଘରର ସଜଡ଼ ଉପରେ ଶୋଇପଡ଼େ । ପିଲା ଲୋକ ତ ! ନିଦଟା ଟିକେ ଗାଢ଼ । ସକାଳୁ ଅଫିସକୁ ଆସନ୍ତି ଶ୍ରୀ ବିଶ୍ୱନାଥ ପଣ୍ଡିତ । ଆସି ଯଦି ଦେଖନ୍ତି ମୋ ନିଦ

ଭାଙ୍ଗି ନାହିଁ, ତା’ ହେଲେ ସେ ମୋତେ ଗୋଟାଏ ଶକ୍ତ ଗୋଇଠା ମାରନ୍ତି, ଆଉ ଯାଚ୍ଛାତା ଭାଷାରେ ଗାଳି ଗୁଲଜ କରନ୍ତି । ତାଙ୍କର ଏପରି ବ୍ୟବହାର କ୍ରମବର୍ଦ୍ଧିତ ହୋଇ ୧୯୫୦ ମସିହା ଯାଏ ବଳବତ୍ତର ଥିଲା । ଏପରିକି ଚକ୍ରାମୁଣ୍ଡାଇ ଉପ-ନିର୍ବାଚନ ବେଳେ ଯେତେବେଳେ କି ମୁଁ ଘୋର ଅସୁସ୍ଥ, କାଛୁ, କୁଣ୍ଡିଆରେ ସମଗ୍ର ଦେହଟା ମିଳେଇ ଯାଉଥିଲା, ସେତେବେଳେ ବି ଅସମ୍ଭବ ଯନ୍ତ୍ରଣା ଭିତରେ ପଣ୍ଡିତ ମହାଶୟ ମୋତେ ଅନ୍ୟାନ୍ୟ ଅପରିଚିତ ଲୋକଙ୍କ ଆଗରେ ଗୋଇଠା ମାରୁଥିଲେ ଓ ଜବରଦସ୍ତ ନିର୍ବାଚନ ପ୍ରଚାର ପାଇଁ ଏକୁଟିଆ ଦୁର୍ଗମ ଅଞ୍ଚଳମାନଙ୍କୁ ପଠାଉଥିଲେ । ବଡ଼ ଅମାନବିକ ତାଙ୍କର ସେ ବ୍ୟବହାର । ପ୍ରତିବାଦ କଲେ ଅଧିକ ଯନ୍ତ୍ରଣା ଓ ଲାଞ୍ଛନା...ଅଧିକ ନିର୍ଯ୍ୟାତନ । ମୋର ଏହି ଦୁର୍ଦ୍ଦିନ ଭିତରେ ସମବ୍ୟଥୀ ବୋଇଲେ ଥିଲା ଜଣେ । ସିଏ ହେଲା ‘କାଲୁ’—ସ୍ୱର୍ଗତ ବିନାୟକ ଚୌଧୁରୀ । ‘କାଲୁ’ ଥିଲା ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କର ଏକମାତ୍ର ପୁଅ । ସେ ପ୍ରାୟ ପ୍ରତିଦିନ ସନ୍ଧ୍ୟାରେ ‘ଯଦୁନାଥ ଭବନ’କୁ ଆସେ ଖଣ୍ଡେ ପୁରୁଣା ସାଇକେଲ ଚଢ଼ି । ଦେହରେ ଖଦଡ଼ର ମାଲ ହାଫ୍ ପ୍ୟାଣ୍ଟ, ସାର୍ଟ, ପାଦରେ ଅଳ୍ପ ଦାମର ହଳେ ଚଟି । ବେଶ୍ ସ୍ୱାସ୍ଥ୍ୟବାନ ନୁହେଁ । ସର୍ବଦା ଚଳଚଞ୍ଚଳ । ସିଏ ଆସି “ଯଦୁନାଥ ଭବନ”ରେ ପାଦ ଦେବା କ୍ଷଣି ଦ୍ୱିବେଦୀ, ପଣ୍ଡିତ ପ୍ରଭୃତି ନେତାମାନେ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ନ୍ତି । ‘କାଲୁ’ ପାଇଁ ସ୍ୱତନ୍ତ୍ର ବ୍ୟବହାର, ସ୍ୱତନ୍ତ୍ର ଅଭ୍ୟର୍ଥନା । ସେ କିନ୍ତୁ ସେଥି ପ୍ରତି ନଜର ଦିଏନା । କଟକ ମେହେନ୍ତର ସଙ୍ଘର ‘କାଲୁ’ ଥିଲା ସୁଦକ୍ଷ ସଂଗଠକ ଏବଂ କର୍ମୀ । ‘କାଲୁ’ ମୋତେ ଦେଖିବା ମାତ୍ରେ ଆନ୍ତରିକ ହସଟିଏ ହସିଦିଏ । ଆଉ ସୁଯୋଗ ପାଇଲେ ଏକାନ୍ତରେ ମୋର ଭଲମନ୍ଦ ଖବର ବୁଝେ । ସେ ଯେତେବେଳେ ଜାଣିବାକୁ ପାଏ, ମୁଁ ପାଠ ପଢ଼ୁ ନାହିଁ, ମୋତେ ନାନା ବାଜେ କାମରେ ଲଗାଯାଉଛି, ସେତେବେଳେ ସେ ଭାରି ଦୁଃଖିତ ହୁଏ । ତା ପରଦିନ ଆସିଲାବେଳେ ସେ ମୋ ପାଇଁ ଖାତା-ପେନ୍ସିଲ କିଣି ଆଣିଥାଏ । ଏପରିକି ସେ ବେଳେ ବେଳେ ପାର୍ଟି ଅଫିସର ଗୋଟିଏ କୋଣରେ ବସାଇ ପାଠ ପଢାଏ । ଗଲାବେଳେ ମୋତେ ପଢା ଦେଇଯାଏ, ତା’ ପରଦିନ ଆସି ପଢା ନିଏ । ମୁଁ ସବୁ ପଢାତକ ଠିକ୍ ଠାକ୍ କରି ଦେଇଥିବାରୁ କାଲୁ ଖୁସି ହୋଇଯାଇ ମୋ ହାତରେ ବେଳେ ବେଳେ ଆଠଣା ଟଙ୍କାଏ ଗୁଞ୍ଜିଦିଏ । ମୁଁ ପାର୍ଟି ଅଫିସରେ ଗୋଟିଏ କଣଛି ଚୁପ୍ ହୋଇ ବସି ପେନସିଲରେ କ’ଣ

ଲେଖୁଛି ଆଜି ପଢ଼ୁଛି, ଏ ଦୃଶ୍ୟରେ ମୋର "ପ୍ରଭୁ" ମାନେ ଆନ୍ତରିକ ବିରକ୍ତ ହୋଇ ଉଠି ମୋତେ ଅନାବଶ୍ୟକ ସବୁ ହୁକୁମ ଦେବାକୁ ଆରମ୍ଭ କରନ୍ତି । ସେମାନେ କାଲୁ ଉପରେ ଭିତରେ ଅସନ୍ତୁଷ୍ଟ ହେଲେ ମଧ୍ୟ ତାକୁ ତା' ମୁହଁରେ କିଛି କହି ପାରନ୍ତି ନାହିଁ । ଏ ସବୁ ଘଟଣାରେ ମୁଁ କେତେବେଳେ ନିଜକୁ ଅଧିକ ନିଃସଙ୍ଗ ଓ ଅସହାୟ ମନେ କରେ ।

ଦିନକର ଘଟଣା ।

ଦୁଇଦିନ ଧରି କାଲୁ ପାର୍ଟି ଅଫିସକୁ ଆସି ନ ଥାଏ । ଦ୍ୱିବେଦୀ ଓ ବାଙ୍କବାବୁ କଟକ ବାହାରକୁ ଯାଇଥାଆନ୍ତି । ଅଫିସରେ ଥାଏ ରଘୁ । ମୁଁ ତାକୁ କିଛି ନ କହି ଓଡ଼ିଆ ବଜାରରୁ ଚାଲି ଚାଲି ରାଜସ୍ୱମନ୍ତ୍ରୀ ଚୌଧୁରୀଙ୍କ ସରକାରୀ ବାସଭବନକୁ ଗଲି କାଲୁର ସନ୍ଧାନ ନେବା ପାଇଁ । କାଲୁ ବି ସେଠି ସେଦିନ ନ ଥିଲା । ପିଅନ ଠାରୁ ଶୁଣି ଫେରି ଆସୁଥିଲି, ହଠାତ୍ 'ନୁମା' (ମାଳତୀ ଚୌଧୁରୀ)ଙ୍କ ନଜରରେ ପଡ଼ିଗଲି । ପଡ଼ୁ ପଡ଼ୁ ପ୍ରଶ୍ନ "ତୁ ପୁଣି ଏଠିକି କୁଆଡେ ଆସିଥିଲୁରେ ?"

"କାଲୁ ପାଖକୁ" ସନ୍ତ୍ରସ୍ତ ହୋଇ ମୁଁ ଉତ୍ତର ଦେଇ କହିଲି ।

ମୋ ପାଟିରୁ କଥା ନ ସରୁଣୁ ନୁମାଙ୍କର ପ୍ରଚଣ୍ଡ ମୂର୍ତ୍ତି "ତୁ ବଜାରି ତାକୁ କାହିଁକି ଖୋଜୁଛୁ ? ତୁ ତ ବଡ଼ (ବଡ଼ି) ଖାଉଛୁ । ତତେ ତ ବାପୀ ପଠାଉଥିଲେ ସୁରେଆ ସାଙ୍ଗରେ । ତୁ ପୁଣି ଅସି ବାହାରେ ବୁଲାଲୁଣି ? କାଲୁର ସାଙ୍ଗ ହେଉଛୁ ? ଖବରଦାର, ଆଉ ଦିନେ ଏଠି ଆସି କାଲୁକୁ ଖୋଜିବୁତ ତୋ ଗୋଡ଼ ଭାଙ୍ଗିଦେବି ।" ଏତିକି କହି ନୁମା ଚମଚମ ହୋଇ ଭିତରକୁ ଚାଲିଗଲେ । ମୁଁ ଦୁଃଖ, ଅପମାନ, ଲଜ୍ଜାରେ ମ୍ରିୟମାଣ ହୋଇ ଉଠିଲି । ଏହି କୃଷ୍ଣାଙ୍ଗୀ ନାରୀନେତ୍ରୀ ଜଣକର ମୋ ପ୍ରତି ଏପରି ରୁଦ୍ର ବିଦ୍ୱେଷର କାରଣ କ'ଣ ତାହା ସେଦିନ କାହିଁକି, ଆଜି ମଧ୍ୟ ଭାବି ବସିଲେ କିଛି କୂଳକିନାରା ପାଏନାହିଁ ।

ଏ ଘଟଣାର ଆଠଦିନ ପରେ କାଲୁ ସହିତ ପାର୍ଟି ଅଫିସରେ ପୁଣି ଦେଖା ହେଲା । ତାକୁ ଦେଖୁ ଦେଖୁ ମୁଁ ଅସହାୟ ଭାବରେ କାନ୍ଦି ଉଠିଲି । ସେ ଅନୁଭବ କଲା ମୋର ଆନ୍ତରିକ ଦୁଃଖକୁ । ତାକୁ ମଧ୍ୟ ନୁମା ମୋ ସହିତ ମିଳାମିଶା ନକରିବାକୁ ଧମକାଇଥିଲେ ବୋଲି ଜାଣିବାକୁ ପାଇଥିଲି । ମୋର

ଅନାଥ ବାଲ୍ୟଜୀବନର ଏହି ସମବୟସୀ ବନ୍ଧୁ ୧୯୪୮ ମସିହା ଡିସେମ୍ବର ମାସ ତା ୧୨ ତାରିଖରେ ପଟାସିୟମ ସାଇନାଇଡ୍ ଖାଇ ଆତ୍ମହତ୍ୟା କରିଥିଲା । ଠିକ୍ ମନେ ଅଛି, ସେହି ଡିସେମ୍ବର ତା ୧୧ ତାରିଖ ଦିନ ଖୋର୍ଦ୍ଧାର ରେଳବାଇ ଚଉଆରେ ବିହାରର ସୋସାଲିଷ୍ଟ ନେତା ବସ୍‌ଓ୍ୱାନ୍ ସିଂ ଏକ ବିରାଟ ଶ୍ରମିକ ସମାବେଶରେ ଭାଷଣ ଦେଇଥିଲେ । ସେ ସଭାକୁ ଶ୍ରୀ ବାଙ୍କବିହାରୀ ଦାସ, ବାବୁଲାଲ ଦୋଷୀ, ବୈକୁଣ୍ଠନାଥ ମହାନ୍ତି, କାହ୍ନୁଚରଣ ଦାସଙ୍କ ସମେତ ମୁଁ ବି ଯାଇଥିଲି । ସଭା ସାରି ତାଳଚେର ଗାଡ଼ିରେ ଆମେ ସମସ୍ତେ ତାଳଚେର ଅଭିମୁଖେ ଯିବା କଥା । ସେଠାରେ ଡେରା କଲିଅରୀର ଏକ ଶ୍ରମିକ ସଭାରେ ଶ୍ରୀ ବସ୍‌ଓ୍ୱାନ ସିଂ ଭାଷଣ ଦେବାର କଥା । କଟକରୁ ଆମ ସହିତ ସୁରେନ୍ଦ୍ରନାଥ ଦ୍ୱିବେଦୀ ଯିବା କଥା । ଗାଡ଼ି କଟକ ଷ୍ଟେସନରେ ଅଟକିଲା । ଶୀତଆଡେ ସକାଳର ଘନ କୁହୁଡ଼ି । କିନ୍ତୁ ଦ୍ୱିବେଦୀ କାହାନ୍ତି ? ହଠାତ୍ ବଜ୍ରାଘାତ ପରି ସମ୍ବାଦ ଆସିଲା, କାଲୁ ଆଉ ଇହଧାମରେ ନାହିଁ । ନବବାବୁ ପାଗଳଙ୍କ ପରି ଚଳେ ଗଡୁଛନ୍ତି । ଦ୍ୱିବେଦୀ ଅଛନ୍ତି ତାଙ୍କ ପାଖରେ । ସେ ତାଳଚେର ଯାଇ ପାରିବେ ନାହିଁ ।

କାଲୁ—ସ୍ୱଭାବତଃ ଥିଲା ଅଭିମାନୀ । ଚମତ୍କାର ବିଦ୍ୟୁତ୍‌ଚରିତ୍ରର କିଶୋର । ସ୍ୱର୍ଗତ ସ୍ୱାଧୀନତା ସଂଗ୍ରାମୀ ତଥା ଓଡ଼ିଶା ବିଧାନ ସଭାର ବାଚସ୍ପତି ଗଦାଧର ଦତ୍ତଙ୍କ କନ୍ୟା 'ଭାରତୀ' ପ୍ରତି କେଉଁ ଦୁର୍ବଳ ମୁହୂର୍ତ୍ତରେ ସେ ଆକୃଷ୍ଟ ହୋଇଥିଲା । ଭାରତୀ ମଧ୍ୟ ଥିଲା ଅନୁରକ୍ତ । ଏହି ପରସ୍ପର ଆକର୍ଷଣ ଭିତରେ ପ୍ରତିବନ୍ଧକ ସୃଷ୍ଟି ହୋଇଥିଲା କାଲୁର ମା' ନୁମାଙ୍କ ତରଫରୁ ବୋଲି ମୁଁ ଶୁଣିଛି । ତା'ର ଫଳଶ୍ରୁତି ହୋଇଥିଲା କାଲୁର ଆତ୍ମହତ୍ୟା ।

କାଲୁର ଆତ୍ମହତ୍ୟା ପରେ ଭାରତୀଙ୍କୁ "ଜନମତ"ର ସମ୍ପାଦକ ଶ୍ରୀ ନିତ୍ୟାନନ୍ଦ ସିଂହଙ୍କ ସହିତ ବିବାହ ଦିଆ ଯାଇଥିଲା । ଗୋଟିଏ କନ୍ୟା ସନ୍ତାନର ଜନନୀ ହୋଇ ସାରିଥିଲେ ବି ଅନ୍ତିମ ଦିନ ପର୍ଯ୍ୟନ୍ତ କାଲୁକୁ ଭୁଲି ପାରିନଥିଲା ଭାରତୀ । ଭାରତୀ ଥିଲା କବି । ତାର ଅପୂର୍ବ କବିତାଗୁଡ଼ିକ ପୁସ୍ତକାକାରରେ ମଧ୍ୟ ମୁଦ୍ରିତ ହୋଇଛି । ଭାରତୀର ପିତା ସ୍ୱର୍ଗତ ଗଦାଧର ଦତ୍ତ ଥିଲେ ମୋର ସ୍ୱର୍ଗତ ପିତାଙ୍କର ଘନିଷ୍ଠତମ ବନ୍ଧୁ । ତାଙ୍କ ପାଖକୁ ବାପାଙ୍କ ସହିତ ଯିବା ଆସିବାରେ ଭାରତୀ ମୋତେ ଭଲ ଭାବରେ ଚିହ୍ନିଥିଲା । କାଲୁର ମୃତ୍ୟୁ ପରେ ଭାରତୀର ବିବାହିତ ଜୀବନରେ ତା ସହିତ ମୋର

ବହୁବାର ସାକ୍ଷାତ ଆଲୋଚନା ହୋଇଛି । ଭଗେଣ୍ଟ ତାର ସୁରଭିତ ନୈସର୍ଗିକ ପ୍ରେମ କବିତା ଗୁଡ଼ିକ ଅବୃତ୍ତି କରି ମୋତେ ବହୁବାର ଶୁଣାଇଛି । ଅପୂର୍ବ ସେ କବିତାଗୁଡ଼ିକର ଶବ୍ଦ-ଯୋଜନା ଓ ଛନ୍ଦ ବିନ୍ୟାସ । ପ୍ରତିଟି କବିତାରେ ଅନ୍ତଃସଲିଳା ଫଲ୍‌ଗୁ ପରି କାଳୁଚ ସ୍ମୃତି ଆଜି ବି ବିଦ୍ୟମାନ ।

ହଠାତ୍ ଦିନେ ନିଜେ ଦେହରେ କରୋସିନ ଢ଼ାଳି ଭଗେଣ୍ଟ ମଧ୍ୟ ଆତ୍ମାହୁତି ଦେଇଥିଲା । ବଡ଼ ବେଦନାଦାୟକ ସ୍ମୃତି ସିଏ ।

ଯିଏ ମୋତେ "ମଣିଷ କରିବାର" ଦାୟିତ୍ୱ ରାଜସ୍ୱ ମନ୍ତ୍ରୀ ନୀଳ୍ମୈ ଧୁଷ୍ଟଙ୍କ ଠାରୁ ବହନ କରି ସେଦିନ 'ଯଦୁନାଥ ଭବନ"କୁ ଆଣିଥିଲେ ସେହି ନେତା, ଅର୍ଥାତ୍ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କର ସେଥି ପ୍ରତି ନଜର ରହିଲା ନାହିଁ ।

କଂଗ୍ରେସ ଭିତରେ ଥିବା ସୋସଲିଷ୍ଟ ଗୋଷ୍ଠୀ ୧୯୪୮ ମସିହା ଏପ୍ରିଲ ମାସରେ କଂଗ୍ରେସରୁ ଅଲଗା ହୋଇଯିବା ଫଳରେ ନିଖିଳଭାରତ କଂଗ୍ରେସ-ସୋସଲିଷ୍ଟ ପାର୍ଟି କେବଳ "ସୋସଲିଷ୍ଟ ପାର୍ଟି" ବୋଲି ନାମ ଧାରଣ କଲା । ପୂର୍ବର ପତାକା ବଦଳି ହେଲା ଲାଲ ରଙ୍ଗର ପତାକା । ତାର ଊର୍ଦ୍ଧ୍ୱ କୋଣରେ ଧଳା ରଙ୍ଗରେ ଅଙ୍କିତ ହେଲା ଚକ ଓ ଲଙ୍ଗଳ ଚିହ୍ନ । ସୋସଲିଷ୍ଟ ନେତାମାନେ ଏପରିକି ଜୟପ୍ରକାଶନାରାୟଣ, ଡ଼ଃ ରାମ ମନୋହର ଲୋହିଆ, ରାମ ନନ୍ଦନ ମିଶ୍ର ପ୍ରମୁଖ ନିଜ ନିଜ ମୁଣ୍ଡରେ ଲାଲଟୋପି ପିନ୍ଧିଲେ । ସୋସଲିଷ୍ଟ ଗୋଷ୍ଠୀ କଂଗ୍ରେସରୁ ଅଲଗା ହେଲାବେଳକୁ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ନେତାମାନେ ଥାନ୍ତି ଅଜ୍ଞାତବାସରେ, ଆଜି ପାର୍ଟି ପ୍ରାୟ ବେଆଇନ୍ ହୋଇଥାଏ । ଏହାର ସୁଯୋଗରେ ଏକ ପ୍ରଚଣ୍ଡ-ବାମପନ୍ଥୀ ବିଭ୍ରାନ୍ତି ପାଇଁ ସୋସଲିଷ୍ଟମାନଙ୍କୁ ସୁବିଧା ମିଳିଲା । କଂଗ୍ରେସ ଓ କମ୍ୟୁନିଷ୍ଟ ମାନଙ୍କ ବିରୁଦ୍ଧରେ ରାଜନୈତିକ ଆକ୍ରମଣ ଏକ ପ୍ରବଳ ତୋଫାନ୍ ପ୍ରାୟ ସୃଷ୍ଟି କରିଥିଲା । ସଭା-ସମିତିରେ, ସୋସଲିଷ୍ଟ ପାର୍ଟିର ଆଲୋଚନା ବୈଠକମାନଙ୍କରେ, ସୋସଲିଷ୍ଟ ମାନଙ୍କର ଲେନିନ୍‌ବର୍ଜିତ ମାର୍କସ୍‌ବାଦର ତର୍ଜମା କଥା ଆଜି ମନେପଡ଼ିଲେ ହସମାଡ଼େ ଓ ଲଜ୍ଜାବୋଧ ହୁଏ । ଏପରିକି ସେତେବେଳେ ସୋସଲିଷ୍ଟମାନଙ୍କ ଆଗରେ ମାର୍ଶାଲ୍ ଟିଟୋଙ୍କ କମ୍ୟୁନିଷ୍ଟ ଯୁଗୋସ୍ଲାଭିଆ ହୋଇ ଉଠିଥିଲା ଏକ "ସୋସଲିଷ୍ଟ ରାଷ୍ଟ୍ର" । ଫଳରେ ଦଳେ ସୋସଲିଷ୍ଟ ନେତା ଯୁଗୋସ୍ଲାଭିଆ ପରିଦର୍ଶନରେ ଯାଇଥିଲେ । ଓଡିଶାରୁ ତା ଭିତରେ ଥିଲେ ସୋସଲିଷ୍ଟ ନେତା ଶ୍ରୀ ବାଙ୍କ ବିହାରୀ

ଦାସ । ସେତେବେଳେ "ଗଣତାନ୍ତ୍ରିକ ସାମ୍ୟବାଦ" ଉପରେ ବହୁ ତାତ୍ତ୍ୱିକ ଆଲୋଚନା ପୁସ୍ତିକା, ନେତାଙ୍କ ମୁଦ୍ରିତ ଭାଷଣ ପୁସ୍ତିକା, ରାଜନୈତିକ ସଙ୍ଗୀତ ପୁସ୍ତିକା ଗଣି ଗଣି ସଂଖ୍ୟାରେ ପ୍ରକାଶିତ ହେଉଥିଲା ।

ସୋସଲିଷ୍ଟମାନଙ୍କର କଂଗ୍ରେସ ତ୍ୟାଗ ପରେ ମୋତେ ଶ୍ରୀ ଗୌରଚନ୍ଦ୍ର ଦାସଙ୍କ ମାର୍ଫତରେ ବାଲେଶ୍ୱର ପଠାଗଲା । କାରଣ, ଡଃ ରାମମନୋହର ଲୋହିଆ ବାଲେଶ୍ୱର ଆସିବେ । "ଶାନ୍ତ କାନନରେ" ସୋସଲିଷ୍ଟ ପାର୍ଟିର ଗୁରୁତ୍ୱପୂର୍ଣ୍ଣ ଅଧିବେଶନ ବସିବ ଏବଂ ବାଲେଶ୍ୱରରେ ବିରାଟ ଏକ ସାଧାରଣ ସଭାରେ ଲୋହିଆଜୀ ଭାଷଣ ଦେବେ । ପ୍ରାୟ ଦୁଇ ମାସ ଆଗରୁ ମୁଁ ଗୌରବାବୁଙ୍କ ସହିତ ବାଲେଶ୍ୱର ଯାଇଥାଏ । ଦୁଇମାସ ମଧ୍ୟରେ ମୋର ସେଠାରେ ଶ୍ରୀ ରବୀନ୍ଦ୍ର ମୋହନ ଦାସ, ତାଙ୍କ ଧର୍ମପତ୍ନୀ ଗୋଦାବରୀ ଦେବୀ, ତ୍ରିଲୋଚନ ସେନାପତି, ପ୍ୟାରୀମୋହନ ଦାସଙ୍କ ସହିତ ଘନିଷ୍ଠତା ହୋଇଥିଲା । ରୁପସା, ହଳଦିପଦା, ସୋରୋ ପ୍ରଭୃତି ଅଞ୍ଚଳରେ ଏପରି ବ୍ୟାପକ ପ୍ରଚାର ହେଉଥିଲା ଯେ, ତାହା ଭୁଲିବାର ନୁହେଁ । ଅବଶେଷରେ ଡଃ ଲୋହିଆ ଯେଉଁ-ଦିନ ବାଲେଶ୍ୱର ଷ୍ଟେସନରେ ଆସି ପହଞ୍ଚିବେ, ସେଦିନ ତାଙ୍କ ସମ୍ବର୍ଦ୍ଧନା ପାଇଁ ବିପୁଳ ଆୟୋଜନ । କିନ୍ତୁ ତା ପୂର୍ବଦିନ ମାନ୍ଦ୍ରାଜ ଠାରୁ ଏକ ତାରବାର୍ତ୍ତା ଆସିଲା ଯେ, ଡ଼ଃ ଲୋହିଆ ଅନିବାର୍ଯ୍ୟ କାରଣବଶତଃ ବାଲେଶ୍ୱର ଯାଉନାହାନ୍ତି । ଫଳରେ ତାଙ୍କ ସମ୍ବର୍ଦ୍ଧନା ଆୟୋଜନ ବନ୍ଦ ହେଲା ଏବଂ ଷ୍ଟେସନକୁ କେହି ଗଲେନାହିଁ । କିନ୍ତୁ ଦେଖାଗଲା, ଲୋହିଆଜୀ ଠିକ୍ ସମୟରେ, ନିର୍ଦ୍ଦିଷ୍ଟ ଟ୍ରେନ୍‌ରେ ବାଲେଶ୍ୱର ଷ୍ଟେସନରେ ଆସି ଓହ୍ଲାଇଛନ୍ତି । ଘଟଣା ହେଲା, କଂଗ୍ରେସ ଲୋକେ ତାଙ୍କ ଗସ୍ତକୁ ଭଣ୍ଡୁର୍ କରିବା ପାଇଁ ଏପରି ଏକ ମିଥ୍ୟା ତାରବାର୍ତ୍ତା ପଠାଇ-ଥିଲେ । ଲୋହିଆଜୀ ବାଲେଶ୍ୱର ଷ୍ଟେସନରେ ପହଞ୍ଚିବା ପରେ ତାଙ୍କ ପାଇଁ ବାଲେଶ୍ୱର ସହରରେ ଖଣ୍ଡେ କାର ମଧ୍ୟ ମିଳି ନଥିଲା । ଫଳରେ ଗୋଟିଏ ଟ୍ରକ୍‌ରେ ଶ୍ରୀ ସୁରୁଚନ୍ଦ୍ର ରାୟ ଓକିଲଙ୍କ ଘରକୁ ତାଙ୍କୁ ନିଆ ଯାଇଥିଲା । ସେ ଟ୍ରକ୍ ଉପରେ ମୁଁ ନିଜେ, ଦ୍ୱିବେଦୀଙ୍କ ସ୍ତ୍ରୀ ୬ ଗାୟତ୍ରୀ ଦେବୀ, ଶ୍ୟାମଳୀ ଲାହିଡ଼ୀ ପ୍ରମୁଖ ଥିଲୁ । ମନେଅଛି ଡଃ ଲୋହିଆ ଟ୍ରକ୍‌କୁ ଉଠିଲା ବେଳେ ନିଜ ଗଳାରୁ ଏକ ଫୁଲମାଳ କାଢ଼ି ମୋ ଗଳାରେ ପିନ୍ଧାଇ ଦେଇଥିଲେ ।

ରାଜ୍ୟ ସୋସଲିଷ୍ଟ ପାର୍ଟିର କେନ୍ଦ୍ରୀୟ ଦପ୍ତର କଟକ ଓଡ଼ିଆ ବଜାରର 'ଯଦୁନାଥ ଭବନ'କୁ ମୁଁ ଯେବେ, ଯେଉଁଠାରୁ ଫେରି ଆସୁଥିଲି, ସେବେ ଅତି

ସର୍ବକ୍ଷଣ ଭାବରେ ମନୋନିବେଶ କରୁଥିଲି ପାଠପଢ଼ାରେ,ଜ୍ଞାନାର୍ଜନରେ । ନିଜ ଚେଷ୍ଟାରେ କମ୍ପ୍ୟୁନିଷ୍ଟ ଶବ୍ଦମାନଙ୍କର ଉଚ୍ଚାରଣ, ହସ୍ତାକ୍ଷର ଲିଖନ, ନିୟମିତ ସମ୍ବାଦପତ୍ର ଅଧ୍ୟୟନରେ ମୁଁ ବ୍ୟସ୍ତ ରହେ । ଦଳର ନେତା ଓ କର୍ମୀମାନେ ଯେଉଁସବୁ ରାଜନୈତିକ ଆଲୋଚନାମାନ କରନ୍ତି, ତାକୁ ମୁଁ ଶୁଣେ । ବାଲ୍ୟାବସ୍ଥାରେ ମୋର ସ୍ମରଣ ଶକ୍ତି ପ୍ରଖର ଥିବାରୁ ଯାହା ଶୁଣେ, ଯାହା ପଢ଼େ, ତାହା ଥରକରେ ମନେ ରହିଯାଏ । କ୍ରମେ ଲକ୍ଷ୍ୟ କଲି, ମୋତେ ଗୋଟାଏ 'ବୋକ୍‌ଗୁରୁହା' ଭାବରେ ଗଢ଼ି ତୋଳିବା ପାଇଁ ପାର୍ଟିର ସାହିତ୍ୟ, ନେତା-ମାନଙ୍କର ମୁଦ୍ରିତ ଭାଷଣ ଆଦି ନିୟମିତ ପଢ଼ିବାକୁ ବାଧ୍ୟ କରାଯାଉଛି । ସେ ସବୁ ସାହିତ୍ୟ ଓ ଭାଷଣ ଥିଲା ଉତ୍କଟ କମ୍ପ୍ୟୁନିଷ୍ଟବାଦ ବିରୋଧୀ । ଯଥା : କମ୍ପ୍ୟୁନିଷ୍ଟମାନେ ଡକାୟତ, ହିଂସାବାଦୀ, ଖୁଣୀ, ରୁଷିଆର ଗୁପ୍ତଚର ଇତ୍ୟାଦି । ଏତଦ୍ୱାରା ସେମାନଙ୍କର ମୋଟେ ଲଭ ହୋଇନାହିଁ, ବରଂ ତା ଫଳରେ ମୋ ଭିତରେ କମ୍ପ୍ୟୁନିଷ୍ଟ ପାର୍ଟିକୁ, ତାର ମତବାଦକୁ ଜାଣିବା, ବୁଝିବା ପାଇଁ ଏକ ଅସୀମ କୌତୂହଳ କ୍ରମେ ବୃଦ୍ଧି ପାଇବାକୁ ଲଗିଲି । ମୋର ସେହି କ୍ରମବର୍ଦ୍ଧ-ମାନ କୌତୂହଳର ଅଭିଅନ୍ତର ଟେର୍ ଜଣେ ବ୍ୟକ୍ତିତ କେହି ପାଇନଥିଲେ । ସେ ଜଣକ ହେଲେ ସୋସଲିଷ୍ଟ ନେତା ତଥା ବିଧାନସଭା ସଦସ୍ୟ ସ୍ୱର୍ଗତ ଗିରିଶ ଚନ୍ଦ୍ର ରାୟ । ଗିରିଶ ବାବୁ— ମୋର ଏକ ଅଭୁଲା ସ୍ମୃତି । ସେତେବେଳେ ମୋ ପ୍ରତି ତାଙ୍କର ସ୍ନେହଶ୍ରଦ୍ଧା ଥିଲା ଅସୀମ । ମୋର କଠୋର ଜୀବନଯାତ୍ରା, ଅବହେଳିତ ତଥା ଅନାଦୃତ ପ୍ରାରମ୍ଭିକ ରାଜନୈତିକ ଜୀବନ, ମୋର ଅନୁ-ସନ୍ଧିତ୍ସା ସବୁକୁ ସେ ବୁଝିଥିଲେ । ସେଥିପାଇଁ ସେ କଟକ ଆସିଲେ ମୋତେ ପଢ଼ାପଢ଼ିରେ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସୁଯୋଗ ପାଇଲେ କମ୍ପ୍ୟୁନିଷ୍ଟ ପାର୍ଟି, ତାର ଭାବାଦର୍ଶ ସମ୍ପର୍କରେ ମୋତେ ବୁଝାଉଥିଲେ । ପରେ ସେ କମ୍ପ୍ୟୁନିଷ୍ଟ ପାର୍ଟିର ବେଆଇନ ଘୋଷିତ କେତେକ ପତ୍ରପତ୍ରିକା ସମେତ କେତେକ ତାତ୍ତ୍ୱିକ ପୁସ୍ତିକା ମୋତେ ଦେଇଥିଲେ ପଢ଼ିବା ପାଇଁ । ପ୍ରକାଶ ଥାଉକି, ଅତ୍ୟନ୍ତ ଗୋପନରେ ଗିରିଶବାବୁ ସେତେବେଳେ ପ୍ରସ୍ତୁତ ହେଉଥାନ୍ତି ସୋସଲିଷ୍ଟ ଦଳ ଛାଡ଼ି କମ୍ପ୍ୟୁନିଷ୍ଟ ପାର୍ଟିରେ ଯୋଗଦେବା ପାଇଁ । ଏସବୁ ଘଟଣାକୁ ମୁଁ ଜାଣିଥିଲେ ମଧ୍ୟ ଅତ୍ୟନ୍ତ ଗୋପନ ରଖିଥାଏ । ଦିନେ ଗିରିଶବାବୁ ମୋତେ ନେଇ ଏକ ଗୋପନ ସ୍ଥାନରେ, ସେତେବେଳେ ଶଙ୍କରପୁରର ପ୍ରଖ୍ୟାତ ଲଢ଼ୁଆ କୃଷୀନେତା ସ୍ୱର୍ଗତ ଅରୁଣ ବିଶ୍ୱାଳଙ୍କ ସହିତ ପରିଚୟ କରାଇଥିଲେ । ସେହି ଦିନ ଠାରୁ ଅରୁଣବାବୁ ମୋତେ ତାଙ୍କ ମୃତ୍ୟୁ ଅବଧି ଅତ୍ୟଧିକ ଶ୍ରଦ୍ଧା କରୁଥିଲେ ।

ଅରୁଣ ବଣ୍ଡାଲ—ସେ ଥିଲେ ମନରେ, ପ୍ରାଣରେ ଜଣେ ଲଢୁଆ ସର୍ବହରା ବା କମ୍ୟୁନିଷ୍ଟ । କଟକ ମାଲଗୋଦାମ ଶଗଡ଼ ଗୁଳକ ସଙ୍ଘ ତାଙ୍କର ନେତୃତ୍ବରେ ଗଠିତ ହୋଇଥିଲା । ସେତେବେଳେ ଅତ୍ମଗୋପନ କରିଥିବା କମ୍ୟୁନିଷ୍ଟ ନେତା ମାନଙ୍କର ତଥା ପାର୍ଟିର ବିପ୍ଳବୀ ଭାବମୂର୍ତ୍ତି ମୋର ମାନସ-ଲୋକରେ ଅପୂର୍ବ ଏକ ରୋମାଞ୍ଚକର ପ୍ରଭାବ ବିସ୍ତାର କରିଥିଲା । କମ୍ୟୁନିଷ୍ଟ ନେତା ଶ୍ରୀ ବୈଦ୍ୟନାଥ ରଥ, ଶ୍ରୀ ରାମକୃଷ୍ଣ ପତି, ଡାକରଡ଼ାର ଗୁଷୀନେତା ସ୍ୱର୍ଗତ ଗୋବର୍ଦ୍ଧନ ପ୍ରଧାନ, ମନମୋହନ ମିଶ୍ର, ନନ୍ଦମା ପାଣିଗ୍ରାହୀ ପ୍ରମୁଖଙ୍କ କାର୍ଯ୍ୟକଳାପ, ତେଲେଙ୍ଗାନାର ବିସ୍ଫୋରକ କୃଷିବିପ୍ଳବ ଆଦିର କାହାଣୀକୁ ମନ୍ତ୍ରମୁଗ୍ଧ ବନ୍ତି ମୁଁ ଶୁଣେ । କମ୍ୟୁନିଜମ୍ ପ୍ରତି, ଚରମ ବାମପନ୍ଥୀ ରାଜନୀତି ପ୍ରତି ପ୍ରବଳ ଏକ ଝୁଙ୍କି ମୋ ଭିତରେ ସେତେବେଳେ ଧୀରେ ଧୀରେ ଦାନା ବାନ୍ଧିବାକୁ ଆରମ୍ଭ କରେ । ମୋର ଏଇ ଉତ୍ସାହକୁ ଠିକ୍ ଭାବରେ ଠଉରାଇ ପାରି ଗିରଣବାବୁ ସବୁବେଳେ ମୋତେ କହୁଥିଲେ, "ଭବିଷ୍ୟତରେ ତମେ ଜଣେ ସଚ୍ଚା ବିପ୍ଳବୀ ହେବ ।"

ଏଠାରେ କହିରଖେଁ, ୧୯୫୨ ମସିହାରେ ମୁଁ ସୋସଲିଷ୍ଟ ପାର୍ଟି ଛାଡ଼ିବାର ବହୁପୂର୍ବରୁ ଗିରଣ ଚନ୍ଦ୍ର ରାୟ ସୋସଲିଷ୍ଟ ଦଳ ଛାଡ଼ି ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇଥିଲେ । ଏ ଘଟଣା ସେତେବେଳେ କମ୍ ବିପ୍ଳବୀଙ୍କର ପରିଚୟ ଦେଇନଥିଲା । ମୁଁ ସୋସଲିଷ୍ଟ ପାର୍ଟି ଛାଡ଼ି ଯେତେବେଳେ ରାଜ-ନୈତିକ ବିଚାରରୁ ହତାଶ ହୋଇ ଉଦ୍ଭ୍ରାନ୍ତଙ୍କ ପରି ବୁଲିବାକୁ ଆରମ୍ଭ କରିଥିଲି, ସେତେବେଳେ ଏକ କଷ୍ଟସ୍ନାତ ଧୂମକେତୁ ପରି ଉଦୟ ହେଉଥିଲି ନାନା ଶୁଭେଚ୍ଛୁଙ୍କ ପାଖରେ କୌଣସି ଏକ ସ୍ଥାନ ତଥା କନାଗର ଆଶାରେ । ଲକ୍ଷ୍ୟହୀନ ଜୀବନ, ଉଦ୍ଦେଶ୍ୟହୀନ ଯାତ୍ରା, ଅକାରଣ ଭ୍ରମଣ, ଏ ସବୁରେ ମୁଁ କ୍ଳାନ୍ତ ହୋଇ ପଡୁଥିବା ବେଳେ ହଠାତ୍ ଦିନେ ମୋର ସାକ୍ଷାତ ହେଲା ତତ୍କାଳୀନ ଓଡ଼ିଶା ରେଲବାଇ ପୁଲିସ ବିଭାଗର ଡ଼. ଏସ. ପି. ଶ୍ରୀ ଗୌରକୃଷ୍ଣ ମହାନ୍ତିଙ୍କ ସହିତ । ତାଙ୍କ ସହିତ ମୋର ପରିଚୟ ସ୍ୱାଧୀନତା ସଂଗ୍ରାମ କାଳରୁ । ନାନା ଦୁର୍ଦ୍ଦିନରେ ସେ ମୋତେ ବହୁତ ସାହାଯ୍ୟ କରିଛନ୍ତି । ଦିନେ ସେ ମୋତେ କହିଲେ, ସେ ଗସ୍ତରେ ଯାଉଛନ୍ତି ଝାରସୁଗୁଡ଼ା ପର୍ଯ୍ୟନ୍ତ । ଏକ ସ୍ୱତନ୍ତ୍ର ସେଲୁନ୍‌ରେ ସେ ଖଡ଼ଗପୁର ବାଟ ଦେଇ ଯିବେ । ତାଙ୍କ ସହିତ ଯିବା ପାଇଁ ସେ ମୋତେ ଆମନ୍ତ୍ରଣ କଲେ । ତାଙ୍କ ସହାୟତାରେ କୌଣସି କିଛି ସ୍ଥାନ ଆଶାରେ ବାହାରିଲି । ଓଡ଼ିଶା ରେଲବାଇ ପୁଲିସର ଜଣେ ଅଫିସର

ସେତେବେଳେ ଶ୍ରୀଯୁକ୍ତ ମହାନ୍ତି । ତାଙ୍କ ପାଇଁ ତାଙ୍କ ସ୍ୱତନ୍ତ୍ର ସେଲୁନରେ ସ୍ୱତନ୍ତ୍ର ବିଭାଗୀୟ ବ୍ୟବସ୍ଥା । ଯାତ୍ରାକାଳରେ ନାନା ଗପ, ଖାଦ୍ୟପେୟ ହେଉଥାଏ । ନାନା ଷ୍ଟେସନରେ ରହି ରହି, ପରିଦର୍ଶନ କରି କରି ରାଉରକେଲା ବାଟେ ଝାରସୁଗୁଡ଼ା ପର୍ଯ୍ୟନ୍ତ ଯାଇଥିବା ମୋର ମନେ ଅଛି । ସେତେବେଳେ ରାଉରକେଲା ଥିଲା ଅଖ୍ୟାତ, ଅଜ୍ଞାତ ଛୋଟ ରେଳ ଷ୍ଟେସନଟିଏ । ଚାରି ଦିଗରେ ବଣ ପାହାଡ଼ । ପ୍ରକୃତିର ଅପୂର୍ବ ମନୋରମ ବିଭବ । ସେଠାରେ ଜି. ଆର. ପି. ଅତିଥିଶାଳାରେ ଗୌରବାବୁଙ୍କ ସହିତ ଗୋଟିଏ ରାତି କଟାଇଥିଲି । ମନେ ପଡ଼ୁଛି, ଗୌରବାବୁ ଝାରସୁଗୁଡ଼ା ଠାରେ ତାଙ୍କର ଯାତ୍ରା ବିରତି କରି ସେଠାରେ ତାଙ୍କ ବିଭାଗୀୟ କାର୍ଯ୍ୟ ସମ୍ପାଦନ ପାଇଁ ରହିଗଲେ ଏବଂ ମୁଁ ତାଙ୍କ ଠାରୁ ବିଚ୍ଛିନ୍ନ ହୋଇ ବିଦାୟ ନେଇ ବାରିପଦା ଆସିବା ବାଟରେ ଅକସ୍ମାତ୍ ଗୋଟିଏ ସନ୍ତ୍ରାସବାଦୀ ବିପ୍ଳବୀ ଗୋଷ୍ଠୀର ନେତା ଦୁଲାଲ ସେନଙ୍କୁ ଭେଟିଥିଲି । ଶ୍ରୀ ସେନ୍‌ଙ୍କ ଦଳଟି ଝାରସୁଗୁଡ଼ା ଠାରୁ ବହୁ ଦୂରରେ ଘନ ଜଙ୍ଗଲ ମଧ୍ୟରେ ଏକ ଛୋଟ ପର୍ବତର ଗୁହା ମଧ୍ୟରେ ବାସ କରୁଥିଲେ ଓ ନିଜର କ୍ୟାଡ଼ରମାନଙ୍କୁ ବିପ୍ଳବୀ ସାମରିକ ତାଲିମ ଦେଉଥିଲେ । ସେମାନଙ୍କର ସେହି ଗୋପନ ଘାଟିରେ ପ୍ରାୟ ୧୫ ଦିନ କାଳ ମୁଁ କଟାଇଥିଲି ଏବଂ ରିଭଲଭର୍ ଚଳନା, ହାତବୋମା ଫିଙ୍ଗିବା ଆଦି ଶିଖିବା ଆରମ୍ଭ କରି ଦେଇଥିଲି । ଏହି ବିପ୍ଳବୀ ଦଳଟିର ନେତା ଓ ସମସ୍ତ ଶିକ୍ଷାନବିସ ମୋର ଜୀବନଯାତ୍ରା, ଶ୍ରେଣୀଚରିତ୍ର ଆଦି ଅନୁଧ୍ୟାନ କଲା ପରେ ମୋତେ କେବଳ ବିଶ୍ୱାସ କରି ନ ଥିଲେ, ଶ୍ରଦ୍ଧା ମଧ୍ୟ କରିବାକୁ ଆରମ୍ଭ କରିଥିଲେ । ଏହି ଦଳଟି କମ୍ୟୁନିଷ୍ଟ ମତବାଦର ବିରୋଧୀ ନଥିଲେ ମଧ୍ୟ ସେମାନଙ୍କ ସହିତ ୧୫ଟି ଦିନର ସାନ୍ନିଧ୍ୟ, ଆଲୋଚନା ଏବଂ କାର୍ଯ୍ୟକଳାପରୁ ବୁଝିଥିଲି, ଭାରତୀୟ କମ୍ୟୁନିଷ୍ଟ ନେତାମାନଙ୍କ ଉପରେ ସେମାନଙ୍କର ଭରସା ନଥିଲା । କାରଣ, ସେ ନେତାମାନେ ଯେଉଁ ଶ୍ରେଣୀରୁ ଆସିଛନ୍ତି, ସେ ଶ୍ରେଣୀଟି ହେଲା ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ । ଶ୍ରେଣୀଚ୍ୟୁତ ହୋଇ ନଥିବାରୁ ସେମାନେ ଗଣ ଆନ୍ଦୋଳନ ଗୁଡ଼ିକୁ ଧୋକା ଦେବାର ଯଥେଷ୍ଟ ସମ୍ଭାବନା ରହିଛି । ତେଣୁ ସେମାନେ ଚଟ୍ଟଗ୍ରାମ ବିପ୍ଳବୀମାନଙ୍କ କାର୍ଯ୍ୟଧାରା ଓ ମତାଦର୍ଶ ସହିତ ସାମଞ୍ଜସ୍ୟ ରଖି ପ୍ରସ୍ତୁତି ଚଳାଉଥିଲେ । ସର୍ବ ପ୍ରଥମେ ତାଙ୍କର ଗୋଷ୍ଠୀ ଗଠନ ପାଇଁ ଚେଷ୍ଟା କରି ଓଡ଼ିଶାର ସେହି ଅଗମ୍ୟ ତଥା ଦୁର୍ଭେଦ୍ୟ ସ୍ଥାନକୁ ବାଛି ନେଇଥିଲେ । ପରେ ସେମାନଙ୍କ ସମ୍ପର୍କରେ ଅତି ସତର୍କତା ସହକାରେ ଯେତେଥର ଭାରତର ବହୁ ବିପ୍ଳବୀ ଓ ବିପ୍ଳବୀ ସଙ୍ଗଠନମାନଙ୍କ ଠାରୁ ଖବର ନେବାର ଚେଷ୍ଟା କରିଛି,

ସେମାନଙ୍କ ସଙ୍ଗଠନର ଆଦି-ଉଦ୍ଦେଶ୍ୟକୁ ଜାଣିବା ପାଇଁ ଇଚ୍ଛା ପ୍ରକାଶ କରିଛି, କେହି ଏପରି ଏକ ବିପ୍ଳବୀ ସଙ୍ଗଠନ ସମ୍ପର୍କରେ ଚନ୍ଦ୍ରବିସର୍ଗ ଜାଣନ୍ତି ନାହିଁ ବୋଲି କହିଛନ୍ତି । ବହୁବାର ଭାବିଛି । ଦଳପତିଙ୍କୁ ମିଶାଇ ସାମରିକ ଆଦିବ କାଇଦାରେ ସୁଶିକ୍ଷିତ ତଥା କଠୋର ଶୃଙ୍ଖଳାବଦ୍ଧ ୨୨ଜଣ ତାଜାପ୍ରାଣ ତରୁଣ । ଜଣକୁ ବାଦ ଦେଲେ ସମସ୍ତେ ବଙ୍ଗଭାଷୀ, ଶିକ୍ଷିତ, ଉତ୍ସର୍ଗୀକୃତ ଆତ୍ମା । ରାତି ୩ଟାରୁ ଶଯ୍ୟାତ୍ୟାଗ, ବ୍ୟାୟାମ, ସ୍ନାନ, ସାମାନ୍ୟ ପ୍ରାତଃରାଶ ପରେ ସୂର୍ଯ୍ୟୋଦୟ ପୂର୍ବରୁ ଗୁମ୍ଫା ଠାରୁ ଅଧ ମାଇଲଏ ଦୂରରେ ଅଧଘଣ୍ଟାଏ ପାଇଁ ଅସ୍ତ୍ର ଚାଳନାର ଅଭ୍ୟାସ, ତାପରେ ରାଜନୈତିକ କ୍ଲାସ ସକାଳ ୭ଟା ଯାଏଁ । ଦିନ ୧୦ଟା ମଧ୍ୟରେ ମଧ୍ୟାହ୍ନ ଭୋଜନ । ୧୦ଟାରୁ ୨ଟା ପର୍ଯ୍ୟନ୍ତ ଜଙ୍ଗଲ ମଧ୍ୟରୁ ଫଳମୂଳ ସଂଗ୍ରହ । ଦିନ ୨ଟାରୁ ୪ଟା ଯାଏ ହାତ ହତିଆର ସମ୍ପର୍କରେ ଥିଓରିଟିକାଲ କ୍ଲାସ । ତାପରେ ଅଧଘଣ୍ଟାଏ ବିଶ୍ରାମ । ଦିନ ୪ଟାରୁ ୫ଟାଯାଏ ବ୍ୟାୟାମ । ୫ଟା ପରେ ଚା ସହିତ ସାମାନ୍ୟ ଜଳଯୋଗ । ସନ୍ଧ୍ୟାରେ ସାମୂହିକ ପ୍ରାର୍ଥନା—ମାନବ ସମାଜର ମୁକ୍ତିପାଇଁ ରଚିତ ଏକ ବଙ୍ଗଳା ବିପ୍ଳବୀ ସଙ୍ଗୀତ ମାଧ୍ୟମରେ । ରାତି ଖାଦ୍ୟ ଭାତ ସହିତ ମାଂସ, ନଚେତ୍ ମାଛ । କୋଉଦିନ ଖାଲି କେବଳ ମାଂସ । ତାହା ସଂଗୃହୀତ ହୁଏ ଶିକାର ଦ୍ୱାରା ବା ଆଖପାଖର ଛୋଟ ଛୋଟ ଆଦିବାସୀ ପଲ୍ଲୀବାସୀଙ୍କ ସହାୟତାରେ । ଆଶ୍ଚର୍ଯ୍ୟର କଥା, ଆଖପାଖର ଆଦିବାସୀ ପଲ୍ଲୀ ବାସିନ୍ଦାମାନେ ଏ ଦଳଟିକୁ ଅତି ଆନ୍ତରିକ ଭାବେ ଗ୍ରହଣ ମଧ୍ୟ କରିଥିଲେ । ରାତିର ଘନ ଅନ୍ଧକାର ଭିତରେ ହାତରେ ନିଆଁ ହୁଳା ଧରି କେହି ଦୂରରୁ ଗୁମ୍ଫା ପାଖକୁ ଆସେ, ସାଙ୍ଗରେ ତା'ର ଆଦିମ ଅସ୍ତ୍ର ଧନୁଶର ଆଉ କୁର୍‌ହାଡ଼ । ଗୁମ୍ଫା ଦ୍ୱାରରେ ଭରି ରାଇଫେଲ୍ ଧରି ପହରା ଦେଉଥିବା ବିପ୍ଳବୀ ଯୁବକର ସାଙ୍କେତିକ ଶବ୍ଦରେ ମଶାଲଧାରୀ ଆଗନ୍ତୁକ କିଛି ଦୂରରେ ଠିଆହୁଏ, ଦଳର ଅଧିନାୟକ ତା ପାଖକୁ ଆଗେଇଯାଏ । ୫ ମିନିଟ ପର୍ଯ୍ୟନ୍ତ ଦୁହେଁ ଠିଆ ହୋଇ ବାର୍ତ୍ତାଳାପ କରନ୍ତି, ଦେ'ଣନେଣ ମଧ୍ୟ । ଏଇଥିରୁ ମୁଁ ଅନୁମାନ କରିଥିଲି, ଦଳଟି ଜନସାଧାରଣଙ୍କ ଠାରୁ ବିଚ୍ଛିନ୍ନ ନୁହନ୍ତି । ଦଳ ଭିତରୁ ଜଣେ ଜଣେ ପାଳିକରି ୧୫ ଦିନରେ ଥରେ ଝାରସୁଗୁଡାକୁ ଆସନ୍ତି ଚା, ଚିନି, କାଗଜ ଆଦି କିଣିବା ସଙ୍ଗେ ସଙ୍ଗେ ବାହାର ସହିତ ବୋଧହୁଏ ଯୋଗସୂତ୍ର ରଖିବା ପାଇଁ ! ନିଜର "ମୁକ୍ତଅଞ୍ଚଳ" ଟପି କେହି ସଭ୍ୟ ବାହାରକୁ ଗଲେ ଯାଏ ସାଧା ପୋଷାକରେ । ମୁଁ ଯେଉଁଦିନ ଦଳର ଅଧିନାୟକ ଦୁଲାଲ ସେନଙ୍କୁ ଭେଟିଥିଲି ଏକ ଛୋଟ ଅପରିଷ୍କାର ଚା ଦୋକାନରେ, ତାଙ୍କ ସହିତ ଯେତେବେଳେ ମୋର ପ୍ରଥମ ବାକ୍ୟାଳାପ ହୋଇଥିଲା, ସେତେବେଳେ ସ୍ୱପ୍ନରେ ସୁଦ୍ଧା

ଭାବ ନଥିଲି ଭଦ୍ରଲୋକ ଗୋଟିଏ କ୍ଷୁଦ୍ର ବିପ୍ଳବୀ ସେନାବାହିନୀର ଅଧିନାୟକ । ଅନାଡ଼ମ୍ବର ବେଶ । ଶସ୍ତା ମଇଳା ପାଇଜାମା ଉପରେ ଖଣ୍ଡେ ଫତେଇ । ସୁଗଠିତ ସ୍ୱାସ୍ଥ୍ୟ, ଆଖି ଦୁଇଟି ବେଶ୍ ଉଜ୍ଜ୍ୱଳ, କଥାବାର୍ତ୍ତା ଅତ୍ୟନ୍ତ ଧୀର ସଞ୍ଜତ । କିନ୍ତୁ ସବୁବେଳେ ସତର୍କ ଭାବଭଙ୍ଗୀ । ହାତରେ ସେ ଧରିଥିଲେ ୫୦ ବର୍ଣ୍ଣିଲ୍ ଖଣ୍ଡେ ବଡ଼ ଆଉ ଡଅସିଲର କେତୋଟା ପ୍ୟାକେଟ ଏବଂ କେତେ ବସ୍ତା ଧଳାକାଗଜ ଏବଂ କିଛି ସହିତ ବ୍ୟାଣ୍ଡେଜର ତୁଳା । ମୁଁ ସେତେବେଳେ ଥିଲି ଅତ୍ୟନ୍ତ ସୁସ୍ଥ, ସୁନ୍ଦର ଏବଂ ସ୍ୱାସ୍ଥ୍ୟବାନ୍ । ଉଲ୍ଲିଖିତ ଚା ଦୋକାନଟିର କାଠ ବେଞ୍ଚ ଉପରେ ମୁଁ ଚା ପିଉଥିଲି ବେଳେ ସେ ବସିଥିଲେ ମୋ ପାଖକୁ ଲଗି । ମୁଁ ସେତେବେଳେ ଦୋକାନୀକୁ ବାରିପଦା ଯିବା ପାଇଁ ସୁବିଧା ଅସୁବିଧା କଥା ପଚାରୁଥିଲି, ଦୁଇଲି ବା ଉପରେ ପଡ଼ି ବଙ୍ଗ ଭାଷାରେ ମୋତେ ପଚାରୁଥିଲେ, ମୁଁ କୋଉଠୁ ଆସିଲି । ତାଙ୍କ ପ୍ରଶ୍ନର ଉତ୍ତର ଦେଉ ଦେଉ ସେ ତାଙ୍କର ଓ ମୋର ଚା ପଇସା ଦୋକାନୀକୁ ଦେଇ ଦେଇ ମୋତେ ବାହାରକୁ ଡାକନେଇ ରାସ୍ତାର ଗୋଟିଏ ପାଖକୁ ବୁଝିଗଲେ ଏବଂ ସଂକ୍ଷେପରେ ମୋର ଇତିବୃତ୍ତ ଜାଣିବାକୁ ଚାହିଁଲେ । ୩୦ ମିନିଟ ଧରି ଆମେ ଦୁହେଁ ପଦଚାଳନା ମଧ୍ୟରେ ବହୁ ଆଳାପ ଆଲୋଚନା କଲୁ । ତାଙ୍କ କଥାବାର୍ତ୍ତା ସହଜରେ ମୋତେ ମୁଗ୍ଧ କରିଥିଲା । ମୋର ଅତୀତ ଜୀବନ, ପାରିବାରିକ ଇତିହାସ ସବୁ ସେ ସଂକ୍ଷେପରେ ଜାଣିଗଲା ପରେ ଯେତେବେଳେ ଜାଣିଲେ ମୋର ଯାତ୍ରା ଲକ୍ଷ୍ୟହୀନ ଓ ଉଦ୍ଦେଶ୍ୟହୀନ, ସେତେବେଳେ ମୋର ବାମପନ୍ଥୀ ଝୁଙ୍କି ତାଙ୍କୁ ଉତ୍ସାହିତ କରିଥିଲା ମୋତେ ନିଜ ଦଳକୁ ଆମନ୍ତ୍ରଣ ଜଣାଇ । ତାଙ୍କ ସହିତ ତାଙ୍କ "ମୁକ୍ତଅଞ୍ଚଳ"କୁ ପାଦ ବଢାଇଲା ବେଳେ ମୁହିଁ ପଞ୍ଜା ହୋଇ ଆସୁଥିଲା । ଆମେ ଠିଆ ହୋଇଥିବା ସ୍ଥାନର ଦକ୍ଷିଣ ଆଡ଼ୁ ଆଉ ଜଣେ ଯୁବକ ଆସି ତାଙ୍କୁ କହିଲା, "ଚାଲୁନ, ଯାଇ ।" ସେ ଜଣକ ତାଙ୍କର ଦେହରକ୍ଷୀ ବୋଲି ପରେ ଜାଣିବାକୁ ପାଇଥିଲି । ଛୋଟ ଛୋଟ ପ୍ରାନ୍ତର ପରେ ପ୍ରାନ୍ତର, ବୁଦବୁଦକିଆ ଜଙ୍ଗଲ, ଛୋଟ ଛୋଟ ପାହାଡ଼ର ନାସି, ଜଙ୍ଗଲ ମଝିର ଧାନବିଲ, ଝରଣା ପରେ ଗଭୀର ଅରଣ୍ୟ ଭିତରେ ଆମେ ତିନୋଟି ମୂର୍ତ୍ତି ଗତିବାନ । ଦୁଇଟି ଚେନ୍ସିଲ ଟର୍ଚ୍ଚର ଆଲୋକରେ ଗନ୍ତିପଥ ଆଲୋକିତ ହେଉଥାଏ । ବାଟରେ ମୁଁ ମୋର କାହାଣୀ କହି ଯାଉଥାଏ । ରହିଗଲେ ଦୁଇଜଣ କହନ୍ତି, "ହାଁ, ବୋଲୁନ !" ମୁଁ ପୁଣି କହେ । ଏଇମିତି ଅନେକ ସମୟ ଚାଲିଗଲା ପରେ ପ୍ରଧାନ ଘାଟି ବା ଲକ୍ଷ୍ୟସ୍ଥଳରେ ପାଦ ଦେଲୁ ! ପ୍ରଥମେ ଆତଙ୍କିତ, ପରେ ବିସ୍ମିତ ହୋଇଥିଲି ଏହି ବିପ୍ଳବୀ ଦଳଟିର ଜୀବନ-

ଯାହା, କାର୍ଯ୍ୟକଳାପ ଦେଖି ଦେଖି । ଏକ ସପ୍ତାହ ପରେ ମନେ ହୋଇଥିଲା, ମୁଁ ମୋର ଆକାଂକ୍ଷିତ ବସ୍ତୁକୁ ବୋଧେ ପାଇଛି । ଦଳର ସମସ୍ତ ସଦସ୍ୟ ଓ ଅଧିନାୟକଙ୍କ ଠାରୁ ମୁଁ ଥିଲି କନିଷ୍ଠ । ମୋର ଇତିବୃତ୍ତ ସମସ୍ତେ ଜାଣି ସାରିଲା ପରେ ମୋ ପ୍ରତି ସମସ୍ତଙ୍କର ଶ୍ରଦ୍ଧା ବଢ଼ି ଯାଇଥିଲା । ତଥାପି ମୋ ଉପରେ କଡ଼ା ନଜର ଥିଲା । ୫ ଦିନ ପରେ ମୋତେ ଯେତେବେଳେ ଅନୁଶୀଳନୀ ପାଇଁ ତାଲିମପ୍ରାପ୍ତ ଦଳ ସହିତ ଗଡ଼ିରେ ପ୍ରଥମ କରି ଯିବାକୁ ଚଢ଼ିଲି, ସେତେବେଳେ ଖୁସି, ଆତଙ୍କ, କୌତୁହଳ, ସନ୍ଦେହ ସବୁ ମୋ ଭିତରେ ଏକାକାର ହୋଇ ଏକ କିମ୍ଭୂତ ରୂପ ପରିଗ୍ରହ କରିଥିଲା । ଆକାଶରେ ସିଂଦୂରୀ ଫାଟିନାହିଁ । ହଠାତ୍ ସାମରିକ ପୋଷାକରେ ସୁସଜ୍ଜିତ ଦଳଟି ଠିଆ ହୋଇଗଲେ । ଲମ୍ବାଧାଡ଼ି ବାନ୍ଧି ସମସ୍ତେ "ପୋଜିସନ୍" ନେଲେ । ମୁଁ ଥିଲି ପଛ ଧାଡ଼ିରେ । ଜୀବନରେ ପ୍ରଥମ ଥର ପାଇଁ ସେଦିନ ପିନ୍ଧିଥିଲି ସାମରିକ ପୋଷାକ । ପୋଷାକର ଯେ ମନ ଉପରେ ଏକ ଯାଦୁକରୀ ପ୍ରଭାବ ଅଛି, ତାହା ସେଦିନ ମର୍ମେ ମର୍ମେ ଅନୁଭବ କରିଥିଲି । ୫୦ ଗଜ ଦୂରରେ ଏକ ମୋଟା ମହୁଲ ଗଛ । ସେହି ଗଛ ଦେହରେ ଅସମ୍ଭବ ଧରଣର ଧଳାରଙ୍ଗର ଚୋଟିଏ ଗୋଲ ହୋଇ ଚକଡି ଝୁଲୁଛି । ତା ମଝିରେ ମୃଦଙ୍ଗର କରଣ ଭଳି ଧଳା ରଙ୍ଗ ବେଶ ବାରି ହୋଇ ପଡୁଥିଲା । ସମସ୍ତଙ୍କ ହାତରେ ଗୁଳିଭର୍ତ୍ତି ରିଭଲ୍‌ଭର୍ । ଚକଡି ମଝିର ଧଳାଦାଗ ଉପରେ ଗୁଳି ବସିବା ଦରକାର । ତା ହେଲେ ଲକ୍ଷ୍ୟ ଅବ୍ୟର୍ଥ । ମୁଁ ଦଳରେ ଯୋଗଦେବା ଆଗରୁ ଅଧିନାୟକଙ୍କୁ ମିଶାଇ ସମସ୍ତଙ୍କ ସଂଖ୍ୟା ଥିଲା ୨୨ । ମୁଁ ମିଶିଲା ପରେ ହେଲା ୨୩ । ଅଧିନାୟକଙ୍କୁ ବାଦ୍ ଦେଇ ଜଣକ ପରେ ଜଣେ ଗୁଳିବର୍ଷଣ କରି ଚାଲିଲେ । ସବା ଶେଷରେ ମୋ ପାଳି । ମୋ ପୋଷାକ ସହିତ ଡାହାଣ ପାଖ କଟିରେ ମୋଟା ଧୂସର ରଙ୍ଗର ଖୋଳ ମଧ୍ୟରେ ଥିଲା ଏକ ରିଭଲଭର । ପୋଷାକ ପିନ୍ଧିଲା ବେଳେ ତାକୁ କାଢି ଅସୀମ କୌତୁହଳରେ ବହୁବାର ଦେଖିଥିଲି । ତା ପୂର୍ବରୁ ଦିନ ଭିତରେ ତହିଁରେ ଗୁଳି ଭର୍ତ୍ତିକରିବା, କାଢିବା, ତାକୁ ସଫା କରିବା ମୋତେ ଶିଖାଇ ଦେଇଛନ୍ତି ନିଜେ ଦୁଲାଲ୍‌ଦା । ହଁ, ହଠାତ୍ 'ପୋଜିସନ୍' ନେଇଥିବା ଦଳଙ୍କ ଠାରୁ ଗୋଟିଏ ପାଖକୁ ଠିଆ ହୋଇଥିବା ଦଳର ଅଧକ୍ଷ ମୋ ଆଡ଼କୁ ଆଗେଇ ଆସିଲେ । ଝାପ୍‌ସା ଅନ୍ଧକାର ମଧ୍ୟରେ ଦେଖିଲି ଦୁଲାଲ୍‌ଦାଙ୍କର ଅପୂର୍ବ ରଣବେଶ । ଦେହରେ ସମସ୍ତେ ପିନ୍ଧିଥିବା ପୋଷାକ ପରି ପୋଷାକ । କିନ୍ତୁ ତଫାତ୍ କେବଳ ତାଙ୍କ ଡାହାଣ ବାହୁରେ ଏକ ନାଲି ରଙ୍ଗର ପଟି । ପଟି ଉପରେ ଏକ ଶ୍ୱେତ ତାରକା, ତା ମଧ୍ୟରେ

କଲାରଙ୍ଗରେ ଅଙ୍କିତ ହୋଇଛି ଏକ ହାତୁଡ଼ି। ମୁଣ୍ଡରେ ଏକ ଭିନ୍ନ ଧରଣ ଟୋପି। ଟୋପିରେ ଚକ୍‌ଚକ୍ କରୁଛି ପିତଳରେ ତିଆରି ଏକ ପଞ୍ଚକୋଣ ତାରକା ସହିତ ସେହି ହାତୁଡ଼ିର ଚିହ୍ନ। ତା ଉପରକୁ କାଣ୍ଡିବଗ ଚରିଟିଏ ଉର୍ଦ୍ଧ୍ୱମୁଖ ହୋଇ ଖୋସା ହୋଇଛି। ସେ ଆସି ନିଜ ରିଭଲଭର୍‌ଟିକୁ ବାହାର କରି ମୋ ହାତରେ ଧରାଇ ଦେଲେ। ମୁଁ ସେତେବେଳେ କହିଲି, "ମୋ ପାଖରେତ ରିଭଲଭର୍ ଅଛି, ପୁଣି ଏଇଟା କ'ଣ?" ସେତେବେଳେ ଅଳ୍ପ ହସି ଦେଇ ସେ କହିଲେ, "ଓଟା ଅକେଜୋ।" ଅର୍ଥାତ ଅକାମୀ। ତାର ଷ୍ଟ୍ରାଇକିଂ ପିନ୍ ଭଙ୍ଗା। ବିସ୍ମିତ ହେଲି। ଯାହେଉ, ସେ ମୋ ପଛପଟେ ଠିଆ ହୋଇ ରିଭଲଭର୍ ସହ ମୋର ଡାହାଣ ହାତକୁ ନିଶାଣ କଲେ ଧଳା ଚକତି ଉଦ୍ଦେଶ୍ୟରେ। ସତର୍କ କରାଇ ଦେଲେ, ନିଜର ମଣିବନ୍ଧକୁ ସଜାଡ଼ି ନକଲେ ଗୁଳି ଉପରକୁ ନଯାଇ ତଳକୁ ଖସିଯିବ। ତାହାହିଁ ସତ୍ୟ। ଟ୍ରିଗାର୍ ଟିପିବା ମାତ୍ରେ ଅନୁଭବ କରିଥିଲି ଗୁଳିଟା ରିଭଲଭର୍‌ର ନଳକୁ ଉପର ଆଡ଼କୁ ଟେକି ଦେବାକୁ ଚାହେଁ। ସେ ମୋ ହାତକୁ ଧରିଥିବା ଅବସ୍ଥାରେ ମୁଁ ଅଗ୍ରଜଣ୍ଡି ଗୁଳି ଚଳାଇଛି। ତାପରେ ସେ ମୋ ହାତକୁ ଛାଡ଼ିଦେଇ କହିଲେ, "ଏବାର ତୁମି ନିଜେ ଫାୟାର୍ କର୍।" ମୋ ରିଭଲଭର୍‌ରେ ଥିବା ସେ ଗୁଳିଟି ହେଲା ଶେଷ ଗୁଳି। କାରଣ ଛଅଟି ଗୁଳି ଯଦିଓ ଲୋଡ୍ ହେବା କଥା, କିନ୍ତୁ ପାଞ୍ଚଟି ଲୋଡ୍ କରାଯାଏ। ମଣିବନ୍ଧକୁ ଯଥା ସମ୍ଭବ ସଜାଡ଼ି କରି ଟ୍ରିଗାର ଚିପିବା ମାତ୍ରେ ଗୁଳିଟା ଚକତିର ଧଳା ଅଂଶକୁ ଆଘାତ କଲା। ଦୁଲାଲଦା' ହସ ହସ ମୁହଁରେ କହିଲେ, "ହବେ, ତୋମାର ଠିକ୍ ହବେ। ତୁମି ଠିକ୍ ପାରବେ।" ପ୍ରକାଶ ଥାଉକି ଦଳର ପ୍ରତିଟି ରିଭଲ୍‌ଭର ଦେହରେ 'ସାଇଲେନ୍‌ସର୍' ଥିବାରୁ ଶବ୍ଦ ହେଉ ନଥିଲା। ଶବ୍ଦ ହେଲେ ନାନା ବିପଦ ଆପଦ ରହି ଥିବାରୁ ଏପରି ବ୍ୟବସ୍ଥା।

ଏହି ବିପ୍ଳବୀ ଦଳ ସହିତ ମୋର ସ୍ୱଳ୍ପକାଳର ସମ୍ପୃକ୍ତି ବେଳେ ମୁଁ ପାଇଥିଲି ପରବର୍ତ୍ତୀ ଜୀବନରେ ମୋ କାବ୍ୟପ୍ରେରଣାର ଅନ୍ୟତମ ଉତ୍ସ କାଜୀ ନଜରୁଲ୍ ଇସଲାମଙ୍କ "ଅଗ୍ନିବୀଣା" ଗ୍ରନ୍ଥ। ତାର ପ୍ରତିଟି କବିତାକୁ ଚମତ୍କାର ଆବୃତ୍ତି କରୁଥିଲେ ନିଜେ ଦୁଲାଲ୍ ସେନ।

ବିପ୍ଳବୀ ଦଳର ଗୋପନ ଘାଟିରେ ରହିବାର ୧୫ଦିନ ଯେଉଁଦିନ ମୋର ପୂର୍ଣ୍ଣ ହେଲା, ହଠାତ୍ ସେଦିନ ମଧ୍ୟାହ୍ନରେ ଦଳର ନେତା, କର୍ମୀ, ଶିକ୍ଷାନବିସ୍ ମାନଙ୍କ ଭିତରେ ଅପୂର୍ବ ତଥା ଅଦ୍ଭୁତ ଶୃଙ୍ଖଳା, କର୍ମବ୍ୟସ୍ତତା ଲକ୍ଷ୍ୟ କଲି । ଘଟଣା ବୁଝି ନପାରି ଦଳର ଅଧିନାୟକ ସେନ୍‌ଙ୍କୁ କାରଣ ପଚାରିବାରୁ ସେ ବିସ୍ତାରିତ କିଛି ନକହି କେବଳ ଏତିକି କହିଥିଲେ "ଆମକୁ ଆଜ ସନ୍ଧ୍ୟାର ପର୍ ଏଖାନ୍ ଥେକେ ଚଲେ ଯାବୋ । ଅବସ୍ଥା ଏକ୍‌ଟୁ ଅନ୍ୟ ପ୍ରକାର ଦାଁଡ଼ିଏଛେ । ତୋମାର ଯେଖାନେ ଯାବାର କଥା, ବେଲା ଥାକତେ ଥାକ୍‌ତେ ବେରିୟେ ପଡ଼ । ଅମି ତୋମାର ସଙ୍ଗେ ଏକ୍ କମ୍ରେଡ୍‌କେ ପାଠାଚ୍ଛି । ଓ ତମେଡ଼ ବାରଦୋ ହିୟେ ବାଲେଶ୍ବର ଦିକେ ଯାବେ । ଝାରସୁଗୁଡ଼ାର କାଛେ ଏକଟି ଗାଡ଼ି ଥାକ୍‌ବେ । ଓଇ ଗାଡ଼ିତେ କରେ ତୁମି ଗିୟେ ବାରପଦାୟ ନେମେ ଯାବେ ।" ଏତିକି କହି ସେ ମୋତେ ଖଣ୍ଡେ ଦଶଟଙ୍କିଆ ନୋଟ ଦେଲେ ଆଉ କହିଲେ, ଦରକାର ହେଲେ ସେ ମୋ ସହିତ କଟକରେ ଯୋଗାଯୋଗ କରିବେ ।

ଆଶ୍ଚର୍ଯ୍ୟ ହେଲି—କ'ଣ ହୋଇପାରେ ? ଅନୁମାନ କଲି, ସେମାନଙ୍କର କାର୍ଯ୍ୟକଳାପ ହୁଏତ ପଦାରେ ପଡ଼ିଯାଇଛି । ସେଥିପାଇଁ ଶୃଙ୍ଖଳା, ସତର୍କତା, ପ୍ରତିଆକ୍ରମଣ ପାଇଁ ସଜାଗତା ସହିତ ପେଡ଼ିପୁଟୁଳା ବାନ୍ଧିବା କାମ ।

ଦିନ ଗୁଡ଼ାଏ ହେବ ।

'ପ୍ରଣବ' ନାମକ ଏକ ସଶସ୍ତ୍ର ବିପ୍ଳବୀ ଯୁବକ ସହିତ ଅନ୍ୟ ଏକ ବାଟରେ ମୋତେ ଆସିବାକୁ ପଡ଼ିଥିଲା ଝାରସୁଗୁଡ଼ା । ସମସ୍ତଙ୍କୁ ବନ୍ଧମୁଷ୍ଟିରେ ଅଭିବାଦନ ଜଣାଇ ବିଦାୟ ନେବା ଆଗରୁ ଦୁଲାଲ୍ ସେନଙ୍କୁ ସ୍ୱତନ୍ତ୍ର ନମସ୍କାର ଜଣାଇ ତାଙ୍କୁ ମାଗିଥିଲି "ଅଗ୍ନିବୀଣା" ବହିଟି । ୧୯୫୮ ମସିହା ପର୍ଯ୍ୟନ୍ତ ସେ ପୁସ୍ତକଟି ମୋ ପାଖରେ ଥିଲା । ବିଦାୟ ଘେନି ଯାହାରମ୍ଭ କଲାବେଳକୁ ଦୁଲାଲ ବାବୁ ମୋତେ କହିଲେ, "ଦ୍ୟାଖୋ, ସାବଧାନ ! ଅତ୍ୟନ୍ତ ହୁସିଆର୍ !

ତୋମାର ପଥ ଆଲାଦା ବା ହୋକରଇ ହୋକ୍ ନା କେନ ତାର୍ କାଛେ ଆମାଦେର ସଙ୍ଗଠନ ସମ୍ପର୍କେ କୋନ୍ ସୂଚକ୍ ଯେମନ୍ ନା ଦାଓ । ତଲେ ଆମି ତୋମାକେ ବାଁଚାତେ ପାରବୋନା ।''

ପରେ, ବହୁକାଳ ଯାବତ୍ ମୁଁ ସେମାନଙ୍କ ସମ୍ପର୍କରେ କୌଣସି ଭୁଲ୍‌ରେ ବି କିଛି କହିନାହିଁ ।

ବାରିପଦାରେ ଯେତେବେଳେ ଗେରୁଆ ରଙ୍ଗର ଅଷ୍ଟିନ ଗାଡ଼ିଟି ପହଞ୍ଚେ, ସେତେବେଳେ ଅନେକ ରାତି । ମୋତେ ଓହ୍ଲାଇ ଦେଇ ଗାଡ଼ିଟି ଗନ୍ତବ୍ୟ ପଥରେ ଚାଲିଗଲା । ପରଦିନ ସକାଳେ ବାରିପଦା କମ୍ୟୁନିଷ୍ଟ ପାର୍ଟି ଅଫିସରେ ପହଞ୍ଚି ଗିରିଶଚନ୍ଦ୍ର ରାୟଙ୍କୁ ନିଦରୁ ଉଠାଇଲି । ସେ ମୋତେ ଦେଖି ଦେଇ ଭାରି ଖୁସି ହୋଇଗଲେ । ଅନେକ ରାତିଯାଏଁ ନାନାକଥା ଆଲୋଚନା ଚାଲିଲା । ପାର୍ଟି ଅଫିସରେ ଥିବା ମୁଢ଼ି ଆଉ ପିଆଜ ସେଦିନ ହୋଇଥିଲା ମୋର ରାତ୍ରି ଭୋଜନ ।

ମୁଁ ଅଚିରେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେବି, ସେହି ଆଶା ଗିରିଶବାବୁ ପୋଷଣ କରିଥିବା କଥା ପ୍ରକାଶ କରିଥିଲେ ।

ମୋର ବାମପଥ ଯାତ୍ରାର ଆଦି ପ୍ରେରଣାଦାୟକ ଯଦି କେହି ଥାଏ, ତାହାହେଲେ ସେ ହେଉଛନ୍ତି ସ୍ୱର୍ଗତ ଗିରିଶ ବାବୁ । ୧୯୫୯-୬୦ ସାଲରେ ଏକ ଦୁର୍ଘଟଣାରେ ତାଙ୍କର ଅକାଳ ମୃତ୍ୟୁ ହୋଇଥିଲା ।

ବାଲେଶ୍ୱରରୁ ଫେରିବା ପରେ ମୋତେ କଟକ ଜିଲାର ତିର୍ତ୍ତୋଲ-ଏର୍ସମା ଅଞ୍ଚଳକୁ ପଠାଗଲା ଶ୍ରୀ ନିଶାମଣି ଖୁଣ୍ଟିଆଙ୍କ ମାର୍ଫତରେ । କାରଣ ତିର୍ତ୍ତୋଲ-ଏର୍ସମା ବିଧାନ-ସଭା ନିର୍ବାଚନ ମଣ୍ଡଳୀର ସଭ୍ୟ ଥିବା ସ୍ୱର୍ଗତ ସାରଙ୍ଗଧର ଦାସ ଇସ୍ତଫା ଦେବା ଫଳରେ ସେହି ନିର୍ବାଚନ ମଣ୍ଡଳୀରେ ଉପ-ନିର୍ବାଚନ ହେବା କଥା ଘୋଷିତ ହୋଇଥାଏ ।

ତିର୍ତ୍ତୋଲ-ଏର୍ସମାର ସେହି ଉପନିର୍ବାଚନ ଏକ ନାହିଁ ନଥିବା ଉପ-ନିର୍ବାଚନ । ସେ ନିର୍ବାଚନରେ ସୋସଲିଷ୍ଟ ଦଳର ପ୍ରାର୍ଥୀ ଥିଲେ ଶ୍ରୀ ନିଶାମଣି ଖୁଣ୍ଟିଆ ଓ କଂଗ୍ରେସ ଦଳର ପ୍ରାର୍ଥୀ ଥିଲେ ଶ୍ରୀ ନାରାୟଣ ବୀରବର ସାମନ୍ତ । ନିର୍ବାଚନ ମଣ୍ଡଳୀର ଭୋଟର ଥିଲେ ସେହିମାନେ, ଯେଉଁମାନଙ୍କର ବାର୍ଷିକ ଚୌକିଦାରୀ ଟିକସ ଥିଲା ତତ୍କାଳୀନ ମୁଦ୍ରାରେ ବାରଅଣା । ଶ୍ରୀଖୁଣ୍ଟିଆଙ୍କ ନିର୍ବାଚନ ସଙ୍କେତ ଥିଲା ନାଲି ବାକ୍ସ ଓ ତାଙ୍କ ପ୍ରତିଦ୍ୱନ୍ଦ୍ୱୀ କଂଗ୍ରେସ ପ୍ରାର୍ଥୀଙ୍କର ଥିଲା ହଳଦିଆ ବାକ୍ସ । ଏପରି ପ୍ରଚଣ୍ଡ ତଥା ଭୂମୂଳ ନିର୍ବାଚନ ଯୁଦ୍ଧ ଏ ଯାଏଁ ଭାରତ ବର୍ଷରେ ହୋଇ ନାହିଁ ବୋଲି ପୋଲିସର ଗୋପନ ନଥିପତ୍ରରେ ଉଲ୍ଲେଖ ଅଛି । ସମୁଦ୍ର ତରଙ୍ଗ ଭଳି ସୋସଲିଷ୍ଟ ଦଳର କର୍ମୀ, ନେତାମାନେ ହାତରେ ଦଳର ଲାଲଝଣ୍ଡା, ମୁଣ୍ଡରେ ଲାଲ ଟୋପି ଦେଇ ତିର୍ତ୍ତୋଲ-ଏର୍ସମା ଥାନାର ଗାଁକୁ ଗାଁ, ଘରକୁ ଘର ମାଡ଼ି ଯାଇଥିଲେ । ଭୋଟ ଗ୍ରହଣର କେତେମାସ ଆଗରୁ କହିବାକୁ ଗଲେ ସମ୍ପୃକ୍ତ ନିର୍ବାଚନ ମଣ୍ଡଳୀ ଉପରେ ଏକ ଲାଲ ପରଦା ନଇଁ ଆସିଥିଲା । ମୁଁ ଏହି ପରିପ୍ରେକ୍ଷୀରେ ପ୍ରତିଟି ମଣିଷକୁ ପ୍ରାପ୍ତ ଭେଟିବାର ସୁଯୋଗ ପାଇଛି । କୃଷୀର ଦୁଃଖ ଦୁର୍ଦ୍ଦଶା ଶୋଷଣ, ସୋସଲିଷ୍ଟ ପାର୍ଟିର ଭୂମିକା ଏ ସବୁ ବର୍ଣ୍ଣିତ ହୋଇଥିବା ରାଜନୈତିକ ସଙ୍ଗୀତମାନ ଗାଇ ଗାଇ ମୁଣ୍ଡରେ ଲାଲଝଣ୍ଡା ଓ ଟିଣର ଗୋଟିଏ ଚୁଙ୍ଗା ଧରି ମୁଁ ଗାଁମାନଙ୍କରେ ପ୍ରବେଶ କଲାବେଳେ ଘରର ଝିଅ-ବୋହୂ, ବୁଢ଼ାବୁଢ଼ୀ, ବାଳକ ବାଳିକା ସମସ୍ତେ ଘରୁ ବାହାରି ଆସନ୍ତି । ମୁଁ ଗାଉଥିବା ସଙ୍ଗୀତର ବହିମାନ କେହି କେହି କିଣନ୍ତି । ଘରର ବୋହୂମାନେ ମୋତେ ଆଦର କରି ମୋ ଘର କୋଉଠି, ମୋର କିଏ କିଏ ସବୁ ଅଛନ୍ତି ଜାଣିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି । ଯେଉଁ ଗାଁରେ ସଞ୍ଜ ହୁଏ ସେହି ଗାଁରେ ରହେ । ଗାଁର ସାଧାରଣ ଅପରିଚିତ ମଣିଷ ମୋତେ ଆଦରରେ ନିଜ ଲୋକ ପରି ଘରେ ଖାଇବାକୁ ଦିଅନ୍ତି । ଲୁଣା ତଥା ନୁଆରିଆ ନଦୀ ଅଧ୍ୟୁଷିତ ତିର୍ତ୍ତୋଲ-ଏର୍ସମା ଥାନାରେ ବହୁ ବିପଦ, କେତେ ଅର୍ଦ୍ଧାହାର-ଅନାହାର ତଥା ରାଜନୈତିକ ପ୍ରତିରୋଧକୁ ମୁକାବିଲା କରି ମୋର ଯାଯାବର କୈଶୋର ଜନାରଣ୍ୟ ସହିତ ଏକାକାର ହୋଇ ଯାଇଥିଲା । ମହାନ ଜନସାଧାରଣଙ୍କର ମୋ ପ୍ରତି ସ୍ନେହ ସହାନୁଭୂତି ଏପରି ବଢ଼ି ଯାଇଥିଲା ଯେ ତାହା ଆଜି ମୁଁ ଭାଷାରେ ପ୍ରକାଶ କରିବାକୁ ଅକ୍ଷମ । ସେହି ଦୁର୍ଗମ ଅଞ୍ଚଳରେ ବୁଲୁଥିଲା ବେଳେ ସାଧାରଣ ଲୋକଙ୍କର ମୋ ପ୍ରତି ଯେତେ ଦାୟିତ୍ୱ ବଢି ଯାଇଥିଲା,

ତା ତୁଳନାରେ ସୋସଲିଷ୍ଟ ନେତାମାନଙ୍କର ମୋ ପ୍ରତି କିଛି ନଥିଲା କହିଲେ ଚଳେ। ଲୋକଙ୍କ ଠାରୁ ଶ୍ରଦ୍ଧା ସଂଗ୍ରହ କରି ମୋତେ ଚଳିବାକୁ ହେଉଥିଲା। କିନ୍ତୁ ଏର୍ସମା ପୁଲିସ ଥାନାର ପାଖାପାଖି ଦଳର ମୁଖ୍ୟ ନିର୍ବାଚନ ଅଫିସରେ ନେତାମାନେ ମହା ଆଗ୍ରହରେ ବସି କର୍ମୀମାନଙ୍କୁ କେବଳ ନିର୍ଦ୍ଦେଶ ଦେବା, ସେମାନଙ୍କ ଉପରେ ହୁକୁମ ଜାରି କରିବାରେ ବ୍ୟସ୍ତ ଥିଲେ। ମଝିରେ ମଝିରେ ଅସୁସ୍ଥ ହୋଇ ମୁଁ ଯେତେବେଳେ ଏର୍ସମାର ମୁଖ୍ୟ ନିର୍ବାଚନ ଅଫିସକୁ ଟିକେ ବିଶ୍ରାମ ନେବା ପାଇଁ ଚାଲି ଆସୁଥିଲି, ସେତେବେଳେ ଶ୍ରୀ ବିଶ୍ୱନାଥ ପଣ୍ଡିତ ଓ ନିଶାମଣି ଖୁଣ୍ଟିଆଙ୍କ ନାଲି ଆଖି ଏବଂ ଦୁର୍ବ୍ୟବହାର ଉଠୁଥିଲା ଚରମ ସୀମାକୁ। ମୁଁ ଦୁଃଖ, ବିଷାଦ ଏବଂ କ୍ରୋଧର ସହିତ ପୁଣି ଫେରିଯାଏ ମୋର ସେହି ଦୁର୍ଗମ ଜନାରଣ୍ୟର ଅଭ୍ୟନ୍ତରକୁ। ସେହି ଜନାରଣ୍ୟର ମୁକ୍ତିଟି ଜନତା ମୋତେ ଆଦର କରି କୋଳକୁ ନେଉଥିଲା, ଆଶ୍ରୟ ଦେଉଥିଲା। ଅସଂଖ୍ୟ ଜନନୀ ଭଗିନୀର ମମତା ଓ ସ୍ନେହ, ଶ୍ରମଜୀବୀ ପାଇଟିଆଳି ସାଧାରଣ ଗ୍ରାମୀଣ ମଣିଷର ଗ୍ରାମ୍ୟ ମୀତ ଚଳେ ମୁଁ ପ୍ରତିଟି ମଣିଷକୁ ଗ୍ରନ୍ଥବତ୍ ଯେପରି ସେତେବେଳେ ଅଧ୍ୟୟନ କରିଥିଲି, ସେପରି ଅଧ୍ୟୟନ କରିଥିବେ କ୍ୱଚିତ୍ ଲୋକ। ମୋର ସେହି ଜନଅଧ୍ୟୟନ ଓ ନିବିଡ଼ ଜନସମ୍ପର୍କ ହିଁ ପରବର୍ତ୍ତୀ କାଳରେ ମୋର ସଂଗ୍ରାମ ଓ ପ୍ରତିଭାର ଭଣ୍ଡାରକୁ କରିଥିଲା ଧନୀ। ଗଡ଼-କୁଜଙ୍ଗ, ଡ଼ିଙ୍କିଆ, ନୂଆଗାଁ, ପଞ୍ଚପଲ୍ଲୀ, କାଳିଆପାଟ, ବାଲିତୁଠ, ବାଞ୍ଛାନିଧିପୁର ଆଦି ଗ୍ରାମଗୁଡ଼ିକ ଆଜି ବି ମୋର ସ୍ମୃତିପଟରେ ଅଭୁଲା।

ଅବଶେଷରେ ତିର୍ତ୍ତୋଲ- ଏର୍ସମା ଉପନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ବିଜୟ ଲାଭ କରିଥିଲେ।

ତିର୍ତ୍ତୋଲ-ଏର୍ସମା ଅଞ୍ଚଳ ଛାଡ଼ି ମୁଁ ମଧ୍ୟ ସମସ୍ତଙ୍କ ସହିତ ବିଦାୟ ନେଲି। ମୋର ଅଦ୍ଭୁତ ସାଙ୍ଗଠନିକ ଶକ୍ତି, ସଙ୍ଗୀତ ଗାନ, କଷ୍ଟ ସହିଷ୍ଣୁତା ଫଳରେ ମୁଁ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଯୋସଲିଷ୍ଟ ନେତାମାନଙ୍କର ଲୋଭନୀୟ ବସ୍ତୁ ହୋଇ ଉଠିଲି। ସମସ୍ତେ ମୋତେ ସେମାନଙ୍କ ଅଞ୍ଚଳକୁ ସ୍ଥାୟୀ ଭାବରେ ନେଇ କାମରେ ଲଗାଇବାକୁ ବ୍ୟଗ୍ର ଥିଲେ।

ତିର୍ତ୍ତୋଲ-ଏର୍ସମାରୁ କ୍ଲାନ୍ତଶ୍ରାନ୍ତ ହୋଇ ଫେରିଥିଲି କଟକ। ଦେହରେ କାଛୁ କୁଣ୍ଡିଆ ଭର୍ତ୍ତି। ତା ସତ୍ତ୍ୱେ ବି ନେତାମାନେ ମୋତେ ସେମାନଙ୍କ ଦଳୀୟ

ସ୍ୱାର୍ଥରେ ବ୍ୟବହାର କରି ଚାଲିଥିଲେ । ରୋଗ, ଯନ୍ତ୍ରଣା, ଅପମାନକର ବ୍ୟବହାର ବେଳକୁବେଳ ମୋ ପକ୍ଷରେ ହୋଇ ଉଠୁଥିଲା ଅସହ୍ୟ । କାହାକୁ କହିବି ? କିଏ ଶୁଣିବ ? ମୁଁ ତ ସମସ୍ତଙ୍କର "କୋଠଶୀକାର !"

ତିର୍ତୋଲ-ଏର୍ସମା ପରେ ଡାକ ପଡ଼ିଲା ପଞ୍ଚାମୁଣ୍ଡାଇ ଉପନିର୍ବାଚନର । ଏ ଉପନିର୍ବାଚନଟି ହୋଇଥିଲା ତ୍ରିମୁଖୀ ପ୍ରତିଦ୍ୱନ୍ଦ୍ୱିତା ମଧ୍ୟରେ । କଂଗ୍ରେସ ପ୍ରାର୍ଥୀ ଥିଲେ ଶ୍ରୀ ସହଦେବ ଦାସ, ଖଣ୍ଡାୟତ କ୍ଷତ୍ରିୟ ମହାସଭା ସମର୍ଥିତ ସ୍ୱାଧୀନ ପ୍ରାର୍ଥୀ ଥିଲେ ସ୍ୱାଧୀନତା ସଂଗ୍ରାମର ବିଖ୍ୟାତ ଯୋଦ୍ଧା ଓ ପ୍ରଖ୍ୟାତ ବକ୍ତା ସ୍ୱର୍ଗତ ଯଦୁମଣି ମଙ୍ଗରାଜ, ସୋସଲିଷ୍ଟ ପ୍ରାର୍ଥୀ ଥିଲେ ଶ୍ରୀ ରାମଚନ୍ଦ୍ର ସୁତାର । ଏହା ଅନ୍ୟ ଏକ ତୁମୁଳ ନିର୍ବାଚନ ସଂଗ୍ରାମ । ଅସୁସ୍ଥ ଅବସ୍ଥାରେ ମୁଁ ପୁଣି ପାର୍ଶଲ୍ ହେଲି କଟକରୁ ପଞ୍ଚାମୁଣ୍ଡାଇ । ପଞ୍ଚାମୁଣ୍ଡାଇ ବଜାରରେ ଖୋଲିଥିଲା ପାର୍ଟିର କେନ୍ଦ୍ର ନିର୍ବାଚନ ଅଫିସ । ବିଶ୍ୱନାଥ ପଣ୍ଡିତ ନିର୍ବାଚନ ପରିଚାଳନା କରୁଥିଲେ ଓ ସେହିଠାରେ ହିଁ ରହୁଥିଲେ । ମୋର ସେତେବେଳେ ଦେହର ଏପରି ଅବସ୍ଥା ଯେ, ପାଦେ ଆଗେଇବା ସମ୍ଭବ ନୁହେଁ । କାରଣ ସାରା ଦେହରେ କାଛୁ । ସର୍ବାଙ୍ଗରେ ଯନ୍ତ୍ରଣା । ରାତିରେ ଶୋଉ ଶୋଉ ନିଦ ଆସି ଯାଏ । ରାତି ପାହିଲା ବେଳକୁ ପଣ୍ଡିତଜୀ ଉଠି ଅନ୍ୟମାନଙ୍କୁ ଉଠାନ୍ତି, ନିର୍ବାଚନ ପ୍ରଚାରରେ ଯିବା ପାଇଁ ଆୟୋଜନ ଚାଲେ । ମୋର ସେପରି ଅବସ୍ଥାରେ ମୁଁ ଉଠିପାରେ ନାହିଁ । ପଣ୍ଡିତ ମହାଶୟ କିନ୍ତୁ ନିର୍ମମ ଭାବରେ ମୋତେ ଗୋଇଠା ମାରି ଉଠିବାକୁ ବାଧ୍ୟ କରନ୍ତି । ମୋତେ ସେ ନିଷ୍ଠୁର ଭାବରେ ଆଦେଶ ଦିଅନ୍ତି ଏକୁଟିଆ ନାଲି ପତାକା ଧରି, ମୁଣ୍ଡରେ ନାଲିଟୋପି ଦେଇ ପାର୍ଟିର ସାହିତ୍ୟ ପୁସ୍ତକାବଳୀ ନେଇ ଦୁର୍ଗମ ସବୁ ଗ୍ରାମାଞ୍ଚଳକୁ ଯିବା ଲାଗି । ରାତିରେ କେଉଁଠି ରହିବି, କେଉଁଠି ଖାଇବି, କେଉଁଠି ଶୋଇବି ତାର ବ୍ୟବସ୍ଥା ଅନିଶ୍ଚିତ । ପାର୍ଟିର ପୁସ୍ତିକା ଓ ପତ୍ରପତ୍ରିକା ପୁଣି ବିକ୍ରି କରିବାକୁ ପଡ଼ିବ । ପାର୍ଟି ସଭ୍ୟ ସଂଗ୍ରହ କରିବାକୁ ହେବ । ତହିଁରୁ ଯାହା ପଇସା ମିଳିବ ତାହା କେନ୍ଦ୍ରୀୟ ନିର୍ବାଚନ ଅଫିସରେ ଆଣି କଡ଼ାକ୍ରାନ୍ତି ଦାଖଲ କରିବାକୁ ହେବ । ହିସାବରେ ଗୋଟିଏ ଟଙ୍କା କମ ହେଲେ ଖାଇବା ବନ୍ଦ । ଓଃ, ବଡ଼ ଯନ୍ତ୍ରଣାଦାୟକ ତଥା ଅସହ୍ୟ ସେ ନିର୍ଦ୍ଦେଶ । ବଡ଼ ବ୍ୟଥାଭରା ସେଦିନକାର ଦିନଗୁଡ଼ିକ । ବାଧ୍ୟ ହୋଇ ତାହାରେ ପ୍ରେରିତ ପରି ଚାଲି ଚାଲି ଗାଁକୁ ଗାଁ ଏକୁଟିଆ ବୁଲେ, ଗୀତ ଗାଏ, ପାର୍ଟିର ବହି ବିକେ । ଯେଉଁ

ଗାଁରେ ପହଞ୍ଚି ହୁଏ ସେହି ଗାଁରେ ମୁହଁ ଖୋଲି କୌଣସି ସହୃଦୟ ଲୋକଙ୍କୁ ଆଶ୍ରୟ ଆଉ ରାତି ଭୋଜନ ପାଇଁ ଆବେଦନ କରେ । ଫଙ୍କାମୁଣ୍ଡାଇର ବହୁ ଅଞ୍ଚଳ ବଡ଼ ଦୁର୍ଗମ । ନଦୀମାନ କୁମ୍ଭୀରରେ ପରିପୂର୍ଣ୍ଣ । ସହୃଦୟ ଅପରିଚିତ ଗୃହସ୍ଥ ମୋର ଦୟନୀୟ ଅବସ୍ଥା ଦେଖି ମୋତେ ରାତିରେ ଘରେ ଆଶ୍ରୟ ଦିଏ, ଖାଦ୍ୟ ଦିଏ । ୬।୭ ଦିନ ପରେ ଫଙ୍କାମୁଣ୍ଡାଇର ମୁଖ୍ୟ ନିର୍ବାଚନ ଅଫିସକୁ ଫେରେ । ଦିନେଖଣ୍ଡେ ବିଶ୍ରାମ ନେଇଥିବି କି ନାହିଁ ପୁଣି ହୁକୁମ ହୁଏ ଗ୍ରାମାଞ୍ଚଳକୁ ଯିବା ଲାଗି । ପୁଣି ବାହାରେ, ବାଟ ଚାଲୁ ଚାଲୁ କାନ୍ଦେ । ଗୋଟିଏ ଘଟଣା ମୋର ଅଲିଭା ସ୍ମୃତି ହୋଇ ରହିଛି । ସେବେଳକୁ ପ୍ରାୟ ଦଶଖଣ୍ଡ ଗାଁରେ ମୋର ନିର୍ବାଚନ ପ୍ରଚାର ସରିଥାଏ । ପାର୍ଟିର ବହିପତ୍ର ଓ ମହଟେସିକା ବାକି ହୋଇଥାଏ ଦଶ ଟଙ୍କାର । ସେଥିରୁ ଚାରିଅଣା ଖର୍ଚ୍ଚ କରି କିଛି ମୁଢ଼ି ଓ ଦହିଛେନା କିଣି ଦିନ ଦୁଇଟା ବେଳେ ଖାଇଥିଲି । ବାସ୍, ସେହି ଥିଲା ସେଦିନର ଆହାର । କିନ୍ତୁ ମନରେ ଶଙ୍କା—ହିସାବ ଦେଲାବେଳେ ସେ ଚାରିଅଣାକୁ ଭରଣା କରିବି କେମିତି ? ଭରଣା ନକଲେ ଦିନେ ଉପବାସ ରହିବାକୁ ପଡ଼ିବ । ସାରା ଦିନର କ୍ଲାନ୍ତ ଦିବାକର ତଳ ପଡ଼ି ଯାଉଥିଲେ ପଶ୍ଚିମ ଦିଗନ୍ତର କୋଳରେ । ମୁଁ ଚାଲିଥିଲି ଦ୍ରୁତଗତିରେ, ଘେନେଇ ଆସୁଥିଲା ସନ୍ଧ୍ୟା । ସାମ୍ନାରେ ଦୂରରୁ ଦେଖା ଯାଉଥିଲା ଗ୍ରାମର ଏକ ଅସ୍ପଷ୍ଟ ସବୁଜ ରେଖା । ଗୋରୁ ଗୋଠ ନେଇ ଏକ ବୃଦ୍ଧ ଗୋପାଳକ ଫେରୁଥିଲା ସେହି ଗାଁକୁ । ତାରି ଗୋଠ ସହିତ ସହଯାତ୍ରୀ ହେଲି । ଚାଲୁ ଚାଲୁ ଗୋପାଳଟି ସହିତ ନାନା ଆଳାପ ଆଲୋଚନା ହେଲା । ତା' ଠାରୁ ତା' ଗାଁର ସମସ୍ତ ଖବର ବୁଝିନେଲି । ସେ ମୋତେ ପଚାରିଲା, "ବାବୁ, ତମେ ସବୁ ଅଜଣା ଅଚିହ୍ନା ଗାଁମାନଙ୍କରେ ବୁଲି ଏତେ କଷ୍ଟ କରୁଛ ଦେଶ ପାଇଁ । ହେଲେ, ଦେଶର ଅବସ୍ଥା କଣ ବଦଳିବ ?"

ମୁଁ ତାକୁ "ଯାହା ଶିଖାଇଛନ୍ତି ଜଟାଧାରୀ" ନ୍ୟାୟରେ ସୋସିଆଲିଷ୍ଟ ନେତାମାନେ ମୋତେ ଯାହା ଶିଖାଇଥିଲେ ସେହି ଶିକ୍ଷାକୁ ବ୍ୟବହାର କରି ବୁଢାକୁ ବୁଝାଇବାକୁ ଚେଷ୍ଟା କଲି । କିନ୍ତୁ ମୋ କଥାରେ ସେ ସନ୍ତୁଷ୍ଟ ହେଲାନାହିଁ । କଥାର ମୋଡ଼ ଫେରାଇ ସେ ମୋର ବ୍ୟକ୍ତିଗତ ଇତିବୃତ୍ତ ଜାଣିବାକୁ ଚାହିଁଲା । ସେ ଲକ୍ଷ୍ୟ କଲା ମୁଁ କ୍ଲାନ୍ତ ଆଉ ଅସୁସ୍ଥ । ମୋର ଜୀବନ କାହାଣୀ ଶୁଣି ବୁଢା ମୋ ପ୍ରତି ଭାରି ସମ୍ବେଦନଶୀଳ ହୋଇ ଉଠିଲା । ସେ

ଯେତେବେଳେ ଜାଣିଲା, ମୋର ଘରରେ ରହିବା ଖାଇବା ଅନିଶ୍ଚିତ, ସେତେବେଳେ ସେ ତା ନିଜ ତରଫରୁ ମୋତେ ତା'ର ଘରେ ରହିବାକୁ ଆମନ୍ତ୍ରଣ ଜଣାଇଲା । ଗାଁ ମୁଣ୍ଡରେ ପହଞ୍ଚିଲା ବେଳକୁ ଆମ ଦୁହିଙ୍କର ଘନିଷ୍ଠତା ବହୁତ ବଢ଼ି ଯାଇଥିଲା ସେତେବେଳକୁ । ବୁଢ଼ାର ଗୋଠରୁ ମନକୁ ମନ ଅଧିକରୁ ଅଧିକ ଗୋରୁ ଡ଼ିଆଁ ମାରି, ଲାଙ୍ଗୁଡ଼ ଟେକି ଦୌଡ଼ି ପଳାଇଗଲେ ବିଭିନ୍ନ ଦିଗରେ । ସେମାନେ ନିଜ ନିଜ ଖାଉନ୍ଦର ଘର ଚିହ୍ନନ୍ତି । ବାକି ଯେଉଁମାନେ ରହିଲେ ସେମାନଙ୍କୁ ନେଇ ବୁଢାର ଖାଉନ୍ଦମାନଙ୍କ ଜିମା ଦେବା କଥା । ହଠାତ୍ ଅନ୍ଧକାର ଭିତରେ ଲମ୍ବା ଧାଡ଼ିଏ ଚାଳ ଘର ସାମ୍ନାରେ ବୁଢା ମୋତେ କହିଲା, "ଏଇଟା ମୋ ଘର । ତମେ ପିଣ୍ଡାରେ ଯାଇ ବସ, ମୁଁ ଗୋରୁମାନଙ୍କୁ ଛାଡ଼ିଦେଇ ଆସେ ।" ଏତିକି କହି ସେ ଡାକ ଛାଡ଼ିଲା "ଆଲୋ ଗେହ୍ଲେଇ ।"

ଜଳୁଥିଲା ଡ଼ିବିରିଟିଏ, ଘରର ମଥାନ ଉପରୁ ଉପରକୁ ଉଠୁଥିଲା ପ୍ରବଳ ଧୂମକୁଣ୍ଡଳୀ । କାରଣ, ଗୋରୁମାନଙ୍କୁ ମଶା-ଡ଼ାଆଁସ କାମୁଡ଼ିବେ ନାହିଁ ବୋଲି ଗୁହାଳରେ ଘଷିଧୂଆଁ ଦିଆ ସରିଥିଲା । ବୁଢ଼ାର ଡାକରେ ଆଦ୍ୟଯୌବନା ଓ ଅପୂର୍ବ ସ୍ୱାସ୍ଥ୍ୟବତୀ ଯୁବତୀଟିଏ ଘରୁ ବାହାରି ଆସିଲା । ବୁଢ଼ା ତାକୁ କହିଲା, "ଏ ବାବୁ ଆଜି ଆମ ଘରେ ରହିବେ । ତାକୁ ନେଇ ବସା । ମୁଁ ଆଉଚି" କହି ସେ ଚାଲିଗଲା ।

ବୁଢା ଗୋପାଳକଟି ଅତି ଉତ୍ତମ ସ୍ୱଭାବର ମଣିଷ । ବିପତ୍ନୀକ, ଦୁନିଆରେ ତାର ନିଜର ବୋଇଲେ ଏକମାତ୍ର କନ୍ୟା "ଟେହ୍ଲା" ବ୍ୟତୀତ ଆଉ କେହି ନାହାନ୍ତି । ବୁଢାର ଚଳଣୀ ମନ ଛୁଏଁ—ନମ୍ର ମଧୁବୃତ୍ତି । ଝିଅ 'ଗେହ୍ଲା'ର ବୟସ ୧୫।୧୬ ବର୍ଷ । କିନ୍ତୁ ହତଭାଗୀ—ବିଧବା ଦେହର ଦରିଆରେ ଆଦ୍ୟ ଯୌବନର ଫେନିଳ ଜୁଆର । ଆଜାନୁଲମ୍ବିତ ଘନକେଶ-ଦାମ । ଟଣାଟଣା ଡବଡବି ଆଖି । ସ୍ୱାମୀ ସହିତ ବର୍ଷେ ମାତ୍ର ରଚନା ନିକରୁଣୁ ହୋଇଛି ବିଧବା ।

ଟେହ୍ଲା ତା ବୁଢାବାପର ନିର୍ଦ୍ଦେଶ ମାନି ଧୀର ଶାନ୍ତ ସ୍ୱରରେ ମୋ ଉଦ୍ଦେଶ୍ୟରେ କହିଲା, "ଆସ !" । ସେ ଚାଲିଲା ମୋ ଆଗରେ, ଆଉ ମୁଁ ତା ପଛରେ । କେତେ ପାହୁଣ୍ଡ ଅତିକ୍ରମ କଲା ପରେ ଗେହ୍ଲା ବାରଣ୍ଡା ଉପରକୁ

ଉଠି କାନ୍ଥରେ ଡେରା ହୋଇଥିବା ଗୋଟାଏ ମସିଣାକୁ ପିଣ୍ଡାରେ ଲମ୍ବାଇ ଦେଲା, କୋଟାଏ ପାଣି ଆଣି ଥୋଇଦେଲା ପିଣ୍ଡାତଳେ ମୋର ଗୋଡ ଧୋଇବା ପାଇଁ । ଗୋଡ ଧୋଇ ପିଣ୍ଡା ଉପରକୁ ଉଠି ମସିଣା ଉପରେ ବସିଲି କାନ୍ଥକୁ ଆଉଜି । ଘର ବୋଇଲେ ବଡ ବଡ଼ ଦୁଇ ବଖରା । ମୋ ବସିଥିବା ବାମକଡ଼କୁ ଯୋଡ଼ି ବଖରାଟି ସେଥିରେ ଗୋଖାଦ୍ୟ, ଶୁଖିଲା ଘଷି, କାଠ, କେତେଟା ଓଳିଆ ଆଉ ମାଟିର ଘୂମ ଏବଂ ୨-୩ଟି ହେଁସ । ସେହି ବଖରାଟିର ଫଳଗ୍ନ ରୋଷେଇ ଘର । ଡାହାଣ ପାଖ ବଖରାରେ ବୁଢା ଶୁଏ । ସେ ବଖରାରେ ତାର ପଇସା ପଥର ସିନ୍ଦୁକ, ଅଲଗୁଣି, ପେଟରା ।

ମୁଁ ନୀରବରେ ବସିଥିଲି କାନ୍ଥକୁ ଆଉଜି । ମୋ ସାମ୍ନାରେ ପୀତାଭ ଶିଖା ଟେକି କଳା ଧାସ ସୃଷ୍ଟି କରି ଜଳୁଥିଲା ଡିବିରି । ଗେହ୍ଲା ତେଣେ ରୋଷେଇ ଘରେ ମୁଣ୍ଡରେ ଲୁଗା ଦେଇ ଦୁଧ ଆଉଟିବା ଭିତରେ ଅତି ସତର୍କତା ସହକାରେ ମୋତେ ମଝିରେ ମଝିରେ ଦେଖୁଥିଲା । ଦୁଧ ଆଉଟା ସାରି ରୋଷେଇ ଘର କବାଟ ଦେଇ ମୋ ବାଁ ପାଖ ଘର ଭିତରକୁ ଯାଇ 'ଗେହ୍ଲା' ଅଧା ଆଲୁଅ ଅଧା ଛାଇରେ ଠିଆ ହୋଇ ରହିଲା ନୀରବରେ କିଛି ସମୟ । ତାପରେ ସେ ନିଜ ଆଡ଼୍ ଏକ ତାର ସ୍ୱରରେ ମୋତେ ପଚାରିଲା, "ତମ ଘର କୋଉଠି ?"

"କଟକ" ମୁଁ ଜବାବ ଦେଲି ।

"ଆମ ଗାଁକୁ କାହିଁକି ଆଇଚ ?"

"ଆଉ କେଇଦିନ ପରେ ଭୋଟ୍ ହବ ପରା ! ଜାଣିନ ? ମୁଁ ସେଇ ଭୋଟ୍ କାମ କରିବାକୁ ଆସିଚି ।"

"ମୁଁ ସେ ସବୁ ଜାଣିନି । ମୋ ବାପାକୁ କେମିତି ଚିହ୍ନିଲ ?"

"ବାଟରେ ଆସୁ ଆସୁ ଚିହ୍ନାପରିଚ ହେଲା ।"

"ତମେ କି ଜାତି ?"

ଏ ପ୍ରଶ୍ନରେ ହଠାତ୍ ସ୍ଥିର କରି ପାରିଲି ନାହିଁ କି ଉତ୍ତର ତାକୁ ଦେବି । ଜାତିପାତିରେ ତ ମୋର ବିଶ୍ୱାସ ନାହିଁ । ଏପରି ପ୍ରଶ୍ନ ଲାଗି ମୁଁ ଆଗରୁ ପ୍ରସ୍ତୁତ ମଧ୍ୟ ନଥିଲି । ଯାହଉ, ବାଧ ହୋଇ କହିଲି "କ୍ଷତ୍ରିୟ ।"

ତା'ପରେ ସେ ନୀରବ ହେଲା । ପୁଣି ଚେଷ୍ଟେଇ ଘରୁ କବାଟ ଫିଟାଇ ଗୋଟାଏ ବଡ଼ କଂସା ଗିଲାସରେ ଗିଲାସଟିଏ ଗରମ ଦୁଧ ନିଜ ପିନ୍ଧା ଲୁଗାକାନିରେ ଧରି ଆଣି ମୋ ପାଖରେ ଥୋଇ କହିଲା, "ପିଇଦିଅ ।"

ମୁହଁ ଟେକି ଗେହ୍ଲାର ମୁହଁକୁ ମୁଁ ସ୍ପଷ୍ଟ ଅନାଇଲି । ଦୁଇଟି ଆଖିରେ କମନୀୟ ଅଂପୃକ୍ତ ଶୁଦ୍ଧାଣି । ମୁହଁଟି ସୁଗୋଲ, ଓଠରେ ଲଜ୍ଜମଖା ସ୍ମିତହସ ଲାଗି ରହିଛି । ମୁଁ ଟିକେ ଆନ୍ଦୋଳିତ ହୋଇ ଉଠିଲି । ଇଚ୍ଛା ହେଉଥିଲା, ଚିତ୍କାର କରି ମୋର ଅନ୍ୟତମ ପ୍ରଭୁ ବିଶ୍ୱନାଥ ପଣ୍ଡିତଙ୍କୁ ସେଇଠାରୁ ଉଚ୍ଚ ସ୍ୱରରେ କହିଥାନ୍ତି,—ଦେଖିଯାଅ ! ଗୋଟାଏ ପାଖରେ ତମର ନୃଶଂସତା ଓ ନିଷ୍ଠୁରତା, ଅନ୍ୟ ପାଟରେ ଏଇ ବୁଢ଼ା ଗଉଡ଼ ଆଉ ତା'ର ଏଇ ବିଧବା ଝିଅର ମାନବିକ ଅନ୍ତର୍ଯ୍ୟ । ଦୁହିଁ ଭିତରେ କିଏ ମହାନ କିଏ ଅକପଟ, କାହାର ପ୍ରାଣସମ୍ପଦ ମାନବିକ ଆବେଦନରେ ଧନୀ, ତା'ର ହିସାବ କର । ଯେଉଁମାନଙ୍କୁ ତମେ ତମ ରାଜନୀତି ଅଭିଧାନର ଭାଷାରେ mass ବା ମୂର୍ଖଜନତା ବୋଲି କୁହ, ସେହିମାନଙ୍କ ମଧ୍ୟରୁ ପଞ୍ଚାମୁଣ୍ଡାଇ ଥାନାର ଏ ଦୁର୍ଗମ ଗ୍ରାମାଞ୍ଚଳର ଏ ବୁଢ଼ା ଗୋକୁଳ ଗଉଡ଼, ଯିଏ କି ମୋର କ୍ଳାନ୍ତିକୁ ଅନୁଭବ କରି ଅଯାଚିତ ଭାବରେ ମୋତେ ରାସ୍ତାରୁ ଡାକି ଆଣି ଆଶ୍ରୟ ଦେଇଛି ତା' ନିଜ ଘରେ, ତା'ର ଯୁବତୀ କନ୍ୟାର ହେପାଜତରେ ; ତା'ଠାରୁ ତମର ଦଳ, ତମର ସମସ୍ତ ଇସ୍ତାହାର କେଉଁ ଗୁଣରେ ଉନ୍ନତ ତଥା ସରସ ତା'ର ଜବାବ ଦେଇ ପାରିବ କି ? ମୋର ସର୍ବାଙ୍ଗରେ ଅସମ୍ଭବ ଯନ୍ତ୍ରଣା, ବାଲ୍ୟକାଳରୁ ମୁଁ ଅନାଥ ତଥା ଅସହାୟ । ତମେ ଓ ତମ ଦଳ ମୋତେ ଶୋଷିଛ, ମୋ ଠାରୁ ସମସ୍ତ ନିର୍ଯ୍ୟାସ କାଢ଼ିନେବା ପାଇଁ କୁଣ୍ଠାବୋଧ ନକରି ଥିବା ବେଳେ ତମ ନିପୀଡ଼ିତ ଚରିତ୍ରର ମଣିଷ ଯଥା କୃଷକ-ଶ୍ରମିକ, ମାତା-ଭଗିନୀର ଜାତି ମୋତେ ଆପଣାର କରି ରକ୍ଷା କରିଛି, ଆଉ କରିବ ।

ଗରମ ଦୁଧ-ଗିଲାସରୁ ବାମ୍ପ ଉଠୁଥିଲା ଘୂରି ଘୂରି । ମୋର ଅନ୍ୟମନସ୍କତାକୁ ଲକ୍ଷ୍ୟ କରି ଗେହ୍ଲା ଅଧିକ ଆପଣାର ଭଳି ପୁଣି କହି ଉଠିଲା, "ପିଇ ଦଉନ, ଥଣ୍ଡା ହୋଇଯିବ ଯେ !"

ଗିଲାସଟିକୁ ଓଠ ପାଖକୁ ନେଇ ପ୍ରଥମ ଚୁମ୍ବନ ଦେଲାବେଳେ ଗେହ୍ଲାର ବାପା ବୃଦ୍ଧ ଗୋପାଳ ଆସି ହାଜର । ଝିଅ ଉଦ୍ଦେଶ୍ୟରେ ବୁଢ଼ା କହିଲା,

"ମା'ଲୋ, ଭାତ ଗଣ୍ଡାଏ ବଢ଼ା, ଡ଼ାଲଟିକେ କର । ବାବୁଟି ଆମର କୁଣିଆ । ଏ ବାବୁଟି ଆମରି ଭଳିଆ ଦୁଃଖୀ । ପିଲାଦିନୁ ଘରଦ୍ୱାର ଛାଡ଼ି ଦେଶକାମ ପାଇଁ ବାହାରିଛନ୍ତି । ତାଙ୍କ ଦେହ ଭଲ ନାହିଁ । ଚଞ୍ଚଳ ଗଣ୍ଡାଏ ଫୁଟେଇ ଦେ । ଖାଇ ଶୋଇପଡ଼ିବେ ।" ଏତକ କହି ବୁଢ଼ା ଘର ପାଖ ବାଉଁଶବୁଦା ପାଖକୁ ଯାଇ ଧୁଆଧୋଇ ହେଲା । ଏଥି ଭିତରେ ମୁଁ ଗରମ ଦୁଧଟିକ ପିଇ ଦେଇଛି । ବୁଢ଼ା ପୋଛିପାଛି ହୋଇ ମୋ ପାଖରେ ଆସି ବସିଲା । ଝିଅ ଆଣି ତା' ହାତରେ ଧରାଇ ଦେଲା ତାଟିଆରେ କିଛି ଗରମ ଦୁଧ ପକ୍ୱାତ ମୁଡ଼ି । ବୁଢ଼ା ସେତକ ଗର୍ଗ୍ଟ କରି ଗୁଳରେ ସକାଳୁ ଖୋସିଥିବା ଖଣ୍ଡେ ଝଣ୍ଡିଆ ପିକାକୁ ଅଣି ସେଥିରେ ନିଆଁ ଧରାଇ ଦମ ଟାଣି ମୋ ଉଦ୍ଦେଶ୍ୟରେ କହିଲା, "ବାବୁ, ଏ ଭୋଟ-ଫୋଟ ମତେ ପୋଷାଏ ନାହିଁ । ମୋ ଗୋରୁ ଭଲ ତ ମୁଁ ଭଲ ।"

ଦେଶର ରାଜନୀତି ପ୍ରତି ବୁଢ଼ାର ଏ ଉଦାସୀନତା ଓ ଅଜ୍ଞତା ପାଇଁ ତାକୁ ଦୋଷ ଦେଇ ହେବନାହିଁ । ତାର ଜୀବନ ସଂଗ୍ରାମ ଏବଂ ସ୍ୱପ୍ନର ପରିସର ମଧ୍ୟରେ ସେ ଜଡ଼ମଡ଼ । ହେଲେବି ସେହି ଭୋଟ୍ ରାଜନୀତିର ଜଣେ ଲୋକ ମୁଁ—ମୋତେ ସେ ତା ଘରେ ଅତିଥି କରିଛି ନିର୍ବାଚନ ଇସ୍ତାହାରରେ ଉଦ୍‌ବୁଦ୍ଧ ହୋଇ ନୁହେଁ, ଏକ ମାନବିକ ସଂସ୍କୃତିର ତାଡ଼ନାରେ । ତାର ଏଇ ହୃଦୟବତ୍ତାର ତୁଳନା କରିହୁଏ ପାରେନା ।

ରାତି ବଢ଼ୁଛି । ରନ୍ଧା ସରିଲା । ଦି'ଟା ମୋଟାମୋଟା ଥାଳରେ ନାଲି ବଗଡ଼ା-ଚାଉଳର ଭାତ, ତାଟିଆଏ ମୁଗଡ଼ାଲି ଦୁଇଜଣଙ୍କ ପାଇଁ ବାଢ଼ିଦେଲା ରେଣ୍ଟା । ବୁଢ଼ା ପାଇଁ ସକାଳର ମାଛ ତରକାରି ଯାହା ଥିଲା ତାକୁ ଦେଇ ଝିଅ ସେ ତରକାରିରୁ ମୋତେ ଭାଗିଦାର କରିବା ପାଇଁ ଚେଷ୍ଟା କଲାବେଳେ ମୁଁ ମନାକଲି । କାରଣ, ପିଲାଦିନୁ ମୁଁ ମାଛ ମାଂସର ସ୍ୱାଦ ଜାଣେନା । ସେ ଭାତ ଆଉ ଡ଼ାଲିର ସ୍ୱାଦ ଆଜି ପର୍ଯ୍ୟନ୍ତ ମୋର ଜିହ୍ୱା ଭୁଲି ପାରିନାହିଁ । ଅତ୍ୟନ୍ତ ଚମତ୍କାର ।

ଭୋଜନ ଶେଷ ହେଲା । ମୋ ବାଁ ପାଖର ସେହି ଘର ଭିତରେ ମୋ ପାଇଁ ବିଛଣା ପାରିଦେଲା ରେଣ୍ଟା । ବିଛଣା ବୋଇଲେ ଗୋଟାଏ ହେଁପ । ତା' ଉପରେ ନିଜର ଗୋଟିଏ ପିନ୍ଧା ଲୁଗା ସେ ବିଛେଇ ଦେଲା । ତେଲ-

ଚକଟା ହୋଇଥିବା ଚକଅା ତ ନୁହେଁ ଗୋଟାଏ ମୁଚୁଳା ମୁଣ୍ଡ ତଳେ ଦେଇ ନିଜକୁ ଲେଟିଇ ଦେଇଥିଲି ସେଦିନ ପ୍ରଶାନ୍ତ ନିଦ୍ରାର କୋଳରେ ।

ସକାଳୁ ଉଠି ନ ଗାଧୋଇ ବୁଢ଼ା ଓ ତାʼ ଝିଅର ତାଡ଼ନାରେ ପଖାଳ ଭାତ ଓ ଆଳୁ ପୋଡ଼ା ଚକଟା ଖାଇ ତରବର ହୋଇ ବାହାରୁ ଥିଲି ବେଳେ କହିଲି, "ମଉସା, ଗାଳି ଦେବ ନାହିଁ । ତମକୁ ଆସି ହଇରାଣ କଲି ।"

ବୁଢା କହିଲା, "ହଇରାଣ କʼଣ ? ଘର ପୁଅ ପରି ଆସିଲ, ଗଲ । ଦେଶପାଇଁ ନିଜନାଳ ପାରି ହୋଇ ବୁଲୁଚ । କେବେ ଇଆଡ଼େ ଆସିଲେ ଆସିବ ।"

ପାଦ ବଢ଼ାଇବା ଆଗରୁ ଟେମ୍ପା ଉଦ୍ଦେଶ୍ୟରେ କହିଲି, "ଯାଉଚି ଭଉଣୀ ।"

ବୁଢ଼ା ଗୁଳକୁ ପାଞ୍ଚଣ କାଟୁଥିଲା । ଟେମ୍ପା ଠିଆ ହୋଇଥିଲା ଘରର ଚଉକାଠକୁ ଆଉଜି । ଓଠରେ ତାର ସ୍ମିତହସ । କହିଲା, "ଆଜିକି ରହି ଯାଉନ ।"

"ନା, ବହୁତ କାମ ଅଛି । ଯାଉଛି ।"

ଏହି ମଣିଷମାନେ ମୋର ଜୀବନ ତମାମ୍ ମୋତେ ପ୍ରେରଣା ଦେଇ ଆସିଛନ୍ତି । ଏମାନେ ମୋର ମହାନ ଦୀକ୍ଷାଗୁରୁ । ଏମାନେ ମୋ ଜୀବନ-ଇତିହାସର ଐତିହାସିକ ଉପାଦାନ । ଏଇ ଉପାଦାନ ଲାଗି ମୋର ଯାହା କିଛି ଖ୍ୟାତି, ଯଶ, ସମ୍ମାନ । ଏଇ ଉପାଦାନମାନଙ୍କ ବ୍ୟତିରେକେ ମୋର ଜୀବନ-ଇତିହାସର କୌଣସି ମୂଲ୍ୟ ନାହିଁ ।

ପଟ୍ଟାମୁଣ୍ଡାଇ ଉପ-ନିର୍ବାଚନ ପର୍ବରେ ମଧ୍ୟ କଂଗ୍ରେସ ପ୍ରାର୍ଥୀ ଜୟଯୁକ୍ତ ହେଲେ । ସମସ୍ତଙ୍କ ସହିତ ମୁଁ ମଧ୍ୟ କଟକ ଫେରିଲି । ଫେରିବାର ଆଠ ଦଶ ଦିନ ଯାଇଛି କି ନାହିଁ ମୋତେ ନିର୍ଦ୍ଦେଶ ଦିଆଗଲା କଟକ ଜିଲ୍ଲାର ବାଲି-କୁଦା ଥାନାରେ ପାର୍ଟିର ସଂଗଠନ କରିବାକୁ । ପାଠକେ ବିଶ୍ୱାସ କରନ୍ତୁ,

ପାଖରେ କପର୍ଦ୍ଦକ ଶୂନ୍ୟ, ନିର୍ଦ୍ଦିଷ୍ଟ ଭାବରେ କୌଣସିଠାରେ ରହିବା ଖାଇବାର ବ୍ୟବସ୍ଥା ନାହିଁ । ତା ଉପରେ ପୁଣି ପାର୍ଟିର ସାହିତ୍ୟ ପୁସ୍ତିକାମାନ ବିକ୍ରି କରିବାକୁ କେବଳ ହେବ ନାହିଁ, ମାସିକ ଓଲଟି ମୋତେ ପ୍ରାଦେଶିକ ପାର୍ଟି ଅଫିସକୁ ୫୦ ଟଙ୍କା କରି ପଠାଇବାକୁ ହେବ । ଅପରିଚିତ ସହିତ ପରିଚୟ ସ୍ଥାପନ କରିବାକୁ ହେବ, ଅର୍ଦ୍ଧଶିକ୍ଷିତ ତଥା ଅଶିକ୍ଷିତ ଗ୍ରାମୀଣ ଯୁବକମାନଙ୍କୁ ପାର୍ଟିର-ଶିକ୍ଷା-ଦୀକ୍ଷାରେ ଦୀକ୍ଷିତ ଓ ଶିକ୍ଷିତ କରି ସେମାନଙ୍କୁ ପାର୍ଟିର ସଭ୍ୟ ଶ୍ରେଣୀଭୁକ୍ତ କରିବାକୁ ହେବ, ଗାଁ ଗାଁରେ 'କୃଷକ ସଙ୍ଘ' ଗଠନ କରିବାକୁ ହେବ, ଲୋକଙ୍କ ଠାରୁ ଚାନ୍ଦା ଉଠାଇ ସେହି ଚାନ୍ଦାରେ ନିଜେ ଚଳିବାକୁ ପଡ଼ିବ । ଏ ସବୁକୁ ମୁଁ କେବଳ ପାଳନ କରି ନ ଥିଲି, କାର୍ଯ୍ୟରେ ମଧ୍ୟ ପରିଣତ କରିଥିଲି । ସମଗ୍ର ବାଲିକୁଦା ଥାନାର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏଁ ଘୂର୍ଣ୍ଣିବାତ୍ୟା ପରି ଘୂରିଛି । ଅର୍ଦ୍ଧାହାର, ଅନାହାର, ରୋଗ, ଯନ୍ତ୍ରଣା ମଧ୍ୟରେ ମାସ ମାସ ବର୍ଷ ବର୍ଷ ଧରି ବିତାଇଛି । ମାଛ ଗାଁ ଠାରୁ ନାଉ ଗାଁ, ଅଲଣାହାଟ, ବୋରିକିନା ଠାରୁ ତିର୍ତ୍ତୋଲ ଥାନା ସୀମା ପର୍ଯ୍ୟନ୍ତ ମୋର ଥିଲା ବିଚରଣଭୂମି । ଏଇ ବୁଲିବା ଭିତରେ, ଏଇ ଜନ ସମ୍ପର୍କ ମଧ୍ୟରେ ମୋର ବୌଦ୍ଧିକ ବିକାଶ, ମୋର ଜ୍ଞାନର ଦିଗ୍‌ବଳୟକୁ ମୁଁ ସମ୍ପ୍ରସାରିତ କରିବାକୁ ଅବିରତ ଚେଷ୍ଟା ଚଳାଏ । ଚେତନା ସହିତ କିଛିଟା ଖ୍ୟାତି ମଧ୍ୟ ବଢ଼େ । ଏଥିରେ ଭ୍ରଲେଣି ପଡ଼େ ପାର୍ଟିର ନେତାମାନଙ୍କ ମହଲରେ । ସେତେବେଳେ କଳାହାଣ୍ଡିର ଭବାନୀପାଟଣା ଠାରେ ନାନା ବାଣିଜ୍ୟ ବ୍ୟବସାୟ କରୁଥିବା ଶ୍ରୀଯୁକ୍ତ ରଜନୀକାନ୍ତ ଦାସ ହଠାତ୍ ସୋସଲିଷ୍ଟ ପାର୍ଟି ଭିତରେ ଉଦୟ ହୋଇ ହଠାତ୍ ପାର୍ଟିର 'ନେତା' କେବଳ ହୋଇଗଲେ ନାହିଁ ବାଲିକୁଦା ଥାନା ପାର୍ଟିର ସମ୍ପାଦକ ମଧ୍ୟ ବନିଗଲେ । ମୋତେ ତାଙ୍କର ଜଣେ ଅଧସ୍ତନ କର୍ମୀ ଭାବରେ କାମ କରିବାକୁ ବାଧ୍ୟ କରାଗଲା । ମୁଁ ସେ ନେତୃତ୍ୱକୁ ଗ୍ରହଣ କରି ପାରିଲି ନାହିଁ । ଫଳରେ ମୋ ବିରୁଦ୍ଧରେ ନେତାମାନଙ୍କ ଆଉ ଦଳ ଭିତରେ ଆରମ୍ଭ ହେଲା ଷଡ଼ଯନ୍ତ୍ର । ଏହି ଷଡ଼ଯନ୍ତ୍ରର ଅନ୍ୟ ଏକ କାରଣ ଥିଲା, ପାର୍ଟିର ନେତାମାନେ ଦେଖି ପାରୁଥିଲେ ଯେ, ବେଳ ଥାଉଁ ଥାଉଁ ମୋତେ ଯଦି ଦବାଇ ଦିଆ ନଯାଏ, ତା ହେଲେ ମୋର ନେତୃଭୂମିକା ଗ୍ରହଣ ଅବଶ୍ୟମ୍ଭାବୀ । ତେଣୁ ମୋ ପ୍ରତି ବାଲିକୁଦା ଥାନା ପାର୍ଟି ସମ୍ପାଦକ ବନିଥିବା ଭଦ୍ରବ୍ୟକ୍ତିଙ୍କ ବ୍ୟବହାର ଏପରି କଦର୍ଯ୍ୟ ହୋଇ ଉଠିଥିଲା ଯେ, ମୋର ଦୃଢ଼ ପ୍ରତିବାଦ ଓ ବହୁ ଲିଖିତ ଅଭିଯୋଗ ପାର୍ଟି ତଦନ୍ତ କରିବା ପାଇଁ

କଟକରୁ ଶ୍ରୀ ବିଶ୍ୱନାଥ ପଣ୍ଡିତ ଯାଇ ନାଉଗାଁ ଠାରେ ପହଞ୍ଚି ଥିଲେ। ସେଠାରେ ଏକ ଗୁରୁତ୍ୱପୂର୍ଣ୍ଣ ବୈଠକରେ ମୋ ଅଭିଯୋଗମାନଙ୍କର ଆଲୋଚନା ହେଲା। ଦେଖିଲି ଅଭିଯୁକ୍ତ ପକ୍ଷକୁ ଶ୍ରୀ ପଣ୍ଡିତଜୀ ଆନ୍ତରିକ ସମର୍ଥନ କଲେ। ମନ ମୋର ସେଦିନ ବିଷାକ୍ତ ହୋଇ ଉଠିଥିଲା। ବାଧ୍ୟ ହୋଇ ମୋତେ ସିଦ୍ଧାନ୍ତ ନେବାକୁ ହୋଇଥିଲା ଏପରି ସୁବିଧାବାଦୀ ଅନ୍ଧ ନେତୃତ୍ୱ ଅଧୀନରେ ମୋ ପକ୍ଷରେ କାମ କରି ହେବ ନାହିଁ। ତେଣୁ ଦୃଷ୍ଟି ନିକ୍ଷେପ କରିଥିଲି ମହାନ ଜନସାଧାରଣଙ୍କ ଉପରେ। ସେମାନଙ୍କର ବାହୁଛାୟା ଯେତେଦିନ ମୋ ଉପରେ ରହିଛି, ସେତେଦିନ ମୋତେ କେହି ପଦାନତ କରି ପାରିବ ନାହିଁ। ମୋତେ ପରିଶେଷରେ ବାଲିକୁଦା ଥାନା ପାର୍ଟି ଅଫିସରେ ପଶିବାକୁ ବି ଦିଆଗଲା ନାହିଁ। ଏହା ମୂଳରେ ଥିଲେ ସ୍ଥାନୀୟ ପ୍ରଭାବଶାଳୀ ଜମିଦାର, ପ୍ରତିକ୍ରିୟାଶୀଳ କାଏମୀ ସ୍ୱାର୍ଥବାଦୀ ଲୋକେ। ସେମାନେ ସର୍ବାନ୍ତଃକରଣରେ ଚାହୁଁଥିଲେ ମୋତେ ବାଲିକୁଦା ଥାନାରୁ ପୁରାପୁରି ହଟାଇ ଦେବା ପାଇଁ। କାରଣ, ସେମାନଙ୍କ କାଏମୀ ସ୍ୱାର୍ଥ ବିରୁଦ୍ଧରେ ମୁଁ ମୋର ଭାଷଣ, ସଙ୍ଗୀତ, ଆଲୋଚନା ଆଦି ଜରିଆରେ ଜନଚେତନା ଜାଗ୍ରତ କରୁଥିଲି। ସ୍ଥାନୀୟ ପାର୍ଟିର ନେତାମାନଙ୍କ ସହିତ ସେମାନେ ଖୋଲାଖୋଲି ହାତ ମିଳାଇ ଥିଲେ କହିବା ବାହୁଲ୍ୟ। ମୋର ରାଜନୈତିକ ଜ୍ଞାନ ଅପ୍ରଚୁର ଥିବା ଯୋଗୁଁ ସୋସାଲିଷ୍ଟ ନେତାମାନଙ୍କର ଏ ଗୁରୁତ୍ୱିକ ଅସଙ୍ଗତି ପାଇଁ ହତବାକ୍ ହୋଇ ଗଭୀର ମର୍ମବେଦନା ସେବେ ଅନୁଭବ କରିଥିଲି।

ଅବଶେଷରେ କୁଚକ୍ରୀ ଗୋଷ୍ଠୀ ସଫଳ ହେଲେ।

ମୋତେ ବିଦାୟ ନେବାକୁ ହେଲା ବାଲିକୁଦା ଥାନାରୁ। ତା ପରେ ମୁଁ 'ରପ୍ତାନୀ' ହେଲି ଜଗତ୍‌ସିଂହପୁର ଥାନା ଇଲାକାକୁ ଶ୍ରୀ ପ୍ରିୟନାଥ ଦେଙ୍କ ଅଧୀନରେ କାମ କରିବା ପାଇଁ। ପ୍ରିୟନାଥ ବାବୁ ସେତେବେଳେ ଜଣେ ଅନାଡ଼ମ୍ବର ଉତ୍ସାହୀ ଯୁବକ। ଅତ୍ୟନ୍ତ ଅମାୟିକ। ୧୯୪୨ ମସିହା ଭାରତ ଛାଡ଼ ଆନ୍ଦୋଳନରେ ଅଂଶଗ୍ରହଣ କରି କାରାବରଣ କରିଥିଲେ। ଜାତୀୟ କବି ସ୍ୱର୍ଗତ ବାଞ୍ଛାନିଧି... ଶ୍ୟାମକିଶୋର ଦାସଙ୍କ ନିଜ ଗାଁ ପୂର୍ଣ୍ଣଗ୍ରାମ ବା ପୁନଙ୍ଗରେ ତାଙ୍କ ଘର। ଜଗତ୍‌ସିଂହପୁର ଥାନା ଇଲାକାରେ ପାର୍ଟିର ସେପରି କୌଣସି ସଂଗଠନ ବା ପ୍ରଭାବ ନଥିଲା। ପ୍ରିୟନାଥ ବାବୁ, ଶ୍ରୀ କଣ୍ଡୁରୀ ଚରଣ ମଲ୍ଲିକ ଓ ଶ୍ରୀ ଅଗଣି ସେଠିଙ୍କ ସହିତ ମୋତେ ଅନେକ ଦିନ କାମ କରିବାକୁ ପଡ଼ିଥିଲା

ବିଶେଷ ଭାବେ ଆମ ସମସ୍ତଙ୍କୁ ଦିନ କଟାଇବାକୁ ପଡ଼ୁଥିଲା । ଗ୍ରାମାଞ୍ଚଳମାନଙ୍କରେ ବୁଲୁଥିବା ବେଳେ ଦିନେ ଦିନେ ଆମକୁ ପୁରାପୁରି ଅନାହାରରେ ରହିବାକୁ ପଡ଼େ । ଶ୍ରୀ କୃଷ୍ଣ ଚରଣ ମଲ୍ଲିକ ଅପରିଚିତ ଗୃହସ୍ଥର ତୁଳସୀ ଚଉରାରୁ କିଛି ତୁଳସୀ ପତ୍ର ତୋଳି ଆଣନ୍ତି । ସେଇ ପତ୍ରକୁ ଚୋବାଇ ପାଣି ପିଇ ଆମକୁ ଶୋଇ ଯିବାକୁ ପଡ଼େ । ଆଜି ମନେହୁଏ, ଆମେ ସେତେବେଳେ ଏକ ମୋହଗ୍ରସ୍ତ ଅବସ୍ଥାରେ ଥିଲୁ । ତା ନହେଲେ ଏପରି ଜୀବନ ଆମ ପକ୍ଷରେ ବିତାଇବା ସମ୍ଭବ ହୋଇ ନଥାନ୍ତା । ମନେ ପଡ଼ୁଛି, ମୁଁ ଏବଂ ଶ୍ରୀ ଅରଣି ସେଠି ଦିନେ ପାର୍ଟି କାମରେ ବାହାରି ନିଆଳି-ମାଧବ ଠାରୁ ଗୃଶଛକ ଓ ବାଲିଘାଇ ବାଟଦେଇ ପାଦରେ ଚାଲି ଚାଲି ସନ୍ଧ୍ୟାରେ ଯାଇ ପୁରୀ ଜଗନ୍ନାଥ ଧାମରେ ପହଞ୍ଚି ଥିଲୁ ।

ସରକାରୀ କର୍ମଚାରୀମାନଙ୍କୁ ଘନ ଘନ ବଦଳି କଲା ପରି ପୁଣି ମୋ ଉପରେ ପାର୍ଟି ତରଫରୁ ଜାରିହେଲା ଶ୍ରୀ ଅକୁଳାନନ୍ଦ ବେହେରାଙ୍କ ଅଧୀନରେ ମୋତେ ଟାଙ୍ଗୀ-ଚଉଦ୍ୱାର ଅଞ୍ଚଳରେ କାମ କରିବାକୁ ହେବ । ସ୍ଥାନାନ୍ତରିତ ହେଲି । ଆକୁଳବାବୁ ଥିଲେ ମୋ ପ୍ରତି ସଦୟ । କାରଣ, ସେ ମୋର ସ୍ୱର୍ଗତ ପିତାଙ୍କ ତ୍ୟାଗତପସ୍ୟା ପ୍ରତି ସଚେତନ ଥିଲେ । ପ୍ରଥମେ ଚଉଦ୍ୱାରକୁ କେନ୍ଦ୍ର କରି ମୋର କାମ ଆରମ୍ଭ ହୋଇଥିଲା । ତାପରେ ମୋର ଆସ୍ଥାନ ଉଠି ଯାଇଥିଲା ଡାଳିଯୋଡ଼ାର ଅତ୍ୟନ୍ତ ଅଭ୍ୟନ୍ତରକୁ । ସଫା-ସପନପୁର ଠାରେ ମୁଁ ଯାଇ ମୋର ଆସ୍ଥାନ ଜମାଇଥିଲି । ପୁରୁଣା କପିଳାସ ରୋଡ୍ କଡରେ ଏଇ ଗାଁ ମାନ । ସେତେବେଳେ ସେ ଅଞ୍ଚଳ ଗଭୀର ଅରଣ୍ୟ ଏବଂ ହିଂସ୍ର ଜନ୍ତୁ ପରିପୂର୍ଣ୍ଣ । ସଫା ଗାଁ ପାଖ ଦେଇ ପୁରୁଣା କପିଳାସ ରୋଡ୍ ଲମ୍ବି ଯାଇଛି ଆଗରୁ ଆଗକୁ । ସେ ରାସ୍ତାଟି ଅବ୍ୟବହୃତ ହୋଇ ଆଜିବି ପଡ଼ି ରହିଛି । ରାସ୍ତାଟି କପିଳାସ ରୋଡ୍ ରେଳ ଷ୍ଟେସନରୁ ବାହାରି ଭଗତପୁର ବାଟ ଦେଇ ବରପଦା, ସଫା-ସପନପୁର ମଝିରେ ଯାଇ ହରିପୁର ବାଟେ ଦା' ଗାଁ ପାଖରେ ଏକ ପାହାଡ଼ କଡ଼େ କଡ଼େ ବାଙ୍କି ଢେଙ୍କାନାଳ ସୀମା ଭିତରେ ପ୍ରବେଶ କରି ମହାମେରୁ କପିଳାସକୁ ଯାଇଛି । ୧୯୫୦ ମସିହାରେ ସମ୍ପୂର୍ଣ୍ଣ ଅପରିଚିତ ଭାବରେ ଯାଇ ଯେତେବେଳେ ମୁଁ ସଫା ଗାଁରେ ଆସ୍ଥାନ ଜମାଏଁ, ସ୍ଥାନୀୟ କଂଗ୍ରେସ ଲୋକଙ୍କ ତରଫରୁ ଏପରି ଅବସ୍ଥାର ସୂତ୍ରପାତ ହୋଇଥିଲା ଯେ, ମୋତେ ସାମାନ୍ୟ ରାତି ଆଶ୍ରୟ ମଧ୍ୟ ଗାଁରେ ମିଳି ନଥିଲା । ଅନାହାର, ଅର୍ଦ୍ଧାହାରରେ ଦିନଦିନ ଧରି ବିତାଇବାକୁ ପଡ଼ିଥିଲା । ମୋର

ଏହି କଠୋର ବନ ଗୁହ୍ମରେ ପାର୍ଟିର ନେତୃମଣ୍ଡଳୀ ମୋର କୌଣସି ଖବର ଅନ୍ତର ନେବାକୁ ପ୍ରସ୍ତୁତ ନଥିଲେ କେବଳ ନୁହେଁ, ଓଲଟି ମୋତେ ଶୋଷଣ କରିବା ପାଇଁ ମୋଠାରୁ ମାସିକ ଆର୍ଥିକ ଚାନ୍ଦା ଗୁହ୍ମି କଡ଼ାକଡ଼ା ଚିଠି ଲେଖୁଥିଲେ । ଦୁଃଖରେ ଉଦ୍‌ଭ୍ରାନ୍ତଙ୍କ ପରି ମ୍ରିୟମାଣ ହୋଇ ବୁଲୁବୁଲୁ ଜଣେ ସହୃଦୟ ବ୍ୟକ୍ତିଙ୍କ ସାହଚର୍ଯ୍ୟ ମିଳିଥିଲା । ସେ ବ୍ୟକ୍ତି ଜଣକ ହେଲେ ଶ୍ରୀ ବିଷ୍ଣୁଚରଣ ରଥ । ଏକଦା ଓଡ଼ିଶାର ଟ୍ରେଁଜଂ ଏଜେଣ୍ଟ ଥିବା ଶ୍ରୀ ବଂଶୀଧର ମହାନ୍ତିଙ୍କ ଭାଇ ଶ୍ରୀ ଶ୍ରୀଧର ମହାନ୍ତିଙ୍କର ଏକ ବିରାଟ ଖମାର ସପନପୁର ଠାରେ ଥିଲା । ସେହି ଖମାରର ଭାରପ୍ରାପ୍ତ ବ୍ୟକ୍ତି ଥିଲେ ଶ୍ରୀରଥ । ଶ୍ରୀରଥ ଅତି ଉତ୍ତମ ବ୍ୟକ୍ତି ଓ ସହୃଦୟ । ତାଙ୍କର ପାଖରେ କେବଳ ମୋତେ ଆଶ୍ରୟ ମିଳି ନଥିଲା, ଖାଇବାର ବନ୍ଦୋବସ୍ତ ମଧ୍ୟ ହୋଇଥିଲା । ତାଙ୍କର ସହାୟତା ମୋତେ ଯଥେଷ୍ଟ ଇନ୍ଧନ ଯୋଗାଇଥିଲା ପାର୍ଟି କାମରେ । ତାଙ୍କର ସହାୟତାକୁ କେନ୍ଦ୍ର କରି ସମଗ୍ର ଟାଙ୍ଗୀ ଥାନାରେ ଦୁର୍ଗମ ଅରଣ୍ୟ-ଅଧ୍ୟୁଷିତ ଗ୍ରାମମାନଙ୍କରେ ମୁଁ ପ୍ରବେଶ କରିବାକୁ ସମର୍ଥ ହୋଇଥିଲି । ଫଳରେ ପାର୍ଟିର ପ୍ରାଥମିକ ସଂଗଠନର ମୂଳଦୁଆ ପଡ଼ିବାକୁ ଆରମ୍ଭ କଲା । ତା ସଙ୍ଗେ ସଙ୍ଗେ ଆରମ୍ଭ ହୋଇଗଲା କଂଗ୍ରେସ ଦଳ ତରଫରୁ ଷଡ଼ଯନ୍ତ୍ର । ସମସ୍ତ ଅବରୋଧକୁ ମୁକାବିଲା କରି ଯେତେବେଳେ ପାର୍ଟିର ସଂଗଠନ ଦୃଢ଼ତର ହେଲା, ସେତେବେଳେ କଟକରୁ ନେତାମାନେ ଯାଇ ବଡ଼ ବଡ଼ ସଭା-ସମିତି କରିବାର ସୁବିଧା ପାଇଲେ । ୧୯୫୧ ମସିହା ଜୁନ ମାସ ତା୨ରିଖରେ ସଫା ଗାଁରେ ଯୋଉ ବିରାଟ ସାଧାରଣ ସଭା ହୋଇଥିଲା, ତାହା ସମଗ୍ର ଟାଙ୍ଗୀ ଥାନାରେ ଏକ ପ୍ରଭାବ ପକାଇଥିଲା । ସେ ସଭାରେ ସଭାପତିତ୍ୱ କରିଥିଲେ ଶ୍ରୀ ଆକୁଳାନନ୍ଦ ବେହେରା ଓ ଶ୍ରୀ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଭାଷଣ ଦେଇଥିଲେ ।

ଟାଙ୍ଗୀ ଥାନାର ଦୁର୍ଗମ ଅରଣ୍ୟ ପଥ, ଗାଁ ଗଣ୍ଡା ଥିଲା ମୋ ନଖ-ଦର୍ପଣରେ । ଶାଳଗାଁ ଠାରୁ ଆରମ୍ଭ କରି, ବଇରି, ଧାନମଣ୍ଡଳ, ମଣିଆଁ, ବରପଦା, ଅଭୟପୁର, ଦା ଗାଁ, ଢେଙ୍କାନାଳର ଭୁବନ ପର୍ଯ୍ୟନ୍ତ ମୁଁ ହାତରେ ପାର୍ଟିର ଲାଲଝଣ୍ଡା ଧରି ଅନବରତ ବୁଲୁଥିଲି, ଗାଁକୁ ଗାଁ ସଭା କରୁଥିଲି, କମିଟିମାନ ଗଢ଼ୁଥିଲି । ଅରଣ୍ୟ ପାହାଡ଼ ଘେରା ଡ଼ାଲଯୋଡ଼ା ଇଲାକା, ସଫା-ଗାଁ ସଂଲଗ୍ନ 'କାଳିଅମ୍ବା' ପର୍ବତ, ରାତିରେ ଅରଣ୍ୟର ବହୁ ଉଚ୍ଚରେ ଚନ୍ଦ୍ରୋଦୟ, ଦୂରବନାନୀ ମଧ୍ୟରେ ଥିବା 'ନମଝର', ଭୂମିହୀନ କ୍ଷେତମୂଲିଆ

ଓ କୃଷାଣ କୁଳର ଶ୍ରମସଙ୍ଗୀତ, ଗୋ-ମହିଷ ଗୋଠର ଦୃଶ୍ୟ, ସେମାନଙ୍କ ବେକରେ ବନ୍ଧା ହୋଇଥିବା ଟିପାର ଗୁଡୁର୍ ଗାଡର ଧ୍ୱନି, ବାଘର ହେଣ୍ଟାଳ, ଝରଣାର କୁଳୁକୁଳୁ ସ୍ୱନ ଏ ସବୁ ମୋତେ ନିଜର କରି ନେଇଥିଲେ । ପରବର୍ତ୍ତୀ କାଳରେ ଏସବୁ ମୋର କବିତ୍ୱ ଏବଂ କଳାକାର ଶିଳ୍ପୀ-ମାନସକୁ ଯଥେଷ୍ଟ ଇନ୍ଧନ ଯୋଗାଇ ଥିଲା । ସେ ଅଞ୍ଚଳର ମହାନ ପ୍ରକୃତିର ପ୍ରଭାବ ଆଜିଯାଏ ମୋର ମନକୁ ଆଚ୍ଛନ୍ନ କରି ରଖିଛି କହିଲେ ଚଳେ ।

ପୂର୍ବରୁ ସୂଚିତ ହୋଇଛି, ମୋର କ୍ରମବର୍ଦ୍ଧମାନ ଜନପ୍ରିୟତା ଏବଂ ବୌଦ୍ଧିକ ବିକାଶ ସୋସଲିଷ୍ଟ ନେତାମାନଙ୍କର ଗାତ୍ରଦାହର କାରଣ ହୋଇ ଠିଆ ହୋଇଥିଲା । ସେଥିପାଇଁ ମୋତେ ସେମାନେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ବେଶିଦିନ ରହିବାକୁ ଦେଉ ନଥିଲେ । ସରକାରୀ କର୍ମଚାରୀମାନଙ୍କୁ ଯେପରି ଘନ ଘନ ବଦଳି କରାଯାଇ ସେମାନଙ୍କୁ ଅଯଥା ହଇରାଣ-ହରକତ କରାଯାଇଥାଏ, ମୋତେ ଠିକ୍ ସେଇମିତି କରାଯାଉଥିଲା । ସେ ଯାହାହେଉ, ପୁଣି ମୋ ଉପରେ ଫତୁଆ ଜାରି ହେଲା, ମୋତେ ଟାଙ୍ଗୀଥାନାରୁ ବିଦାୟ ନେଇ ଆଠଗଡ଼ ଅଞ୍ଚଳକୁ ଯିବାକୁ ହେବ । ଆଖି ଆଗରେ ଘନେଇ ଆସୁଥିଲା ଭାରତର ପ୍ରଥମ ସାଧାରଣ ନିର୍ବାଚନ । ସେତେବେଳକୁ ମୋର ରାଜନୀତିକ ଚେତନା ପୂର୍ବାପେକ୍ଷା ଅଧିକ ଶାଣିତ ଏବଂ ମୁଁ ଅଧିକ ସଚେତନ ।

ସଫା-ସପନପୁରରୁ ଯେଉଁଦିନ ବାଧ୍ୟ ହୋଇ ବିଦାୟ ନେଇଥିଲି, ସେଦିନ ସେ ଅଞ୍ଚଳର ସ୍ମୃତି ମୋ ଆଖିରେ ଅଶ୍ରୁ ସଞ୍ଚାର କରିଥିଲା ।

ଆଠଗଡ଼ ସୋସଲିଷ୍ଟ ପାର୍ଟିର ସମ୍ପାଦକ ଥିଲେ ଶ୍ରୀ ବିଶ୍ୱନାଥ ସାହୁ । ସେ ଉଚ୍ଚ ଶିକ୍ଷିତ । ଘର ଜାଗିଆପଡ଼ା ଗାଁରେ । ତାଙ୍କରି "ମାଲିକାନା"ରେ ମୋତେ ଆଠଗଡ଼ରେ ଅବସ୍ଥାପିତ କରିବାକୁ ସ୍ଥିର କରାଗଲା । କାଳ ବିଳମ୍ବ ନକରି ପାର୍ଟିର ହୁକୁମନାମା ଧରି ଯାଇ ଆଠଗଡ଼ରେ ପହଞ୍ଚିଲି ।

କିଛିଦିନ ଆଠଗଡ଼ ଟାଉନରେ ପାର୍ଟି ଅଫିସ ହେଲା ମୋର ଆଶ୍ରୟ ସ୍ଥଳ। ଏଠାରେ କହିରଖେଁ, ଆଠଗଡ଼ ପାର୍ଟିର ତତ୍କାଳୀନ ସମ୍ପାଦକ ଶ୍ରୀ ବିଶ୍ୱନାଥ ସାହୁ ଶିକ୍ଷକତା ତ୍ୟାଗ କରି ଆଗରେ ଉଠାଇ ଆସୁଥିବା ପ୍ରଥମ ସାଧାରଣ ନିର୍ବାଚନରେ ଆଠଗଡ଼ ନିର୍ବାଚନ ମଣ୍ଡଳୀରୁ ସୋସଲିଷ୍ଟ ପ୍ରାର୍ଥୀ ଭାବରେ କଂଗ୍ରେସ ପ୍ରାର୍ଥୀ ତଥା "ସମାଜ" ସମ୍ପାଦକ ଶ୍ରୀ ରାଧାନାଥ ରଥଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପ୍ରସ୍ତୁତ ହେଉଥାନ୍ତି। ସେତେବେଳେ କଂଗ୍ରେସ ଦଳକୁ ମୁକାବିଲା କରିବା ପାଇଁ ସୋସଲିଷ୍ଟ ପାର୍ଟି ଏକମାତ୍ର ପାର୍ଟି ବୋଲି ପାର୍ଟିର ନେତାମାନଙ୍କର ଏକ ଧାରଣା ହୋଇଥିଲା। ପ୍ରଚୁର ଅଭିମାନ ମଧ୍ୟ ଥିଲା ଅକଳ୍ପନୀୟ। ଶ୍ରୀ ବିଶ୍ୱନାଥ ସାହୁ ସେତେବେଳେ ଯେପରି ସପରିବାର ସାରା ଆଠଗଡ଼ ନିର୍ବାଚନ ମଣ୍ଡଳୀରେ ବୁଲି ନାନା ଦୁଃଖକଷ୍ଟ ଭିତରେ କାମ କରୁଥାନ୍ତି, ତାକୁ ଆଖିରେ ନଦେଖିଲେ ବିଶ୍ୱାସ କରିବା କଠିନ। ଶ୍ରୀ ସାହୁଙ୍କ ସ୍ତ୍ରୀ ବାସନ୍ତୀ ଦେବୀଙ୍କ କାମ ଅଧିକ ଉଲ୍ଲେଖଯୋଗ୍ୟ। ବର୍ଷାଧିକ କାଳ ଏକ ପ୍ରକାର "କମ୍ୟୁନ" ଜୀବନ ସେ କର୍ମୀମାନଙ୍କ ସହିତ ଅତିବାହିତ କରିଛନ୍ତି। କର୍ମୀମାନଙ୍କ ମେଳରେ ରାତି ଯାପନ, ଏକତ୍ର ଭୋଜନ, ଅର୍ଦ୍ଧାହାର-ଅନାହାରରେ ଗାଁକୁ ଗାଁ ବୁଲି ଅଚେତନ ନାରୀମହଲରେ ପ୍ରବେଶ କରି ସେମାନଙ୍କ ମଧ୍ୟରେ ପାର୍ଟିର ଆଦର୍ଶ ତଥା ନୀତିକୁ ଅତି ସରଳ ଏବଂ ବୋଧଗମ୍ୟ ଭାଷାରେ ଉପସ୍ଥାପିତ କରିବା, ପାର୍ଟିର ପତ୍ର ପତ୍ରିକା ବିକ୍ରୟ, ଶୋଭାଯାତ୍ରାର ଆଗେ ଆଗେ ନିଜର ଏକମାତ୍ର କନ୍ୟାଟିକୁ ଧରି ବାଟ ଚାଲିବା, କୌଣସି କର୍ମୀ ଅସୁସ୍ଥ ହୋଇ ପଡ଼ିଲେ ଆପଣାର ସହୋଦର ଭଉଣୀ ପରି ତା'ର ଆପ୍ରାଣ ସେବା କରିବା ଆଦି ଘଟଣା ବାସ୍ତବରେ ଭୁଲିବାର ନୁହେଁ।

ପ୍ରଥମ ସାଧାରଣ ନିର୍ବାଚନରେ ଆଠଗଡ଼ ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ପ୍ରାର୍ଥୀ ଶ୍ରୀ ରାଧାନାଥ ରଥ ବିଜୟୀ ହୋଇଥିଲେ। କିନ୍ତୁ ସୋସଲିଷ୍ଟ ପ୍ରାର୍ଥୀ ଶ୍ରୀ ସାହୁ ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରି ଏକ ପ୍ରକାର ଦେବାଳିଆ ହୋଇ ଯାଇଥିଲେ। ଠିକ୍ ମନେ ନାହିଁ, ବୋଧହୁଏ ନିର୍ବାଚନ ପରେ ଶ୍ରୀ ସାହୁଙ୍କ ସ୍ତ୍ରୀ ବାସନ୍ତୀ ଦେବୀ ହଠାତ୍ ଦିନେ ତାଙ୍କ ପୈତୃକ ଗୃହ ଜାଗିଆପଡ଼ା ଠାରେ ଦେହରେ ନିଆଁ ଲଗାଇ ଆତ୍ମହତ୍ୟା କରିଥିଲେ। ସେତେବେଳେ ତାହା ଥିଲା ଏକ ଦାରୁଣ ଘଟଣା। ପରେ ଶ୍ରୀ ସାହୁ ପୁଣି ଦ୍ୱିତୀୟ ଥର ପାଇଁ ବିବାହ କରିଥିଲେ। ଏବେ ସେ ଯୁକ୍ତରାଷ୍ଟ୍ର ଆମେରିକାରେ ନାଗରିକତ୍ୱ ଗ୍ରହଣ କରି ଶିକ୍ଷକତା କରୁଛନ୍ତି ବୋଲି ଶୁଣୁଛୁ।

ଆଠଗଡ଼ର ନଦୀକୂଳ ଅଞ୍ଚଳ, ଅର୍ଥାତ୍ ମଞ୍ଚେଶ୍ୱର ( ପ୍ରଖ୍ୟାତ ମହାଦେବ ଧବଳେଶ୍ୱରଙ୍କ ପୀଠସ୍ଥଳୀ ), କଟଡ଼, ମହାଳପଡ଼ା, ଘଣ୍ଟିଖାଲ, ଧୁରୁଷିଆ ଠାରୁ ଆରମ୍ଭ କରି ମହାନଦୀ କୂଳେ କୂଳେ ମେଘା, ଦାସପୁର ସର୍ବମୋଟ ୭୨ ଖଣ୍ଡ ଗାଁର ସଙ୍ଗଠନ ଦାୟିତ୍ୱ ମୋ ଉପରେ ନ୍ୟସ୍ତ ହେଲା । ମୁଁ ସେ ଅଞ୍ଚଳକୁ ଯାଇ ପ୍ରଥମେ ମୋର ଘାଟି ସ୍ଥାପନ କରିଥିଲି କଟଡ଼ ଗ୍ରାମରେ । ମୋର ସେତେବେଳର ଭାଷଣ, ଅନାଡ଼ମ୍ବର ବେଶଭୂଷା, କଷ୍ଟସହିଷ୍ଣୁତା, ସୁଦର୍ଶନ ଚେହେରା, ପ୍ରତିଟି ମଣିଷକୁ ଆପଣାର କରିବାର ଆପ୍ରାଣ ଆନ୍ତରିକ ପ୍ରଚେଷ୍ଟା ଫଳରେ ଲୋକେ ମୋତେ ଧୀରେ ଧୀରେ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । ୧୯୫୧ ମସିହାର ଜୁନ ମାସରେ ମୁଁ ସେ ଅଞ୍ଚଳରେ ପ୍ରଥମେ ଯାଇ ପାଦ ଦେଇଥିଲି । ଜୁନ ମାସରୁ ଅଗଷ୍ଟ ମାସ ଶେଷ ଭାଗ ପର୍ଯ୍ୟନ୍ତ ଜନ ଅଭ୍ୟନ୍ତରରେ ପ୍ରବେଶ କରିବା ମୋ ପକ୍ଷରେ ହୋଇ ପଡ଼ିଥିଲା ଏକ ଗୁରୁତର ସମସ୍ୟା । ଗାଁ ଗାଁରେ କଂଗ୍ରେସୀ ଠାକୁରର ଓ ଶ୍ରୀ ରାଧାନାଥ ରଥଙ୍କ ବଚସ୍କର ମାନଙ୍କ ପ୍ରତିରୋଧ ଫଳରେ ଅନେକ ସମୟରେ ରାତି ଅତ୍ରୟ ସ୍ଥଳ ବି ମୋତେ ମିଳିବା କଷ୍ଟକର ହୋଇପଡ଼ୁଥିଲା । ତା'ର ଭିତରେ ଯେଉଁ ସହୃଦୟ ଗୃହସ୍ଥଟି ମୋତେ ଦୟାପରବଶ ହୋଇ ଆଶ୍ରୟ ଦେଉଥିଲା, ସାହାଯ୍ୟ କରୁଥିଲା, ତା ଉପରେ ରାଧାନାଥ ବାବୁଙ୍କ ଦଳବଳର କୋପଦୃଷ୍ଟି ପଡ଼ୁଥିଲା । ଏହାର ଭିତରେ ୨।୮ ମାସକାଳ ନଦୀକୂଳ ଅଞ୍ଚଳର ପ୍ରତିଟି ଘର, ପ୍ରତିଟି ଗୃହସ୍ଥ ସହିତ ମୁଁ ଯୋଗସୂତ୍ର ସ୍ଥାପନ କରିଗଲି ଏକକ ଭାବରେ । ସମସ୍ତ ପ୍ରକାର ସମ୍ମିଳିତ ବାଧା ଅବରୋଧ ସତ୍ତ୍ୱେ ଲୋକେ ବ୍ୟକ୍ତିଗତ ଭାବରେ ମୋ ପ୍ରତି ଅତି ଶ୍ରଦ୍ଧାଶୀଳ ହୋଇଉଠିଲେ । କୌଣସି ଗୋଟିଏ ଗାଁରେ ମୁଁ ଦିନକରୁ ଅଧିକା ରହେନାହିଁ । ଯେଉଁ ଗାଁରେ ରହେ ସେହି ଗାଁର ଗରିବ, କୃଷୀ, ଦିନମଜୁରିଆଙ୍କ ସହିତ ଆଳାପ ଆଲୋଚନା କରେ । ସେମାନଙ୍କ ନିତିଦିନିଆ ଜୀବନ ସହିତ ଅର୍ଥନୀତିର ସମ୍ପର୍କ କିପରି ଜଡ଼ିତ ରହିଛି ଏବଂ ସଙ୍ଗଠିତ ନହେଲେ ସାମାଜିକ ଦୁଃଖରୁ ଯେ ପରିତ୍ରାଣ ନାହିଁ ଏସବୁ ସେମାନଙ୍କୁ ବୁଝାଏ । ସେମାନଙ୍କ ମନୋଭାବ, ଚିନ୍ତା ଆଦିକୁ ବୁଝିବାକୁ ଚେଷ୍ଟାକରେ ଗୋଟିଏ ଗ୍ରହର ମନୋଭାବ ନେଇ । କେହିକେହି ମୋଠାରୁ ପାର୍ଟିର ପୁସ୍ତିକାମାନ କିଣନ୍ତି, ଶକ୍ତି ମୁତାବକ ଚାନ୍ଦା ମଧ୍ୟ ଦିଅନ୍ତି । ରାତିରେ ସେମାନଙ୍କ ଖାଦ୍ୟରୁ ମୋତେ ଅଂଶୀଦାର କରନ୍ତି । ଏଇମିତି ଭାବରେ ଦିନ ବିତିବାକୁ ଆରମ୍ଭ କରେ । କଂଗ୍ରେସ ତଥା ରାଧାନାଥ ବାବୁଙ୍କ ଶିବିରରେ ପଡ଼େ ଭାଳେଣି ।

ଶ୍ରୀଯୁକ୍ତ ରଥଙ୍କ ପର୍ଯ୍ୟନ୍ତ କଥାଯାଏ । ନାନା ଭାବରେ ମୋତେ ଧମକଚମକ, ପ୍ରଲୋଭନ ଜରିଆରେ କୁହାଯାଏ ନଦୀକୂଳ ଅଞ୍ଚଳ ତ୍ୟାଗ କରିବାକୁ । କିନ୍ତୁ ସବୁ ନିରର୍ଥକ । ଏହିପରି ପ୍ରାୟ ଅଧିକାଂଶ ଗାଁରେ ମୁଁ ରାତିରେ ରହୁଛି, ଆଲୋଚନା ସଭା କରୁଛି, ପାର୍ଟି ଚାନ୍ଦା ଆଦାୟ କରୁଛି, ଆଞ୍ଚଳିକ କମିଟିମାନ ଗଢ଼ୁଛି । ହାତରେ ନାଲିଝଣ୍ଡା, କାନ୍ଧରେ ପାର୍ଟିର ସାହିତ୍ୟ-ପୁସ୍ତିକାମାନଙ୍କର ଥଳି ଝୁଲାଇ ଅବିରାମ ପଦଯାତ୍ରା କରୁଛି ଏ ପ୍ରାନ୍ତରୁ ସେ ପ୍ରାନ୍ତ । ସେ ଏକ ବିଚିତ୍ର ଅଭିଯାନ ।



# ଯୌବନର ପହିଲି ରୋମାଞ୍ଚ

ସେତେବେଳକୁ ୧୭/୧୮ ବର୍ଷର ଜଣେ ସୁଦର୍ଶନ, ସ୍ୱାସ୍ଥ୍ୟବାନ ଯୁବକ ମୁଁ ।

ଜନାରଣ୍ୟର ଅତ୍ୟନ୍ତ ଗଭୀରତାରେ ବୁଲିବୁଲି ମଣିଷକୁ ଗ୍ରନ୍ଥବତ୍ ପଢ଼ୁଥାଏ ଅନବରତ । "ଜନସାଧାରଣଙ୍କ ଠାରୁ ଜନସାଧାରଣଙ୍କ ପର୍ଯ୍ୟନ୍ତ" (from masses to masses) ତତ୍ତ୍ୱ ଅନୁଯାୟୀ ଥିଲା ମୋର ଗମନାଗମନ । ତା ସହିତ ଦେଶର ରାଜନୈତିକ ପରିସ୍ଥିତି ଅନୁଶୀଳନ, ଦୈନିକ ସମ୍ବାଦପତ୍ର ପଠନ, ରାଜନୈତିକ ସଙ୍ଗୀତ ରଚନା ଏବଂ ଗାୟନ, ସମସ୍ତ ବିକୃତି ତଥା ବଦଭ୍ୟାସ ଠାରୁ ନିରାପଦ ଦୂରତ୍ୱ ରକ୍ଷା କରି ଏକ ପବିତ୍ର ନୈତିକ ଜୀବନ ମୁଁ ଅତିବାହିତ କରୁଥିଲି ।

ମନେ ଅଛି, ୧୯୫୧ ମସିହା ଅଗଷ୍ଟ ମାସର ତା୨୪ରିଖ ସେଦିନ ।

ସେଦିନ କଖଡ଼—ମହାଳପଡ଼ା ମଝିଆମଝି ଏକ ଜାଗାରେ ସରକାରଙ୍କ ଲୋକସମ୍ପର୍କ ବିଭାଗ ତରଫରୁ ଡ଼ାକବାଜଯନ୍ତ୍ର ସାହାଯ୍ୟରେ ଘନ ଘନ ଘୋଷିତ ହେଉଥାଏ ଏକ ବିରାଟ ସାଧାରଣସଭା ହେବ । କଂଗ୍ରେସ କର୍ମୀମାନେ ଅତି ତତ୍ପର । କାରଣ, ସଭାରେ ଭାଷଣ ଦେବେ ତତ୍କାଳୀନ ବାଣିଜ୍ୟମନ୍ତ୍ରୀ ବିଭାଗର ମନ୍ତ୍ରୀ ଶ୍ରୀଯୁକ୍ତ ରାଜକୃଷ୍ଣ ବୋଷ । ପ୍ରକାଶ ଥାଉକି, ଶ୍ରୀଯୁକ୍ତ ବୋଷ ସ୍ୱାଧୀନତା ସଂଗ୍ରାମ କାଳର ପ୍ରଖ୍ୟାତ ବକ୍ତା କେବଳ ନୁହନ୍ତି, ମୋ ବାପାଙ୍କର ସେ ସହକର୍ମୀ ଥିଲେ । ମୁଁ ଏ ସଭା ହେଉଥିବା ଜାଣି ସକାଳୁ ଚିନ୍ତା କଲି, ଏହି ସଭା ଜରିଆରେ ମୋ ପ୍ରତି ଏ ଅଞ୍ଚଳର ଦୃଷ୍ଟି ଆକର୍ଷଣ କରିବି । ଆଞ୍ଚଳିକ ସମସ୍ୟା ଉପରେ ଦୃଷ୍ଟିପାତ କରି ତତ୍କାଳୀନ ଗୋଟିଏ ସମସ୍ୟାକୁ ମୁଁ ଯଦି ସଭାରେ ଲୋକଙ୍କ ତରଫରୁ ପ୍ରଶ୍ନ ଆକାରରେ ଥୁଏ, ତାହେଲେ ମୋତେ ଜନସମର୍ଥନ ଅଧିକ ମିଳିବ । ସେ ସମସ୍ୟାଟି ହେଲା : ପୁରୁଣା କଟକ—ସମ୍ବଲପୁର ରାସ୍ତା ସମସ୍ୟା । ଏ ରାସ୍ତାଟି ପ୍ରଥମେ ତିଆରି ହେଲାବେଳେ ଟାଙ୍ଗୀ ଥାନାର ନୂଆ ପାଟଣା ଡାକବଙ୍ଗଳା ପାଖରୁ ବାହାରି

ପ୍ରାୟ ୧୨ମାଇଲ ବାଟ ଅତିକ୍ରମ କରି ଆଠଗଡ଼ ଟାଉନ ଠାରେ ନରସିଂହପୁର ରାସ୍ତା ସହିତ ସଂଯୁକ୍ତ ହୋଇଥିଲା । ଏ ରାସ୍ତାରେ ପ୍ରାୟ ୨୦୦ ଖଣ୍ଡ ଗାଁର ଲୋକ ଚଳାଚଳ ହୁଅନ୍ତି । ରାସ୍ତାଟି ଦୀର୍ଘକାଳ ଧରି ଅକର୍ମଣ୍ୟ ହୋଇ ପଡ଼ିବା ଫଳରେ ଲୋକେ କ୍ଷୁବ୍ଧ । ଯେଉଁ ଦଳ ବା ସରକାର ସେ ରାସ୍ତାର ପୁନରୁଦ୍ଧାର କରିବ, ଲୋକେ ତାକୁ ହିଁ ଭୋଟ ଦେବେ ବୋଲି ଜିଦ୍ ଧରି ବସିଥାନ୍ତି । କାରଣ, ଆଗରେ ପ୍ରଥମ ସାଧାରଣ ନିର୍ବାଚନ । ସେଥିପାଇଁ କଟକ—ମହାକାଳପଡ଼ା ଗାଁର ଦୋ-ସମାଳରେ ମନ୍ତ୍ରୀ ରାଜକୃଷ୍ଣ ବୋଷଙ୍କ ସଭା ।

ମୁଁ ଏହି ରାସ୍ତା ସମସ୍ୟାକୁ କାମରେ ଲଗାଇବାକୁ ସ୍ଥିର କରି ପ୍ରସ୍ତୁତ ହେଲି ।

ସନ୍ଧ୍ୟା ହେଲା । ଧୀରେ ଧୀରେ ଲୋକ ଜମିଲେ । କ୍ରମେ ଅସଂଖ୍ୟ ମଣିଷର ସମାଗମ ଆରମ୍ଭ ହେଲା । ମନ୍ତ୍ରୀ ଆସିଲେ । ତାଙ୍କୁ ଫୁଲମାଳ ଦିଆହେଲା । ପ୍ରଥମରୁ ସ୍ଥାନୀୟ କଂଗ୍ରେସ ଲୋକେ ବକ୍ତୃତା ଦେଇ କଂଗ୍ରେସକୁ ଜୟଯୁକ୍ତ କରାଇବାକୁ ନିବେଦନ କଲେ । ମନ୍ତ୍ରୀ ଶ୍ରୀ ବୋଷ ତାଙ୍କ ଓଜସ୍ୱିନୀ ଭାଷଣ ଆରମ୍ଭର ୫ ମିନିଟ ପରେ ମୋ ପ୍ରରୋଚନାରେ ସ୍ଥାନୀୟ କଂଗ୍ରେସ ବିରୋଧୀ କେତେକ ଲୋକ ମନ୍ତ୍ରୀଙ୍କୁ ଭୁହାକୁ ଭୁହା ପ୍ରଶ୍ନ କଲେ ସମ୍ପୃକ୍ତ କଟକ ସମ୍ବଲପୁର ରାସ୍ତା ସମ୍ପର୍କରେ । ମନ୍ତ୍ରୀ ମହାଶୟ ଉତ୍‌କ୍ଷିପ୍ତ ହୋଇଉଠି କହିଲେ, “ଲୋକେ ଯଦି ଏ ରାସ୍ତା ପାଇଁ ଏତେ ବ୍ୟସ୍ତ, ତାହେଲେ ନିଜ ମୁଣ୍ଡରେ ମାଟି ବୋହି ଏ ରାସ୍ତାକୁ ତିଆରି କରନ୍ତୁ । ସରକାରଙ୍କ ପାଖରେ ବର୍ତ୍ତମାନ ଟଙ୍କା ନାହିଁ ।” ଠିକ୍ ତା ପରେ ପରେ ମୁଁ ଆତ୍ମପ୍ରକାଶ କରି ଠିଆହୋଇ ମନ୍ତ୍ରୀଙ୍କୁ ପ୍ରଶ୍ନ କରିଥିଲି, “ଲୋକେ ଯଦି ରାସ୍ତାଘାଟ ସବୁ ମୁଣ୍ଡରେ ମାଟି ବୋହି ନିଜେ ତିଆରି କରିବେ, ତାହେଲେ ସରକାର ଅଛି କାହିଁକି, ଆଉ ଲୋକେ ଟିକସ ବା ଦେବେ କେଉଁଥି ପାଇଁ ।”

ମନ୍ତ୍ରୀ ମହାଶୟ ଉତ୍ତର ଦେଲେ, “ସରକାର ଏବେ ମାତ୍ର ପାଞ୍ଚ ବର୍ଷର ଶିଶୁ, ତାକୁ ସାବାଳକ ହେବା ଯାଏ ସମୟ ଦେବା ଦରକାର ।”

ସେତେବେଳେ ବମ୍ବେର ଲୁଗାକଳ ଶ୍ରମିକ ଧର୍ମଘଟ ଯୋଗୁଁ ପୁଲିସ ଗୁଳିରେ ନିହତ ଶ୍ରମିକମାନଙ୍କର ସମ୍ବାଦ ଦେଶରେ ଚହଳ ପକାଇଥାଏ ।

ମୁଁ ମନ୍ତ୍ରୀଙ୍କ ବକ୍ତବ୍ୟର ଉତ୍ତର ସେଠି ନିମ୍ନମତେ ଦେଇଥିଲି :

"ଯଦି ପାଞ୍ଚ ବର୍ଷ ବୟସର ଶିଶୁ ନାବାଳକ ହେତୁ ବମ୍ବେ ଶ୍ରମିକଙ୍କ ଉପରେ ଗୁଳି ଚଳାଇ ହତ୍ୟାଲୀଳା ଆରମ୍ଭ କଲଣି, ତାହେଲେ ସିଏ ସାବାଳକ ହେଲା ପରେ ଦେଶକୁ ରଖିବ ତ ?"

କ୍ରମେ ଅବସ୍ଥା ଗୁରୁତର ହେଲା । ମନ୍ତ୍ରୀ ମହାଶୟ ସଭା ଭାଙ୍ଗି ଚାଲିଯିବାକୁ ବାଧ୍ୟ ହେଲେ । ମୋର ସେଦିନର ସେହି ଯୁକ୍ତି ଏବଂ ସାହସ ମୋତେ ଲୋକପ୍ରିୟ କରିବାରେ ଯଥେଷ୍ଟ ସହାୟତା କରିଥିଲା । ତା ପରଠାରୁ ମୋର ଅଗ୍ରଗତି, ଅଭିଯାନ ସବୁ କିଛି ହୋଇ ଉଠିଥିଲା ସୁଗମ ।

ମନ୍ତ୍ରୀ ଗଲେ । ସଭା ଭାଙ୍ଗିଲା । ଲୋକଙ୍କ ମଧ୍ୟରେ ମୁଁ ହୋଇ ଉଠିଲି ଆଲୋଚନାର ବସ୍ତୁ । ମନେ ଅଛି, ସେଦିନ ରାତିରେ ମୋର ରାତିଭୋଜନ ଥିଲା ଅନିଶ୍ଚିତ । ମୁଁ କଖଡ଼ ଗାଁକୁ ଫେରୁଛି, ହଠାତ୍ ମଧ୍ୟବୟସର ଜଣେ କୃଷ୍ଣକାୟ ବ୍ୟକ୍ତି ମୋ ସାମ୍ନାରେ ଠିଆହୋଇ କହିଲେ, "ତମକଥା ମୁଁ ଶୁଣିଥିଲି । ହେଲେ ତମକୁ ଦେଖି ନଥିଲି । ଭାରି ସାହସ ତମର । ତମେ ଆମରି ଏଠିକି ଆସି ଭାରି କଷ୍ଟ କରୁଛ ବୋଲି ଲୋକେ କହୁଥିଲେ । ତମେ ଆଜି ରାତିରେ ମୋ ଘରେ ଖାଇବ । ଆସ ଯିବା ।" ଏତିକି କହି ସେ ମୋ ହାତ ଧରି ମୋତେ ଟାଣିଲେ । ରାତି ବେଶ୍ ହୋଇ ଯାଇଥିଲା । ଭଦ୍ରଲୋକଙ୍କ ସାଙ୍ଗରେ ଗଲି । ସେ ଭଦ୍ରଲୋକ ଆଜି ଇହଧାମରେ ନାହାନ୍ତି । ତାଙ୍କର ନାମ ଏବଂ ଗ୍ରାମ ମୁଁ ଜାଣିଶୁଣି ଗୋପନ ରଖୁଛି । ଗ୍ରାମଟି କିନ୍ତୁ କଖଡ଼ର ଅତି ପାଖ ମହାନଦୀ କୂଳରେ । ଭଦ୍ରଲୋକ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର । ଗୋଟିଏ ପୁଅ ଆଉ ଗୋଟିଏ ଝିଅର ସେ ଜନକ । ପୁଅ ବଡ଼, ଝିଅ ସାନ । ପୁଅର ବିବାହ ସରିଥାଏ । ଭଦ୍ରଲୋକ କିନ୍ତୁ ଝିଅକୁ ପ୍ରାଣାଧିକ ଶ୍ରଦ୍ଧା କରନ୍ତି । ୩/୪ ଏକର ଧାନ ଜମି ଅଛି । ଭଦ୍ରଲୋକ ନିଜେ ସ୍ୱର୍ଣ୍ଣକାରଙ୍କ କାମ ଜାଣନ୍ତି । ସେଇଟା ତାଙ୍କର ଜୀବିକା । ବଡ଼ ଅମାୟିକ ଲୋକ ସିଏ । ତାଙ୍କର ସ୍ତ୍ରୀ ଅସ୍ୱାଭାବିକ ଭାବରେ ଖର୍ବାକୃତି ଆଉ ଲଜ୍ଜାଶୀଳା । ଭଦ୍ରଲୋକ ଜାତିରେ କ୍ଷତ୍ରୀୟ । କ୍ରମେ ଭଦ୍ରଲୋକଙ୍କ ଘର ଦୁଆର ମୁହଁରେ ଯାଇ ପହଞ୍ଚି ଦେଖିଲି, ବାରଣ୍ଡା ତଳକୁ ତୁଳସୀ ଚଉରାଟିଏ । ତା'ପାଖରେ ଦି'ଟା ନଡ଼ିଆ ଗଛ । ବାରଣ୍ଡାରେ ଲଣ୍ଠନଟିଏ ବିମର୍ଷ ଭାବରେ ଜଳୁଥିଲା । ଭଦ୍ରଲୋକ ଘରର ପାହାଚ ଉପରକୁ ଉଠି, ପଛକୁ ବୁଲି ମୋ ଉଦ୍ଦେଶ୍ୟରେ କହିଲେ, "ଆସ ।" ତା'ପରେ ସେ ଡାକିଲେ, "ମୀନା କଲେ !"

"ଆଜ୍ଞା ?" ଭିତରୁ ଜବାବ ଆସିଲା । ମୀନା ବା ମେନକା ଭଦ୍ରଲୋକଙ୍କ ଏକମାତ୍ର ସେହି ଅବିବାହିତା ଯୁବତୀ କନ୍ୟା । ଭଦ୍ରଲୋକଙ୍କ ସହିତ ଶାଙ୍କା ଭିତରକୁ ଗଲା । ଜଣେ ନୂତନ ସୁଦର୍ଶନ ଯୁବକକୁ ଅପ୍ରତ୍ୟାଶିତ ଭାବରେ ଦେଖି ତାଙ୍କ ସ୍ତ୍ରୀ ମୁଣ୍ଡରେ ହାତେ ଓଢ଼ଣା ଟାଣି ବସିବା ଜାଗାରୁ ଉଠି ଠିଆ ହୋଇ କିଛି ଦୂରକୁ ଘୁଞ୍ଚିଗଲେ । ଭଦ୍ରଲୋକଙ୍କ ବୋଧହୁଏ ଅନ୍ୟ ଘର ବଖରା ଭିତରୁ ଚକିତ ଭାବରେ ମୋତେ ଗୃହିଁ ଦେଇ କବାଟଟାକୁ ଦରଆଉଜା କଲେ । ଭଦ୍ରଲୋକ ତାକୁ କହିଲେ, "ମା'ଲୋ, ଏ ବାବୁ ଆମ ଘରେ ଖାଇବେ । ରନ୍ଧା ସନ୍ଧ ସରିଲାଣି ତା ହେଲେ ବଢ଼ାବଢ଼ି କର ।" ଝିଅ କିଛି କହିଲା, ବୋଧେଇ ସତ୍ତ୍ୱବାକ୍ ଆଉ ଅଳ୍ପ ସମୟ ବାକି । ଅଗଣାର ବାରଣ୍ଡାରେ ଗୋଟିଏ ସତପ ବସ୍ତ୍ର ଦେଲେ ଭଦ୍ରଲୋକ । ମୁଁ ବସିଲି, ସିଏ ବି ବସିଲେ ମୋ ପାଖରେ । କଥାବାର୍ତ୍ତା ଭିତରେ ସେ ଜାଣିବାକୁ ଚେଷ୍ଟା କଲେ ମୋ ଜୀବନ ଓ ପରିବାରର ଇତିବୃତ୍ତ । ମୁଁ ଯେତେବେଳେ ତାଙ୍କୁ କହିଲି, ଦୁନିଆରେ ନିଜର ବୋଲି ମୋର କେହି ନାହିଁ, ଘର ନାହିଁ,ନିଗପଞ୍ଜ ନାହିଁ, ସେତେବେଳେ ସେ ଚକିତ ଓ ବିବ୍ରତ ହେବା ପରି ଜଣା ପଡ଼ିଲେ । ମୋର ବକ୍ତବ୍ୟମାନ ଏପରି ଆନ୍ତରିକ ତଥା ସରଳ ଥିଲା ଯେ ଟିକେ ଦୂରରେ ତାଙ୍କ ଝିଅ ଏବଂ ସ୍ତ୍ରୀ ଦୁହେଁ ଉତ୍କର୍ଣ୍ଣ ହୋଇ ମୋର ପ୍ରତିଟି କଥାକୁ ଶୁଣୁଥିଲା ପରି ମନେହେଉଥିଲା ।

କିଛି ସମୟ ପରେ ଖାଇବାକୁ ବଢାହେଲା ।

ଦୁଇଟି ଜାଗାରେ ଭାତ, ଡାଲି, ଆଳୁଭର୍ତ୍ତା, ଗୋଟାଏ ମିଶାମିଶି ତରକାରୀ ଥିଲା । ମିଶାମିଶି ତରକାରୀରେ ପଡ଼ିଥିଲା ମାଛ । ମୁଁ କହିଲି, ମୁଁ ପିଲାଦିନୁ ମାଛର ସ୍ୱାଦ କିମିତି ଜାଣେନା । ସମସ୍ତେ ଅବାକ୍ ହେଲେ । ପରେ ସେ ତରକାରୀକୁ ମୋ ପାଖରୁ ଝିଅ ଉଠାଇ ନେଲା ।

ଖିଆପିଆ ସରିଲା ପରେ ଭଦ୍ରଲୋକ ମୋ ସହିତ ଅଧିକ ଆତ୍ମୀୟତା କଲେ । ରାତି ଦୁଇଟା ବାଜିଲା । ଶୋଇବାର ବ୍ୟବସ୍ଥା ଏଥର । ତାଙ୍କ ଘରକୁ ଲଗି ଆଉ ବଖରାଏ ଘରେ ମୋର ଶୋଇବା ବ୍ୟବସ୍ଥା ସେ କଲେ । ଶୋଇବାକୁ ଯିବା ଆଗରୁ ଭଦ୍ରଲୋକ ମୋତେ କହିଲେ, "ତମେ ମୋ ପୁଅ ପରି । ଯେତେଦିନ ତମେ ଏ ଅଞ୍ଚଳରେ ଅଛ ମୋର ଏଇଠି ରହିବ ଓ ଖିଆପିଆ କରିବ ।"

ମୋର କୁଣ୍ଠା ସତ୍ତ୍ୱେ ଭଦ୍ରଲୋକ ନାଛୋଡ଼ବନ୍ଧା ।
ଆନ୍ତ୍ରପୁ ଆଜ ଖାଦ୍ୟର ବ୍ୟବସ୍ଥା ହେଲା । ଏଥର ସଂଗଠନ ପରିକଳ୍ପନା ।
ଆରମ୍ଭ ହେଲା ମୋର ଏକକ ଚୋପାମା ଅଭିଯାନ ।

ଗାଁକୁ ଗାଁ, ଘରକୁ ଘର ସମ୍ପର୍କ ସ୍ଥାପନ ହେଲା । ନଂଘମ୍ପୂଳ ଅଞ୍ଚଳରେ କଂଗ୍ରେସଲୋକେ ଏବଂ ଶ୍ରୀ ରାଧାନାଥ ରଥ ନିର୍ବାଚନରେ ସମ୍ବସମିତ କରିବା ହୋଇଗଲାଣି କଷ୍ଟକର । ମନେଅଛି, ଦିନେ ଧୂଳିପିଆ ଗାଁରେ ରାଧାନାଥ ବାବୁ ସଭା କରୁଥିଲେ । ମୁଁ ସେଠି ତାଙ୍କ ନଜରରେ ପଡ଼ିବା ମାତ୍ରେ ସେ ମୋତେ ସେଠି ଏକଥା ମଧ୍ୟ କହିଥିଲେ, "ବାବୁ, ତମକୁ ମୁଁ ଅନୁରୋଧ କରୁଛି, ତମେ ଏ ଅଞ୍ଚଳ ଛାଡ଼ି ଅନ୍ୟ କେଉଁଠିକି ଚାଲିଯାଅ ।" କିନ୍ତୁ ଏହା ଥିଲା ଏକ ବାତୁଳ ଅନୁରୋଧ । ଯାହାର ଚେର ଅଗଣିତ ମଣିଷର ଅତ୍ୟନ୍ତ ଗଭୀରତାରେ, ତା ପ୍ରତି ଏ ଅନୁରୋଧ ନିରର୍ଥକ । ଫଳରେ କଂଗ୍ରେସ ଶିବିରରେ ହତାଶା ବଢେ । ନାନା ଆକ୍ରମଣାତ୍ମକ ଷଡ଼ଯନ୍ତ୍ର ମାଧ୍ୟମରେ ମୋତେ ସେ ଅଞ୍ଚଳରୁ ହଟାଇବା ପାଇଁ ଉଦ୍ୟମ ଆରମ୍ଭ ହୁଏ । *

---

* "ଆଠଗଡ଼ର କଟେଙ୍ଗ ଅଞ୍ଚଳରେ ସୋସଲିଷ୍ଟ ପାର୍ଟିର କାମ ଜୋର୍‌ସୋର୍‌ରେ ଚାଲିବାର ଦେଖି ଗାଁ । ଟାଉଟରଙ୍କ ମହଲରେ ଘୋର ଆତଙ୍କ ପଶିଲଣି । ଏପରିକି ଆଠଗଡ଼ର ସୋସଲିଷ୍ଟ କର୍ମୀ ସାଥୀ ରବୀନ୍ଦ୍ରନାଥ ସିଂହ × × ଗ୍ରାମରେ ଜଣେ ଲୋକଙ୍କ ଘରେ ରହୁଥିବାରୁ ତାଙ୍କୁ ସେଠାରୁ ତଡ଼ିବାକୁ ଗୁଣ୍ଡାଗିରି ଅବଲମ୍ବନ କରା ଗଲାଣି । ଗତ ତା୧୦ରିଖ ରାତିରେ ଲୋକଙ୍କୁ ମତାଇ କେତେକ ଗୁଣ୍ଡାଙ୍କୁ ସାଙ୍ଗରେ ଧରି ଏ ଅଞ୍ଚଳର ଜଣେ ନାମଜାଦା ଟାଉଟର ସାଥୀ ସିଂହଙ୍କ ଉପରେ ଆକ୍ରମଣ କରିବାକୁ ଆସୁଥିବା ସମୟରେ ଜନସାଧାରଣଙ୍କ ପ୍ରତିରୋଧ ଫଳରେ ସେ ରକ୍ଷା ପାଇଥିଲେ । × ×

"ଜୁଆଖେଳ ପାଖରେ ସତ୍ୟାଗ୍ରହ"

"ଗତ ତା୨୨ରିଖରେ କଟେଙ୍ଗ ଦୋଳଯାତ୍ରାରେ କଟକ ଓ ଅନ୍ୟାନ୍ୟ ଅଞ୍ଚଳର ଜୁଆଖେଳାଳୀମାନେ ଆସି ଜୁଆ ଖେଳୁଥିବାର ଦେଖାଗଲା । ଖେଳରେ ବହୁ ଗରିବ ଲୋକେ ପଇସାପତ୍ର ହରାଇବାରୁ ସୋସଲିଷ୍ଟ କର୍ମୀ ସାଥୀ ରବୀନ୍ଦ୍ରନାଥ ସିଂହ ଉକ୍ତ ଖେଳାଳୀମାନଙ୍କୁ ଖେଳ ବନ୍ଦ କରିବାକୁ ଅନୁରୋଧ କରିଥିଲେ । ସେମାନେ ଖେଳ ବନ୍ଦ ନକରିବାରୁ ସେ ବାଧ୍ୟ ହୋଇ ପିକେଟିଂ ଆରମ୍ଭ କରିଥିଲେ । ପିକେଟିଂ ପ୍ରାୟ ୩ଘଣ୍ଟା ଧରି ଚାଲିଥିଲା । × ×" (ସାପ୍ତାହିକ "କୃଷକ"—ମାର୍ଚ୍ଚ ତା୨୮, ୧୯୫୨ ମସିହା ଦ୍ରଷ୍ଟବ୍ୟ । )

ଦିନ ମୋର ଅତିକ୍ରାନ୍ତ ହେଉଥିଲା ଜନ-ଅଧ୍ୟୁଷିତ ତଥା ଜନାରଣ୍ୟର ଅତ୍ୟନ୍ତ ଗଭୀରତାରେ । ଥରେ ଆଶ୍ରୟ ସ୍ଥଳରୁ ବାହାରିଲେ ଦିନେ—ଦୁଇଦିନ ପରେ ଫେରିବାକୁ ପଡେ । ଫେରିବା ପାଇଁ ଦୁଇଟି ଅର୍ଥପୂର୍ଣ୍ଣ ଝଣ ଝଣା ଆଖି ମୋ ବାଟ ଚାହିଁ ବସୁଥିଲା ନୀରବରେ । ସେ ଆଖି ଦୁଇଟି ମୋର ସେହି ସହୃଦୟ ଆଶ୍ରୟଦାତା ଭଦ୍ରଲୋକଙ୍କ ଅଲିଅଳି କନ୍ୟା ମେନକାର । ଦିନ ଯେତିକି ଅତିକ୍ରାନ୍ତ ହେବାକୁ ଲାଗିଲା, ମେନକା ସେତିକି ହୋଇଉଠିଲା ମୋର ନିକଟତର ଅନ୍ୟମାନଙ୍କ ଅଗୋଚରରେ । ଆଜି ସ୍ମୃତିରେ ପରିଣତ ହୋଇଥିବାର ସେହି ପହିଲି ବସନ୍ତ, ସେହି ପ୍ରଥମ ପ୍ରେମାଙ୍କୁରର କାହାଣୀକୁ ଲେଖି ବସିଲେ ଏକ ବିୟୋଗାନ୍ତକ ନାଟକ ହେବ । ସେ ସବୁ ଲେଖିବାର ଅଭିଳାଷ ମୋର ନାହିଁ । ବିବାହ ପର୍ଯ୍ୟନ୍ତ ମୋ ଜୀବନରେ ଆସିଥିବା ପ୍ରତିଟି ପ୍ରଣୟ ପ୍ରେମ କଷାଘାତ ନେଇ ଆସିଛି କହିଲେ ଚଳେ । ସେ କଷାଘାତରେ ଅବିରତ ଜର୍ଜରିତ, ଆହତ ହୋଇଛି ମୋର ମଦନ-ମନୋହର ଯୌବନ, କବିତ୍ୱ ଏବଂ ପୌରୁଷ । ସେ କଷାଘାତର ଜବାବ ମୁଁ ଦେଇ ପାରିଥାନ୍ତି ଲମ୍ପଟ୍ୟର ମାଧ୍ୟମରେ । କିନ୍ତୁ ମୋ ସ୍ୱାଭାବିକ-ବୈଶିଷ୍ଟ୍ୟର ତାହା ସମ୍ପୂର୍ଣ୍ଣ ବିରୋଧୀ । ସେ ଯାହାହେଉ, ସେଦିନ ମହାନଦୀର ଶାନ୍ତ ଶୀତଳ ମୃଦୁମନ୍ଦ ସମୀରଣରେ ନଡ଼ିଆ ପତର କ୍ରମାଗତ କରତାଳି, ଆକାଶରେ ଫିକାଜହ୍ନ, ଚରାଚର ଥିଲା ନିଦ୍ରାମଗ୍ନ, ଦୂରରେ କୁକୁରଟାଏ କାହିଁ ବାହୁନୁ ଥିଲା । ରାତିର ଅନ୍ତିମଯାମ ସେତେବେଳେ । ମେନକା ଆଉ ମୁଁ । ମୋ ହାତ ଉପରେ ତାର ନରମ ହାତଟି ଥୁଆ ହୋଇଥିଲା ଏବଂ ସେ ହାତ ଥିଲା କମ୍ପମାନ । ମୁଁ ଏକ ଦୀର୍ଘଶ୍ୱାସ ମୋଚନ କରି ତାକୁ କହିଥିଲି, "ଦେଖ ମୀନା, ତମେ ଭୁଲ୍ କରୁନାହିଁ ତ ? ମୋ ପ୍ରତି ଏତେଟା ଆଶା···କାରଣ, ମୁଁ ଏକୁଟିଆ·· ମୋର କିଛି ଠିକ୍ ଠିକଣା ନାହିଁ । ମୋର ଆଗ ନାହିଁ, ପଛ ନାହିଁ । ମୋ ସହିତ ଜଡ଼ିତ ହେଲେ ତମେ ଅସୁବିଧାରେ ପଡ଼ିବ । ତମର ବାପ-ମା', ଭାଇ-ଭାଉଜ, ମୁରବି ସମସ୍ତେ ଅଛନ୍ତି । ସେମାନଙ୍କର ପ୍ରବଳ ବାଧାକୁ ତମେ ଡେଇଁ ଏକେତ ଆସି ପାରିବ ନାହିଁ—ଆସିଲେ ତମେ ସୁଖୀ ହୋଇ ପାରିବ ନାହିଁ ।"

ବାଷ୍ପରୁଦ୍ଧ ସ୍ୱରରେ ସେ କହିଥିଲା, "ସେମାନେ ରାଜି, ଅଛନ୍ତି ।"

ଆଶ୍ଚର୍ଯ୍ୟ ! ବିସ୍ମିତ ହୋଇଥିଲି ସେଦିନ । ସେମାନେ ରାଜି ଅଛନ୍ତି ? ପ୍ରସ୍ତାବ ତାହେଲେ ଦେଲା କିଏ ? ଏପରି ଏକ ଅବସ୍ଥାର ସୂତ୍ରପାତ ହେଲା

ବା କେବେ ? ମେନକାର ଦେହର ଦରିଆରେ ଭରା ଯୌବନର ଜୁଆର ଯେତେବେଳେ । ମୁଁ ମଧ୍ୟ ୧୭।୧୮ ବର୍ଷର ଅତ୍ୟନ୍ତ ସୁଦର୍ଶନ ଯୁବକ । ବହୁବାର ସୁଯୋଗ ପାଇଛି...ସେ ସୁଯୋଗ ପାଇଲେ ଯୁବକ ଯୁବତୀଙ୍କ ମଧ୍ୟରେ ପ୍ରଣୟର ମୂଳ ଦିଆନିଆ ହୁଏ । କିନ୍ତୁ ପାଠକେ ବିଶ୍ୱାସ କରନ୍ତୁ, ମୋର ବିପ୍ଳବୀ-ବିବେକ ମୋତେ ସତର୍କ କରି ଦେଇଛି ହେବି ମୂହୂର୍ତ୍ତରେ : "ଯାତ୍ରୀ ସାବଧାନ । ତତେ ଅପେକ୍ଷା କରୁଛି ବହୁମତ, ବହୁ ପଥ, ବହୁ ଝଡ଼-ବାଦଲର ରାତି । ଭୁଲ୍ କରନା । ଯାହା ଫଳରେ ପଶ୍ଚାଦପସରଣ ବ୍ୟତୀତ ଅନ୍ୟ କିଛି ହେବ ନାହିଁ ।"

ଏହି ସତର୍କବାଣୀ ପାଇଁ ମୁଁ ବାରବାର ଉଲ୍କା ପରି ଛିଟିକି ପଡ଼ିଥିଲି ମେନକାର ନିବିଡ଼ ଭୁଜବନ୍ଧନ କବଳରୁ । ବଡ଼ ବେଦନାଦାୟକ ଗ୍ରବାନ୍ତର ସ୍ମୃତି କାଶ୍ମି ଦିନଗୁଡ଼ିକ ସିଏ । ତାହା ଥିଲା ମୋ ଆଦ୍ୟଯୌବନର ଥରଥର କଠିଣ ପ୍ରଥମ ପରୀକ୍ଷା । ସେ ପରୀକ୍ଷାରେ ଅବଶେଷରେ ମୁଁ ସଫଳତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲି ସତ ; କିନ୍ତୁ ଅପର ପକ୍ଷରେ 'ମୀନା' ବା ମେନକାର କୁମାରୀ ଜୀବନର ପୂର୍ଣ୍ଣଚ୍ଛେଦ ପଡ଼ିଥିଲା ଅକାଳରେ । ପ୍ରଚଣ୍ଡ ଆତ୍ମିକ ଯନ୍ତ୍ରଣା ଏବଂ ବିରହ ତାକୁ ତିଳ ତିଳ କରି ଜାଳିପୋଡ଼ି ନିଃଶେଷ କରି ଦେଇଥିଲା । ମୋର ଅଜାଣତରେ ସେ ମୋତେ ଏପରି ଭଲପାଇ ବସିଥିଲା ଯାହା ମୁଁ ଜାଣିଲି, ମର୍ମେ ମର୍ମେ ଉପଲବ୍ଧି କଲି, ତାର ଜୀବନ ପାଖରୁ ବିଦାୟ ନେବା ପରେ । ଆଜି ପାଖ ୨୯।୩୦ ବର୍ଷ ପରେ ଯେତେବେଳେ ମନେ ପଡ଼ୁଛି ସେହି ପ୍ରଥମ ପ୍ରଣୟର ଦେବୀ ମେନକା, ସେତେବେଳେ ମୋ ଭିତରର ମଦନମନୋହର ଅନ୍ତର୍ମଣିଷଟି ନିଜକୁ ମନେ କରୁଛି ଜଣେ ଅକ୍ଷମଣୀୟ ଅପରାଧୀ । ଆଜି ମୁଁ ୩ଟି ପୁତ୍ରକନ୍ୟାର ଜନକ, ଆଜିବି ମୋର ଦୁର୍ଦ୍ଧର୍ଷମାନ ଜୀବନର ଅନ୍ତ ହୋଇନି । ଏହି ବିଗତ ୨୯।୩୦ ବର୍ଷ ଭିତରେ ଦୁନିଆର, ଜନଜୀବନର ଏବଂ ନିଜର ନାନା ପରିବର୍ତ୍ତନ, ବିବର୍ତ୍ତନ, ଉତ୍ଥାନ-ପତନ ସଙ୍ଘଟିତ ହୋଇଛି । ସେତେବେଳର ସୋସଲିଷ୍ଟ ଦଳର ଯୁପକାଠରେ ବନ୍ଧା, ବାସହୀନ, ଲକ୍ଷ୍ୟହୀନ, ଯାଯାବର ତରୁଣ "ରବୀନ୍ଦ୍ରନାଥ ଫଡ଼ି" ଅବଶ୍ୟ ଆଜି ବହୁ ଯଶ, ଖ୍ୟାତି, ସୁନାମର ଅଧିକାରୀ । ନାମରୁ 'ନାଥ' କଟି, 'ଇନ୍ଦ୍ର' କଟି ସେ ହୋଇଛି ଆଜି କେବଳ "ରବି ଫଡ଼ି ।"

ତୁମେ ଯଦି ମୋ ଜୀବନର ଚଲାବାଟକୁ ଭୁଲ୍ ବଶତଃ ଆସିଥାନ୍ତ ମେନକା, ତାହେଲେ ଯାଇ ନଥାନ୍ତ ରୁକି ଯାଇ ନଥାନ୍ତ । କାରଣ ମୋ ସାଥୀରେ ବାଟ ଚାଲିବା ପାଇଁ ପ୍ରଥମେ ଲୋଡ଼ା ଏକ ସଂକଳ୍ପବଦ୍ଧ ସଂଗ୍ରାମୀ ବୃନସ୍ୱାଦ । ତୁମର ସେ ବୃନସ୍ୱାଦ ନଥିଲା । ଏକ ନିମ୍ନ ମଧ୍ୟବିତ୍ତ ଗ୍ରାମୀଣ ଗୃହସ୍ଥର ତୁମେ ଥିଲ ଆଦରର ଅଲିଅଳି କନ୍ୟା । ବିବାହ ପରେ ସ୍ୱାମୀ, ସଂସାର, ତେଲଲୁଣର ନିତିଦିନିଆ ଜୀବନ, ନିବିଡ଼ ଆତ୍ମକେନ୍ଦ୍ରିକତାର ଗଣ୍ଡି ମଧ୍ୟରେ ତୁମର ରଙ୍ଗୀନ ସ୍ୱପ୍ନ ଥିଲା ସୀମାବଦ୍ଧ । କିନ୍ତୁ ମୋର ସ୍ୱପ୍ନ ଥିଲା ତୁମ ସ୍ୱପ୍ନର ଠିକ୍ ବିପରୀତ । ଏକ ମହାନ ତଥା ବିଶାଳ କକ୍ଷପଥରେ ନିଜକୁ ସ୍ଥାପନ କରିବା ପାଇଁ ଅବିରତ ପ୍ରଚେଷ୍ଟା, ସାଧନା, ସଂଗ୍ରାମର ପଟାନ୍ତର ମୋର ନଥିଲା କେତେବେଳେ । ତୁମେ ଯଦି ମୋର ଅଙ୍କଶାୟିନୀ ହୋଇଥାନ୍ତ, ତାହେଲେ ତାର ପରିଣତି ହୋଇଥାନ୍ତା ପରିଶେଷରେ ମୋ ବିରୁଦ୍ଧରେ ବିଦ୍ରୋହ ଘୋଷଣା । ତା ମୂଳରେ ଥାନ୍ତା ଏ ଅର୍ଥବ୍ୟବସ୍ଥା ଧନବାଦୀ ସମାଜର ତୁମକୁ ନିର୍ମମ କଷାଘାତ । ଅଭାବ, ଅନାଟନ, ଦୁଃଖ—ଯାହା ମୋର ଜୀବନର ଜାଆଁଲା ଭାଇ ହୋଇ ଆସିଛି, ତାକୁ ତୁମେ ବରଦାସ୍ତ କରିପାରି ନଥାନ୍ତ । ଫଳରେ ମୋର ଆଦର୍ଶ ପଥରୁ ମୁଁ ସ୍ଖଳିତ ହୋଇ ହରାଇ ବସିଥାନ୍ତି ମୋର ଅସ୍ତିତ୍ୱ । ଏହି ଆଶଙ୍କା, ଏହି ଭୟର ନେଇ ନିହାତି ସ୍ୱାର୍ଥପରଙ୍କ ପରି ସର୍ବସମର୍ପିତା ତୁମର ସମଗ୍ର ତନୁଲତା ତୁମର ଲଳିତ ପୀନପୟୋଧର, ଗୁରୁନିତମ୍ବ, ଥରଥର ଓଷ୍ଠାଧର, ଆଜାନୁଲମ୍ବିତ କେଶଗୁଚ୍ଛର ଗୁମ୍ଫା, ଢଳଢ଼ଳ ଦୁଇଟି ଆୟତ ନୟନ ଏବଂ ଜାଗତିକ ସୁଷମାମଣ୍ଡିତ କୁମାରୀ ମନ ଏ ସବୁକୁ ମୁଁ ଥରେ ଅଧେ ନୁହେଁ ବାରବାର ଅତି ନିକଟରେ ପାଇ ହରାଇଛି । ସେ କଥା ଆଜି ଚିନ୍ତା କଲାବେଳେ ମୋର ହୃତ୍କୋଷ ଗୋଟାଏ ବ୍ଲାଷ୍ଟ ଫର୍ଣ୍ଣେସ୍ ପରି ତାତି ଉଠେ । ମୀନା, ଅତୀତଟା ମୋ ପାଖରେ ସଦାସର୍ବଦା ଦୁଃଖଦାୟୀ ଓ ଶିକ୍ଷାଗୁରୁ ହୋଇ ଆସିଛି । ତୁମେ ମୋ ଜୀବନଇତିହାସର ପ୍ରଥମ ତଥା ସ୍ପର୍ଶକାତର କେତୋଟି ରୋମାଞ୍ଚକର ପୃଷ୍ଠା । ତୁମର ଭାବାବେଗ ଯେତେବେଳେ ଚରମ ସୀମାକୁ ଉଠିଥିଲା, ଅବସ୍ଥାଚକ୍ରର ପ୍ରଚଣ୍ଡ ଘୂର୍ଣ୍ଣନରେ ମୁଁ ଯାଇ ପଡ଼ିଥିଲି ବହୁ ଦୂରରେ । ଦଳୀୟ ରାଜନୀତିର ଯୂପକାଠରୁ ଦୈବାତ୍ ଖସିଯାଇ, ଜଣେ ସଂସାରୀ ମଣିଷ ହେବାକୁ ମନ ବଳାଇ ସାମାନ୍ୟ ଗ୍ରାମସେବକଟିଏ ହେବା ଲାଗି ୧୯୫୭ ମସିହାରେ ଭର୍ତ୍ତି ହୋଇଥିଲି ଢେଙ୍କାନାଳର ମହିଷାପାଟ କୃଷିବିଦ୍ୟାଳୟରେ । କିନ୍ତୁ ଭୁଲି ପାରିନଥିଲି ଆଠଗଡ଼ର ନଦୀକୂଳ ଅଞ୍ଚଳକୁ, ତୁମ ଗାଁକୁ, ମହାନଦୀକୁ ଏବଂ ତୁମକୁ ।

ହଠାତ୍ ଝଡ଼ ଭଳି, ଦିନେ ମହୁଖାପାଟ କୃଷିବିଦ୍ୟାଳୟରେ ଆବିର୍ଭୂତ ହୋଇଥିଲେ ତମର ସ୍ୱର୍ଗତ ପିତା । କହିଥିଲେ—ତମେ ଶଯ୍ୟାଶାୟିନୀ··· ମୋତେ ଦେଖିବାକୁ ଚାହୁଁଛ । ମୋର ଆତ୍ମିକ ବେଦନା ସେଦିନ ଶତ ସହସ୍ର ଗୁଣରେ ବଢ଼ି ଯାଇଥିଲା । ମେନକା ! ବସିବା ସ୍ଥାନରୁ ଉଠି ମୁଁ ଛୁଟି ଯାଇଥିଲି ତମର ରୋଗଶଯ୍ୟା ପାଖକୁ । ତମ ଘର ଦୁଆର ମୁହଁରେ ସେଦିନ ଅସଂଖ୍ୟ ଝିଅ ବୋହୂଙ୍କର ସମାଗମ ତମକୁ ଆଜି ମୋତେ ଦେଖିବା ପାଇଁ । ଅପରାଧୀ ଭଳି ତମ ଶେଯ ପାଖରେ ଠିଆ ହୋଇ ତମ ନାଁ ଧରି ବାଷ୍ପରୁଦ୍ଧ କଣ୍ଠରେ ତମକୁ ଡାକିଥିଲି ସେଦିନ । ଟଣାଟଣା କମନୀୟ ଅଥଚ କ୍ଲାନ୍ତ ଆଖିପଲ୍ଲବ ମେଲାଇ ତମେ ମୋତେ ଶୂନ୍ୟଚାହାଣୀରେ ଅନାଇ ଥିଲ, ତା'ପରେ ଶ୍ୱେତପ୍ରସ୍ତରବତ୍ ଦୁଇବୁନ୍ଦା ଲୁହ ଗଡ଼ି ଆସିଥିଲା ତମ ଆଖି କୋଟରୁ ଆକର୍ଣ୍ଣ । ଏକ ସକରୁଣ ଆବହ ମଧ୍ୟରେ ଗୋଟାଏ ମର୍ମବେଦାହତ ଦୀର୍ଘଶ୍ୱାସ ମୋଚନ କରି ଧୀରେ ତମ ପାଖରୁ ବିଦାୟ ନେଇ ପୁଣି ଫେରି ଆସିଥିଲି ମହୁଖାପାଟ କୃଷିବିଦ୍ୟାଳୟକୁ ।

ମୋର କ୍ଷଣିକ ଦର୍ଶନ ତମକୁ ପରେ ସାମୟିକ ସୁସ୍ଥ କରି ତୋଳିଥିବାର ସମ୍ବାଦ ପାଇ କିଛିଟା ଆଶ୍ୱସ୍ତ ହୋଇଥିଲି । ଭାବିଥିଲି, ସିଦ୍ଧାନ୍ତର ପୁନର୍ବିଚାର କରିବି । ସ୍ଥାୟୀ ଅନୁସନ୍ଧାନର କିଛିଟା ବ୍ୟବସ୍ଥା ଯଦି କରିପାରେ ତାହେଲେ ତମ ପାଖକୁ ଛୁଟିଯିବି ଆଉ କହିବି : "ମିନି, ମୁଁ ତମର ସେଇ ଆକାଂକ୍ଷିତ ଚଂଦ୍ରକାନ୍ତ, ଆସିଛି । କୀମୁଦୀ ଗୋ, ଆଖି ଖୋଲ ! ମୋର ଅନାଦର, ଅବହେଳାକୁ ଭୁଲିଯାଅ, ଆସ, ମୋ ଯାତ୍ରାପଥରେ ତମର ଅଳସ ଧୀର ପଦପାତ ଅନ୍ୟ ଏକ ମଧୁମୟ ଜୀବନର ସୂଚନା କରୁ ।" କିନ୍ତୁ ନା, ମୋ ଭିତରର ବିଦ୍ରୋହ-ହୃଦର ମୋର ଏ ସିଦ୍ଧାନ୍ତ ପାଇଁ ମୋତେ ଏକ ପ୍ରଚଣ୍ଡ ଚପେଟାଘାତ କରିଥିଲା ସେଦିନ । ମୋର ବିଦ୍ରୋହ-ହୃଦୟ ମୋତେ ଦେଖାଇ ଦେଇଥିଲା, ଗ୍ରାମସେବକ ହେବା ପାଇଁ ମୋର ଏ ତାଲିମ ଗ୍ରହଣର ମାନେ ଏକ ସୁଦକ୍ଷ ଗାଁ ଟାଉଟରରେ ପରିଣତ ହେବାର ପ୍ରାଥମିକ ରିହର୍ସାଲ । ତାହାହିଁ ଥିଲା ସତ୍ୟ । ତା ଛଡ଼ା, ଦେଶର ଦୁର୍ନୀତି କପରି ଦୃଢ଼ମୂଳ, ତାର ପ୍ରମାଣ ମୁଁ ଆଖିରେ ଦେଖିଥିଲି ମହୁଖାପାଟର ସେଇ ମୌଳିକ କୃଷି ବିଦ୍ୟାଳୟରେ । ଏହାର ପ୍ରତିବାଦରେ ୧୯୫୭ ମସିହା ଜୁଲାଇ ମାସରେ ମୋତେ ଅନଶନ ଧର୍ମଘଟ କରିବାକୁ ପଡ଼ିଥିଲା । ଫଳରେ ଅବସ୍ଥା ଯେତେବେଳେ ମୋର ଶୋଚନୀୟ, ସେତେବେଳେ ଅର୍ଥାତ୍ ୧୯୫୭ ମସିହା

ଅଗଷ୍ଟ ପନ୍ଦର ଦିନ କୃଷି ବିଦ୍ୟାଳୟର ପ୍ରଧାନଶିକ୍ଷକ ଶ୍ରୀ ପୂର୍ଣ୍ଣାନନ୍ଦ ମିଶ୍ରଙ୍କ ଇତାଲ ମୁତାବକ ମୋତେ ଢେଙ୍କାନାଳ ପୁଲିସ ଭାରତୀୟ ଦଣ୍ଡବିଧି ଆଇନର ୪୪୮ ଦଫାରେ ଗିରଫ କରି ଜେଲ ହାଜତକୁ ପଠାଇ ଥିଲେ । ଜେଲ ଭିତରେ ମଧ୍ୟ ମୋର ଅନଶନ ଚାଲୁ ରହିଥିଲା । ଢେଙ୍କାନାଳର ପ୍ରଖ୍ୟାତ ଆଇନଜୀବୀ ଶ୍ରୀ ସୁରେନ୍ଦ୍ର ମୋହନ ପଟ୍ଟନାୟକଙ୍କ ଅନୁରୋଧ କ୍ରମେ ମୁଁ ଅନଶନ ଭଙ୍ଗ କରି ଜାମିନ୍‌ରେ ଖଲାସ ହୋଇ ବାହାରକୁ ଆସିଥିଲି । କିନ୍ତୁ ଦୀର୍ଘ ୧ ବର୍ଷରୁ ଅଧିକ କାଳ ମୋ ବିରୁଦ୍ଧରେ ମକଦ୍ଦମା ଚାଲିଲା ପରେ ୧୯୫୮ ମସିହା ସେପ୍‌ଟେମ୍ବର ୨୦ ତାରିଖ ଦିନ ଢେଙ୍କାନାଳର ତତ୍‌କାଳୀନ ୨ୟ ଶ୍ରେଣୀ ମାଜିଷ୍ଟ୍ରେଟ୍ ଶ୍ରୀମତୀ ବିଶୋଇ ମୋତେ ନିର୍ଦ୍ଦୋଷରେ ଖଲାସ କରିଥିଲେ ।

ଅନୁସନ୍ଧାନର ଆଶାର କୁହେଳିକା କଟିଗଲା ଅଖି ଆଗରୁ । ସୋସଲିଷ୍ଟ ପାର୍ଟିରୁ ତ ସ୍ଥା ପୂର୍ବରୁ ଇସ୍ତଫା ଦେଇ ସାରିଥିଲି । ତମକୁ ଗୋପନ ସମ୍ବାଦ ଦେଇ ଜଣାଇ ଥିଲି—ମୋ ପାଇଁ ଆଉ ଜଳ ନାହିଁ । ତମ-ମୋ ଭିତରେ ଯେଉଁ ଦୂରତାର ସେତୁ ଗଢ଼ି ଉଠିଛି, ତାହା ଏ ମରଜଗତରେ ଦୂର ହେବ ନାହିଁ । ଏ ସମ୍ବାଦ ପାଇବା ପରେ ପରେ ତମେ ପୁଣି ହେଲ ଶଯ୍ୟାଶାୟିନୀ । ସ୍ଥାନାନ୍ତରିତ ହେଲ କଟକ ବଡ ଡାକ୍ତରଖାନାକୁ । ଆଉ ଘରକୁ ଫେରିନାହିଁ ତମେ—ତମର ମରଦେହ କାଠଯୋଡ଼ି ଶ୍ମଶାନ ବୁକୁରେ ଲେଲିହାନ ଶିଖାର ଜଠର ମଧ୍ୟରେ ପାଉଁଶ ହୋଇଗଲା । ଏ ସମ୍ବାଦକୁ ନୀରବରେ ଗ୍ରହଣ କରି ତମକୁ ବିଦାୟ ସମ୍ଭାଷଣ ଜଣାଇଥିଲି ମିନି ! ବାହାର ଦୁନିଆ ସେ ଖବର ଜାଣେନା ।

ମିନି, ମୀନା, ମେନକା ! ଆଜି ତମେ ଏ ଧୂଳିମଳିନା ସାଗର-ମେଖଳା ଧରଣୀରେ ନାହିଁ, ତମର ବାପା ମଧ୍ୟ ନାହାନ୍ତି, ଯେଉଁ ଗାଁର ପାଣିପବନରେ ତମର ଶୈଶବ ଏବଂ ଯୌବନ ବିକଶିତ ହୋଇଥିଲା, ସେ ଗାଁ ଆଜି ମହାନଦୀ ଗର୍ଭରେ ବିଲୀନ ହୋଇଛି । କିନ୍ତୁ - ମିନି, ତମେ ମୋର ସ୍ମୃତିପଟରେ ଜୀବିତ ଅଛ । ତମର ଉଦ୍ଦାମ ଭରାଯୌବନରେ ମୋତେ ତମର ପ୍ରଣୟୀ ଭାବି ବାରବାର ଯେଉଁ ପ୍ରଣୟର ମୂଲ ମାଗିଥିଲ, ତାହା ମୁଁ ପରିଶୋଧ କରି ପାରି ନାହିଁ । ଯଦି ପାରିଥାନ୍ତି, ତାହେଲେ ପରବର୍ତ୍ତୀ କାଳରେ ଅର୍ଥାତ୍ ଆଜି ମୁଁ ହୋଇ ପାରି ନଥାନ୍ତି "ବିପ୍ଳବୀ କବି ରବି ସିଂ" ।

ମୋ ପାଇଁ ତମେ ବରଣ କରିଛ ଶହୀଦତ୍ୱ । ତାହା ମୋର ସମଗ୍ର ଯୌବନକୁ ବହୁ କାଳ ଯାବତ୍ ବ୍ୟଥିତ କରିଛି । ସେହି ବ୍ୟଥା । ପରୋକ୍ଷରେ ମୋତେ ମୋର ଗନ୍ତପଥରେ ବହୁ ନାରୀ, ବହୁ କୁମାରୀଙ୍କ ମାୟାଜାଲକୁ କାଟି ଛିନ୍ନଛତ୍ର କରିବାରେ କରିଛି ସହାୟତା । ମରୀଚିକା ପଛରେ ଦୌଡ଼ି ଦୌଡ଼ି ତମେ ତୃଷାରେ ଦେଇଛ ପ୍ରାଣବଳିଦାନ; କିନ୍ତୁ ଯିଏ ଏ ମରୀଚିକାକୁ ହାତ ପାଖରେ ପାଇ "କବିବନ୍ଧୁ"ର ଗୌରବ ଅର୍ଜନ କରିଛି, ସେହି ମୋର ସହଧର୍ମିଣୀ, ମୋର ପୁତ୍ରକନ୍ୟାର ଜନନୀ, ମୋ ହୃଦୟର ସଜାଗ-ପ୍ରହରୀ ଓ ଦେହରକ୍ଷୀ, ସିଏ ତମର ପରି ତିଳତିଳ କରି (ଅବଶ୍ୟ ବିରହ ବେଦନାରେ ନୁହେଁ) ମୋର ଆଦର୍ଶ ପାଇଁ ପ୍ରତି ମୁହୂର୍ତ୍ତରେ ଶହୀଦ ହେଉଛି । କିନ୍ତୁ ହେଲେ ବି ତାର ସେଥିରେ ଅଛି ଆନନ୍ଦ ଆଉ ଗର୍ବ ।

ମିନୁ, ସବୁ ସତ୍ତ୍ୱେ, ତମର ବିଶାଳ ସ୍ମୃତିସ୍ତମ୍ଭ ମୋ ମନର ଅଙ୍ଗନରେ ଆଜି ବି ରମଣୀସୁଲଭ କୁଣ୍ଠା ନେଇ ଠିଆ ହୋଇଛି । ପାରୁଛ ଯଦି ମୋର ନବ ନବ ସାଫଲ୍ୟରେ, ବିଜୟରେ ଖୁସୀ ହୁଅ । ତାହାହିଁ ତମକୁ ଦେବ ସ୍ୱର୍ଗୀୟ ଆନନ୍ଦ ।



# ହେ ବନ୍ଧୁ ବିଦାୟ !

୧୯୫୨ ମସିହାର ଜୁଲାଇ ମାସ ହେବ ବୋଧହୁଏ !

ଆଚାର୍ଯ୍ୟ ଜୀବତ୍‌ରାମ୍ ଭଗବାନ ଦାସ କୃପାଳନୀଙ୍କ କୃଷକ-ମଜଦୁର ପ୍ରଜାପାର୍ଟି ସହିତ ସୋସଲିଷ୍ଟ ପାର୍ଟିର ମିଶ୍ରଣ ପାଇଁ ଚୂଡ଼ାନ୍ତ ଘୋଷଣା ପ୍ରକାଶ ପାଇ ସାରିଥାଏ । ମୁଁ ଏହି ମିଶ୍ରଣ ପ୍ରସ୍ତାବରେ ଏକମତ ହୋଇପାରିଲି ନାହିଁ । ଏହି ମିଶ୍ରଣ ପ୍ରସ୍ତାବ ଗୋଟିଏ ପ୍ରଚଣ୍ଡ ସ୍ୱ-ବିରୋଧ ବୋଲି ମନେ ହୋଇଥିଲା ମୋର । ପ୍ରକାଶ ଥାଉକି, ସୋସଲିଷ୍ଟ ପାର୍ଟିର **Policy Statement** ନାମକ ପୁସ୍ତିକାରେ ସେତେବେଳେ ସ୍ପଷ୍ଟ ଉଲ୍ଲେଖ ଥିଲା, "ଶ୍ରେଣୀ-ସଂଘର୍ଷହିଁ ସୋସଲିଷ୍ଟ ପାର୍ଟିର ମୂଳଭିତ୍ତି ।" ଏହି "ଭିତ୍ତି" ଉପରେ ୧୯୪୭ ମସିହା ଠାରୁ ଠିଆ ହୋଇ ସୋସଲିଷ୍ଟମାନେ ସର୍ବୋଦୟ ମତବାଦ ଉପରେ ପ୍ରତିଷ୍ଠିତ ପ୍ରଜାପାର୍ଟି ଓ ତା'ର ପ୍ରତିଷ୍ଠାତା ଆଚାର୍ଯ୍ୟ କୃପାଳନୀଙ୍କୁ "ସୁବିଧାବାଦୀ" ବୋଲି କେବଳ ଲଗାତର ଆକ୍ରମଣ ଚଳାଇ ନଥିଲେ, ଆଚାର୍ଯ୍ୟ ବିନୋବାଙ୍କ ଭୂଦାନ ଆନ୍ଦୋଳନକୁ ମଧ୍ୟ କଟୁ ସମାଲୋଚନା କରୁଥିଲେ "ବିନୋବାଙ୍କ ଭୂମିଯଜ୍ଞ ପାଳି" ଶୀର୍ଷକ ଏକ ପ୍ରବନ୍ଧ ସୋସଲିଷ୍ଟ ଦଳର ମୁଖପତ୍ର "କୃଷକ"ରେ ବି ପ୍ରକାଶିତ ହୋଇଥିଲା । ଏସବୁ ବାସ୍ତବରେ ଥିଲା ନିଜକୁ "ବିପ୍ଳବୀ" ବା "ପ୍ରଗତିଶୀଳ" ବୋଲାଇବା ପାଇଁ ଏକ ବାହ୍ୟ ଆବରଣ । ଅସଲ କାମଟି ଥିଲା ଶ୍ରମିକ, କୃଷକ, ବାମପନ୍ଥୀ ଆନ୍ଦୋଳନ ସମୂହକୁ ଛୁରାଘାତ କରି ଶାସକଶ୍ରେଣୀର ଦଲାଲୀ ଚଳାଇଯିବା । ସେତେବେଳେ ବମ୍ବେ ଲୁଗାକଳ ଶ୍ରମିକମାନଙ୍କର ଐତିହାସିକ ଧର୍ମଘଟ ଆନ୍ତର୍ଜାତିକ ଦୃଷ୍ଟି ଆକର୍ଷଣ କରିଥିଲା । ସାର୍ଦ୍ଧ ୭୨ ଦିନ କାଳ ଧର୍ମଘଟ ଫଳରେ ଶ୍ରମିକମାନଙ୍କର ୩୫ କୋଟି ଟଙ୍କା ମଜୁରି ବନ୍ଦ ହୋଇଥିଲେ ବି ଶେଷ ପର୍ଯ୍ୟନ୍ତ ସେମାନେ ଥିଲେ ଆପୋଷହୀନ । ଚୂଡ଼ାନ୍ତ ବିଜୟର ଠିକ୍ ପୂର୍ବରୁ ଧର୍ମଘଟର ନେତୃତ୍ୱରେ ଥିବା ସୋସଲିଷ୍ଟ ନେତାମାନେ କଳମାଲିକମାନଙ୍କ ସହିତ ଆପୋଷ କରିବା ଫଳରେ ଧର୍ମଘଟ କେବଳ ବିପର୍ଯ୍ୟସ୍ତ ହୋଇ ନଥିଲା, ଏକ ଗ୍ଲାନିକର ପଶ୍ଚାଦପସରଣ ଘଟିଥିଲା ଭାରତୀୟ ଲଢୁଆ ଶ୍ରମିକ ଆନ୍ଦୋଳନରେ ।

ସୋସଲିଷ୍ଟ ନେତାମାନଙ୍କର ଏହି ଶ୍ରମିକ ସଂଗଠନ ଯେତେବେଳେ ଅଗ୍ରେଣ୍ଟ ପ୍ରତିବାଦରେ ମୁଖର ହୋଇ ଉଠିଲା, ସେତେବେଳେ ନେତୃତ୍ୱରେ ଥିବା ନେତାମାନେ ତା'ର ଉତ୍ତରରେ ଏକଥା ମଧ୍ୟ କହିଥିଲେ ଯେ, "ଶ୍ରମିକମାନଙ୍କର ଶକ୍ତି କେତେ ତାହା ଆମେ ଏ ଧର୍ମଘଟରେ ପରୀକ୍ଷା କରୁଥିଲୁ"। ଏତଦ୍ ବ୍ୟତୀତ ପଞ୍ଜାବର ସତ୍ୟାଗ୍ରହ, ୧୯୪୯ ମସିହାରେ ରେଳବାଇ ଶ୍ରମିକ ଧର୍ମଘଟ (ଯେଉଁ ଧର୍ମଘଟକୁ ସୋସଲିଷ୍ଟମାନେ ଧୋକା ଦେଇ ଥିବାରୁ ତା'ର ନୀତିବ ପ୍ରତିବାଦରେ ପ୍ରାୟଶ୍ଚିତ ପାଇଁ ସୋସଲିଷ୍ଟ ଦଳର ଆଦିପିତା ଶ୍ରୀ ଜୟପ୍ରକାଶ ନାରାୟଣ ୨୧ ଦିନ କାଳ ଅନଶନ ମଧ୍ୟ କରିଥିଲେ), ହାଇଦ୍ରାବାଦର ଖାଦ୍ୟ ସତ୍ୟାଗ୍ରହ, ଓଡ଼ିଶାର ମଙ୍ଗଳପୁର, ତିର୍ତ୍ତୋଲ ପ୍ରଭୃତି ଅଞ୍ଚଳରେ ସୋସଲିଷ୍ଟ-ମାନେ ଭାଗଚାଷୀ ଆନ୍ଦୋଳନର ନିଆଁ ଜଳାଇ ଦେଇ ନିରୀହ ଚାଷୀ, ଶ୍ରମିକ-ମାନଙ୍କୁ ସଂଗ୍ରାମର ପ୍ରଥମ ବାହ୍ୟାଳୀରେ ଠିଆ କରାଇ ଦେଇ ଠିକ୍ ତା' ପରେ ପରେ ସବୁ କ୍ଷେତ୍ରରେ ଜମିମାଲିକ, ସରକାର, ସରକାରୀକଳ ସହିତ ସାଲିସ୍ କରିଥିବାର ଘୃଣ୍ୟ ଇତିହାସ ରାଜନୈତିକ-ଇତିହାସ ପୃଷ୍ଠାରେ ଲିପିବଦ୍ଧ ହୋଇ ରହିଛି। ଆନ୍ଧ୍ରରେ କଂଗ୍ରେସ ଦଳ ସହିତ ମିଶି ମନ୍ତ୍ରୀମଣ୍ଡଳ ଗଠନ, ଏଣେ ଓଡ଼ିଶା ବିଧାନସଭା ଆଗରେ ବିକ୍ଷୋଭ ପ୍ରଦର୍ଶନ ସାଙ୍ଗକୁ ଉପନିର୍ବାଚନ-ମାନଙ୍କରେ ପ୍ରତିଦ୍ୱନ୍ଦ୍ୱିତା (ତିର୍ତ୍ତୋଲ-ଏରସମା ତଥା ଆଳି-ପଟ୍ଟାମୁଣ୍ଡାଇ ଉପ-ନିର୍ବାଚନ) କଥାଟି କେଉଁ ଧରଣର ଚରିତ୍ରକୁ ପ୍ରତିପାଦନ କରୁଥିଲା ? ପୁଣି "ମାର୍କସ୍‌ବାଦୀ" ସୋସଲିଷ୍ଟ ନେତା ଜୟପ୍ରକାଶ ନାରାୟଣ ସେତେବେଳେ ଗୃହଗଳ ସର୍ବୋଦୟ ମେଳାରେ ଭାଷଣ ପ୍ରସଙ୍ଗରେ କହିଥିଲେ, "ମୁଁ ଦିନେ ଥିଲି ମାର୍କସ୍‌ବାଦୀ, ଆଜି କିନ୍ତୁ ଗାନ୍ଧୀବାଦୀ।"

•

ଏହି ସବୁ କାଣ୍ଡକାରଖାନା, ଦ୍ୱିଧାବିଭକ୍ତ ବ୍ୟକ୍ତିତ୍ୱମାନଙ୍କର ରାଜନୀତିକୁ ମାନିନେବା ଯେଉଁମାନଙ୍କ ପକ୍ଷରେ ସମ୍ଭବ ନଥିଲା, ଯେଉଁମାନେ ଚାହୁଁଥିଲେ ଜନଗଣଙ୍କର ମୁକ୍ତି ଏବଂ ସର୍ବହରା ସଶସ୍ତ୍ର ରାଷ୍ଟ୍ର-ବିପ୍ଳବ, ସେଇମାନେ ପାର୍ଟିରୁ ଦୂରେଇ ଯିବାକୁ ଆରମ୍ଭ କଲେ। ବିନ୍ଧ୍ୟ ପ୍ରଦେଶର ନଅଜଣ ସୋସଲିଷ୍ଟ ବିଧାନସଭା ସଭ୍ୟଙ୍କ ସମେତ ୫୦୦ ସୋସଲିଷ୍ଟ କର୍ମୀଙ୍କ ଇସ୍ତଫା, ଭୂତ ସୋସଲିଷ୍ଟ ନେତ୍ରୀ ତଥା ସୁପରିଚିତା ବିପ୍ଳବୀ ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀ, ଓଡ଼ିଶାର ସୋସଲିଷ୍ଟ ବିଧାନସଭା ସଦସ୍ୟ ସ୍ୱର୍ଗତ ଗିରିଶଚନ୍ଦ୍ର ରାୟ, କୋରାପୁଟର ଶ୍ରୀ ବିପ୍ରଚରଣ ଷଡ଼ଙ୍ଗୀଙ୍କ ସମେତ ବହୁ ସୋସଲିଷ୍ଟ କର୍ମୀଙ୍କ

ଇସ୍ତଫା ସେତେବେଳେ ଚହଳ ପକାଇ ଦେଇଥିଲା । ମୁଁ ଥିଲି ଏହିମାନଙ୍କର ସମର୍ଥକ । ପରିଶେଷରେ ଚରମ ସିଦ୍ଧାନ୍ତରେ ଉପନୀତ ହୋଇଥିଲି ଯେ ସୋସଲିଷ୍ଟ ଦଳ ମୋତେ ଛାଡ଼ିବାକୁ ହିଁ ହେବ । ମୋର ସେହି ସିଦ୍ଧାନ୍ତକୁ କାର୍ଯ୍ୟରେ ପରିଣତ କରିବାକୁ, ମନେଅଛି ଆଠଗଡ଼ର ଖଣ୍ଡୁଣୀ ଠାରୁ ଆସି ଓଡ଼ିଆବଜାରସ୍ଥ "ଯଦୁନାଥ ଭବନ" ଅର୍ଥାତ୍ ପ୍ରାଦେଶିକ ପାର୍ଟି ଅଫିସରେ ପହଞ୍ଚି ତତ୍କାଳୀନ ପାର୍ଟିର ଯୁଗ୍ମ ସମ୍ପାଦକ ଥିବା ଶ୍ରୀ କଇଳାସ ପଟ୍ଟନାୟକଙ୍କ ହାତରେ ମୋର ଇସ୍ତଫା ପତ୍ରଟି ଦେଇ ଯେତେବେଳେ ବାହାରକୁ ଆସେ, ସେତେବେଳେ ସନ୍ଧ୍ୟାର ଆଗମ । ପଛରେ ପଡ଼ି ରହିଲା ସୁଦୀର୍ଘ କେତେଟା ବର୍ଷର ସନ୍ତର୍ପଣ ଜର୍ଜରିତ ଦିନ, ମାସ, ଜନ-ସମ୍ପର୍କ, ଅନୁଭୂତି, କ୍ଷୋଭ ।

ସୋସଲିଷ୍ଟ ଦଳରୁ ମୋର ଇସ୍ତଫାର ସମ୍ବାଦ ସେତେବେଳେ 'ସମାଜ', 'ପ୍ରଜାତନ୍ତ୍ର', 'ସାପ୍ତାହିକ ଗଣତନ୍ତ୍ର', "ନୂଆଦୁନିଆ" ପ୍ରଭୃତି ପତ୍ରପତ୍ରିକାରେ ପ୍ରକାଶିତ ହେଲା ପରେ ମୋ ପୂର୍ବରୁ ପାର୍ଟିରୁ ଇସ୍ତଫା ଦେଇଥିବା ଶ୍ରୀମତୀ ଅରୁଣା ଆସଫ୍ ଅଲ୍ଲୀ, ଶ୍ରୀ ଗିରିଶଚନ୍ଦ୍ର ଗୁପ୍ତ ଏମ୍. ଏଲ୍. ଏ. ପ୍ରମୁଖଙ୍କ ବିରୋଧରେ ପାର୍ଟି ତରଫରୁ ଯେଉଁ କୁତ୍ସିତ ଭିତ୍ତିହୀନ ଅଭିଯୋଗମାନ ହୋଇଥିଲା, (ଅର୍ଥ ଆତ୍ମସାତ୍‌ର ଅଭିଯୋଗ), ମୋ ବିରୋଧରେ ମଧ୍ୟ ତାହାହିଁ ହେଲା । ଆଠଗଡ଼ର ତତ୍କାଳୀନ ପାର୍ଟି ସମ୍ପାଦକ ଶ୍ରୀ ବିଶ୍ୱନାଥ ସାହୁଙ୍କ ଜରିଆରେ ଏ ଅଭିଯୋଗ କରାଯାଇଥିଲା । ("କୃଷକ"— ତା ୯।୯।୧୯୫୨) ମୁଁ ଏହାର ମୁକାବିଲା କରିବା ପାଇଁ ନାନା ନିବନ୍ଧ "ନୂଆଦୁନିଆ" "ସାପ୍ତାହିକ ଗଣତନ୍ତ୍ର"ରେ କେବଳ ଲେଖି ନଥିଲି "ସୋସଲିଷ୍ଟ କର୍ମୀମାନେ ବିଚାର କରିବେ କି ?" ଏବଂ "ଧ୍ୱଂସ ଅଭିମୁଖେ ପ୍ରଜା-ସୋସଲିଷ୍ଟ ପାର୍ଟି" ନାମରେ ଦୁଇଟି ପୁସ୍ତିକା ମଧ୍ୟ ଲେଖି ପ୍ରକାଶ କରିଥିଲି । ମୋ ଇସ୍ତଫାର ସମ୍ବାଦ ପାଇ ମୋ ପୂର୍ବରୁ ଦଳତ୍ୟାଗ କରିଥିବା ଶ୍ରୀ ଗିରିଶଚନ୍ଦ୍ର ଗୁପ୍ତ ମୋତେ ଅଭିନନ୍ଦନ ଜଣାଇ ଏକ ଦୀର୍ଘ ଚିଠିରେ ମୋତେ ଅବିଳମ୍ବେ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେବା ପାଇଁ ଅନୁରୋଧ କରିଥିଲେ ।

ସୋସଲିଷ୍ଟ ଦଳର ଯୂପକାଠ କବଳରୁ ସିନା ଖସି ଆସିଲି, କିନ୍ତୁ ଏବେ କରିବି କ'ଣ ? ଏହି ବିରାଟ ପ୍ରଶ୍ନବାଚୀ ସାଙ୍ଗକୁ ଅନିଶ୍ଚିତ ଦୈନନ୍ଦିନ ଜୀବନଯାତ୍ରା, ପରିଣତି ବାମପନ୍ଥୀଙ୍କର ଦୁର୍ଣ୍ଣିବାର ଝଡ଼ ମୋତେ ପ୍ରବଳ ବେଗରେ

ବୁଲାଇବାକୁ ଲାଗିଲି । ଅତି ଦୁଃସହ ଆଉ ବିଶୃଙ୍ଖଳ ସମସ୍ତ ତାହା ମୋ ଜୀବନ ଇତିହାସର । ଖାଦ୍ୟ, ରାତି ଅତିବାହନ ସ୍ଥାନ, ବିଶ୍ରାମ ଅବସର କୌଣସି ସ୍ଥିରତା ରହିଲା ନାହିଁ । ୧୯୪୭ ମସିହାରେ ବାପାଙ୍କ ମୃତ୍ୟୁ ପରେ ଯେଉଁ ଅନିଶ୍ଚିତତାର ଶିକାର ହୋଇଥିଲି, ଠିକ୍ ପୁଣି ସେହି ଅବସ୍ଥା । ତଫାତ୍ କେବଳ, ସେତେବେଳେ ମୁଁ ଥିଲି ୧୨।୧୩ ବର୍ଷର ଅନାଥ ଅଶିକ୍ଷିତ ବାଳକ, ୧୯୫୨-୫୩ ମସିହା ବେଳକୁ ମୁଁ ୧୮।୧୯ ବର୍ଷର ଯୁବକ । ଶିକ୍ଷାଦୀକ୍ଷା, ରାଜନୈତିକ ଚେତନା ପୂର୍ବାପେକ୍ଷା ଯଥେଷ୍ଟ ଅଧିକ ଥିଲା ଓ କିଛିଟା ଖ୍ୟାତି ମଧ୍ୟ ହୋଇଥିଲା । ହେଲେ ବି ଅର୍ଥାଗମର କୌଣସି ପଥ ନଥିଲା । ଦିନ ତମାମ ଲକ୍ଷ୍ୟହୀନ ଭାବରେ କଟକ ସହର ପରିକ୍ରମା, ଆହାର—କଳର ଥଣ୍ଡାପାଣି, ଯଦି କେହି ପରିଚିତ ଲୋକ ସଦୟ ହେଲା ତା' ଘରେ ଭୋଜନ, ଏହିପରି ଅର୍ଦ୍ଧାହାର-ଅନାହାର ମଧ୍ୟରେ ସମସ୍ତ କଟେ । ରାତିରେ କେବେ ଧର୍ମଶାଳା, କେବେ ମ୍ୟୁନିସିପାଲିଟି ଅଫିସ ବାରଣ୍ଡାରେ ଶୁଏ । ମନରେ କ୍ରୋଧ, ବିଷାଦ, ଦୁଃଖ—ପାର୍ଶ୍ୱ ୭ଟା ବର୍ଷ ମସ୍ତିଷ୍କ ଚକ୍ରରେ ଧାଇଁବା ସାର ହେଲା ସିନା !

ସେତେବେଳେ ଶ୍ରୀ ନବକୃଷ୍ଣ ଚୌଧୁରୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ ।

ସ୍ଥିର କଲି, ତାଙ୍କୁ ଯାଇ ଦେଖା କରି କୈଫିୟତ୍ ମାଗିବି ମୋର ଆଜିର ଅବସ୍ଥା ପାଇଁ ଦାୟୀ କିଏ ? କାହିଁକି ସିଏ ମୋର କୌଣସି ସ୍ଥାୟୀ ବ୍ୟବସ୍ଥା ନକରି ମୋତେ ସୁରେନ୍ଦ୍ର ଦ୍ୱିବେଦୀଙ୍କ ହାତରେ ଟେକି ଦେଇଥିଲେ ? ଠିକ୍ ମନେ ପଡ଼ୁଛି, ଅପରାହ୍ନ ସେତେବେଳେ । ବୁଲି ବୁଲି ଗଲି । ଆଜିକାଲି ବାରବାଟୀ ଗଡଖାଇ ଭିତରେ ଯେଉଁ ବିରାଟ କୋଠିରେ ଓଡ଼ିଶା ହାଇକୋର୍ଟର ମାନ୍ୟବର ପ୍ରଧାନ ବିଚାରପତିମାନେ ରହୁଛନ୍ତି, ସେହି କୋଠି ସେତେବେଳେ ଥିଲା ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନ । ମୁଁ ଯାଇ କୋଠି ଦୁଆରମୁହଁରେ ଠିଆ ହେଲା ବେଳକୁ ଭିତର ବାରଣ୍ଡାରୁ ମୁଖ୍ୟମନ୍ତ୍ରୀ ନବବାବୁଙ୍କ ଦୃଷ୍ଟି ମୋ ଉପରେ ପଡ଼ିଲା । ସେ ବାରଣ୍ଡାରେ ପଦଚାରଣା କରୁଥିଲେ । ମୁଁ ଦୂରରୁ ତାଙ୍କୁ ନମସ୍କାର ଜଣାଇ ଭିତରକୁ ପଶିଲି । ସଶସ୍ତ୍ର ପ୍ରହରୀ କୌଣସି ବାଧା ଦେଲା ନାହିଁ । ନବବାବୁ ଏପାଖ ସେପାଖ ହେବା ଭିତରେ ମୋତେ ପଚାରିଲେ, "କିରେ, କୁଆଡେ ?"

"ଟିକେ ସମୟ ଦେବେ ? ମୋର କଥା ଅଛି ଆପଣଙ୍କ ସାଙ୍ଗରେ ।"

"ଓଃ, ଭି· ଆଇ· ପି· ଆସିଗଲ ସେ ସ୍ତ୍ରୀ ପାଇଁ ସମସ୍ତ ଦରକାର ! କ'ଣ କହୁଛୁ ! ଭୁତ ଆଜକାଲି ନେତା ହୋଇଗଲୁଣି । ସୋସଲିଷ୍ଟ ପାର୍ଟିରୁ ଇସ୍ତଫା ଦେଇଛୁ ସବୁ ?

"ନେତା କ'ଣ ହେଲି ? ଇସ୍ତଫା ଦେବ ନାହିଁ ? ଆପଣ ଜାଣନ୍ତି, ମୋ ପ୍ରତି କି ବ୍ୟବହାର ୭ ବର୍ଷ କାଳ କରାଯାଇଛି ?"

"ମୁଁ ଜାଣିଲେ କ'ଣ କରିବ ?"

"ଆପଣ ହିଁ ସେଥିପାଇଁ ଦାୟୀ ।"

"ମୁଁ କ'ଣ ଦାୟୀ । ତୁ କ'ଣ ଧମକାଇବା ପାଇଁ ଆସିଚୁ ମତେ ? ଦେଖୁଛୁ, ଏପରି କଏ ଛୁଆ ହୋଇଚ ।" (ବନ୍ଧୁକଧାରୀ ପ୍ରହରୀ ଆଡ଼କୁ ଆଂଗୁଳି ସଂକେତ କଲେ ମୁଖ୍ୟମନ୍ତ୍ରୀ ନବବାବୁ)

ମୁଁ ବେପରୁଆ ହୋଇ ଯାଇଥିଲି । କହିଲି, "ସିଏ ମୋର କ'ଣ କରିବ ?"

"ବାଜେ କଥା କହନା । ଯା, ତୋ ସାଙ୍ଗରେ ବକିବାକୁ ମୋର ଏଇନେ ସମୟ ନାହିଁ ।"

ମୁଁ ଉତ୍କ୍ଷିପ୍ତ ହୋଇ ଉଠିଲି—"ନା, ସମୟ କେମିତି ହବ ! ମୋର ଜୀବନଟାକୁ ନଷ୍ଟକରି···"

ମୋ ପାଟିରୁ କଥା ସରିଲା ନାହିଁ । ବନ୍ଧୁକଧାରୀ ସଶସ୍ତ୍ର ପ୍ରହରୀ ମୋତେ ଟାଣି ନେଇ ବାହାରେ ଠିଆ କରାଇ ଦେଲା । ଠିଆ ହୋଇ ବୁଲି ଅନାଇ ଦେଖିଲି, ନବବାବୁ ଅଦୃଶ୍ୟ ହୋଇଛନ୍ତି । ସ୍ଥାନ ତ୍ୟାଗ କଲା ବେଳକୁ ଆଖି-ଲୁହରେ ଝାପ୍‌ସା ଦିଶୁଥିଲା ବାଟ । ମୁଁ ବିଭ୍ରାନ୍ତି, ମୁଁ କ୍ଳାନ୍ତ, ମୁଁ ସେହିଦିନ ଶାନ୍ତ ହେବି, ଯେଉଁଦିନ ମୁଖ୍ୟମନ୍ତ୍ରୀ ନବ ଚୌଧୁରୀଙ୍କ ଚଳନ୍ତା ଗାଡ଼ି ଉପରକୁ ଢେଲଟାଏ ମାରି ପାରିବ । କ୍ରୋଧରେ ଅନ୍ଧ ହୋଇ ଏଇ ସିଦ୍ଧାନ୍ତ ନେଇ ମୁଁ ସୁଯୋଗ ଅପେକ୍ଷାରେ ଥିଲି ବହୁଦିନ ଯାଏଁ । ଆଜି ସେ କଥା ମନେ ପଡ଼ିଲେ ମୁଁ ହସେ । ଏ ଘଟଣା ହୁଏତ ନବବାବୁଙ୍କର ଆଜି ମନେ ନଥିବ । ମୋର କିନ୍ତୁ ଠିକ ମନେ ଅଛି । କାରଣ ଦୁଃଖ, ଆଘାତ, ବାଧା, ଅବରୋଧ ମୋତେ ଗତିବାନ୍ କରାଇବାରେ ସାହାଯ୍ୟ କରି ଆସିଛି ସର୍ବଦା । ତଥାପି

ସେ ସବୁ ଘଟଣା ପାଇଁ ନବବାବୁଙ୍କ ପ୍ରତି ମୋର କୌଣସି ଅଶ୍ରଦ୍ଧା ନାହିଁ । ପରବର୍ତ୍ତୀ କାଳରେ ମୋର ପ୍ରତିଷ୍ଠିତ କବି ଓ ବାମପନ୍ଥୀ ଜୀବନରେ ୧୯୭୧-୭୨ ମସିହାରେ ସେ ଓ ଶ୍ରୀମତୀ ଚୌଧୁରୀ ଘଟଣାଚକ୍ରରେ ଆସି ଉଦୟ ହୋଇଛନ୍ତି ମୋ ପରିବାର ଭିତରେ । ୧୯୭୮ ମସିହାରେ ମୋତେ ଓ ମୋର ପରିବାରକୁ ମୂଳପୋଛ କରିଦେବା ପାଇଁ ହୋଇଥିବା ସାମାଜିକ-ଷଡ଼ଯନ୍ତ୍ର, ଉକ୍ତାକ୍ତ ଆକ୍ରମଣ ଘଟଣାର ପୂର୍ବ ପର୍ଯ୍ୟନ୍ତ ସେମାନଙ୍କ ସହିତ ମୋର ଓ ମୋ ପରିବାରର ସମ୍ପର୍କ ଥିଲା ଅତ୍ୟନ୍ତ ଘନିଷ୍ଠ । ମୋର ବାସଗୃହ ସେମାନଙ୍କ ପାଇଁ ଥିଲା ସଦାସର୍ବଦା ଉନ୍ମୁକ୍ତ । ମୋର କନିଷ୍ଠପୁତ୍ରର ନାମକରଣ ନବବାବୁ ହିଁ କରିଥିଲେ । ୧୯୭୯ ସାଲରେ ପ୍ରକାଶିତ ମୋର "ବିପ୍ଳବାଣୀ" କାବ୍ୟଗ୍ରନ୍ଥ ଶ୍ରୀ ନବକୃଷ୍ଣ ଚୌଧୁରୀ ଓ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀକୃତ । ମୋର ବଡ଼ପୁଅ ପିନାକୀକୁ ମଧ୍ୟ ସେମାନେ କଟ୍ଟକରେ ଅନୁଗୋଳର ବାଜି ରାଉତ ଛାତ୍ରାବାସରେ ରଖି ପାଠ ପଢ଼ାଉଥିଲେ । ନବବାବୁ କେବଳ ଏତିକିରେ ସୀମାବଦ୍ଧ ନଥିଲେ, ମୋ ସହିତ ନାନା ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ତଥା ସାହିତ୍ୟିକ ସମସ୍ୟା ନେଇ ଆଲୋଚନା କରିବା ଠାରୁ ମୋତେ ଚିଠିଚିଠି ଚିଠି ଲେଖିବା, କଟକ ଆସିଲେ ଅତି ଭୋର୍ ରୁ ମୋ ଘରକୁ ଆସିବା, ଘରର ଜଣେ ଭଳି ପିଲମାନଙ୍କ ସହିତ, ମୋ ସ୍ତ୍ରୀ ସହିତ ବ୍ୟବହାର କରିବା, ସବୁକିଛି ଘଟିଛି । ଭାରତ ବର୍ଷରେ ନାଗରିକ ଅଧିକାର ସୁରକ୍ଷା ଆନ୍ଦୋଳନ ସମେତ ୧୯୬୯ରୁ ଆରମ୍ଭ ହୋଇଥିବା ନକ୍ସଲପନ୍ଥୀ ଆନ୍ଦୋଳନ କାଳରେ ସେ ଥିଲେ ତା'ର ତାତ୍ତ୍ୱିକ ପ୍ରବକ୍ତା ଆଉ ମୋ ବାସଗୃହ ଉପରେ ହୋଇଥିଲା ଘନଘନ ସରକାରୀ ଆକ୍ରମଣ । ସେହି ଜୁଲମାନ ଦିନଗୁଡ଼ିକରେ ନବବାବୁ ଓ ମାଳତୀ ଦେବୀ ମୋ ସହିତ ଓ ମୁଁ ସେମାନଙ୍କ ସହିତ କାନ୍ଧକୁ କାନ୍ଧ ମିଶାଇ କାମ କରିଛୁ । ୧୯୭୩ ମସିହାରେ ଓଡ଼ିଶା "ନାଗରିକ ଅଧିକାର ସୁରକ୍ଷା ସମିତି"ର ମୁଁ ସଙ୍ଗଠନ ସମ୍ପାଦକ ଥିଲାବେଳେ ଶ୍ରୀମତୀ ମାଳତୀ ଚୌଧୁରୀ ଥିଲେ ତା'ର ସଭାନେତ୍ରୀ । ସେମାନଙ୍କ ସହିତ ପରେ ପ୍ରତିଷ୍ଠିତ ହୋଇଥିବା ଏହି ଏକାତ୍ମତା, ଘନିଷ୍ଠତା, ଆତ୍ମୀୟତାର ପୁନଶ୍ଚ ପୂର୍ଣ୍ଣଚ୍ଛେଦ କାହିଁକି ପଡ଼ିଲା ତା'ର କାରଣ ପରେ ଆଲୋଚନା କରିବି ।



# କିତ୍‌ନା ବଦଲ୍ ଗୟା ଇନ୍‌ସାନ

ସେ ଯାହା ହେଉ, ଦଳୀୟ ରାଜନୀତି ପ୍ରତି ଅବିଶ୍ୱାସ କ୍ରମେ ମୋ ଭିତରେ ଦାନା ବାନ୍ଧୁଥିଲା । ଗଭୀର ହତାଶା ମଧ୍ୟ ମନକୁ ଆଛନ୍ନ କରୁଥିଲା ବାରବାର । ସାଧାରଣ ଗୋଟିଏ ଅଖ୍ୟାତ ମଣିଷ ପରି ବଞ୍ଚି ରହିବାର ପ୍ରବଳ ବାସନା ମଧ୍ୟ ପୋଷଣ କରିଥିଲି । ସେଥିପାଇଁ ଏକ ସଂସ୍ଥାନର ସନ୍ଧାନରେ ଅବିରତ ଧାଉଁଛି, କଟକ ସହରର ବହୁ ଅପରିଚିତ, ପଦସ୍ଥ ବ୍ୟକ୍ତିଙ୍କ ଦ୍ୱାରସ୍ଥ ହୋଇଛି । କିଏ ତାଚ୍ଛଲ୍ୟ କରିଛି ତ କିଏ ବିଦ୍ରୂପ କରିଛି । କିଏ ସମବେଦନା ଜଣାଇ ନିଜର ଅକ୍ଷମତା ପ୍ରକାଶ କରିଛି ତ କିଏ ସାମୟିକ ଆର୍ଥିକ ସହାୟତା ମଧ୍ୟ କରିଛି । ଦିନ ଗୁଡ଼ାକ ଦୀର୍ଘ, ସମୟ ଗୁଡ଼ାକ ଦୁଃସହ, ରାତିଗୁଡ଼ାକ ନିଦାହୀନ ପରି ଲାଗେ । ଦିନ ଯାଇ ସନ୍ଧ୍ୟା ହେଲେ କ୍ଳାନ୍ତ ଅବଶ ଦେହକୁ ଯୋଉଠି ନା ସେଇଠି ଲେଟାଇ ଦେବାକୁ ଇଛା ହୁଏ । ରାତି ଆଶ୍ରୟସ୍ଥଳ ହୋଇଉଠେ ମୋ ପାଇଁ ଏକ ପ୍ରଧାନ ସମସ୍ୟା । ଗୋଟିଏ ଘଟଣା ଏଠି ମନେ ପଡୁଛି । ଘଟଣାଟି ଲେଖିବା ଆଗରୁ କହି ରଖେ, "ଷଣ୍ଢ" ନାମକ ମୋର ଏକ କବିତା ଦିନାକେତେ ପାଠକ ମହଲରେ ଖୁବ ଆଲୋଡ଼ନ ଓ ଗୁଞ୍ଜନ ସୃଷ୍ଟି କରିଥିଲା । ୧୯୬୫ ମସିହାରେ ଏ କବିତାଟିର ରଚନା ଏବଂ ଏହା ପ୍ରଥମେ ସ୍ୱର୍ଗତ ଚିନ୍ତାମଣି ମିଶ୍ରଙ୍କ ସମ୍ପାଦିତ "ନବଜୀବନ" ପତ୍ରିକାରେ ପ୍ରକାଶ ପାଇଲା ପରେ ଖୋଦ ନବକୃଷ୍ଣ ଚୌଧୁରୀ କବିତାଟିର ଭୂୟସୀ ପ୍ରଶଂସା କରି ଚିନ୍ତାମଣି ବାବୁଙ୍କୁ କହିଥିଲେ । କବିତାଟିର ପ୍ରତିପାଦ୍ୟ ବିଷୟ ଥିଲା,—ଷଣ୍ଢ ହେଉଛି ଆଦିମ-ସାମ୍ୟବାଦୀ । ବହୁ ଧେନୁଙ୍କର ସେ ସ୍ୱାମୀ, ବହୁ ବାଛୁରିଙ୍କର ସେ ଜନକ । ହେଲେ ବି ସ୍ତ୍ରୀ ପିଲାମାନଙ୍କର ଭରଣପୋଷଣର ଦୁଶ୍ଚିନ୍ତା ତା'ର ନାହିଁ—ନଥାଏ । ସ୍ତ୍ରୀ-ପିଲା ସବୁ ନିଜ ନିଜ ଦାୟିତ୍ୱରେ ଯିଏ ଯୁଆଡ଼େ ଥା'ନ୍ତି । ଷଣ୍ଢ, କୌଣସି ସରକାର, ତା'ର ଆଇନ-କାନୁନକୁ ମାନେ ନାହିଁ, ତା' ନିଜର ଆଇନକୁ ସେ ବଳପୂର୍ବକ ଜାହିର କରେ ବୁଲିଆଡ଼େ । ମନୀଷୀ କାର୍ଲ ମାର୍କ୍ସଙ୍କ "କ୍ୟାପିଟାଲ" ବା ଦ୍ୱନ୍ଦ୍ୱମୂଳକ ବସ୍ତୁବାଦକୁ ସେ ନପଢ଼ି ମଧ୍ୟ ତାକୁ ପ୍ରତିମୂହୂର୍ତ୍ତରେ କାର୍ଯ୍ୟରେ ଲଗାଏ ।

ମଣିଷକୁ ତା'ର ବିଧାତା ଉପଦେଶ କରୁଛନ୍ତି "ଭୁଲକରେ ମଧ୍ୟ ପରଧନରେ ହାତ ଦେବୁ ନାହିଁ, ଦେଲେ ନରକରେ ପଡ଼ିବୁ। ଦରକାର ହେଲେ ତଳ ହାତରେ ମାଗିବୁ, ଆଉ ଉପର ହାତରେ ଯିଏ ଯାହା ଦେବ ତାକୁ ନେବୁ।" କିନ୍ତୁ ଷଣ୍ଢକୁ ତା'ର ବିଧାତା କହୁଛନ୍ତି ଠିକ୍ ଓଲଟା କଥା। ତାହା ହେଲା, "ଧରଣୀର ଏହି ଧନ ସମ୍ଭାର ଉପରେ ସମସ୍ତଙ୍କର ସମାନ ଅଧିକାର। ରେ ବଳବାନ୍ ବିପ୍ଳବୀ, ତୋ ଦେହରେ ମୁଁ ଦେଇଛି ଅମିତ ଶକ୍ତି ଏବଂ ଦୁଇଟା ଶାଣିତ ଶୃଙ୍ଗ। ତୋର ପ୍ରୟୋଜନ ମୁତାବକ ପରିବା ଦୋକାନରୁ ପରିବା, ପାଚିଲା ଧାନକ୍ଷେତରୁ ଧାନ, ଗୃହସ୍ଥର ନୁଆଁଣିଆ ଚାଳରୁ ନଡ଼ା ମନଇଚ୍ଛା ଖା। ଯିଏ ବାଧା ଦେଉଛି, ତା'ର ପ୍ରତିରୋଧ କର।" ଷଣ୍ଢ ଏ ନିର୍ଦ୍ଦେଶକୁ ତା' ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରେ। ତା'ର ମନ୍ତ୍ରୀ ହେବାର ମୋହ ନାହିଁ, ତା'ର ଜୀବନ ଗୃଢ଼ାପୃଷ୍ଟ ନୁହେଁ। ମୋର "ବିବିଧ" ନାମକ ଗ୍ରନ୍ଥରେ "ପ୍ରଳାପ" ନାଁରେ ଏକ ରମ୍ୟରଚନା ଅଛି। ସେଥିରେ ମୁଁ ଲେଖିଛି, ମନୀଷୀ କାର୍ଲମାର୍କସ୍ ଓ ତାଙ୍କର ସହଯୋଗୀ ଦାର୍ଶନିକ ଏଙ୍ଗେଲ୍ସ୍ ଯଦି ଆଜି ଜୀବିତ ଥାନ୍ତେ ଓ ସେମାନଙ୍କ ସହିତ ମୋର ଯଦି ବ୍ୟକ୍ତିଗତ ସମ୍ପର୍କ ବା ପରିଚୟ ଥାନ୍ତା, ତାହେଲେ ମୁଁ ତାଙ୍କୁ ନିଶ୍ଚୟ ଚିଠି ଲେଖି ଜଣାଇଥାନ୍ତି, "ମହାଶୟଦ୍ୱୟ ! ଆପଣମାନେ ଜାଣନ୍ତିକି ନାହିଁ ତା ଅବଶ୍ୟ ମୁଁ ଜାଣେନାହିଁ, ଆପଣ-ମାନଙ୍କ ରଚିତ ବିଶ୍ୱ ସର୍ବହରା ଶ୍ରେଣୀର 'ବାଇବେଲ୍' କମ୍ୟୁନିଷ୍ଟ-ଇସ୍ତାହାର ନପଢ଼ି ଆମ ଭାରତର ଓଡ଼ିଶା ପ୍ରଦେଶର ସୁପ୍ରାଚୀନ ସହର କଟକର ନୟାସଡ଼କରେ ଗୋଟିଏ ଜୀବ ବୁଲାଚଲା କରେ, ଯିଏକି ଜନ୍ମରୁ କେବଳ ପ୍ରଗତିଶୀଳ ନୁହେଁ, ବିପ୍ଳବୀ ଆଉ ବେପରୁଆ, ଆପଣମାନଙ୍କ ଦ୍ୱନ୍ଦ୍ୱମୂଳକ ବସ୍ତୁବାଦର ଚଳନ୍ତି ପ୍ରତିମା। ସେ ଜୀବଟି ହେଉଛି ଷଣ୍ଢ। ଆପଣମାନଙ୍କ 'ଥିଓରି' ପୃଥିବୀରେ ଜନ୍ମ ହେବାର ବହୁ ଆଗରୁ ତାର ଜନ୍ମ। ଯଦି ସମୟ ବା ବାଟଖର୍ଚ୍ଚ ଥାଏ, ତାହେଲେ ଦୟାକରି ଥରେ ଆସି ଏହି ଆଦିମ-ସାମ୍ୟବାଦୀ ଜନ୍ତୁଟିକୁ ଦେଖିଯାନ୍ତୁ ଏବଂ ତାକୁ ପୃଥିବୀର ପ୍ରଥମ କମ୍ୟୁନିଷ୍ଟ ଭାବରେ ସ୍ୱୀକୃତି ଦିଅନ୍ତୁ।"

ଷଣ୍ଢର ଏ ପ୍ରସଙ୍ଗଟା ଏଠି ଉତ୍ଥାପିତ ହେବାର କାରଣ ହେଲା, କଟକ ବୁଢ଼ାମାଟଚୌକ ଛକରେ ଥିବା ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟି ଅଫିସର ତଳ ମହଲାରେ କାହାର ଅନୁମତି ନନେଇ, ମୁଁ ଦିନଯାକ ବୁଲାବୁଲି ରାତିରେ ଆସି

ସେଇମିତି ତଳେ ଶୋଇ ପଡ଼ୁଥିଲି । ମୋ'ଠାରୁ ଟିକେ ଦୂରରେ ସେଇ ତଳ ମହଲର ପ୍ରବେଶ ପଥରେ ଗୋଟିଏ କାଳିଆ ଷଣ୍ଢ ଶୋଇଥିଲା । ୭/୮ ଦିନ ସେଠି ଶୋଇଲା ପରେ ଜଣେ ଭୁଙ୍ଗ କମ୍ୟୁନିଷ୍ଟ ନେତାଙ୍କ ଦ୍ୱାରା ରାତି ପ୍ରାୟ ୧୦ଟା ବେଳେ ମୁଁ ସେଠୁ ବିତାଡ଼ିତ ହୋଇଥିଲି । ଷଣ୍ଢଟା କିନ୍ତୁ ନିୟମିତରେ ଶୋଇ ପାଗୁଳି କରୁଥିଲା । ଘଟଣା ହେଲା, ଦିନେ ରାତି ୯ଟା ବେଳେ ଲୁଇମାର୍କେଟ୍ ଛକରେ ଥିବା ମୁଷ୍ଟା ବେହେରାଙ୍କ ଚା' ଦୋକାନରୁ ଚା' ପିଇ ଦୋକାନ ସାମ୍ନା ଆରପଟେ ଥିବା କମ୍ୟୁନିଷ୍ଟ ପାର୍ଟି ଅଫିସକୁ ଅନାଇ ଦେଖିଲି, ଅଫିସର ତଳ ମହଲା ଅବ୍ୟବହୃତ—ସବୁବେଳେ କବାଟ ଖୋଲା । ଉପର ମହଲାରେ ଅଫିସ ! ତଳମହଲା ଦେଇ ଅଫିସକୁ ପ୍ରବେଶ ପଥ । ପ୍ରବେଶ ପଥର ଆରମ୍ଭରେ ଦୁଇ ପାଖରେ ଦୁଇଟା ସିମେଣ୍ଟର ବେଞ୍ଚ୍ । ସ୍ଥିର କଲି, ସେଇ ତଳମହଲାର ପ୍ରବେଶପଥର ଗୋଟାଏ କଡ଼କୁ ଶୋଇପଡ଼ିବ । ଗଲି । ଭିତରଟା ଅନ୍ଧକାର । ଘଣ୍ଟୁ ଘଣ୍ଟୁ ଫଁ କରି ଗୋଟାଏ କାହାର ନିଃଶ୍ୱାସ ଶୁଣାଗଲା ଅନ୍ଧକାର ମଧ୍ୟରୁ । ପାଦ ଅଟକି ଗଲା । ଦଣ୍ଡେ ଠିଆ ହୋଇ ଅନ୍ଧକାର ଭିତରେ ନିରୀକ୍ଷଣ କରି ଦେଖିଲି ଗୋଟାଏ ବିପୁଳ କାଳିଆ ଷଣ୍ଢ ରାସ୍ତା ଆଡ଼କୁ ମୁହଁ କରି ଶୋଇ ପାଗୁଳି କରୁଛି । ତାର ଉପସ୍ଥିତି ଜଣାଇ ଦେବାପାଇଁ ସେ ପ୍ରଥମେ ଫଁ କରି ନିଶ୍ୱାସ ମାରିଥିଲା । ନିରୁପାୟ ହୋଇ ସେହି ସିମେଣ୍ଟ୍ ବେଞ୍ଚ ଉପରେ ଧୂଳି ଫୁଙ୍କି ଶୋଇ ପଡ଼ିଲି ଜାକ-ଜୁକ ହୋଇ । ୭/୮ ଦିନ ସେଠି ଶୋଇଛି । ଷଣ୍ଢଟା ମଧ୍ୟ ସବୁଦିନ ରାତିରେ ସେଠି ଶୋଇବାର ଦେଖିଛି । ଦିନକର କଥା । ରାତି ପ୍ରାୟ ୧୧ଟା ହେବ । ମୁଁ ବୁଲି ବୁଲି ଆସି ସେହି ପରିଚିତ ସିମେଣ୍ଟ ବେଞ୍ଚକୁ ନଇଁ ପଡ଼ି ଫୁଙ୍କୁଛି ଧୂଳି ପରିଷ୍କାର କରିବା ଉଦ୍ଦେଶ୍ୟରେ, ହଠାତ୍ ମୋ ପଛରେ ଜଣେ ସ୍ୱାସ୍ଥ୍ୟବାନ୍ ଧଳା ଧୋତି ପଞ୍ଜାବୀ ପିନ୍ଧା, ଆଖିରେ ମୋଟାଫ୍ରେମ୍‌ର ଚଶମା ଦିଆ ମୋଟା ନିଶବାଲା ଲୋକ ଠିଆ । ମୁଁ ଚମକି ପଡ଼ି ଠିଆ ହୋଇ ତାଙ୍କୁ ଅନାଇଲି । ରାସ୍ତା ବତୀଖୁଣ୍ଟର ଆଲୋକରେ ତାଙ୍କ ଚଶମାର କାଚ ଚକ୍ ଚକ୍ କରୁଥିଲା । ସେ ଥରେ ମୋତେ ନିରେଖି ଦେଖିନେଇ ତାଙ୍କର ଗମ୍ଭୀର କଣ୍ଠରେ ପଚାରିଲେ, "ତମେ ଏଠି ସବୁଦିନେ ଶୋଉଚ ?"

"ଆଜ୍ଞା, ହଁ ।" ମୁଁ ନମ୍ର ଦମ୍ଭିତ ଜଣାଇଲି ।

"ନା, ନା ଏଠି ଶୁଆଶୁଇ ଚଳିବ ନାହିଁ । ତମେ କିଏ ? ତମ ଘର କୋଉଠି ? କ'ଣ କର ?" ଏକାବେଳକେ ବହୁତ ଗୁଡ଼ିଏ ପ୍ରଶ୍ନ ମୁଁ କଣ୍ଟ ନକଲ୍ପ ମାରବାରେ ବେଞ୍ଚଟି ଉପରେ ବସିଲି । ହା ଭାଗ୍ୟ ! କି ନିଷ୍ଠୁର ପରିହାସ ମୋର ! କାହିଁ ? ମୋଠୁଁ ଟିକେ ଦୂରରେ ଶୋଇ ପାଗୁଳି କରୁଥିବା କାଳିଆ ଷଣ୍ଢଟୁ ତ ଏ ଭଦ୍ରଲୋକ କିଛି ପଚାରୁ ନାହାନ୍ତି !! ମୁଁ କ'ଣ ଷଣ୍ଢ ଠାରୁ ବି ପତିତ ? ଷଣ୍ଢଟା ପ୍ରତି ମୁଁ ସେଦିନ ଈର୍ଷାରେ ଜଳି ହୋଇ ଯାଉଥିଲି । ଲୋକଟି କିନ୍ତୁ ନାଛୋଡ଼ ବନ୍ଧା । ସେ ପୁଣି ଗର୍ଜି ଉଠିଲେ, "କିହୋ, ବସିଲ କାହିଁକି ? ତମକୁ ପରା କହିଲି ଏଠି ଶୁଆଶୁଇ ଚଳିବ ନାହିଁ । ଯାଅ, ଉଠ ।"

ଉଠିଲି । ଆସିଲି ରାସ୍ତା ଉପରକୁ । ପାଖ ଦୋକାନରୁ ଫିଲ୍ମୀ ରେଡ଼ିଓରୁ ଭାସି ଆସୁଥିଲା, "ଚାନ୍ଦ୍ ନ ବଦଲା, ସୂରଜ୍ ନ ବଦଲା ନ ବଦ୍‌ଲାରେ ଆସମାନ—କିତ୍‌ନା ବଦଲ୍ ଗୟା ଇନ୍‌ସାନ୍ ।" ଲୋକଟି କିନ୍ତୁ ଠିଆହୋଇ ତାର ମୋଟା ଚଶମା ତଳୁ ତୀବ୍ର ଦୃଷ୍ଟିରେ ମୋର ବିଦାୟଦାନକୁ ଉପଭୋଗ କରୁଥିଲା ପରି ମନେ ହେଉଥିଲା ।

ଏ ଲୋକଟି ଆଜିବି ସି. ପି. ଆଇ.ର ଜଣେ ତୁଙ୍ଗ ନେତା ଓ ଓଡ଼ିଶା ବିଧାନସଭାର ସଦସ୍ୟ । ଏକଦା ଓଡ଼ିଶାରୁ ଇଏ ମଧ୍ୟ ଋଷିଆ ଯାଇଥିଲେ । ତାଙ୍କ ଋଷିଆ ଭ୍ରମଣର ଅନୁଭୂତି ସମ୍ବଳିତ ପୁସ୍ତକଟିକୁ ମୁଁ ଦିନେ ପୁରାପୁରି ଘୋଷି ଦେଇଥିଲି । ଅତୀତରେ ମୋ ପ୍ରତି ତାଙ୍କର ଏ ବ୍ୟବହାର ପାଇଁ ମୋର କୌଣସି ଆକ୍ଷେପ ନାହିଁ । ବରଂ ଆଜିବି ତାଙ୍କ ପ୍ରତି ମୋର ଅଶେଷ ସମ୍ମାନ ଅଛି । ବାଟରେ ଘାଟରେ, ସଭାସମିତିରେ ଦେଖାହେଲେ ସ୍ମିତ ହସଟିଏ ହସି ସେ ମୋର କୁଶଳ କାହାଣୀ ପଚାରନ୍ତି । ମୁଁ ମଧ୍ୟ ତାଙ୍କୁ ସେହିପରି ବ୍ୟବହାର କରେ ।

ତେଣୁ ୧୯୫୩-୫୪ ମସିହାରୁ ୧୯୬୫ ମସିହା ଭିତରେ ଷଣ୍ଢ ହୋଇଥିଲା ମୋର ଗବେଷଣାର ଜୀବ । ତା'ର ସ୍ୱାଭାବିକ କତିପୟ ବୈଶିଷ୍ଟ୍ୟ ସହିତ ମୁଁ ଦେଶର ବହୁ ଭଣ୍ଡ ବାମପନ୍ଥୀ, "କମ୍ୟୁନିଷ୍ଟ" ବୋଲାଉଥିବା ଦଳମାନଙ୍କ ଚରିତ୍ରକୁ ତଉଲି କରି ପରିଶେଷରେ "ଷଣ୍ଢ ହେ, ତମେ ଦଣ୍ଡବତ ମୋ ଘେନ"

ବୋଲି କହି ଷଣ୍ଢକୁ ସଲାମ ଠୁକିଛି ଏହି କାରଣରୁ, ଷଣ୍ଢର ନିତିଦିନିଆ ଜୀବନ, ସେଦିନ କମ୍ୟୁନିଷ୍ଟ ପାର୍ଟିର ଅଫିସରେ ମହଲାରେ ତା'ର ଅଜାଣ୍ଟ- ଜବରଦସ୍ତ ଉପସ୍ଥିତି, ଏ ଦେଶର ଶଠ ବାମପନ୍ଥୀମାନଙ୍କ ପ୍ରତି ଏକ ଚରମ ଉପହାସ ବୋଲି ଧରି ନେଇଛି ।

ହଁ, ସେଦିନ କମ୍ୟୁନିଷ୍ଟ ପାର୍ଟି ଅଫିସରୁ ତଡ଼ା ଖାଇ ମାରବାଡ଼ରେ ଆସି କାଳିଗଳିରେ ଥିବା ମୁକ୍ତାରଖାନା ଉପରେ ଶୋଇ ପଡ଼ିଥିଲି ।

ସେହି ମୁକ୍ତାରଖାନାର ଚିହ୍ନବର୍ଣ୍ଣ ଆଜି ନାହିଁ । ହେଲେ ମୋ ଜୀବନରେ ତାହା ଅବିସ୍ମରଣୀୟ । ତାହା ଥିଲା ପୁରୁଣା ଜମିଦାରମାନଙ୍କର କଚେରିଘର ବା 'ମେଲ୍' ଘର । ବେଞ୍ଚ, ଟେବୁଲମାନ ପଡ଼ିଥାଏ ଘରରେ ବା । ତା'ର ଉପରେ ଅଖିଆ-ଅପିଆ ବୁଲି ବୁଲି ଆସି ଶୁଏ । ବେଞ୍ଚ ତଳେ ୨।୪ଟା ବୁଲା କୁକୁର ମଧ୍ୟ ଶୁଅନ୍ତି । ବହୁତ ରାତି ମୋର ଏହି ମୁକ୍ତାରଖାନାଟିରେ କଟିଛି । ଏହି ବିଷାଦମୟ ଲକ୍ଷ୍ୟହୀନ ଦିନଗୁଡ଼ିକରେ ଉଦୟ ହୋଇଥିଲେ ଜଣେ ଦରଦୀ ମହାପ୍ରାଣ ମଣିଷ । ମୁକ୍ତାରଖାନାର ସମ୍ମୁଖ ଭାଗରେ ଓଡ଼ିଶା ହାଇକୋର୍ଟ । ରାସ୍ତାର ଠିକ କଡ଼ରେ "ଜୟହିନ୍ଦ ହୋଟେଲ" ନାମରେ ଏକ ହୋଟେଲ ବା ଜଳଖିଆ ଦୋକାନ । ସେହି ହୋଟେଲଟି ଆଜିବି ଅଛି । କିନ୍ତୁ ତା'ର ସାଇନବୋର୍ଡ଼ ବଦଳି ହୋଇଛି "ହୋଟେଲ ପାରାଡାଇଜ ।" ସେହି ହୋଟେଲର ମାଲିକ ଦାଶରଥୀ ସାହୁ । ମୁକାମ—କାଠଯୋଡ଼ି ଆରପଟ ଭୁବନେଶ୍ୱର ରାସ୍ତା କଡ଼ରେ ଥିବା ଗୋପାଳପୁର । ଦାଶରଥୀ ସାହୁଙ୍କର ବଡ଼ପୁଅ । ହରି ସାହୁ ହେଲେ ସବା ବଡ଼ । ମୁକ୍ତାରଖାନାରେ ଆପାତ୍‌ କ୍ରୋଧ ଭାବରେ ମୋର ଜୀବନ ବଢ଼ୁଥିବା ବେଳେ ହରି ସାହୁଙ୍କ ସହିତ ପରିଚୟ ହୋଇ ତାହା ଚରମ ବନ୍ଧୁତ୍ୱ ଓ ଆତ୍ମୀୟତାର ଚୂଡ଼ାନ୍ତ ପର୍ଯ୍ୟାୟରେ ପହଞ୍ଚି ଥିଲା । ମୋର ଅନିଶ୍ଚିତ ଜୀବନ ଯାତ୍ରାରେ ସେ ବ୍ୟଥିତ ହେଉଥିଲେ । ସେ ଯେତେବେଳେ ଆବିଷ୍କାର କଲେ ମୁଁ ଅର୍ଦ୍ଧାହାର ଅନାହାରରେ ଜୀବନ ବଞ୍ଚାଉଛି, ସେତେ- ବେଳେ ସେ ଧୀରେ ଧୀରେ ମୋର ଇତିବୃତ୍ତ ଜାଣିବାକୁ ଚେଷ୍ଟା କଲେ । କିଛି କାମତ ନଥାଏ ମୋର । ତାଙ୍କର ହୋଟେଲରେ ବସି ଷଡ଼ଯନ୍ତ୍ର, କବିତା ଲେଖେଁ । ହରିବାବୁ ମୋର ଇତିହାସ ମୋଟାମୋଟି କିଛିଟା ଜାଣି ସାରିବା ପରେ ମୋତେ ତାଙ୍କ ହୋଟେଲ୍‌ରେ ରହିବାକୁ ସୁବିଧା ଦେଲେ ।

ରାତିରେ ହୋଟେଲରୁ ଗ୍ରାହକମାନେ ଗଲା ପରେ ସେ ସେତେବେଳେ ନିଜ ରାତ୍ରି ଭୋଜନରେ ବସନ୍ତି ମୋତେ ବାଧ କରନ୍ତି ଏକା ଟେବୁଲ୍‌ରେ ବସି ଖାଇବା ପାଇଁ । ଦିନେ ମୁଁ ତାଙ୍କୁ କହିଲି, "ହରିବାବୁ, ଏଇଟା ତମର ଘର ନୁହଁ—ହୋଟେଲ୍, ସବୁଦିନେ ମୋତେ ଖାଇବାକୁ ବାଧ କଲେ ଚଳିବ ? ଯେତିକି ମତେ ସାହାଯ୍ୟ କରୁଛ ତାହା ଯଥେଷ୍ଟ ।" କିନ୍ତୁ ଆଶ୍ଚର୍ଯ୍ୟ, ତାଙ୍କ ଆଖିତଳେ ଲୁହର ଦରିଆ ଟଳମଳ କଲେ । ସେ ବାଷ୍ପରୁଦ୍ଧ କଣ୍ଠରେ କହନ୍ତି, "ଛି ରବିବାବୁ, ଆପଣ ମୋତେ ଏତେ ଛୋଟଲୋକ ବୋଲି ଭାବି ପାରିଲେ ! ଆପଣ ଦେଶ ପାଇଁ କି କଷ୍ଟ ନକରିଛନ୍ତି ! ଭଗବାନ କରନ୍ତୁ ଆପଣଙ୍କର ସୁଖର ଦିନ ଆସୁ । ମୁଁ ତ ଆପଣଙ୍କୁ ପର ବୋଲି ଭାବି ନାହିଁ ! କିଏ କ'ଣ ନେଇଯିବ ଦୁନିଆରୁ ? କଥାଟା କାଳକାଳକୁ ରହିବ । ସେମିତି କୁହନ୍ତୁ ନାହିଁ, ଆସନ୍ତୁ ଖାଇବା । ଆପଣ ନଖାଇଲେ ମୁଁ ଖାଇବି ନାହିଁ ।"

ଆଜି ସେଦିନର କଥା ମନେ ପଡ଼ିଲେ ମୋର ଇଚ୍ଛାହୁଏ, ମୁଁ ଚିତ୍କାର କରି କହିଉଠନ୍ତି—ଦେଖ ଦେଖ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ, ଆସି ଦେଖିଯାଅ ମୋତେ ସେଦିନ ତମ ଅଫିସରୁ ବାଟରେ ପଡ଼ିଥିବା କମ୍ୟୁନିଷ୍ଟ ନେତା ଜଣକ, ଏଇ ହରିସାହୁଙ୍କୁ ! ଏ ଲୋକଟିର କୌଣସି ରାଜନୀତି ନାହିଁ, ବିଶେଷ ଶିକ୍ଷାଦୀକ୍ଷା ନାହିଁ, ସାମାନ୍ୟ ଜଣେ ଭାତ-ବ୍ୟବସାୟୀ । ଛାତି ଯାର କେତେବଡ଼ ଚଉଡ଼ା, ମନଟା ବିଶାଳ ଆଉ ଉଦାର । ଇତିହାସ ଯାକୁ ମନେ ରଖିବାର କୌଣସି କାରଣ ନାହିଁ । ତଥାପି ଏ ଲୋକଟି ମଣିଷପଣିଆର ଏକ ଅଦୃଶ୍ୟ ମେଘାସନ । ଆଉ ତମେମାନେ ? ତମେମାନେ ବାମନ, ତାର ପାଦଦେଶରେ ।

ଏ ଘଟଣା ପରଠାରୁ ମୁଁ ତାଙ୍କର ସହାୟତାକୁ କେବେହେଲେ ପ୍ରତ୍ୟାଖ୍ୟାନ କରିନାହିଁ । ଦୁଇ କଳ୍ପିତ ସହୋଦର ପରି ଜୀବନ ବିତିଛି ଆମର । ହରିସାହୁଙ୍କର ଆଉ ଏକ ଜଳଖିଆ ଦୋକାନ ଏବଂ ହୋଟେଲ ଥିଲା ଦରଘାବଜାର ଛକରେ । ହୋଟେଲ ପଛକୁ ତାଙ୍କର ଦୁଇ ବଖରା ଘର । ସେ ଘରେ ତାଙ୍କ ସାନଭାଇ ଦେବ ଅର୍ଥାତ୍ ଦେବେନ୍ଦ୍ରନାଥ ସାହୁ, ଯିଏକି ଆଜି ଜଣେ ଏମ୍. ବି. ବି. ଏସ୍. ଡାକ୍ତର, ସେତେବେଳେ ରହି ପାଠ ପଢୁଥିଲା ।

ସେହି ଘରଟିକୁ ଛାଡ଼ିବାକୁ ୧୯୬୦ ମସିହା ପର୍ଯ୍ୟନ୍ତ ଡାଭିନ୍ସି ସମସ୍ତଙ୍କର ମୋଟେ ଆନାଗ୍ରହତାରେ ସ୍ମୃତି ଦେଇଥିଲେ । ସେଇ ଦୁଇବଖରା ଘରର ଇତିହାସ କିଛି କମ୍ ନୁହେଁ । ସେହି ଘରେ ଦୀର୍ଘଦିନ ଧରି କବି ଗୋଦାବରୀଶ ମହାପାତ୍ର ଜୀବନ ବିତାଇ ଥିଲେ । ସେହି ଘରେ ଲକ୍ଷ୍ମୀଛଡ଼ା ଜୀବନ ଯାପନ କରୁଥିବା ବେଳେ ମୋର ପ୍ରଥମ କାବ୍ୟଗ୍ରନ୍ଥ "ପଥପାନ୍ତର କବିତା" ପ୍ରକାଶିତ ହୋଇଥିଲା, "ଚରମପତ୍ର" କାବ୍ୟଗ୍ରନ୍ଥରେ ଥିବା କେତୋଟି ରୋମାଞ୍ଚକର ପ୍ରେମ-କବିତାର ଜନ୍ମ ସେହି ଘରେ, ସେହି ଘରଟି ଭିତରେ ଏକଦା କାମଳ-ରୋଗାକ୍ରାନ୍ତ ଅବସ୍ଥାରେ ଶଯ୍ୟାଶାୟୀ ଥିବାବେଳେ ଦିନେ ସ୍ୱତରେ ସ୍ୱର୍ଗତ କବି ଡଃ ମାୟାଧର ମାନସିଂହ ମୋର ଅସୁସ୍ଥତାର ସମ୍ବାଦ ପାଇ ଛତରବଜାରରୁ ମୋ ପାଇଁ କିଛି ଚକଟା ପରିବା ଏବଂ ଫଳ ଧରି ଡ଼ାକ୍ତର ସୁଧାକର ଆଚାର୍ଯ୍ୟଙ୍କୁ ସାଙ୍ଗରେ ନେଇ ମୋତେ ଦେଖିବାକୁ ଆସି ଅନେକ ସମୟ ଧରି ମୋ ପାଖରେ ବସିଥିଲେ ଆଉ କହିଥିଲେ, "ଏ ଦେଶ ପ୍ରତିଭାର ଏକ ମରୁଭୂମି । ଏ ଚରିବା ଗୁଡ଼କୁ ସିଦ୍ଧାକରି ନିଶ୍ଚୟ ଖାଇବ । ତମର ଏ ଅବସ୍ଥା କଥା ଶୁଣି ମୁଁ ବାଧ୍ୟ ହୋଇ ଆସିଲି ।" ସେତେବେଳେ ଗୋଟିଏ ମାତ୍ର କବିତା ଗ୍ରନ୍ଥ ପ୍ରକାଶିତ ହୋଇଥିବା ଜଣେ ଅନାମଧେୟ ଯୁବକ ମୁଁ । ଦୀର୍ଘକାଳ ଧରି କାମଳ ରୋଗାକ୍ରାନ୍ତ । ମୋର ଇତିଲି ନେବାକୁ କେହି ନାହାନ୍ତି । ପାଖରେ କପର୍ଦ୍ଦକ ଶୂନ୍ୟ । ମୋର ଏପରି ଅବସ୍ଥାରେ ବ୍ୟଥିତ ହୋଇ ଡଃ ମାନସିଂହଙ୍କ ପରି କବି ମୋତେ ଦେଖିବାକୁ ଆସିବେ, ମୋ ପାଇଁ ପରିବା ଏବଂ ଫଳ ସାଙ୍ଗରେ ଧରି, ଜଣେ ଡ଼ାକ୍ତରଙ୍କୁ ନେଇ, ଏହା ମୋ ପକ୍ଷରେ କେତେ ବିସ୍ମୟକର, କେତେ ପ୍ରେରଣାଦାୟକ, କେତେ ହୃଦ୍ୟତାର ପରିଚାୟକ, ତାହା ପାଠକେ ଅନୁମାନ କରନ୍ତୁ । କୃତଜ୍ଞତା, ମାନବିକ ଋଣଭାରରେ ସେଦିନ ମୁଁ ରୋଗଶଯ୍ୟାରେ ଭାରାକ୍ରାନ୍ତ ହୋଇ ଉଠିଥିଲି । ଆଶାବାଦୀ ହୋଇ ଆରୋଗ୍ୟ ଦିଗକୁ ଗତି କରିଥିଲି ଦ୍ରୁତ ଏହି କାରଣରୁ ଯେ, ଆମର ପୂର୍ବସୂରୀ-ମାନେ ଆମ ପ୍ରତି ସଦୟ ଆଉ ସଜାଗ । ଆଜି ଡଃ ମାନସିଂହ ଇହଧାମରେ ନାହାନ୍ତି; କିନ୍ତୁ ସେତେବେଳର ସେ ଘଟଣା ମୋର ଅମୂଛିମୟ ହୋଇ ରହିଛି । ତା ପରେ ମୁଁ ସୁସ୍ଥ ହୋଇ ମୋର ଦୁର୍ବାର ଅଭିଯାତ୍ରା ଆରମ୍ଭ କରିଛି । ଡଃ ମାନସିଂହ 'ଓଡ଼ିଶା ସାହିତ୍ୟ ଏକାଡେମୀ'କୁ ଅଭିଯୁକ୍ତ କରି ପ୍ରବନ୍ଧ ପ୍ରକାଶ କରିଛନ୍ତି ଦୈନିକ "ମାତୃଭୂମି"ରେ ଯେ, ଏ ଦେଶର କବି-ସାହିତ୍ୟିକ-

ମାନଙ୍କର କୌଣସି ନିର୍ଭରତା ନଥିଲା ବେଳେ ସାହିତ୍ୟ ଏକାଡେମୀ ମଧ୍ୟ ସେଥି ପ୍ରତି ଉଦାସୀନ । ତା'ର ଉତ୍ତରରେ ତତ୍କାଳୀନ ସାହିତ୍ୟ ଏକାଡେମୀର ସମ୍ପାଦକ ଶ୍ରୀ ଗୌରୀ କୁମାର ବ୍ରହ୍ମା ସେହି "ମାତୃଭୂମି" ସ୍ତମ୍ଭରେ ଏକାଡେମୀ ବହୁ ଦୁସ୍ଥ ସାହିତ୍ୟିକଙ୍କୁ ସାହାଯ୍ୟ କରି ଆସୁଛି ମର୍ମରେ ମଧ୍ୟ ପ୍ରବନ୍ଧ ଲେଖିଛନ୍ତି । ତାର ପ୍ରତିଉତ୍ତରରେ ଡଃ ମାନସିଂହ ତାହାକୁ ଭିତ୍ତିହୀନ ବୋଲି ପ୍ରତିପାଦିତ କରିବାକୁ ଯାଇ ତାଙ୍କର ଆଉ ଏକ ପ୍ରବନ୍ଧରେ ଏକଥା ମଧ୍ୟ ଲେଖିଥିଲେ ଯେ ସେ ଜଣେ ଉଦୀୟମାନ କବି ରବି ସିଂକୁ ସ୍ୱୀକରେ ଯାଇ ଚନ୍ଦା ସାହାଯ୍ୟ ଦେଇ ଆସିଛନ୍ତି । ୧୯୫୯-୬୦ ମସିହାର ଘଟଣା ବୋଧହୁଏ ଇଏ ! ଡଃ ମାନସିଂହଙ୍କର ଏପରି ମନ୍ତବ୍ୟରେ ମୁଁ ସେଦିନ ହତବାକ୍ ଆଉ ଲଜ୍ଜିତ ହୋଇଥିଲି । ମୋର ମହିମ୍ବାନ ଦାରିଦ୍ର୍ୟକୁ ଜଣେ ଉଚ୍ଚ ବୁଦ୍ଧିଜୀବୀ, ଶିକ୍ଷାବିତ୍, କବି ଏପରି ଭାବରେ ପ୍ରଦର୍ଶିତ କରିବାଟାକୁ ମୁଁ କେବଳ ପସନ୍ଦ କରି ନଥିଲି ତାହା ନୁହେଁ, କବି ଗୋଦାବରୀଶ ମହାପାତ୍ର ମଧ୍ୟ ସେଥିରେ ଦୁଃଖ ପ୍ରକାଶ କରି କହିଥିଲେ, "ଏକଥା ଲେଖିନଥିଲେ କ'ଣ ଚଳିନଥାନ୍ତା ?" ଏ ଘଟଣା ପରଠାରୁ ପ୍ରବୀଣ କବି ଲେଖକମାନଙ୍କ ପ୍ରତି ମୁଁ ବିରୂପ ହୋଇ ଉଠିଥିଲି । ସେହି ଘରେ ଥିବାବେଳେ ମୋ ଜୀବନରେ ଆସିଥିଲା ପ୍ରଥମ-ପ୍ରେମ । ମୋର ତତ୍କାଳୀନ ପ୍ରେମିକା କୁମାରୀ ବକୁଳ ଘୋଷ, ଯିଏ କି ପଶ୍ଚିମବଙ୍ଗ ଚବିଶ ପ୍ରଗନା ଜୟନଗର ଗ୍ରାମର ୬ଅମୂଲ୍ୟ ଚନ୍ଦ୍ର ଘୋଷଙ୍କ କନିଷ୍ଠ କନ୍ୟା, ଯିଏ କି ବଙ୍ଗଳାର ଖାଦ୍ୟ ତଥା ବନ୍ଦୀ ଆନ୍ଦୋଳନରେ ନିଜକୁ ସାମିଲ କରି ଏକାଧିକ-ଥର କାରାବରଣ କରିଥିଲା, ଯିଏ କି ଆଜି ମୋର କେବଳ ସହଧର୍ମିଣୀ ନୁହେଁ, ମୋର ପ୍ରତିଭାର ଦୀର୍ଘକାଳର ସଜାଗ-ପ୍ରହରୀ, ମୋର ବାନ୍ଧବୀ, ବହୁ ଚରମ ବିପ୍ଳବୀ କାର୍ଯ୍ୟକଳାପର ଜୀବନ୍ତ ତଥା ଗୋପନ ଇତିହାସ, ତାକୁ ବିବାହ ପରେ ଆମର ପ୍ରଥମ ମଧୁ-ରଜନୀ ଅତିବାହିତ ହୋଇଥିଲା ସେହି ଘରେ । ସେହି ଘରେ ଥିବାବେଳେ ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଆରମ୍ଭ ହୋଇଥିଲା ଏବଂ ପ୍ରବଳ ବିକ୍ରମରେ ଆଗୁସାର ହେଉଥିଲା ତରୁଣ-ପ୍ରବୀଣ ସଂଘର୍ଷ, ନୂତନ ମୂଲ୍ୟବୋଧ ଏବଂ ତରୁଣ ପ୍ରତିଭାର ଅଧିକାର ପାଇଁ ଉତ୍କର୍ଷପୂର୍ଣ୍ଣ ବୈପ୍ଳବିକ ସଂଗ୍ରାମ, ଯେଉଁ ସଂଗ୍ରାମର ସେନାପତିତ୍ୱ କରିଥିଲି ମୁଁ ନିଜେ ଓ ମୋର ସହଯୋଗୀ ଦିବ୍ୟାରଶ୍ମି ମହାପାତ୍ର । ଯେଉଁ ସଂଗ୍ରାମ କି ପରବର୍ତ୍ତୀ କାଳରେ

ଅର୍ଥାତ୍ ଆଜି ମୋତେ ମୋର ନିର୍ଦ୍ଦିଷ୍ଟ ଆସନ ଦେବା ସଙ୍ଗେ ସଙ୍ଗେ ବହୁ ଯୁବ-ଲେଖକଙ୍କୁ ପ୍ରତିଷ୍ଠିତ କରିଛୁ, ସେମାନଙ୍କ ସାଧନାର ପଥକୁ ସୁଗମ କରିଛୁ, ଓଡ଼ିଆ ସାହିତ୍ୟର କାଏମି ସ୍ୱାର୍ଥକୁ ଛିନ୍ ଛିନ୍ କରି ତା'ର ବାହକ-ମାନଙ୍କୁ ଇତିହାସର ଅଳିଆଗଦାରେ ନିକ୍ଷେପ କରିଛୁ । ସେହି ଘରେ ଥିବା-ବେଳେ ବିତିଥିବା ଜୀବନ, ତା'ର ପ୍ରତିଟି ମୁହୂର୍ତ୍ତ ଥିଲା ଦାରୁଣ, ନିଃସଙ୍ଗ, ସାଧନାମୁଖର, ଅର୍ଦ୍ଧାହାର-ଅନାହାର ରୋଗ-ଶୋକ- ଜର୍ଜରିତ । *

ଏହି ଘରଟି ମୋର ଯେତିକି ସ୍ମରଣୀୟ, ସେତିକି ସ୍ମରଣୀୟ ତଥା ଶ୍ରଦ୍ଧାର୍ହ ତା'ର ମାଲିକ ମୋର ଦୁର୍ଦ୍ଦିନର ବନ୍ଧୁ ବନ୍ଧୁ ଶ୍ରୀ ହରି ସାହୁ । ହରିବାବୁ— ସେ ଆଜି ଇହଧାମରେ ନାହାନ୍ତି । ୧୯୭୮ ମସିହା ଜାନୁଆରୀ ତା ୨୭ରିଖରେ

---

ପୁନଃଭଟ, ବାଲେଶ୍ୱର
ତା ୨୦।୨।୫୯

* ପ୍ରିୟ ହରିବାବୁ ;

ନମସ୍କେ । ଚିଠି ପାଇଲି । ଜୀବନକୁ ଆଉ କେତେଦିନ ଏହିଭଳି ରାଜପଥ ଉପରକୁ ଛାଡି ଦେଇ ଲକ୍ଷ ଲକ୍ଷ ଜନତାର ନୂଆ ନୂଆ ଅନୁଭୂତିର ସ୍ପର୍ଶ ଲାଭ କରି ପାରିବେ କହିଲେ ? ଅବଶ୍ୟ ଏ ଜୀବନ କ୍ୱଚିତ ଦେଖାଯାଏ । ଏଭଳି ଦୁଃଖରେ ମଧ୍ୟ ବଞ୍ଚିରହି ସ୍ୱଚ୍ଛନ୍ଦ ହେବାରେ ଆନନ୍ଦ ଅଛି । କିନ୍ତୁ କେତେଜଣ ସେଭଳି ଆନନ୍ଦର ପ୍ରୟାସୀ କହିଲେ ? 'ସୁଖେର ଘରେ ଶଯ୍ୟା ପେତେଲେ, ଶୂନ୍ୟ ହାତେ ଆସିବେ କେ ?' ନିହାତି ଦରିଦ୍ର ଗୃହୀଟିର ମଧ୍ୟ ଭଙ୍ଗା ଘର ଥାଏ । କିନ୍ତୁ ଆପଣଙ୍କର ତାହାବି ସେ ନାହିଁ । ତଥାପି ଆପଣ ନଜରୁଲ୍‌ଙ୍କ ଭଳି ବିଦ୍ରୋହୀ କବିଙ୍କ ଭାଷାରେ 'ଚିର୍ ଉନ୍ନତ ଶିର୍ ।' ଏହାହିଁ ଆଶ୍ଚର୍ଯ୍ୟ ! ମୃତ୍ୟୁକୁ ଭୟ କରୁଛନ୍ତି ? ମୃତ୍ୟୁ ବୋଧହୁଏ ଆପଣଙ୍କୁ ଭୟ କରୁଛି । ତା' ନହେଲେ ଏତେଦିନ ବଞ୍ଚି ରହି ପାରି ନଥା'ନ୍ତେ । ଚିନ୍ତା ନାହିଁ— 'ପୂର୍ବରେ ହେବ ସୂର୍ଯ୍ୟୋଦୟ ।'

ବାସ୍ତବିକ ଆପଣଙ୍କ ଭଳି ଜଣେ ବନ୍ଧୁ ପାଇ ମୁଁ ଅନେକଟା ଦୃଢ଼ ହୋଇ ପାରିଛି । ବଞ୍ଚି ରହିବାର ସାହସ ସଞ୍ଚୟ କରି ପାରିଛି । × × ଆଜି ୫୫ଟଙ୍କା ପଠାଇଲି । ଚିଠିଦେବେ । କୁଶଳ କାମନା କରି ରହିଲି ।

ଆପଣଙ୍କର ସ୍ନେହୀ
ଶ୍ରୀ ବ୍ରଜନାଥ ରଥ

("ପଥପ୍ରାନ୍ତର କବିତା" —୨ୟ ସଂସ୍କରଣ, ୧୯୬୦, ଜେ ମହାପାତ୍ର ଏଣ୍ଡ କୋଃ, କଟକ-୨ ପୃଷ୍ଠବନ୍ଧ, ପୃ ୧୪୦ ଦ୍ରଷ୍ଟବ୍ୟ । )

ମାତ୍ର ୪୦ ବର୍ଷ ବୟସରେ ସେ ଜୀବନ ପାଖରୁ ବିଦାୟ ନେଇଛନ୍ତି, ରହି ଯାଇଛନ୍ତି ତାଙ୍କର ମହାନ୍ ଭାବମୂର୍ତ୍ତି ମୋ ମନରେ, ଜୀବନରେ । ଏତକ ସାନ୍ତ୍ୱନା ଯେ, ସେ ମୋର ଅନେକ ସାଫଲ୍ୟ ଦେଖି ଯାଇଛନ୍ତି, ଆନନ୍ଦିତ ହୋଇଛନ୍ତି । ତାଙ୍କର ମୃତ୍ୟୁ ମୋର ଅନ୍ତରର କ୍ଷତସ୍ଥାନକୁ ସ୍ପର୍ଶ କରୁଛି ପିତା !



# ଜାଗେ ପ୍ରାଣବାନ ଜୀବନ-ଜୁଆର...

୧୯୫୬ ମସିହାରେ ସୋସଲିଷ୍ଟ ପାର୍ଟି ଗ୍ରୁଡ଼ଲା ପରେ ୧୯୬୦ ମସିହା ପର୍ଯ୍ୟନ୍ତ ଏହି ୯ବର୍ଷ ମୋ ଜୀବନ-ଇତିହାସର ଏକାବ ବର୍ଷ କେତୋଟି । ଏହି ନ'ଟା ବର୍ଷ ଥିଲା ଅତି ଦ୍ରୁତ, ବେଗଗାମୀ, ଘଟଣା ବହୁଳ, ହର୍ଷ-ବିଷାଦ ଭରା, ଜୟପରାଜୟ, ଦ୍ୱନ୍ଦ୍ୱ-ସଂଘାତମୟ, ପ୍ରଚଣ୍ଡ ଘନଘଟାରେ ଅସ୍ଥିର, ଝଞ୍ଜା-କ୍ଷୁବ୍ଧ ଅଗ୍ନିପରୀକ୍ଷାର କାଳ, ନବ ଉତ୍ଥାନ ତଥା ମୋ ଜୀବନ ମହା-ଭାରତର ଉଦ୍‌ଯୋଗ ପର୍ବ । ଏହି ନଅବର୍ଷର ଶେଷ ଦୁଇବର୍ଷ (୧୯୫୭—୧୯୬୦) ଥିଲା ମୋର ଆଧୁନିକ ଓଡ଼ିଆ ସାହିତ୍ୟର "ନିଷିଦ୍ଧାଞ୍ଚଳ"କୁ ପ୍ରବେଶ କରିବାର "ଔଦ୍ଧତ୍ୟମୟ" ସମୟ । ଏହି ଦୁଇବର୍ଷ ବର୍ଷ ମୋ ପରି ଏକ କକ୍ଷଚ୍ୟୁତ "ମହାଦୁଷ୍ଟ ଗ୍ରହ"କୁ ଦେଇଥିଲା ସ୍ଥାୟୀ ସାରସ୍ୱତ କକ୍ଷପଥ । ସେ କକ୍ଷପଥରେ ସ୍ଥାପିତ ହେବା ଆଗରୁ ମୋର ଗତି ଓ ଘୂର୍ଣ୍ଣନ ଥିଲା ଏତେ ପ୍ରଖର, ଏତେ ତୀବ୍ର, ଏତେ ବେଗବାନ ଯେ, ସେକଥା ଆଧୁନିକ ଓଡ଼ିଆ ସାହିତ୍ୟରେ ଏକ ପ୍ରଚଣ୍ଡ ବିସ୍ମୟକର ଘଟଣା । ମୋର ସେହି କାବ୍ୟିକ ତଥା ସାରସ୍ୱତ ଉତ୍ତରଣ ଆକସ୍ମିକ ଘଟଣା ନଥିଲା । ତାହା ଥିଲା ଏକ ଐତିହାସିକ ପ୍ରକ୍ରିୟା ତଥା ଆବଶ୍ୟକତାର ଫଳଶ୍ରୁତି । ପ୍ରଗତି ଏବଂ ଇତିହାସର ଅଲଂଘ୍ୟ ନିର୍ଦ୍ଦେଶରେ ବିନା "ପାସ୍‌ପୋର୍ଟ"ରେ "ବେଆଇନ" ଭାବରେ ମୁଁ ସେତେବେଳେ ଅତିକ୍ରମ କରିଥିଲି ଆଧୁନିକ ଓଡ଼ିଆ ସାହିତ୍ୟର "ସୁରକ୍ଷିତ" ସୀମାନ୍ତରେଖା । ମୋର ସେହି "ସୀମାନ୍ତ ଲଂଘନ" ତଥା କାବ୍ୟର ଜୟରଥ ଆରୋହଣର ପ୍ରାକ୍‌କାଳରେ ପ୍ରତିକ୍ରିୟାଶୀଳ ଅପସାହିତ୍ୟ-ପୃଥିବୀର ଭୂଗର୍ଭରୁ ଶୁଣାଯାଇଥିଲା ପ୍ରଚଣ୍ଡ ଗର୍ଜନ, ବହୁ ହେରେରକାର, ମୋ ଉପରେ ଆସି ଅଜାଡି ହୋଇ ପଡିଥିଲା ସାହିତ୍ୟର "ମୁକ୍ତିମଣ୍ଡପ ପଣ୍ଡିତ ସଭା" ମଣ୍ଡପରୁ କ୍ରୂର ଅଭିଶାପ, ତାଚ୍ଛଲ୍ୟ, ବିଦ୍ରୂପ । ( * ) କିନ୍ତୁ ମୋ ପଛରେ ଥିଲା ଏକମାତ୍ର ପାଥେୟ ମୋର ସ୍ୱୟଂଶିକ୍ଷା, ମୋର ବିପ୍ଳବୀ ବୁନିଆଦ, ଆତ୍ମବିଶ୍ୱାସ ଏବଂ ମୋ

---

* ସେବକାର ଅଙ୍କୁର ହୁଇ ପାଖୁଡା ହେବାଠାରୁ ସମାଜର ବହୁ ପ୍ରତିଷ୍ଠିତ ବ୍ୟକ୍ତିଙ୍କର ସେ ଦୃଷ୍ଟି ଆକର୍ଷଣ କରିଛି, ବହୁ 'ଅପ୍ରୀତିକର କବିତା' ରଚନା କରି, ତା'ର ଔଦ୍ଧତ୍ୟ ଓ ଆସ୍ଫାଳନ, ତାର ଦମ୍ଭ ଓ ଅନବମାପ୍ତତା ସାହିତ୍ୟର ନନ୍ଦନକାନନରେ ଏକ ଅସ୍ୱସ୍ତିକର ବାତାବରଣ ସୃଷ୍ଟି କରିଛି । ବହୁ ଦିଗରୁ ଶୁଣିବାକୁ ମିଳୁଛି ଯେ, ଏହା ଏକ ବିଷବୃକ୍ଷ । ଏହି ବିଷବୃକ୍ଷର ମୂଳୋତ୍ପାଟନ ଲାଗି ଯେ ସମସ୍ତ ଅପଚେଷ୍ଟା ହୋଇଯାଇଛି, କବି ରବି ସିଂ ସେ ସବୁ ତିକ୍ତ ଅନୁଭୂତିର ଏକ ଖସଡ଼ା × ×" ( ଶ୍ରୀ ରଘୁନାଥ ଦାସ —"ଝଙ୍କାର" ଉନ୍ନବିଂଶ ପୃଃ ୯୨୫, ଜାନୁଆରୀ, ୧୯୬୫ ସଂଖ୍ୟା । )

ଅଜାଣତରେ ୩୦ ଦଶକର ସେହି ନୀଳ ଗିରିନଦୀ (ଯାହା ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରଗତିଶୀଳ ଧାରା, ଯାହା ସମାଜବାଦୀ ବାସ୍ତବତାର, ମାର୍କସବାଦ-ଲେନିନବାଦର ବାହକ, ଯାହା ସାଥୀ ଭଗବତୀ ପାଣିଗ୍ରାହୀଙ୍କ ଦ୍ୱାରା ସୃଷ୍ଟ ଏବଂ ପୁଷ୍ଟ) ଯେଉଁ ନଦୀଟି ୫ମ ଦଶକ ବେଳକୁ "ଉପତ୍ୟକା ଛୁଇଁ-ନଛୁଇଁଣୁ ଦୁଷା-ବାଲି ଭିତରେ ନିଃଶେଷ ହୋଇ ଯାଇଥିଲା"; ତା'ର ପ୍ରଚଣ୍ଡ ପ୍ରେରଣା ତଥା ନିର୍ଦ୍ଦେଶ । (୧) ପରବର୍ତ୍ତୀକାଳରେ ସେହି ରକ୍ତାକ୍ତ ପୀଡ଼ାଦାୟକ ଦୃଶ୍ୟ ମୋର କାବ୍ୟପୁରୁଷର ମନକୁ କମ୍ ଆନ୍ଦୋଳିତ, କମ୍ ବ୍ୟଥିତ କରିନାହିଁ । ସେ ବ୍ୟଥା, ଆନ୍ଦୋଳନ ମଧ୍ୟରୁ ସଂଜାତ ହୋଇଛି ଏକ ତୀବ୍ର ସିଂହାବଲୋକନ, ଯଥା:

"ଦେଖି ଭାରତୀର ମୂଲକ ସୀମାନା ସରହଦେ ଯେଉଁଦିନ
ଦେଇଥିଲା ପାଦ ରଚିବାକୁ ଟିକେ ଶାନ୍ତିର ତପୋବନ,
ଏ ମୋର କାବ୍ୟ-ପୁରୁଷ ନଥିଲା ସେତେବେଳେ ଏତେ ଉଗ୍ର
ଖୋଜୁଥିଲା ନିରାପଦ ଆଶ୍ରୟ, ସୃଷ୍ଟି ପାଇଁକି ବ୍ୟଗ୍ର ।
ମନେ ଅଛି, ମନେ ଅଛି,
ଗୁଞ୍ଜନେ ତମ ବିବ୍ରତ ମୋତେ କରିଥିଲା ମଶା ମାଛି ।

---

(୧) "ମଶାଲ ଭୂଲୁଣ୍ଠିତ ହୋଇ ଲିଭି ଆସୁଥିଲା । ଏଠିକିବେଳେ ତାକୁ ତଳୁ ଉଠାଇନେଲେ ଗୋଟିଏ ମାତ୍ର ଦିନ ଗ୍ରନ୍ଥାଗାରରେ ପାଠ ପଢ଼ିଥିବା, ଖଣ୍ଡିଏ ଦି' ଖଣ୍ଡି ଚଟି ଗୀତ ବହି ଓ ଏକ ଭ୍ରମଣ କାହାଣୀର ରଚୟିତା, ଗ୍ରାମ ସେବକ ଚାକିରି ପାଇଁ ମଧ୍ୟ ସଦ୍ୟ ଅଯୋଗ୍ୟ ବିବେଚିତ ଜଣେ ଶୀର୍ଣ୍ଣକାୟ ଯୁବକ, ନାମ ରବି ସିଂ । ମୁକାମ: କଟକ ଜିଲ୍ଲା ଜଗତସିଂହପୁର ଥାନାର ନିଆପାଟଣା । ରବି ସିଂଙ୍କର ସେ ଦିନର ସେହି 'ଆସ୍ପର୍ଦ୍ଧା' କଥା ଭାବି ବସିଲେ ମନେ ପଡ଼ିଯାଏ ବିଶ୍ୱକବିଙ୍କର 'କର୍ତ୍ତବ୍ୟ ଗ୍ରହଣ' କବିତାର ସେହି 'ମାଟିର ପ୍ରଦୀପ' କଥା । ଅସ୍ତଗାମୀ ସୂର୍ଯ୍ୟ ଠାରୁ ପୃଥିବୀକୁ ଆଲୋକିତ କରିବାର ଦାୟିତ୍ୱ ନେବାକୁ ଯେତେବେଳେ ବିଶ୍ୱବ୍ରହ୍ମାଣ୍ଡର ସମସ୍ତ ଜ୍ୱଳନ୍ତପିଣ୍ଡ ପଛଘୁଞ୍ଚା ଦେଉଛନ୍ତି, ସେତେବେଳେ ମାଟିର ପ୍ରଦୀପଟିଏ ସୂର୍ଯ୍ୟର ସେହି ଚ୍ୟାଲେଞ୍ଜ୍ ଗ୍ରହଣ କରିନେଉଛି । କେଉଁ ଦୁର୍ବାସାର ଅଭିଶାପ ହେତୁ କେଜାଣି, ଯେତେବେଳେ ସବୁ ରଥୀ ନିଜର କାବ୍ୟ-ନାୟିକା ନିକଟରେ ନେଇଥିବା ୩୦ ଦଶକର ସେହି ରକ୍ତ-ଶପଥ ଭୁଲିଗଲେ, ସେତେବେଳେ ଯଦି ଜଣେ ମାତ୍ର କେହି ଅବିଚଳିତ, ଅବିଶ୍ରାନ୍ତ ଓ ଏକକ ଭାବେ ନିଜର ପଣ ରକ୍ଷା କରି ଚାଲିଥାଏ, ତେବେ ସେ ସେ ରବି ସିଂ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହେବ ।" ("ସ୍ରଷ୍ଟ ରଥଟି ଓ ତା'ର ବୋଝ ସମ୍ପର୍କରେ" । ଲେଖକ: ଶ୍ରୀ ଶୈଳଜ ରବି । "ଅଗ୍ନିବୀଣା" ଡିସେମ୍ବର ୧୯୬୩ ସଂଖ୍ୟା ଦ୍ରଷ୍ଟବ୍ୟ ।)

ଦେଖା ଦେଇଛୁ ମୁଁ ତମରି ଭାଷାରେ ସେଦିନର 'ଗୈରିଶାଳା'
ତମରି ପାଇଁକି ସୁନ୍ଦା ଯେତେକ ଢୋଇଥିଲି ଫୁଲମାଳା
ସେହି ମାଳାଭରେ ଗଳା ମୋର ଭରି ତମ ଅସ୍ମି ଅଗୋ ହାୟ !
ଜୀବନ୍ଦଶାରେ ତମକୁ ଜିଣିଲି ପୁଣି ତମ ପରାଜୟ !

× × × ×

ପାନ ଓଡ଼ିଶାର କାବ୍ୟଗଗନେ ହାୟ ମୁଁ ଅନେଲଡ଼ା ତାରା
କରେ ମିଟିମିଟି, ଅନ୍ତର ମମ ବେଦନାର ତାପେ ଭରା ।" (୨)

ତଥାପି ଯୁଦ୍ଧ ସରିନାହିଁ, । ବେଳୁବେଳ ଅଧିକ ସଂଘର୍ଷ, ଅଧିକ ପ୍ରତିରୋଧ-ସଂଗ୍ରାମ, ହାତାହାତି, ଅଧିକ ରୁଦ୍ର-ସାଧନା ତା'ର ଭିତରେ । ଏ ସବୁ ସେହି ଦିନ ଅବସାନ ହେବ, ଯେଉଁଦିନ ମୁଁ ଜୀବନ ପାଖରୁ ବିଦାୟ ନେବି । ଏଠାରେ କହିରଖିବା ଉଚିତ, ମୋର ଶତ୍ରୁମାନଙ୍କ ପ୍ରତି ତଥାପି ମୋର କୌଣସି ଦ୍ୱେଷ, ଅସୂୟା, ବ୍ୟକ୍ତିଗତ ଆକ୍ରୋଶ ନାହିଁ, ଅତୀତରେ ମଧ୍ୟ ନଥିଲା । ତେବେ ପ୍ରଶ୍ନ ଉଠିପାରେ କାହିଁକି ଏ ସଂଘର୍ଷ, କାହିଁକି ଏ ମନୋମାଳିନ୍ୟ ? ତାର ଉତ୍ତର ଜଳବତ୍ ତରଳମ୍ ଆଉ ସ୍ପଷ୍ଟ । ତା' ହେଲେ କିପରି ? ମୂଳକଥା ହେଲା, ବ୍ୟକ୍ତିଗତ ଭାବରେ ମୋର କେହି ଶତ୍ରୁ ନଥିଲେ—ଏବେ ବି ନାହାନ୍ତି । ସମଗ୍ର ସାମାଜିକ ବ୍ୟବସ୍ଥା, ଧନତାନ୍ତ୍ରିକ ଅପସଂସ୍କୃତି, ଦ୍ୱିଧାବିଭକ୍ତ ବ୍ୟକ୍ତିତ୍ୱ ସମୂହ, ଶଠତା, ପ୍ରବଂଚନା ହେଉଛି ମୋର ଅନ୍ଧିଳ ନମ୍ବର ଆଦର୍ଶଗତ ଶତ୍ରୁ । ସେହି ଶିବିର ଉପରେ ମୋର ବୌଦ୍ଧିକ ଆଘାତ ଜନିତ ବିଭିନ୍ନ ସମୟରେ, ବିଭିନ୍ନ ପର୍ଯ୍ୟାୟରେ ସେହି ସମାଜ ବ୍ୟବସ୍ଥା ତଥା ଅପସଂସ୍କୃତିର "ପ୍ରତିନିଧି" ସାଜି ଯେଉଁ ମାନସୀପୁଙ୍ଗବ ମୋର ଅସ୍ତିତ୍ୱକୁ ବିଚୂର୍ଣ୍ଣ କରିଦେବା ପାଇଁ ବାହାରି ଆସିଛନ୍ତି ସେଇଠି ସେମାନଙ୍କ ସହିତ ମୋର ସଂଘର୍ଷ ଅନିବାର୍ଯ୍ୟ ହୋଇ ପଡ଼ୁଛି । ସେ ସଂଘର୍ଷ ଯେତିକି ରକ୍ତକ୍ଷୟୀ, ସେତିକି ଏକକ, ସେତିକି ମୋର ବୌଦ୍ଧିକ ବିକାଶରେ ସହାୟକ । ତେବେ ଏକଥା ଗର୍ବର ସହିତ କହିଲେ ପାଠକେ ମୋତେ ଭୁଲ୍ ବୁଝିବେ ନାହିଁ ଯେ, ଏହି ସଂଘର୍ଷ-ସଂଗ୍ରାମରେ ପରାଜୟର ଗ୍ଲାନିକର ମୁକୁଟ ପିନ୍ଧିବାର ନଜିର୍ ମୋର ନାହିଁ । ବରଂ ଅଛି ତାର ବିପରୀତ ନଜିର

(୨) "ପଥ ପ୍ରାନ୍ତର କବିତା"—(୨ୟ ସଂସ୍କରଣ, କେ ମହାପାତ୍ର ଏଣ୍ଡ କୋ:) ପୃଃ ୨୨ ।

ଗଣିଗଣି । ଏ ସଂଘର୍ଷ-ସଂଗ୍ରାମରେ ଯେଉଁ ମହାମହା ରଥୀ ମହାରଥୀମାନେ ଧ୍ୱସ୍ତ, ବିପର୍ଯ୍ୟସ୍ତ, ଛିନ୍ନଛିନ୍ନ ବା ଆହତ ହୋଇଛନ୍ତି ମୁଁ ବ୍ୟକ୍ତିଗତ ଭାବରେ ସେମାନଙ୍କ ପ୍ରତି ସମବେଦନଶୀଳ । କାରଣ, ସେମାନେ ମୋର ବୟୋଜ୍ୟେଷ୍ଠ, ପୂର୍ବଗାମୀ । ତୁଚ୍ଛ ଅସୂୟା ବଶରେ ଅଦୂରଦର୍ଶୀତାର ଶିକାର ହୋଇ ନିର୍ମଳ ସମରର ନୀତିନିୟମକୁ ଭୁଲି ଜଣକର ସର୍ବନାଶ ପାଇଁ ସେମାନେ ଏକଦା କ୍ରୁଦ୍ଧ ପଡ଼ିଥିଲେ । ତାର ଫଳ କିନ୍ତୁ ହେଲା ଓଲଟା— ହେବାକୁ ବାଧ୍ୟ, ତା ନହେଲେ ଇତିହାସର 'ଡାଇଲେକ୍ଟିକ୍ସ' ଭୁଲ ପ୍ରମାଣ ହୋଇଥାନ୍ତା । ଏକଥା ସତ ଯେ, ଏହି ସଂଘର୍ଷ ସଂଗ୍ରାମରେ ଅନ୍ୟଦିଗରୁ ମୋର କ୍ଷତି ପ୍ରଭୂତ—ଯାହା ଆଉ ଏ ଜୀବନରେ ପୂରଣ ହେବା ସମ୍ଭବ ନୁହେଁ । ଯଦି ଏହି ସଂଗ୍ରାମ ସଂଘାତରେ ମୋତେ ଜଡ଼ିତ ହେବାକୁ ବାଧ୍ୟ କରାଯାଇ ନଥାନ୍ତା, ମୁଁ ଅବସର ପାଇଥାନ୍ତି ମୋ ଉପରେ ନିର୍ଭରଶୀଳ ନିରପରାଧ ପାଞ୍ଚପ୍ରାଣୀଙ୍କ ଆର୍ଥିକ ଭବିଷ୍ୟତ ଗଠନ କରିବାକୁ । କିନ୍ତୁ କୈଶୋର ଯାଇ ଯୌବନ ଗଲା, କଳାବାଳ ଧଳା ହେଲା, ଦୁଃଖରକଥା ସ୍ୱାଧୀନତା ପରେ ଦେଶରେ ଯେଉଁ ସରକାର, ଶାସକଗୋଷ୍ଠୀ ଗାଦିନସୀନ ହୋଇଛନ୍ତି ମୁଁ ସେମାନଙ୍କର ହୋଇଉଠିଛି "କୋପଶର" । ବାରମ୍ବାର ଘର ଖାନତଲାସ, ମିଛ ମକଦ୍ଦମା, ରାଜନୈତିକ ମିଥ୍ୟା ଅଭିଯୋଗରେ କାରାଦଣ୍ଡ ଯାଙ୍କୁ କେବଳ ମୋ ଉପରେ ନୁହେଁ ମୋର ସ୍ତ୍ରୀ, ନିରୀହ ଶିଶୁପୁତ୍ର କନ୍ୟାଙ୍କ ଉପରେ ଲଗାତର ରକ୍ତାକ୍ତ ଆକ୍ରମଣ, ପରିଶେଷରେ ମୋତେ ହତ୍ୟା କରିବା ପାଇଁ ବାରମ୍ବାର ଚେଷ୍ଟା ୧୯୬୭ ମସିହାରୁ ଏପର୍ଯ୍ୟନ୍ତ ବଳବତ୍ତର ନଥିଲେ ବିଗତ ୧୯୭୮ ମସିହାରୁ ଜନତା ସରକାର ଅମଳରୁ ଆଜି ଯାଏଁ ମୋର ଜଣେ ସଶସ୍ତ୍ର ପୁଲିସ ଦେହରକ୍ଷୀ ନିଯୁକ୍ତ ଥାନ୍ତା କାହିଁକି ? ପାଠକେ ବିଶ୍ୱାସ କରନ୍ତୁ ମୋର ପୁତ୍ରକନ୍ୟାଙ୍କ ପିତା ହିସାବରେ ଯଦିଓହେଲେବି ମୁଁ ସେମାନଙ୍କୁ ସ୍ନେହ କରିବାର ଅବକାଶ ପାଇନି, ତାହା ମୋତେ ଦିଆ ଯାଇନାହିଁ । ମୋର ପିଲାମାନେ ଭୋଗିଛନ୍ତି ଦାରିଦ୍ର୍ୟର ଦୁଃସହ ଜ୍ୱାଳା, ସେମାନେ ଦେଖିଛନ୍ତି ସେମାନଙ୍କ ଆଖି ଆଗରେ ତା ବାପକୁ ମାଡ଼, ତା'ର ମା'କୁ ଭଡ଼ାଟିଆ ଗୁଣ୍ଡାମାନଙ୍କର ଦୋ'ଅକ୍ଷରାସର୍ବସ୍ୱ ସମ୍ବୋଧନ, ବାପର ଅନ୍ନଗୋଟେ ଆଜି କାରାବାସ । ସ୍କୁଲରୁ ନାଁ କଟିଛି, ପରିଶେଷରେ ସେମାନେ ଗୁଣ୍ଡାମାନଙ୍କ ହାଣ ମାଡ ଖାଇ କରୁଣ ଅସହାୟ ଭାବରେ ପଥପ୍ରାନ୍ତରେ ଠିଆହୋଇ କାନ୍ଦିଛନ୍ତି, ସେମାନେ ପୁଣି ଦେଖିଛନ୍ତି ତାଙ୍କର "ସ୍ୱର୍ଗାଦପି ଗରୀୟସୀ" ରୁଗ୍ଣା ଜନନୀକୁ ତାଙ୍କର ଆଗରେ ଧର୍ଷଣ କରିବାର ପ୍ରଚେଷ୍ଟା । ଚୋରି ହୋଇସାରିଛି

ସମସ୍ତ ମାନବିକ ସଭ୍ୟତା, ହାହାକାର କରୁଛି ସବୁଧର୍ମର ଭଗବାନ, ଭଣ୍ଡ-ଧର୍ମରାଜ ଯୁଧିଷ୍ଠିରର ଦଳ; ନ୍ୟସ୍ତସ୍ୱାର୍ଥର 'ନାରଦ' ସମ୍ବାଦ ପତ୍ର ସମୂହ, ଦେଶର ବୁଦ୍ଧିଜୀବୀ, କବି ଲେଖକ, ରାଜନୈତିକ ନେତୃବୃନ୍ଦ ଇଚ୍ଛାଅନିଚ୍ଛା ବରଣ କରି ନୀରବ ରହିଛନ୍ତି । ପରେ ସେମାନଙ୍କୁ ଦେଖିବାକୁ ମିଳୁଛି "ନାଗରିକ ଅଧିକାରର ସୁରକ୍ଷା" ମଞ୍ଚରେ, ବାମପନ୍ଥୀ-ଭଣ୍ଡାମିର ଶୋଭା-ଯାତ୍ରାରେ, ନାରୀନିର୍ଯାତନା ବିରୋଧୀ ସଭାରେ । ଏହି ନୈତିକ ବାମନ ତଥା ଐତିହାସିକ-ହିଜଡ଼ା ମାନଙ୍କୁ ଯେଉଁ ସମାଜ ବରଦାସ୍ତ କରୁଛି, ସେ ସମାଜର ଧ୍ୱଂସ ଅନିବାର୍ଯ୍ୟ—ଆଜି ନହେଲେ କାଲି । ଯେଉଁ ଶିଶୁ ଭୂମିଷ୍ଠ ହେବା ପରଠାରୁ ଦେଖି ଆସୁଛି ଏହି ସବୁ କର୍ମକାଣ୍ଡ, ତାର ଭବିଷ୍ୟତ ଯେ ଆଲୋକ-ମୟ ହେବ, ଅନ୍ୟମାନଙ୍କୁ ସେ ପ୍ରୀତି ଭଲପାଇବ, ସମ୍ମାନ କରିବ—ଏ ଆଶା ମୁଁ କରିନାହିଁ । ସେମାନେ ନିଜେ ସେମାନଙ୍କର ସହାୟ—ପଥପ୍ରଦର୍ଶକ । (୩)

## ।। ଗଣତନ୍ତ୍ର ପରିଷଦ ।।

ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ କଟକ ସରକାରୀ ବାସଭବନରୁ ଗଳା-ଧକ୍କା ଖାଇ କୌଣସି ଏକ କର୍ମ-ସଂସ୍ଥାନର ଆଶାରେ ବିଭିନ୍ନ ସ୍ଥାନ ବୁଲୁଛି, ବିଭିନ୍ନ ବ୍ୟକ୍ତିଙ୍କୁ ଭେଟିଛି, କରୁଣ ଆବେଦନ ଜଣାଇଛି ; କିନ୍ତୁ ସବୁ ହୋଇଛି ନିରର୍ଥକ । ସେତିକିବେଳେ ତତ୍କାଳୀନ ରେଲବାଇ ପୁଲିସର ଡେପୁଟି ସୁପରିନ୍‌ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ଗୌର ମହାନ୍ତିଙ୍କ ସହିତ ରାଉରକେଲା ଦେଇ ଝାରସୁଗୁଡ଼ା ଯାଇଛି, ମଧ୍ୟପ୍ରଦେଶର ସେହି ଅଗମ୍ୟ ଘନ ଜଙ୍ଗଲ ମଧ୍ୟରେ ବିପ୍ଳବୀ ଦୁଲାଲ୍ ସେନ ଓ ତାଙ୍କ ଦଳର ଗୋପନ ଘାଟିରେ ବିତାଇଛି ୧୫ଦିନ, ଯାହା ପୂର୍ବରୁ ବର୍ଣ୍ଣିତ ହୋଇଛି । ତା ପରେ ପୁଣି ଫେରିଛି କଟକ । ପୁଣି ସେହି ଅନିଶ୍ଚିତତା, ପୁଣି ସେହି ଧୂମାଳି ଦିଗନ୍ତ । ଏହିପରି ଜୀବନ ବିତୁଥିବା ବେଳେ ହଠାତ୍ ଦିନେ ସମ୍ପର୍କ ସ୍ଥାପିତ ହୋଇଥିଲା ଅଧୁନା ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ ଗାଳ୍ପିକ ତଥା ସମାଲୋଚକ ଏବଂ ସେତେବେଳର "ସପ୍ତାହିକ

---

(୩) "ପଥ ଭ୍ରାନ୍ତର କବି ଜୀବନରେ ବହୁ 'ଝଡ଼'ର ସମ୍ମୁଖୀନ ହୋଇଛନ୍ତି, ତାଙ୍କର ତୀବ୍ର 'ଭ୍ରୂକୁଟି'ରେ ପ୍ରଚଳିତ ସମାଜ ବ୍ୟବସ୍ଥାର ଆତ୍ମପ୍ରତ୍ୟୟ ଟହଲି ଯାଇଛି । ଦୃଢ଼ ଆତ୍ମ-ବିଶ୍ୱାସରେ ଏହି 'ବିପବୃକ୍ଷ' ଆଜି ଏକ ଦ୍ରୁମରେ ଆପଣାକୁ ପ୍ରତିଷ୍ଠିତ କରିପାରିଛି ।

"ଅସ୍ତ ପଦେସ୍ତ" ପୁଷ୍ପମାଳାରେ କବିର ସମ୍ବର୍ଦ୍ଧନା ସମୁଚିତ ହୋଇଥିବା ସ୍ଥଳେ ସମାଜ ଏ କବିଙ୍କୁ ଡ଼େଙ୍ଗା ମାଡରେ କ୍ଷତ ବିକ୍ଷତ କରିବାର ଏ କି ବିଚାର ?

( ଶ୍ରୀ ରଘୁନାଥ ଦାସ : ଶବ୍ଦବିଚାର—"ଝଙ୍କାର", ଜାନୁଆରୀ, ୧୯୬୫ )

ଗଣତନ୍ତ୍ର"ର ସଂପାଦକ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ ସହିତ । ସେତେବେଳେ ଗଣତନ୍ତ୍ର ପରିଷଦର କାର୍ଯ୍ୟାଳୟ ସହିତ "ସାପ୍ତାହିକ ଗଣତନ୍ତ୍ର"ର କାର୍ଯ୍ୟାଳୟ ଥିଲା କଟକ ମହମ୍ମଦିଆ ବଜାରରେ । ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଶ୍ରୀ ରାଜବଲ୍ଲଭ ମିଶ୍ର ସପରିବାର ସେଠି ସେତେବେଳେ ରହୁଥିଲେ । ସୁରେନ୍ଦ୍ରବାବୁ ମୋର ସେତେବେଳର ଦୈନନ୍ଦିନ ଜୀବନଯାତ୍ରାରେ ସହାୟ ହୋଇ ଗଣତନ୍ତ୍ର ପରିଷଦର କାର୍ଯ୍ୟାଳୟରେ ମୋର ରହିବା ଆଉ ଖାଇବାର ବ୍ୟବସ୍ଥା କରିଥିଲେ । ସେହିଠାରେ ଥିବାବେଳେ ମୋର କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପକେଶରୀ ଦେଓ, ପାଟଣା ମହାରାଜା ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କ ସହିତ ଘନିଷ୍ଠତା ହୋଇଥିଲା । ସେଠାରେ ରହିବା ଭିତରେ ଦିନେ ଅନୁଭବ କରିବାକୁ ଆରମ୍ଭ କଲି, ଗଣତନ୍ତ୍ର ପରିଷଦ ତରଫରୁ ଅତି ସତର୍କତା ସହକାରେ ମୋତେ ପରିଷଦ ଅଞ୍ଚଳରୁ ହଟାଇବାର ଉଦ୍ୟମ ହେଉଛି । ତେଣୁ ନବାଗତ-ଦୁରଭ ମ'ଇଁ ମୁଁ ହଠାତ୍‌କରେ ମାହାଙ୍ଗା ଥାନାର କୁସୁପୁର ଗ୍ରାମର ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ସଚ୍ଚିଦାନନ୍ଦ ଜେନାଙ୍କ ଘରେ ଯାଇ ରହିଥିଲି । ଏହା ୧୯୫୩ ମସିହା ମାର୍ଚ୍ଚ ମାସର କଥା । ସାଧାରଣ ଜଣେ ମଣିଷ ପରି ସମାଜରେ ବଞ୍ଚି ରହିବାର ସ୍ୱପ୍ନ ଦେଖି, ନାନା ଚାକିରିବାକିର ସନ୍ଧାନରେ ଖବର କାଗଜରେ ପ୍ରକାଶିତ ବିଜ୍ଞାପନମାନ ପଢ଼ି ଦରଖାସ୍ତ ଦେବାରେ ବ୍ୟସ୍ତ ରହିଥିଲି ସେବେ । ମନେ ଅଛି, ଗ୍ରାମଗୋଷ୍ଠୀ ଯୋଜନା ଅଧୀନରେ ଜଣେ କର୍ମୀ ଭାବରେ କାମ କରିବା ପାଇଁ ସେହି କୁସୁପୁରରେ ଥିବାବେଳେ ଏକ ଇଣ୍ଟରଭ୍ୟୁ ପାଇଁ ଚିଠି ପାଇ ପୁରୀ ଯାଇଥିଲି ବଡ଼ କଷ୍ଟରେ । ସେତେବେଳେ ପୁରୀର କଲେକ୍ଟର ଥିଲେ ସ୍ୱର୍ଗତ ମନ୍ମଥନାଥ ଗୁହ । ସେ ମୋତେ ବୟସର ଆଳ ଦେଖାଇ ଇଣ୍ଟରଭ୍ୟୁରୁ ବଞ୍ଚିତ କରିବାରୁ ତାଙ୍କ ସହିତ ମୋର ସେଦିନ ହାତାହାତି ହେବାର ଉପକ୍ରମ ହୋଇଥିଲା । ସେଥିପାଇଁ ପୁରୀ ସଦରଥାନାରେ ମୋତେ କେତେ ଘଣ୍ଟା ଅଟକ ମଧ୍ୟ ରହିବାକୁ ପଡ଼ିଥିଲା । ଏ ଘଟଣା ଘଟିଥିଲା ତା ୧୦-୯-୫୩ରିଖରେ ।

## || କମ୍ୟୁନିଷ୍ଟ ପାର୍ଟିରେ ଯୋଗଦାନ ||

ସୋସଲିଷ୍ଟ ଦଳରେ ଥିବାବେଳେ ଯେଉଁ ପ୍ରଚଣ୍ଡ ବାମଝୁଙ୍କ, ଯେଉଁ ଲଢ଼ୁଆ ପ୍ରଗତିବାଦୀ ସ୍ୱପ୍ନ, କମ୍ୟୁନିଷ୍ଟ ପାର୍ଟି ବା କମ୍ୟୁନିଜମ୍ ପ୍ରତି ଯେଉଁ କୌତୁହଳ ମୋ ଭିତରେ କ୍ରମବର୍ଦ୍ଧମାନ ଭାବରେ ମୁଣ୍ଡ ଟେକୁଥିଲା, ତାକୁ ବାସ୍ତବରୂପ ଦେବାଲାଗି ଦିନେ ସିଦ୍ଧାନ୍ତ ନେବାକୁ ହୋଇଥିଲା । ତା'ର

ଫଳଶ୍ରୁତି ହୋଇଥିଲା ୧୯୫୩ ମସିହାର ଶେଷ ପାଦରେ ମୋର ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦାନ । ଅତଃପର କମ୍ୟୁନିଷ୍ଟ ନେତା ଶ୍ରୀ ବ୍ରଜକିଶୋର ପଟ୍ଟନାୟକଙ୍କ ତତ୍ତ୍ୱାବଧାନରେ ରହି ମୁଁ କିଛିଦିନ କାମ ମଧ୍ୟ କରିଥିଲି । ବ୍ରଜବାବୁ ଜଣେ ଉତ୍ତମ ବ୍ୟକ୍ତି । ମୋ ପ୍ରତି ସେ ଥିଲେ ଅତି ଶ୍ରଦ୍ଧାଶୀଳ । କିନ୍ତୁ କମ୍ୟୁନିଷ୍ଟ ପାର୍ଟି ସହିତ ବେଶିଦିନ ମୋ ପକ୍ଷରେ ରହିବା ସମ୍ଭବ ହୋଇ ନଥିଲା । ନୈକଟ୍ୟର ନିଷ୍ଠୁରତା ମୋତେ ଭୀଷଣ ଭାବେ ଦଂଶନ କରିଥିଲା । (୪)

ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟି ସହିତ ଯେତେଦିନ ଥିଲି, ତା'ର ଭିତରେ ଆଧୁନିକ ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦର ଧାରା, ଭଗବତୀଙ୍କ ପ୍ରତିଷ୍ଠିତ ପ୍ରଗତିଶୀଳ ଲେଖକ ସଂଘ ଓ ନବଯୁଗ ସାହିତ୍ୟ ସଂସଦ ସମ୍ପର୍କରେ ଅଧ୍ୟୟନ

---

(୪) "କବି ତାଙ୍କ ତାରୁଣ୍ୟରେ ବିଭିନ୍ନ ରାଜନୈତିକ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ରହି ନିଜର ଚେତନାର ଅଭିବୃଦ୍ଧି ଲାଗି ଖୋରାକ ସଂଗ୍ରହ କରିଥିଲେ ମାର୍କସ୍‌ବାଦୀ ବୈଜ୍ଞାନିକ ସାମ୍ୟବାଦରୁ, ଶ୍ରେଣୀ ସଂଗ୍ରାମର ବଳିଷ୍ଠ ଚିନ୍ତାଧାରାରୁ । ଇତିହାସର ଅନିବାର୍ଯ୍ୟ ପରିଣତି ବିଷୟରେ ଅସନ୍ଦିଗ୍ଧ ଏହି ତରୁଣ ଏକଦା ଆସ୍ଥାବାନ ଥିଲା ଯେ, ମାର୍କସ୍‌ବାଦକୁ ଜୀବନ ଦର୍ଶନ ରୂପେ ଗ୍ରହଣ କରୁଥିବା ଅନୁଷ୍ଠାନ ଓ ନେତୃବର୍ଗ ଆଦର୍ଶକୁ ବାସ୍ତବ ଅନୁଧ୍ୟାନ କରିବାରେ ଏକାନ୍ତ ବ୍ରତୀ । ଅତି ନିକଟରୁ ସେମାନଙ୍କୁ ଦେଖି କବିଙ୍କ ମନରେ ଘୋର ନୈରାଶ୍ୟ ଦେଖା ଦେଇଥିଲା । ଆଦର୍ଶର ବାନା ଧରି ଏମାନେ ଜନସାଧାରଣଙ୍କେ ପ୍ରତି ଯେ ଶଠତା କରି ଚାଲିଛନ୍ତି, ସେଥିରେ ସେ ମର୍ମାହତ ହୋଇ ପଡ଼ିଥିଲେ । ସମ୍ବଳହୀନ ଅର୍ଥାତ୍ ଆଦର୍ଶର ଉତ୍ତେଜନାରେ ଆଲୋଡ଼ିତ ତାଙ୍କର ତରୁଣ ପ୍ରାଣ ଫଳତଃ ଚରମ ସଙ୍କଟର ସମ୍ମୁଖୀନ ହୋଇଥିଲା । ଅଗ୍ରଗତିର ସମସ୍ତ ପଥ ଅବରୁଦ୍ଧ ଓ ଭବିଷ୍ୟତ ସମ୍ପୂର୍ଣ୍ଣ ଅନ୍ଧକାରଚ୍ଛନ୍ନ ବୋଲି ମନେ ହେଉଥିଲା ବେଳେ ବିପ୍ଳବର ଗତିଶୀଳ ନେଇ ଦୁଇଟି ସତ୍ୟର ଉପଲବ୍ଧି ତାଙ୍କ ମନରୁ ସବୁ ସଂଶୟ ପୋଛି ଦେଇଥିଲା ଓ ସାଧନାରେ ସିଦ୍ଧି ଲାଗି ପଥ ସୁଗମ କରି ଦେଇଥିଲା । ପ୍ରଥମ ସତ୍ୟଟି ହେଲା : ସଂହତିର ଚେତନା ଏକ ଅଗ୍ନି ସ୍ଫୁଲିଙ୍ଗ, ଅନ୍ଧକାରର ଦୁର୍ଗମ ଦୁର୍ଗ ଉପରେ ଆକ୍ରମଣ କରିବା ତା'ର ସହଜାତ ଧର୍ମ । ଏଥିଲାଗି ସେ ଅପର ବ୍ୟକ୍ତିର ବା ସଙ୍ଗଠନର ଅପେକ୍ଷା ରଖେ ନାହିଁ । ମହା-ସମରରେ ପ୍ରତ୍ୟେକ ସଂହତି ଏକ ଏକ ସ୍ୱୟଂସମ୍ପୂର୍ଣ୍ଣ ଶକ୍ତି—ପ୍ରତ୍ୟେକେ ଅଭିମନ୍ୟୁ ।"
( ଶ୍ରୀ ରଘୁନାଥ ଦାସ : 'ଝଙ୍କାର'—ଜାନୁଆରୀ, ୧୯୭୫ )

କରିଥିଲି । କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର ପୁରୁଣା "ମୁକ୍ତିଯୁଦ୍ଧ" ଓ 'ସନ୍ଧାନ' ପୃଷ୍ଠାରୁ ଜଣେ ଶକ୍ତିଶାଳୀ ବିପ୍ଳବୀ କବି, ଲେଖକର ଭାବମୂର୍ତ୍ତିର ଦର୍ଶନ ପାଇଲି । ସେ ହେଉଛନ୍ତି ଶ୍ରୀ ରଘୁନାଥ ଦାସ ।

କମ୍ୟୁନିଷ୍ଟ ପାର୍ଟି ଛାଡ଼ିଲା ପରେ ୧୯୫୪ ମସିହାର ଅର୍ଦ୍ଧଭାଗରେ ରଘୁବାବୁଙ୍କ ସହିତ ମୋର ପରିଚୟ ସ୍ଥାପିତ ହୋଇଥିଲା । ରଘୁବାବୁ ଏକଦା ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିର ସକ୍ରିୟ ଭାବରେ ଥିଲେ କେବଳ ନୁହେଁ, ତାଙ୍କର ଶକ୍ତିଶାଳୀ ଲେଖନୀ ଓଡ଼ିଆ ପ୍ରଗତିଶୀଳ ସାହିତ୍ୟରେ ନବସ୍ୱାକ୍ଷର ଅଙ୍କନ କରିଥିଲା, ଏହା ପ୍ରମାଣସିଦ୍ଧ । କହିବା ବାହୁଲ୍ୟ ଯେ, ମୋ କବି ଜୀବନର ଯେତେବେଳେ ଉଷାକାଳ, ଆଶ୍ଚର୍ଯ୍ୟର କଥା, ଠିକ୍ ସେତିକିବେଳେ ଶ୍ରୀ ରଘୁନାଥ ଦାସଙ୍କ କାବ୍ୟପ୍ରତିଭାର ସୂର୍ଯ୍ୟାସ୍ତ ସମୟ—ମୋ ସହିତ ତାଙ୍କର ପ୍ରଥମ ପରିଚୟର ଏକବର୍ଷ ପୂର୍ବରୁ । ଆଧୁନିକ ଓଡ଼ିଆ ସାହିତ୍ୟରେ ମୋର ଅଭ୍ୟୁଦୟ ପୂର୍ବରୁ ସେ ଥିଲେ ଓଡ଼ିଆ ସାହିତ୍ୟର ମାର୍କସୀୟ ଚେତନା ବା ପ୍ରଗତି-ସାହିତ୍ୟର ଶେଷ ମାଇଲ ଖୁଣ୍ଟ । ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ମୋ ପକ୍ଷରେ ଥିଲା ନବଚେତନା, ନବ-ଉନ୍ମାଦନା ତଥା ପ୍ରେରଣା ପ୍ରାପ୍ତିର ଉଲ୍ଲେଖଯୋଗ୍ୟ ଘଟଣା । ୧୯୫୪ ସାଲରୁ ୧୯୭୮-ଏହି ସୁଦୀର୍ଘ ୨୫ବର୍ଷ ଧରି ତାଙ୍କ ସହିତ, ତାଙ୍କ ପରିବାର ସହିତ ମୋର ଏକାତ୍ମତା ବଜାୟ ରହିଥିଲା । ଏହି ୨୫ବର୍ଷ ଭିତରେ ମୋ ଜୀବନରେ ବହୁ ବୈପ୍ଳବିକ ଉତ୍ତରଣ, ବହୁ ଉଦ୍ଦାମ ଅଗ୍ରଗତି, ବହୁ ସାଫଲ୍ୟ, ବହୁ ବିଜୟ, ସ୍ୱୀକୃତିର ଅସଂଖ୍ୟ ଜୟମାଲ୍ୟ ଆସିଛି, ତା ସହିତ ଆସିଛି ବହୁ ବାଧା-ଅବରୋଧ, ଦୁର୍ଦ୍ଦିନ, ବିପଦ ଆପଦ, ରୋଗ-ଶୋକ, ଝଡ଼ଝଞ୍ଜା ଇତ୍ୟାଦି । ସବୁର ଦୈନନ୍ଦିନ ସାକ୍ଷୀଭାବରେ ସେ ଦଣ୍ଡାୟମାନ ଥିଲେ । ଏହି ୨୫ବର୍ଷ ଭିତରେ ଏପରି କୌଣସି ଦିନ, ମାସ, ବର୍ଷ ନାହିଁ, ଯେଉଁଦିନକି ରଘୁବାବୁଙ୍କ ସହିତ ମୋର ସାକ୍ଷାତ-ଆଲୋଚନା ହୋଇନାହିଁ । ତାଙ୍କ ବାମପନ୍ଥୀ ପରବର୍ତ୍ତୀ ଜୀବନ ଓ ଆଦର୍ଶ ସହିତ ମୁଁ ସର୍ବଦା ଏକ ନିରାପଦ ଦୂରତ୍ୱ ଶେଷ ପର୍ଯ୍ୟନ୍ତ ରକ୍ଷା କରି ଆସିଥିଲେ ମଧ୍ୟ ତାଙ୍କ ଅତୀତର ବିପ୍ଳବୀ ସାରସ୍ୱତ ଭାବମୂର୍ତ୍ତିକୁ ଚରମ ସମ୍ମାନ ଦେଇ ଆସିଛି ଓ ଆସିବି । କାରଣ, ତାଙ୍କ "ଅଗଷ୍ଟ ପନ୍ଦର"ର ମାର୍କସ୍‌ବାଦୀ ଦୃଷ୍ଟିକୋଣ ତଥା ଶ୍ରେଣୀଚେତନା ମୋର କବି ଜୀବନର ପ୍ରାରମ୍ଭରେ କମ୍ ଆନ୍ଦୋଳିତ କରିନାହିଁ । "ଅଗଷ୍ଟ ପନ୍ଦର" ତାହା,ଥିଲା ଏକ କ୍ଷୁଦ୍ର କବିତା ପୁସ୍ତକ ।

ଗୋଟିଏ କବିତା ପୁସ୍ତକର ଆରମ୍ଭରୁ ଶେଷଯାଏଁ । କିନ୍ତୁ ତିନି ଭାଗରେ ତାହା ବାହାରିଲା ! ୧ମ ଭାଗ—୧୯୪୭, ୨ୟ ଭାଗ—୧୯୪୮, ୩ୟ ଭାଗ—୧୯୪୯ । ସର୍ବମୋଟ ତିନୋଟି ବର୍ଷର 'ସ୍ୱାଧୀନତାର ସ୍ୱାଦ ସମ୍ପର୍କରେ କବି କଥନ, ତା'ର ଭବିଷ୍ୟତବାଣୀ ତା'ର ଶ୍ରେଣୀନିରୋଧ ସମେତ କବିତାର ଛନ୍ଦ, ଅଗ୍ନିବର୍ଷୀ ଭାଷା, ବକ୍ରୋକ୍ତି ସବୁମିଶି ଓଡ଼ିଆ ସାହିତ୍ୟ ପୀଠରେ ଏକ ସ୍ୱତନ୍ତ୍ର ଆସନ ଦାବି କରେ । ଅତ୍ୟନ୍ତ କ୍ଷୁଦ୍ର ଥିଲା ପୁସ୍ତିକାଟିର କଳେବର, ମୂଲ୍ୟ ବୋଧହୁଏ ଚାରିଅଣା ମାତ୍ର । ଏ ପୁସ୍ତିକାଟି ୧୯୪୯ ସାଲରେ ଶ୍ରୀମତୀ ଲାବଣ୍ୟ ଦେବୀଙ୍କ ଦ୍ୱାରା "କଟକ ପ୍ରେସ୍"ରେ ମୁଦ୍ରିତ ହୋଇ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ଶ୍ରୀ ଶରତ ପଟ୍ଟନାୟକଙ୍କ "ସାହିତ୍ୟ ସଦନ" କର୍ତ୍ତୃକ ପ୍ରକାଶିତ ହୋଇଥିଲା । ଏହି "ଅଗଷ୍ଟ ପନ୍ଦର"ର କାବ୍ୟିକ-ଆବେଦନକୁ ମୋର କାବ୍ୟପୁରୁଷ ତାର ପୌରୁଷର ପ୍ରାତଃକାଳରେ ପ୍ରାଣଭରି ଆତ୍ମସ୍ଥ କରି ନେଇଥିଲା କେବଳ "ଅଗଷ୍ଟ ପନ୍ଦର" ନୁହେଁ, ରଘୁବାବୁଙ୍କର ଅନ୍ୟ ସମସ୍ତ କାବ୍ୟ-କବିତା, ପ୍ରବନ୍ଧ, ନାଟକ ଏକାଙ୍କିକା, ଗଳ୍ପ ଉପନ୍ୟାସ, ଅନୁବାଦ ସମୂହ ନିଶ୍ଚିତ ଭାବରେ ସର୍ବହରା ସାହିତ୍ୟର ଅମୂଲ୍ୟ ସମ୍ପଦ । ରଘୁବାବୁ, ଶ୍ରୀ ରଘୁନାଥ ଦାସଙ୍କୁ ୧୯୫୪ ମସିହାରେ ମୁଁ ଭେଟି ନଥିଲେ ମୋର ଆଜିର ବାମପନ୍ଥୀ-ବୌଦ୍ଧିକତାର ବହୁ କ୍ଷତି ହୋଇଥାନ୍ତା ।

ମୁଁ ଯେତେବେଳେ ତାଙ୍କର ସାନ୍ନିଧ୍ୟ ଲାଭ କରିବାକୁ ଆରମ୍ଭ କଲେ, ସେତେବେଳେ ସେ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିଠାରୁ ବହୁ ଦୂରରେ କେବଳ ନୂତନ କମ୍ୟୁନିଷ୍ଟ ପାର୍ଟିର ପେଟି-ବୁର୍ଜୁୟା ପ୍ରବଣତା ବିରୁଦ୍ଧରେ । ସେ ଚିନ୍ତା କରୁଥାନ୍ତି ଏକ ବିପ୍ଳବୀ ସଚ୍ଚା କମ୍ୟୁନିଷ୍ଟ ପାର୍ଟିର ଆବଶ୍ୟକତାକୁ । ତାଙ୍କର ସେ ଚିନ୍ତା ୧୯୫୫-୫୬ ମସିହା ବେଳକୁ ବାସ୍ତବ ରୂପ ନେଇ ଓଡ଼ିଶାରେ ସୋସିଆଲିଷ୍ଟ ୟୁନିଟି ସେଣ୍ଟର (S.U.C I)ର ଜନ୍ମ ଦେଇଥିଲା । ସେ ଥିଲେ ଓଡ଼ିଶାରେ ତାର ପ୍ରତିଷ୍ଠାତା, "ସର୍ବହରା" ନାମକ ପାକ୍ଷିକର ସେ ଥିଲେ ସମ୍ପାଦକ ।

ମୋର ଗତି ଆଶ୍ରୟସ୍ଥଳ, (ଯାହା ଥିଲା ମୋର ସେତେବେଳେ ପ୍ରଧାନ ସମସ୍ୟା) ସେହି ୧୯୫୪ରେ ରଘୁବାବୁଙ୍କ ଘର ହୋଇଥିଲା, ତାପରେ କିଛିଦିନ ତେଲେଙ୍ଗା ବଜାରରେ ସେତେବେଳେ ରହୁଥିବା ଆଡ୍‌ଭୋକେଟ୍ ଶ୍ରୀନିବାସ

ମିତ୍ର (୮)ଙ୍କ ଘରେ ମଧ୍ୟ ମୁଁ ଜୀବନ କଟାଥିଲି । ତାପରେ ପୁଣି ୧୯୫୭, ୧୯୫୮ ମସିହାରେ ରଘୁବାବୁଙ୍କ ଘରେ ରହିଥିଲି । ବିଭିନ୍ନ ସମୟରେ ରଘୁବାବୁଙ୍କ ରହିବା ଭିତରେ ମୋର ସାହିତ୍ୟକର୍ମ ବାସ୍ତବରୂପ ପରିଗ୍ରହ କରେ । ସେ ତାକୁ ଦେଖନ୍ତି, ମୂଲ୍ୟବାନ ପରାମର୍ଶ ଦିଅନ୍ତି । ପରେ ଯେତେବେଳେ ମୋର ଅଳ୍ପ କବିତାମାନ ପତ୍ର-ପତ୍ରିକାରେ ପ୍ରକାଶିତ ହୁଏ, ସେତେବେଳେ ଏକ କୁତ୍ସା ଆରମ୍ଭ ହୁଏ ଯେ, ମୋ ନାମରେ ପ୍ରକାଶିତ ସେ ସବୁ ଲେଖା ମୋର ନୁହେଁ— ରଘୁବାବୁଙ୍କର ।

ଯେଉଁ ଅନ୍ତରଙ୍ଗ ହେବା ସଙ୍ଗେ ସଙ୍ଗେ ରଘୁବାବୁ ଓ ତାଙ୍କ ପରିବାରକୁ ମୋ ନିଜ ଲୋକ ଓ ପରିବାର, ତାଙ୍କ ଘରକୁ ମୋ ନିଜ ଘର ବୋଲି ମନେ ହୋଇଥିଲା, ବାସ୍ତବରେ ତାର ସତ୍ୟତା ମଧ୍ୟ କହୁଥିଲା ଥିଲା । ଅପର ପକ୍ଷରୁ ଅନୁରୂପ ବ୍ୟବହାର ମୋତେ କ୍ରମାଗତ କୃତଜ୍ଞ କରିଥିଲା ମଧ୍ୟ । ଦୀର୍ଘ ୨୫ ବର୍ଷର ଛୋଟିଆ ଛୋଟିଆ ଘଟଣା ଲେଖିବସିଲେ ଅନେକ ସ୍ମୃତି ଲେଖିବାକୁ ହେବ । ତେବେ ମୋର ବନ୍ଧୁ ବାତାବରଣରେ, ବନ୍ଧୁ ସାଫଲ୍ୟରେ ଶାନ୍ତ ଓ ସୁଖୀ ହୋଇ ଆସିଥିଲେ ରଘୁବାବୁ ଓ ତାଙ୍କ ପରିବାର । କିନ୍ତୁ ହାୟ, ୧୯୭୮ ମସିହା ଜୁନ୍ ମାସରେ ଦୀର୍ଘ ୨୫ ବର୍ଷର ସେହି ଐତିହାସିକ ଏକାତ୍ମତାର ବେଦନାଦାୟକ ପରିସମାପ୍ତି ହେଲା, ଅବଶ୍ୟ ସେଥିପାଇଁ ଦାୟୀ ମୁଁ ନୁହେଁ, ଦାୟୀ ସିଏ, ରଘୁବାବୁ ନିଜେ । ପ୍ରସଙ୍ଗ କ୍ରମେ ତାହା ଆଲୋଚିତ ହେବ ।

୧୯୫୩ ସାଲ ବେଳକୁ ରଘୁବାବୁ ବା ଶ୍ରୀ ରଘୁନାଥ ଦାସଙ୍କ ଆଗ୍ନେୟ ଲେଖନୀ ପ୍ରାୟ ସ୍ତବ୍ଧ ହୋଇ ଯାଇଥିଲା । ପ୍ରଗତିଶୀଳ ସାହିତ୍ୟ କ୍ଷେତ୍ରରେ ଏହି ଦୁଃଖଦାୟକ ଘଟଣାକୁ ମୁଁ ମର୍ମେ ମର୍ମେ ଉପଲବ୍ଧି କରିଥିଲି ୧୯୭୨ ମସିହାରେ—ରଘୁବାବୁଙ୍କ ପ୍ରତିଭାର ମୂକତ୍ୱର ୧୯ ବର୍ଷ ପରେ । ସେତେ-ବେଳକୁ ତାଙ୍କ ସହିତ, ତାଙ୍କ ପରିବାର ସହିତ ମୋର ବ୍ୟକ୍ତିଗତ ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ ଏବଂ ତାହା ପାରିବାରିକ ସ୍ତରରେ ମଧ୍ୟ ପହଞ୍ଚିଥିଲା । ତାଙ୍କର ସମଗ୍ର ସାହିତ୍ୟ କୃତିକୁ ମନପ୍ରାଣ ଦେଇ ଅଧ୍ୟୟନ କରି ସାରି ଚିନ୍ତା କରିବାକୁ ସେହି ୧୯୭୨ ମସିହାରେ ଆରମ୍ଭ କରିଥିଲି ଯେ, ତାଙ୍କର ବିସ୍ମୃତ ତଥା ଲୁପ୍ତ ଲେଖାଗୁଡ଼ିକ ଯେତିକି ପାରେ ଉଦ୍ଧାର କରି ପତ୍ର ପତ୍ରିକାରେ ପୁନଃପ୍ରକାଶ କରିବି, ତାଙ୍କ କବିତାମାନଙ୍କର କେତୋଟିକୁ ଏକାଠି କରି ତାର ଏକ ସଙ୍କଳନ

ପ୍ରକାଶ କଲେ ଦୁଇଟି ଫଳରୁ ଗୋଟିଏ ନିଶ୍ଚୟ ମିଳିବ । ପ୍ରଥମଟି ହେବ ଆଧୁନିକ ଓଡ଼ିଆ ସାହିତ୍ୟରେ ଅଜ୍ଞାତରେ ପ୍ରବାହିତ ହୋଇ ପରେ ନିଃଶେଷ ହୋଇ ଯାଇଥିବା ନବଯୁଗ ବା ପ୍ରଗତି ସାହିତ୍ୟ ଧାରାର ଅନ୍ୟ ଏକ ମୋଡ଼, ଏକ ଅମିତ ଶକ୍ତିଧର ପ୍ରତିଭା ଯେ ଥିଲେ ରଘୁନାଥ ଦାସ, ତାହା ପାଠକ ମହଲ ଅବଗତ ହେବା ସଙ୍ଗେ ସଙ୍ଗେ, ଭବିଷ୍ୟତର ବାମପନ୍ଥୀ ଲେଖକମାନଙ୍କ ପାଇଁ ତାହା ହୋଇ ଉଠିବ ପ୍ରେରଣାର ଉତ୍ସ । ଦ୍ୱିତୀୟଟି ହେବ, ଏତଦ୍ୱାରା ସ୍ତବ୍ଧ, ମୂକ, ନୀରବ ହୋଇ ଯାଇଥିବା ସେହି ସାଚ୍ଚା ପୁରୁଷଟି ହୁଏତ ମୁଖର ହୋଇ ପୁନର୍ବାର ଲେଖନୀ ଧାରଣ କରିପାରେ ! ମୋର ଏହି ଦ୍ୱିତୀୟ ଆଶାଟି ଫଳବତୀ ହେବ ବୋଲି ସାମାନ୍ୟତମ ଭରସା ନଥିଲା । କାରଣ, "ନାନା ଜଞ୍ଜାଳ ଏବଂ ବ୍ୟସ୍ତତା ମଧ୍ୟରେ ମୁଁ ବହୁକାଳ ହେଲା ଲଗାତର ଚେଷ୍ଟା କରି ଆସିଛି, ଯଦି ଶ୍ରୀ ଦାସ ପୁନର୍ବାର ଓଡ଼ିଆ ସାହିତ୍ୟରେ କଲମ ଜାଗ୍ରତ ହେବେ, କିନ୍ତୁ ମୋର ସେ ଚେଷ୍ଟା ଶୋଚନୀୟ ଭାବରେ ବ୍ୟର୍ଥ ହୋଇଅଛି । ବିଭିନ୍ନ ସମୟରେ, କଥା ଛଳରେ ଯେତେଥର ମୁଁ ତାଙ୍କ ପାଖରେ ତାଙ୍କର ସାହିତ୍ୟିକ ଜୀବନ କଥା ଉଠାଇଛି, ସେତେଥର ତାଙ୍କ ଠାରେ ଲକ୍ଷ୍ୟ କରିଛି ଏକ ନିର୍ଲିପ୍ତ ଭଙ୍ଗୀ ଏବଂ ପରିଶେଷରେ ସେହି ଗୋଟିଏ କଥା—'ପୂର୍ବର ସେ ମଣିଷଟି ମରିଯାଇଛି ।' (୫)

୧୯୭୨ ମସିହାରେ ମୋର ସେହି ଚିନ୍ତାର ଫଳଶ୍ରୁତି ହୋଇଥିଲା, ରଘୁବାବୁଙ୍କ ପୁରୁଣା ବାମପନ୍ଥୀ ଲେଖାମାନଙ୍କୁ ନେଇ ପତ୍ର ପତ୍ରିକାମାନଙ୍କରେ ଆଉ ଥରେ ପ୍ରକାଶ କରାଇବା, ତାପରେ ମୋ ଦ୍ୱାରା ରଚିତ ପ୍ରବନ୍ଧ "ଓଡ଼ିଆ ସାହିତ୍ୟରେ ମାର୍କସବାଦୀ ଚେତନାର ଅନ୍ୟ ଏକ ମୋଡ଼ : ରଘୁନାଥ ଦାସ" ୧୯୭୩ ଜାନୁଆରୀ ସଂଖ୍ୟାରେ ଯେତେବେଳେ ପ୍ରକାଶିତ ହେଲା, ସେଥିରେ ବିସ୍ମିତ ହୋଇଥିଲେ ପାଠକ ମହଲ ଏବଂ ତରୁଣ ପ୍ରଗତିଶୀଳ ଲେଖକମାନେ ସେଥିପାଇଁ ବହୁ ମୌଖିକ ଏବଂ ଲିଖିତ ଧନ୍ୟବାଦର ମୁଁ ପାତ୍ର ହୋଇ

(୫) "ଓଡ଼ିଆ ସାହିତ୍ୟରେ ମାର୍କସବାଦୀ-ଚେତନାର ଅନ୍ୟ ଏକ ମୋଡ଼ : ରଘୁନାଥ ଦାସ"—ରବି ସିଂ (ଝଙ୍କାର ଜାନୁଆରୀ, ୧୯୭୩ ଓ "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" (ସଙ୍କଳକ : ରବି ସିଂ, ଜେ. ମହାପାତ୍ର ଏଣ୍ଡ କୋଃ, କଟକ-୨) ପୃ: ୧୦୪ ଦ୍ରଷ୍ଟବ୍ୟ ।

ଉଠିଥିଲା । ତାପରେ ରଘୁବାବୁଙ୍କ ସୁତ୍ରୁଣା ଲେଖା ଓକେତେକ ଏକାଠି କରି "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" ନାମ ଦେଇ ତାକୁ ଏକ ସଙ୍କଳନ ଗ୍ରନ୍ଥାକାରରେ ନେଃ ମହାପାତ୍ର ଏଣ୍ଡ୍ କୋଃ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶ କରାଇଥିଲି ୧୯୭୩ ମସିହା ଏପ୍ରିଲ ମାସରେ । ପ୍ରକାଶ ଥାଉକି, ପୂର୍ବୋକ୍ତ ପ୍ରବନ୍ଧ ରଚନା ଓ 'ଝଙ୍କାର' ରେ ତାର ପ୍ରକାଶନ ଏବଂ ପରେ "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" ସଙ୍କଳନ ଗ୍ରନ୍ଥର ପ୍ରକାଶନ ପଛରେ ଅନ୍ୟ ଏକ ପୃଷ୍ଠଭୂମି ଥିଲା । ଯାହାହେଲା, ସେତେବେଳେ କବି ସଚି ରାଉତରାୟ ଓଡ଼ିଆ ସାହିତ୍ୟରେ ମାର୍କସ୍‌ବାଦୀ ଚେତନାର ପ୍ରଥମ ବାହକ ଭଗୀରଥ କିଏ, ତା ନେଇ ଏକ ପ୍ରଶ୍ନ ଉତ୍ଥାପିତ କରି ନିଜକୁ ସେହି ସମ୍ପୃକ୍ତ ଚେତନାର "ଆଦିପିତା" ଭାବରେ ସ୍ଥଳାଭିଷିକ୍ତ କରିବାକୁ ଏକ ଚକ୍ରାନ୍ତ ଆରମ୍ଭ କରିଥିଲେ । ତାଙ୍କର ସେହି ଚକ୍ରାନ୍ତକୁ ଶୋଚନୀୟଭାବେ ପଣ୍ଡ କରିବା ପାଇଁ ରଘୁ ଦାସଙ୍କ ପ୍ରତିଭାର ପୁନର୍ମୂଲ୍ୟାୟନ ଥିଲା ଏକାନ୍ତ ଜରୁରୀ । ତାହା ହେଲା ପରେ ଯେ ସଚିବାବୁଙ୍କ ଚକ୍ରାନ୍ତ ପଣ୍ଡ ହୋଇଥିଲା ତାନୁହେଁ ବରଂ ତାହା ହାସ୍ୟାସ୍ପଦ ଅବସ୍ଥା ପରିଗ୍ରହ କରିଥିଲା । ଓଡ଼ିଆ ମାର୍କସୀୟ ସାହିତ୍ୟର ଉତ୍ତରାଧିକାରୀ ଭାବରେ ମୋତେ ଏକଦା ସଚିବାବୁଙ୍କ ବିରୋଧରେ ନିଷ୍ଠୁର ଭାବେ ତରବାରୀ ଧାରଣ କରିବାକୁ ପଡ଼ିଥିଲା । ଯାହାର ଫଳଶ୍ରୁତି ହେଲା "ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ" ନାମରେ ୧୯୬୮ ସାଲ ଅକ୍ଟୋବର ଠାରୁ "ଝଙ୍କାର" ପୃଷ୍ଠାରେ ଧାରାବାହିକ ଭାବରେ ଲେଖା ଲେଖି ଚାଲିଲା ଉଚ୍ଚବର୍ଗ ଏବଂ ଓଡ଼ିଆ ବିପ୍ଳବୀ ସାହିତ୍ୟର ସୁରକ୍ଷା ଲାଗି । ମୋର ସେହି ଧାରାବାହିକ "ସଂସ୍କୃତିର ବୈପ୍ଳବିକ ମୂଲ୍ୟବୋଧ" ଲେଖାଟି ଗ୍ରନ୍ଥାକାରରେ ୧୯୭୭ ମସିହାରେ 'ଓଡ଼ିଶା ବୁକ୍ ଷ୍ଟୋର' ସଂସ୍ଥା ଦ୍ୱାରା ପ୍ରକାଶିତ ହେବା ଫଳରେ ସଚିବାବୁଙ୍କ ଚକ୍ରାନ୍ତ ଚିରକାଳ ପାଇଁ ବିଲୁପ୍ତ ହୋଇଥିଲା । ଏହି ଚକ୍ରାନ୍ତର ବିଲୁପ୍ତି ପୂର୍ବରୁ କଟକ ଟାଉନ୍ ହଲରେ ୧୯୭୩ ମସିହାରେ ଏକ ସାହିତ୍ୟ ସଭାରେ ସଚିବାବୁଙ୍କ ଉପରେ ଏସିଡ୍ ବୋମା ନିକ୍ଷେପ ଘଟଣାରେ ମୋତେ ଗିରଫ ହେବାକୁ ପଡ଼ିଥିଲା । ସେ ଯାହା ହେଉ, ରଘୁବାବୁଙ୍କୁ ଉପଜୀବ୍ୟ କରି ମୋର ପ୍ରବନ୍ଧ ରଚନା, ତାଙ୍କ ସୁତ୍ରୁଣା ଲେଖାର ପୁନଃପ୍ରକାଶନ "ଅଗଷ୍ଟ ପନ୍ଦର ଓ ଅନ୍ୟାନ୍ୟ କବିତା" ସଙ୍କଳନ ଗ୍ରନ୍ଥ ପ୍ରକାଶନ ଫଳରେ ପାଠକର ଦୃଷ୍ଟି ଆକର୍ଷିତ ହେବାକୁ ଲାଗିଲା, ଅନେକ ସମାଲୋଚକ ସଚେତନ ହେଲେ ତାଙ୍କୁ ଆଲୋଚନା କରିବା ପାଇଁ । ଏହା ସବୁଠାରୁ ମୋ ପକ୍ଷରେ

ଆତ୍ମସନ୍ତୋଷ କାରଣ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଯାହା ମୋର କଳ୍ପନାଶ୍ରିତ ଥିଲା, ସ୍ୱପ୍ନ ଥିଲା, ତାହା ବାସ୍ତବ ରୂପ ନେଲା ଅତି ଶୀଘ୍ର । ତାହା ହେଲା ରଘୁନାଥ ଦାସଙ୍କ ସାରସ୍ୱତ ପ୍ରତ୍ୟୁଷର ପୁନରୁତ୍ଥାନ । ସେ ପୁଣି ଲେଖନୀ ଧାରଣ କଲେ । "ଜଟାୟୁ" ଛଦ୍ମନାମରେ ତାଙ୍କର ଲେଖା ଆଜି ପାଠକ ଦରବାରରେ ଉପସ୍ଥାପିତ ହେଉଛି ।

ମାନେ ମାନେ କମ୍ୟୁନିଷ୍ଟ ପାର୍ଟିରୁ ଓହରି ଆସିଥିଲେ ମଧ୍ୟ ପାର୍ଟି ସହିତ ଓ ତାର ବହୁ ନେତା କର୍ମୀଙ୍କ ସହିତ ମୋର ସୌଜନ୍ୟ ସମ୍ପର୍କ ବଳବତ୍ତର ଥିଲା ବହୁକାଳ ଯାବତ୍ । ପୁଣି ପୁରାତନ ପଥପ୍ରାନ୍ତର ଜୀବନକୁ ଫେରି ଯାଆଥାରମ୍ଭ କାଳରେ କେବେ କେବେ ହସହସ ମୁହଁରେ ମୋ ଆଗରେ ଉଦୟ ହୋଇ ଦଣ୍ଡେ ଠିଆ ହୋଇ ପଡ଼ ପିଏ ମୋତେ ଆଶୀର୍ବାଦ କରୁଥିଲେ ଏବଂ ମୋର ସଫଳତା—ସମ୍ଭାବନାକୁ ପିଏ ବଧେଇ ଜଣାଉଥିଲେ, ସେ ହେଉଛନ୍ତି ସ୍ୱର୍ଗତ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ପ୍ରାଣନାଥ ପଟ୍ଟନାୟକ । ମୁଁ ତାଙ୍କ ଦଳରୁ ବିଦାୟ ନେଇଥିଲେ ମଧ୍ୟ ତାଙ୍କୁ ଆଦର୍ଶର ଜଣେ ମଣିଷ ବୋଲି ଗ୍ରହଣ କରିବା ଫଳରେ ଆମର ସେ ସମ୍ପର୍କ ଅତୁଟ ଥିଲା "ଆପଣାକାଳର ସାହିତ୍ୟ" ନାମକ ତାଙ୍କ ରଚିତ ଗ୍ରନ୍ଥରେ ପ୍ରାଣନାଥ ବାବୁ ମୋର ସାହିତ୍ୟ କୃତିକୁ ସ୍ୱୀକାର ମଧ୍ୟ କରିଯାଇଛନ୍ତି । କହିବା ବାହୁଲ୍ୟ ୧୯୫୭ ମସିହା ପର୍ଯ୍ୟନ୍ତ ମୋର ଲେଖା କେତେକ କବିତା କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର "ନୂଆ ଦୁନିଆ"ରେ ପ୍ରକାଶିତ ହୋଇଥିଲା । ଉଦାହରଣ ସ୍ୱରୂପ "କେରଳ" ନାମକ ମୋର ଏକ କବିତା "ନୂଆଦୁନିଆ"ର ତା୧୭।୭।୫୯ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସେତେବେଳେ କେରଳର ବିଧାନସମ୍ମତ ବାମପନ୍ଥୀ ସରକାରଙ୍କୁ ଉତ୍ଖାତ କରିବା ପାଇଁ ପ୍ରତିକ୍ରିୟାଶୀଳ ଶକ୍ତିଗୋଷ୍ଠି ତରଫରୁ "ବିମୋଚନ ସମର ସମିତି" କେବଳ ଗଠିତ ହୋଇ ନଥିଲା, ତା ପଛରେ ଥିଲା କଂଗ୍ରେସ ଦଳର ପ୍ରଚ୍ଛନ୍ନ ହାତ । ନାୟାର ଗୋଷ୍ଠୀର ନେତା ମନ୍ମଥ ପଦ୍ମନାଭନ୍, ଶଙ୍କର, ସୋସଲିଷ୍ଟ ନେତା ପଟ୍ଟମ ଥାନୁପିଲ୍ଲାଇ, ଏ ସମସ୍ତେ ସେତେବେଳେ ଏକଜୁଟ ହୋଇଥିଲେ ଗୋଟିଏ ନାବରେ । ଏହି ସବୁ ଘଟଣାର ପୃଷ୍ଠଭୂମି ଉପରେ ରଚିତ ହୋଇଥିଲା ମୋର "କେରଳ" କବିତାଟି । ତାହାର କେତେକ ପଦ ହେଲା—

"ତମେ ଯିଏ ଉଡ଼ କେରଳ କ୍ଷେତରେ ଟଙ୍ଗଟାଳ
ଗଣତନ୍ତ୍ରର ଫସଲ-ଚଷା,
ଯିଏ 'ବିମୋଚନ ସମର ସମିତି' ରଥକୁ ବୁଲ
ଷମତାଳାପସୁ ଗାନ୍ଧିବେଷା ।

ପଞ୍ଚମ, ଆଜେ ପୋଷ୍ଟମର୍ଟମ୍ ହେଲାକ ବେଳ ?
ଡମଣ ଦଳର ସମାଜ-ବାଧା,
ମୂଳଟା ଡମର ଓ୍ବାସିଂଟନରେ, ଏଠିତ ଡ଼ାଳ
ଛଦଗ୍ ଆଣେ ବାନ୍ଧ ଦେଉ !

× × ×

ଡମ ଲଲାଟରୁ ନରହତ୍ୟାର, ଦୁଗ୍ଧ ଟିକା
କିଏ ଭଗଲଣିକ ? ପାରିବେ କହୁ ?
ତେଲେଙ୍ଗାନାରେ ହୋଇକ ନଥିଲ ରକ୍ତମୁଖା
ମଣିଷ ମାରନ ଷମତା ପାଇଁ ?"

## ॥ ଚନ୍ଦ୍ରାନନ୍ଦ ଚନ୍ଦ୍ରାମଣି ଓ 'ନବଜୀବନ' ॥

୧୯୫୩ ସାଲର ଘଟଣା ।

ଅବଭକ୍ତ କମ୍ୟୁନଷ୍ଟ ପାର୍ଟିରେ ଯୋଗ ଦେବା ପୂର୍ବରୁ ଜଣକର ସଦଚ୍ଛା, ସହାନୁଭୂତି ଦେବାର ମୋତେ ମିଳିଥିଲା । ପରବର୍ତ୍ତୀ କାଳରେ ସେହି ମହାନ୍ ବ୍ୟକ୍ତି ଜଣକ ମୋର ସାରସ୍ୱତ ତଥା କର୍ମଜୀବନର ଥିଲେ ଅନ୍ୟତମ ମାର୍ଗଦର୍ଶକ ସଦ୍ଧାଣୀ । ସେ ହେଉଛନ୍ତି ସ୍ୱର୍ଗତ ମହାପ୍ରାଣ ଚନ୍ଦ୍ରାମଣି ମିଶ୍ର । ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ କଟକସ୍ଥ ସରକାରୀ ବାସଭବନରୁ ଗୋଟଛବାଡ଼ଆ ଖାଇ, ମୁଣ୍ଡଗୁଞ୍ଜିବାକୁ ଜାଗା, ଭବିଷ୍ୟତ ଜୀବନ ପାଇଁ ଆର୍ଥିକ ସଂସ୍ଥାନ ଆଶାରେ ଉଦ୍‌ଭ୍ରାନ୍ତ ଅବସ୍ଥାରେ କଟକ ସହରରେ ବୁଲୁଥିବା ବେଳେ ଦିନେ କେହି ଜଣେ ମୋତେ ସତ୍‌ପରାମର୍ଶ ଦେଇଥିଲେ ଭୁବନେଶ୍ୱରରେ ଚନ୍ଦ୍ରାମଣି ବାବୁଙ୍କୁ ଯାଇ ଦେଖା କରିବା ପାଇଁ । ଚନ୍ଦ୍ରାମଣି ବାବୁ ସେତେବେଳେ ଓଡ଼ିଶା ସରକାରଙ୍କର ଲୋକସମ୍ପର୍କ ବିଭାଗର ଡ଼ାଇରେକ୍ଟର ଓ ଆଦିବାସୀ-ଗ୍ରାମମଙ୍ଗଳ ବିଭାଗର ସଚିବ । ସେତେବେଳେ ମାସିକ ୪୫ ଟଙ୍କା ବେତନରେ ତାଙ୍କ

ସରକାର ତରଫରୁ "ଫର୍ଷ୍ଟ ପିଟି ଓ୍ୱାର୍କର"ମାନେ ନିଯୁକ୍ତ ହେଉଥାନ୍ତି । ସେହିମାନଙ୍କ ଭିତରୁ ଜଣେ ହୋଇ ବଞ୍ଚି ରହିବାର ପ୍ରବଳ ବାସନା ନେଇ ବଡ଼ କଷ୍ଟରେ ଅନାହାର ଅବସ୍ଥାରେ ଯେଉଁଦିନ ନୂଆ ରାଜଧାନୀ ବାସଭବନରେ ପହଞ୍ଚି ତାଙ୍କୁ ଦେଖା କରିଥିଲି, ସେଦିନ ଥିଲା ରବିବାର । ଚିନ୍ତାମଣିବାବୁ ତାଙ୍କ ଘର ଅଫିସରେ ବସି ଫାଇଲ୍ କାମ କରୁଥିଲେ । ସମଗ୍ର ଦେହରେ ତାଙ୍କର ଏକ ପ୍ରଚଣ୍ଡ ବୁଦ୍ଧିଦୀପ୍ତ ପୌରୁଷ ଫୁଟି ଉଠୁଥିଲା, ଏକ ଷଣ୍ଢ ନରାଧିରାଜ ପରି ସେ ଚଉକିରେ ବସିଥିଲେ । ମୁଁ ତାଙ୍କ ସାମ୍ନାରେ ଆଭୂମି ନତ ହୋଇ ପ୍ରଣାମ ଜଣାଇ ମୋର ଇତିବୃତ୍ତ କହିଗଲି; ସେ ଫାଇଲ କାମ ଛାଡ଼ି ମୋର ବକ୍ତବ୍ୟକୁ ନୀରବରେ ଶୁଣିଗଲେ । କିଛି ସମୟ ଚିନ୍ତାମଗ୍ନ ରହି କହିଲେ, "ହଉ, ବ୍ୟସ୍ତ ହୁଅନା । ମୁଁ ଜାଣୁଛି, ତମେ ବଡ଼ କଷ୍ଟରେ ଅଛ । ଆଚ୍ଛା, ଏଠି ମୁଖ୍ୟମନ୍ତ୍ରୀ ନବବାବୁଙ୍କୁ ଦେଖା କଲଣି ?"

ମୁଁ ତାଙ୍କୁ କଟକରେ ମୁଖ୍ୟମନ୍ତ୍ରୀଙ୍କର ମୋ ପ୍ରତି ଅମାନୁଷିକ ବ୍ୟବହାର କଥା ସୂଚାଇ ଦେବାରୁ ସେ ତାଙ୍କୁ "ଚଣ୍ଡାଳ ବୃତ୍ତି" ବୋଲି ଅଭିହିତ କରି କହିଲେ, ଏଠି ଆଉଥରେ ଯାଇ ତାଙ୍କୁ ଦେଖାକରି ମୁଁ ତମକୁ ପଠାଇଛି ବୋଲି କୁହ । ସିଏ ଖାଲି ଟିକେ ଇସାରା ଦେଲେ ମୁଁ ସବୁ ବ୍ୟବସ୍ଥା କରିଦେବ । କାରଣ, ତମେ ତ ପାଠଶାଠ ପଢ଼ିନାହଁ, ତମର ତ କିଛି ସାର୍ଟିଫିକେଟ ନାହିଁ, କଣ କରାଯିବ ?"

ତାଙ୍କଠାରୁ ଏତିକି ଶୁଣି ମୁଁ ବାହାରିବା ପାଇଁ ଉଦ୍ୟତ ହେଉଛି, ସେ ପୁଣି କହି ଉଠିଲେ, "ଆରେ ! ତମେ କ'ଣ ଏଇଲେ ଯିବ ? ରହ ଆମର ଏଠି ମୁଣ୍ଡିଏ ଖାଇବ, ରାତିରେ ବି ଏଠି ରହିବ, କାଲି ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବ । ଦେଖା କରି ସାରି ମୋତେ ଆସି କହିବ । ତା ପରେ ମୋ'ଠୁ ବାଟ ଖର୍ଚ୍ଚ ନେଇ କଟକ ଫେରିବ ।" ଏତିକି କହି ସାରି ସେ ତାଙ୍କ ସହଧର୍ମିଣୀଙ୍କ ଉଦ୍ଦେଶ୍ୟରେ ଡାକିଲେ, "ହଇଲୋ !…"

ଗୌରବର୍ଣ୍ଣର ଅନୁଚ୍ଚ ମହୀୟସୀ ମାତୃପ୍ରତିମ ନାରୀ ମୂର୍ତ୍ତିଟି ଆସି ତାଙ୍କ ସାମ୍ନାରେ ହାଜର ହେଲେ । ମୋ ଆଡ଼କୁ ଆଙ୍ଗୁଳି ସଙ୍କେତ କରି ଚିନ୍ତାମଣି ବାବୁ ତାଙ୍କୁ କହିଲେ, "ଏ ପିଲାଟି ଭାରି ଦୁଃଖୀ, ବଡ଼ କଷ୍ଟରେ କଟକରୁ

ଆସିଛୁ ମତେ ଦେଖା କରିବା ପାଇଁ । ବାପ ମା, ଘରଦ୍ୱାର, ଖାଇବା-ପିଇବା ରହିବା ସ୍ଥା'ର କିଛି ନାହିଁ । ମତେ ଆଉ ପୁଆକୁ ପୁଞ୍ଜିଏ କ'ଣ ଖାଇବାକୁ ଦେ ।"

ପ୍ରକାଶ ଥାଉକି, ସେହିଦିନ ଠାରୁ ଏ ଯାବତ୍ ଚିନ୍ତାମଣି ବାବୁଙ୍କର ସେହି ସହଧର୍ମିଣୀଙ୍କର ଆଦରଯତ୍ନ, ଅମାୟିକତା, ଶ୍ରଦ୍ଧା ପ୍ରଚୁର ଭାବରେ ମୁଁ ପାଇ ଆସିଛି ।

ଭୋଜନ ପର୍ବ ଆରମ୍ଭ ହେଲା । ଚିନ୍ତାମଣି ବାବୁଙ୍କ ସାମ୍ନାରେ ବସି ମୁଁ ଖାଇଲି । ଖାଇବା ଭିତରେ ନାନା ରସରସିଆ ଗପ କରି ସେ ମୋତେ ଆଉ ତାଙ୍କ ସ୍ତ୍ରୀଙ୍କୁ ହସାଉଥାନ୍ତି । ମୁଁ ମାଛମାଂସ ଖାଏ ନାହିଁ ବୋଲି ସେ ଜାଣିବା ପରେ ଦହି ଓ ଅନ୍ୟାନ୍ୟ ତରକାରି ମୋତେ ଅଧିକ ପରିମାଣରେ ଦେବା ପାଇଁ ନିର୍ଦ୍ଦେଶ ଦେଇ କହିଲେ, "ମାଛ ଖାଇବ ନାହିଁତ ଖାଇବ କ'ଣ ? ମ୍ଲେଚ୍ଛମାନେ ହିଁ କେବଳ ମାଛ ଖାଆନ୍ତି ନାହିଁ ।"

ଏକଥା ସର୍ବବିଦିତ ଯେ, ପଣ୍ଡିତ ନୀଳକଣ୍ଠ ଦାସଙ୍କ ପରେ ଓଡ଼ିଶାରେ ମାଛ ଖାଇବା ଲୋକ ଯେତେଜଣ ଥିଲେ, ଚିନ୍ତାମଣିବାବୁ ସେମାନଙ୍କ ମଧ୍ୟରୁ ଅନ୍ୟତମ ।

ମନେପଡୁଛି, ମୋର ସେତେବେଳର ଛିନ୍ନ ପରିଧାନ ତାଙ୍କ ଦୃଷ୍ଟି ଏଡ଼ାଇ ପାରି ନ ଥିଲା । ସନ୍ଧ୍ୟାବେଳେ ପିଅନକୁ ପଠାଇ ସେ ମୋ ପାଇଁ ଖଣ୍ଡେ ଆଠହାତ ଖଦଡ଼ ଧୋତି ଆଉ ଏକ ହାଫ୍ ସାର୍ଟ କିଣି ଆଣି ମୋତେ ତାଙ୍କର ଆଗରେ ପିନ୍ଧିବାକୁ ବାଧ୍ୟ କରିଥିଲେ ।

ରାତିରେ ଖାଇପିଇ ସାରି ତାଙ୍କ ଅଫିସ ଘରେ ଶୋଇଥିଲି ।

ସକାଳୁ ନିତ୍ୟକର୍ମ ସାରି ତାଙ୍କରି ପାଖରେ ବସି ଚୁଡ଼ାଚିନି-କଦଳୀ-ଚକଟା ଜଳଖିଆ ଖାଇ ୮।୯ଟା ବେଳେ ଯାଇ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସରକାରୀ ବାସଭବନରେ ପହଞ୍ଚିଲି । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ପାଖ-ଲୋକ ବା ରାଜନୈତିକ ପି· ଏ· ଥାଆନ୍ତି ଶ୍ରୀ ବଳରାମ ମହାନ୍ତି । ଶ୍ରୀ ମହାନ୍ତି

ଜଣେ ସ୍ୱାଧୀନତା ସଂଗ୍ରାମୀ । ମୋ ବାପାଙ୍କୁ ଏବଂ ମୋତେ ସେ ଆଗରୁ ଭଲ ଭାବରେ ଜାଣିଥିଲେ । ଚଉକିଆ ଦେଖିଲା ମୁଖ୍ୟମନ୍ତ୍ରୀଙ୍କ ଦର୍ଶନ-ଆଶାୟୀ ବହୁ ଲୋକ ଅପେକ୍ଷମାଣ । ବାରଣ୍ଡା ଉପରକୁ ଉଠି ବଳଦେବ ବାବୁଙ୍କୁ ନମସ୍କାର କରି ଝୁଲୁଥିବା ପରଦା ଫାଙ୍କରୁ ଦେଖିଲି, ମୁଖ୍ୟମନ୍ତ୍ରୀ ନବବାବୁ ତାଙ୍କ ଚଉକି ଉପରେ ବସି ଫାଇଲ ଦେଖୁଛନ୍ତି, ଆଉ ତାଙ୍କ ସାମ୍ନାରେ ଥୁଆ ହୋଇଥିବା ସେକ୍ରେଟେରିଏଟର ଡାମିକା 'ଗୋଲ୍ଡ ଫ୍ଲେକ' ସିଗାରେଟ ଟିଣରୁ ଗୋଟିଏ ଲେଖାଏ ବାହାର କରି ସେଥିରେ ନିଆଁ ଧରାଉଛନ୍ତି ।

ବିତିଗଲା ୧୦/୧୫ ମିନିଟ୍ ।

ବାହାରକୁ ବାହାରିଲେ ମୁଖ୍ୟମନ୍ତ୍ରୀ । ପ୍ରଥମେ ଦୃଷ୍ଟି ପଡ଼ିଲା ମୋ ଉପରେ । ସେ "କଣରେ ?" ବୋଲି କହି ଦ୍ରୁତ ଚାଲି ଯାଉ ଯାଉ ମୁଁ ତାଙ୍କ ପଛେ ପଛେ ଗୋଡ଼ାଇ କହିଲି, "ଚନ୍ଦ୍ରମଣି ମିଶ୍ରେ ମୋତେ ପଠାଇଛନ୍ତି । ଟିକେ ସମୟ ଦେବେ - "

ସଙ୍ଗେ ସଙ୍ଗେ ବିଦ୍ରୂପାତ୍ମକ ସ୍ୱରରେ ନବବାବୁ କହିଲେ, "ତୁ ସେଠି ଯାଇ ଯୁଟିଲୁଣି ? ହଉ ଯା ; ମୋର ଅବକାଶ ନାହିଁ ।"

କ୍ଷୋଭ, ଦୁଃଖ, ହତାଶାର ଦୀର୍ଘଶ୍ୱାସ ନେଇ ଫେରିଲି । ଫେରି ଚନ୍ଦ୍ରମଣି ବାବୁଙ୍କୁ ସବୁକଥା କହିଲି । ସେ ମନେ ମନେ କ୍ଷୁବ୍ଧ ଏବଂ ଚିନ୍ତିତ ହବା ପରି ମନେହେଲା । ତା'ପରେ ସେ ମୋତେ ଦଶୋଟି ଟଙ୍କା ଦେଇ କହିଲେ, "ହଉ, ତମେ କଟକ ଯାଅ ଘର । ସୁବିଧା ହେଲେ ମତେ ମଝିରେ ମଝିରେ ଦେଖା କରିବ । ମୁଁ ଦେଖୁଛି, କ'ଣ କରାଯାଇପାରେ ।"

ସ୍ୱୀକାର କରିବାରେ କିଛି କାର୍ପଣ୍ୟ ନାହିଁ ଯେ, ସେଦିନ ତାଙ୍କ ପ୍ରଦତ୍ତ ସେହି ଦଶୋଟି ଟଙ୍କା ଯୋଗୁ ମୁଁ ୧୫ ଦିନ ଧରି କଟକ ସହରରେ ଆର୍ଥିକ ଦୁଶ୍ଚିନ୍ତାରୁ ମୁକ୍ତ ଥିଲି ।

ତା'ପରେ ଟେଲିଫୋନ, ଚିଠିପତ୍ର ଏବଂ ବେଳେବେଳେ ମୁହାଁମୁହିଁ ଦେଖାସାକ୍ଷାତରେ ଆମର ଅନ୍ତରଙ୍ଗତା, ଏକାତ୍ମତା କ୍ରମବର୍ଦ୍ଧିତ ହେବାକୁ

ଲାଗିଲା । ତାଙ୍କ ଗୃହସ୍ଥ-ଜୀବନ ଭିତରେ ସେ କଷ୍ଟକୁ ଆସିଲେ ମୋତେ ନିଶ୍ଚୟ ଖୋଜନ୍ତି, ନାନା ଲୋକଙ୍କୁ ମୋ କଥା ପଚାରନ୍ତି, ମୋତେ ଦେଖିଲେ ଆଶାବାଣୀ ଶୁଣାଇ ଆର୍ଥିକ ସାହାଯ୍ୟ ବି ଦେଇ ଥାଆନ୍ତି ।

୧୯୫୫ ମସିହାରେ ସେ ଅପ୍ରତ୍ୟାଶିତ ଭାବରେ ଧନ୍ୟ ଜଞ୍ଜାଳବନ୍ତ ନିଜର ଉଚ୍ଚ ସରକାରୀ ପଦାଧିକାରକୁ ଛୋଡାଛାଡ଼ି କରି କଟକର ଗୃହଶାଳେଚୌକ-ଠାରେ 'ନବଜୀବନ ପ୍ରେସ' ଓ କାର୍ଯ୍ୟାଳୟର ମୂଳଦୁଆ ପକାନ୍ତି । ୧୯୫୬ ମସିହାରେ ତାଙ୍କ ସମ୍ପାଦନାରେ 'ନବଜୀବନ' ମାସିକ ପତ୍ର ଆତ୍ମପ୍ରକାଶ କରେ । ସେ ମୋର ସହଯୋଗିତା କାମନା କରି 'ନବଜୀବନ'କୁ ନିଜର ମୁଖପତ୍ର ବୋଲି ଭାବିବାକୁ ବାରମ୍ବାର କହୁଥିଲେ । ପ୍ରକାଶ ଥାଉକି, ୧୯୫୫-୫୬ ମସିହା ବେଳକୁ ମୋ ସାହିତ୍ୟିକ ପ୍ରତିଭାର ଶସ୍ୟ ନିୟମିତ ଧୀରେ ଧୀରେ ବିସ୍ତାରିତ ହେବାକୁ ଆରମ୍ଭ କରୁଥିଲା । ତା'ର ଫଳଶ୍ରୁତି ହୋଇଥିଲା ମୋର କ୍ଷୁଦ୍ରଗଳ୍ପ ରଚନା । ସେହି ଗଳ୍ପଗୁଡ଼ିକର ଭାଷା, ବର୍ଣ୍ଣନାପାଟବତା, ବିଷୟ, ଚରିତ୍ର ନାୟକନାୟିକାମାନେ ଆସିଥିଲେ ମୋର ରାଜନୈତିକ ତଥା ନିତ୍ୟାନ୍ତଜୀବନର ପରିପାର୍ଶ୍ୱ ଓ ଅନୁଭୂତିରୁ । ଏହି ଗଳ୍ପ ରଚନାରେ ପ୍ରଥମେ ମୋତେ ଉତ୍ସାହିତ କରନ୍ତି ସ୍ୱର୍ଗତ କବି ପୂଜ୍ୟ ଗୋଦାବରୀଶ ମହାପାତ୍ର । ତାଙ୍କର ବକ୍ତବ୍ୟ ଥିଲା, "ଭଲ ଗଳ୍ପର ଏକାନ୍ତ ଅଭାବ । ଲେଖ, ଲେଖ, ଲେଖ, ଠିକ ହୋଇଯିବ । ତମର ଭାଷା ଭାରି ଭଲ ।" ତା'ପରେ ଗଳ୍ପଗୁଡ଼ିକୁ ଲେଖି ତାକୁ ନେଇ ଯେତେବେଳେ ଚିନ୍ତାମଣିବାବୁଙ୍କ ହାତରେ ଦିଏ, ସେ ତାକୁ ଅଶେଷ ଆଗ୍ରହରେ ନେଇନ୍ତି ଆଉ ବିନା ଦ୍ୱିଧାରେ 'ନବଜୀବନ'ରେ ପ୍ରକାଶ କରିବାକୁ ଆରମ୍ଭ କରନ୍ତି । କ୍ରମାଗତ ଭାବେ ମୋର ଅନେକ କ୍ଷୁଦ୍ର-ଗଳ୍ପ ଯେତେବେଳେ 'ନବଜୀବନ'ରେ ପ୍ରକାଶିତ ହୋଇନଥାନ୍ତା ମୋର ଆଜିର ସାହିତ୍ୟିକ ସ୍ଥିତିର ଚିହ୍ନବର୍ଣ୍ଣ ନଥାନ୍ତା । ୧୯୫୭ ମସିହା ମାର୍ଚ୍ଚ ମାସରେ 'ନବଜୀବନ'ରେ ପ୍ରକାଶିତ ମୋର ସେହି କ୍ଷୁଦ୍ରଗଳ୍ପଗୁଡିକର ସଙ୍କଳନ 'ଗ୍ରନ୍ଥମନ୍ଦିର' ପ୍ରକାଶନ ସଂସ୍ଥା କର୍ତ୍ତୃକ 'ପରାସ୍ତ ସୈନିକ' ନାମ ଧାରଣ କରି ଯେତେବେଳେ ପୁସ୍ତକାକାରରେ ପ୍ରକାଶ ପାଇଥିଲା, ସେତେବେଳେ ଶତ କ୍ଷତ, କୋଟି ଉପବାସ, ଲାଞ୍ଛନା, ଅନାଦର ମଧ୍ୟରେ ବି ମୋର ସେ ଦିନଟି ଥିଲା, ଗଭୀର ଆନନ୍ଦର ଦିବସ । ଯାହା ମୂଳରେ ଥିଲା ଚିନ୍ତାମଣି ବାବୁଙ୍କ ଦୂରଦୃଷ୍ଟି ।

ପରବର୍ତ୍ତୀ କାଳରେ ମୋ କ୍ଷୁଦ୍ରଗଳ୍ପ ଉପର ମୃତ୍ୟୁ ଘଟି ତା ବଦଳରେ ଶୁଭିଥିଲା କାବ୍ୟର ନୂପୁରଧ୍ୱନି । ସେ ଧ୍ୱନିର ମୁଗ୍ଧ ଶ୍ରୋତା, ତା'ର ବିଦଗ୍ଧ ପାଠକ, ତା'ର ରସଗ୍ରାହୀ ସମାଲୋଚକ (ନିନ୍ଦୁକ ନୁହନ୍ତି) ଥିଲେ ଚିନ୍ତାମଣି-ବାବୁ । ମୋର ବିଶାଳ କାବ୍ୟ-ଜଗତର ଅସଂଖ୍ୟ କବିତାକୁ ସେ 'ନବଜୀବନ' ପୃଷ୍ଠାରେ ପ୍ରକାଶ କରି ମୋର କବି ତଥା ଲେଖକ ଜୀବନର ଭିତ୍ତି ସ୍ଥାପନ କରିଦିବା ସଙ୍ଗେ ସଙ୍ଗେ ଆଧୁନିକ ଓଡ଼ିଆ ସାହିତ୍ୟରେ ମୋ'ର ନିର୍ଦ୍ଦିଷ୍ଟ ସ୍ଥାନ ସୁରକ୍ଷିତ କରିବାରେ ଅମୂଲ୍ୟ ସାହାଯ୍ୟ କରିଯାଇଛନ୍ତି । 'ନବଜୀବନ'ର ଜନ୍ମ ଠାରୁ ମୃତ୍ୟୁ ଅବଧି, ୧୯୫୫ ମସିହା ଠାରୁ ଏଯାବତ୍ ମୁଁ ତାଙ୍କ ପରିବାରର ଜଣେ ହୋଇ ଆସିଛି । ଦୀର୍ଘ ୨୭-୨୭ ବର୍ଷ ଧରି ତାଙ୍କର, ତାଙ୍କ ସହଧର୍ମିଣୀଙ୍କର, ତାଙ୍କ ପିଲାମାନଙ୍କର ସ୍ନେହ ଶ୍ରଦ୍ଧା, ସହାନୁଭୂତି ମୋତେ ଦରିଦ୍ରରୁ କରିଛି ଧନୀ (ବୈଷୟିକ ଦୃଷ୍ଟିରୁ ନୁହେଁ), ଅଖ୍ୟାତରୁ କରିଛି ଖ୍ୟାତ । ଦିନହିନ, ମାସମାସ ଧରି ପୂଜ୍ୟ ପୁଣ୍ୟାତ୍ମା ଚିନ୍ତାମଣି ବାବୁଙ୍କ ସହିତ ବୌଦ୍ଧିକ ଆଲୋଚନା ସହିତ ତାଙ୍କ ଠାରୁ ମହାଭାରତ, ରାମାୟଣ, ଗୀତା, ଶବ୍ଦକଳ୍ପଦ୍ରୁମର ତର୍ଜମା, ବିଶ୍ଳେଷଣ ଶ୍ରବଣ ଫଳରେ ମୋର ଲେଖନୀ ପାଇଥିଲା ଭାଷା, ଚିରନ୍ତନ ମାନବିକ ମୂଲ୍ୟବୋଧ ସହିତ, ପ୍ରଚଣ୍ଡ ତଥା ଅନମନୀୟ ମାନସିକତା । ତାଙ୍କ ସହିତ, ତାଙ୍କ ପରିବାର ସହିତ ମୋର ନିତ୍ୟନୂତନ ସ୍ମୃତି ବିଜଡ଼ିତ । ସେ ଥିଲେ ଅତୀତରେ ମୋର ଲକ୍ଷ୍ମୀଛଡ଼ା ଉଦ୍‌ଭ୍ରାନ୍ତ ଜୀବନର ଏକ ମହାର୍ଘ ନୈତିକ ଅବଲମ୍ବନ, ଆଉ ପାର୍ଥିବ ଭରସା ମଧ୍ୟ । ତାଙ୍କୁ ଯେବେ ପାଇଥିଲି ଆଉ ତାଙ୍କୁ ଯେବେ ହରାଇଲି, ଏଇ ପାଇବା-ହରାଇବା ଭିତରେ ଯେଉଁ ଦୀର୍ଘ ବ୍ୟବଧାନ, ତାହା ଥିଲା ଆଧୁନିକ ଓଡ଼ିଆ ସାହିତ୍ୟର ଘୋର ସନ୍ଧିକ୍ଷଣ—ଗୋଟାଏ, "ଅଗ୍ନିଯୁଗ" । ଏହି ସମୟରେ ସାହିତ୍ୟ ପୀଠରେ ତୁମୁଳ ତରୁଣ-ପ୍ରବୀଣ ସଂଘର୍ଷ, ଭାଷାଆନ୍ଦୋଳନ, ଦେବାଳିଆ ସାହିତ୍ୟିକ ଓ ସେମାନଙ୍କର ଅବକ୍ଷୟୀ ମୂଲ୍ୟବୋଧ ଉପରେ ଏକ ବୈପ୍ଳବିକ ଆକ୍ରମଣର ସମୟ । ଯେଉଁ ସମୟ ଏବଂ ଆକ୍ରମଣ କି ସାହିତ୍ୟ-ପୀଠରେ ତାରୁଣ୍ୟର ବିଜୟକୁ କେବଳ ସୁନିଶ୍ଚିତ କରିନଥିଲା—ବ୍ୟକ୍ତିଗତ ଭାବରେ ମୋତେ ଦେଇଥିଲା ପ୍ରଥମେ "ବିଦ୍ରୋହୀ କବି" ଓ ପରେ "ବିପ୍ଳବୀ କବି"ର ଗୌରବ ମୁକୁଟ । ସେହି ମୁକୁଟ ପରିଧାନପୂର୍ବକ ମୁଁ ସ୍ୱର୍ଗତ ଚିନ୍ତାମଣି ମିଶ୍ରଙ୍କୁ ବହୁବାର ପ୍ରଣତି ଜଣାଇଛି । ତା'ର ପ୍ରତିଦାନରେ ସେ ମୋତେ ପ୍ରାଣଖୋଲା ଆଶୀର୍ବାଦ କରିଛନ୍ତି ଆନନ୍ଦାଶ୍ରୁ ବିସର୍ଜନପୂର୍ବକ ।

ଚନ୍ଦ୍ରାମଣି ବାବୁଙ୍କର ବହୁମୁଖୀ ପାଣ୍ଡିତ୍ୟ, ମନୀଷା, ବାଗ୍‌ବୈଭବ ତାଙ୍କ ଲେଖା 'ନବଜୀବନ'ର 'ସମ୍ବାଦ ଓ ସଙ୍କେତ' (ସମ୍ପାଦକୀୟ) ପ୍ରବନ୍ଧ, ତାଙ୍କ ଉପନ୍ୟାସ, କ୍ଷୁଦ୍ରଗଳ୍ପ, ଓ ସାକ୍ଷାତ୍କାରମାନ ସତରେ କି ଅପୂର୍ବ ! କି ଶକ୍ତିଶାଳୀ ! ମୁଁ ସେ ସବୁର ଶ୍ରୋତା, ପାଠକ ହେବାର ସୌଭାଗ୍ୟ ଲାଭ କରିଛି ବର୍ଷ ବର୍ଷ ଧରି । ମୋର ପ୍ରାଣପ୍ରାଚୁର୍ଯ୍ୟ ଯୌବନର ସେ ଥିଲେ ଦର୍ଶକ ଓ ଦର୍ପଣ; ମୋର ସାହିତ୍ୟିକ ଜୀବନର, ସାଫଲ୍ୟର, ପ୍ରତିଷ୍ଠାର ସେ ଥିଲେ ବନ୍ଧାଣୀ; ମୋର ବିପଦ-ଆପଦଭରା ଜୀବନର ସେ ଥିଲେ ବ୍ୟଥୀ; ମୋର ନବନବ ସାଫଲ୍ୟରେ ସେ ଥିଲେ ସୁଖୀ ଉତ୍‌ଫୁଲ୍ଲିତ । ଏପରି ମଣିଷଟିଏ ଆଜି କାହିଁକି, ଆଗାମୀ ବହୁକାଳ ଖୋଜିଲେ ମିଳିବା ଦୁଷ୍କର ।

ତାଙ୍କ ବାସଗୃହ ଥିଲା ମୋ ପାଇଁ ସର୍ବଦା ଉନ୍ମୁକ୍ତ । ପ୍ରତିଦିନ ଥରେ ମୁଁ ତାଙ୍କୁ ନ ଦେଖିଲେ ଓ ସେ ବି ମୋତେ ନ ଦେଖିଲେ ଉଭୟେ ବ୍ୟସ୍ତ ହୋଇପଡ଼ୁ । ତାଙ୍କ ପାଖରେ ଯାଇ ହାଜର ହେବାମାତ୍ରେ ୨।୩ ଘଣ୍ଟା ପୂର୍ବରୁ ଫେରି ହୁଏନା । ମୋତେ ଦେଖୁ ଦେଖୁ ଲେଖା ଛାଡ଼ି, ଆଖିରୁ ଚଷମା ଖୋଲି "କିଏ, ରବି ?" ବୋଲି କହି ଅମାୟିକ ହସଟିଏ ହସିଦେଇ ନିଜ ପାଖରେ ମୋତେ ବସିବାକୁ ଇସାରା ଦେଇ କହନ୍ତି "ଆସିବା ହଉ, ବସିବା ହଉ ।" ତା'ପରେ ବଡ଼ ପାଟିରେ ଡାକ ପକାନ୍ତି, "ଆରେ, କିଏ ଅଛରେ ?..." ତାଙ୍କର ଏ ଡାକରେ ତାଙ୍କର ସ୍ତ୍ରୀ ଆସନ୍ତି, ମୁଁ ତାଙ୍କୁ ପ୍ରଣାମ ଜଣାଏଁ । ଚନ୍ଦ୍ରାମଣିବାବୁ କହନ୍ତି, "ଚା'ଟିକେ ଦିଅ..." ତାଙ୍କ ସ୍ତ୍ରୀ କହନ୍ତି, "ରାତି ପଡ଼ିଲାଣି, ଭାତ ମୁଠିଏ ଖାଇଦେଉନ, ଚା' ଗୁଡ଼ାକ କାହିଁକି ପିଇବ ?" ତାଙ୍କ କଥାରେ ବାଧାଦେଇ ଚନ୍ଦ୍ରାମଣି ବାବୁ କହି ଉଠନ୍ତି, "ଆରେ ଗୋଟାଏ ଟୋକା ଏ ରବି, ଚା' ପିଇ କ'ଣ ନକଲି ଓଡ଼ିଶାରେ ! ସିଏ କ'ଣ ଏଇଲେ ଭାତ ଖାଇବ ? ଦେ, ଚା'ଟିକେ ଦେ । ତା' ସାଙ୍ଗରେ ମୁଁ ବି ଟିକେ ପିଇଦେବି ।"

●

ଚା' ଆସେ । ସତ୍ୟତଳା ଚା' କପରୁ ବାମ୍ପ ଉଠେ । ଆଲୋଚନା, ଅଧ୍ୟୟନ, ଶ୍ଳୋକ ଆବୃତ୍ତି ଆରମ୍ଭ ହୁଏ । ସେ ସବୁ କେବଳ ମନୋରମ ନୁହେଁ, ସାରଗର୍ଭକ । ଚନ୍ଦ୍ରାମଣି ବାବୁ ତାଙ୍କ ଲିଖିତ 'ନବଜୀବନ'ର ଆଗାମୀ ସଂଖ୍ୟା ପାଇଁ ସମ୍ପାଦକୀୟ ପଢ଼ି ମୋତେ ଶୁଣାନ୍ତି ଆଉ ମୋର ମତାମତ ପଚାରନ୍ତି । ମୁଁ 'ନବଜୀବନ' ପାଇଁ ମୋର ଲେଖା ଆଣିଛି କି ନାହିଁ

ପବୃରନ୍ତି । ଲେଖା ନେଇଥିଲେ ତାଙ୍କୁ ଦିଏ । ସେ ତାକୁ ନ ପଢି କମ୍ପୋଜ କରିବାକୁ ଦେଇ ଦିଅନ୍ତି । ଆଲୋଚନା ଭିତରେ ବୃତ୍ତି ଓଆଣ କରନ୍ତି, ପଖାଳଖିଆର ମାହାତ୍ମ୍ୟ, ମାଛ ଖାଇବାର ନାନା ଯୁକ୍ତି, ଗୋବର ଗୋଡ଼ର ଉପକାରିତା, ଅପକାରିତା—ଅସରନ୍ତି ଗପ ।

ମୋଟାମୋଟି ମୋ ସହିତ ତାଙ୍କର ସମ୍ପର୍କ ଥିଲା କେବେ ବନ୍ଧୁସୁଲଭ ତ କେବେ ପିତୃସୁଲଭ, କେବେ ବାଳସୁଲଭ ତ କେବେ ସାଥୀସୁଲଭ । ସେ ବୁଢାମଚୌକିରୁ ନବଜୀବନ କାର୍ଯ୍ୟାଳୟର ଉପର ମହଲାରେ ତାଙ୍କ ଖଟଟି ଉପରେ ଯେତେଦିନ ବସିଥିଲେ ସେତେ ଦିନ ସେ ଥିଲେ ଏକ ଚଳନ୍ତା କର୍ମଶାଳା, ଦିବାରାତ୍ର ଉତ୍ପାଦନଶୀଳ । ବ୍ୟକ୍ତିଗତ ଭାବେ ସେତେଦିନ ସେ ଥିଲେ ମୋର ଏକ ଭରସା । ଚନ୍ଦ୍ରମଣିବାବୁଙ୍କ ଲିଖିତ 'ପଞ୍ଚତନ୍ତ୍ରୀ', 'ହିନ୍ଦୁଧର୍ମରେ ଜାତି ଓ ତା'ର ସ୍ଥିତି', 'କାଳର ନିଷ୍ପତ୍ତି' 'ଦେଶ ଓ ଦୁର୍ଭାଗା', 'ଦେବଦେବଙ୍କ ଦୁର୍ଗତି', 'ଅକାଳ ଚେତନ' ଓ 'ଜୀବନ ନଦୀରେ ଭଉଁରୀ' ଆଦି ଗ୍ରନ୍ଥ ଓଡ଼ିଶାର ସାରସ୍ୱତ ପୀଠରେ ଏକ ସ୍ୱତନ୍ତ୍ରତାର ଦାବିଦାର ।

ଚନ୍ଦ୍ରମଣିବାବୁ, ମୋର ପରମ ପୂଜନୀୟ ଆଉ ଚିରସ୍ମରଣୀୟ ସ୍ୱର୍ଗତ ଚନ୍ଦ୍ରମଣି ମିଶ୍ର, ଯିଏକି ନିଜେ ଏକ 'ଅର୍ଦ୍ଧଶତାବ୍ଦୀର ଅନୁଭୂତି'—ସେହି 'ଲାଇନମ୍ୟାନ' ଜଣକ, ମନେ ପଡ଼ୁଛି, ମୋ ରଚିତ ଗୋଟିଏ କବିତା 'ଷଣ୍ଢ ହେ, ତମେ ଦଣ୍ଡବତ ମୋ ଯେନ'କୁ ତାଙ୍କ 'ନବଜୀବନ' (୧୦ମ ବର୍ଷ, ୧୦ମ ସଂଖ୍ୟା, ଜାନୁଆରୀ-ଫେବୃଆରୀ, ୧୯୬୭)ରେ ପ୍ରକାଶ କଲା ପରେ ଶ୍ରୀଯୁକ୍ତ ନବକୃଷ୍ଣ ଚୌଧୁରୀ କବିତାଟିର ଭୂୟସୀ ପ୍ରଶଂସା କରିବାରେ ଚନ୍ଦ୍ରମଣିବାବୁ ତାଙ୍କୁ କହିଥିଲେ, ମନେ ଅଛି, ଆପଣ ମୁଖ୍ୟମନ୍ତ୍ରୀ ଥିବାବେଳେ ଯୋଉ ପିଲାକୁ ପୁଲିସ ଲଗାଇ ଘରୁ ତଡ଼ି ଦେଇଥିଲେ, ସେଇ ହେଉଛି ଏଇ ରବି ସିଂ ।" (ଏ କଥା ଚନ୍ଦ୍ରମଣିବାବୁ ମୋତେ ନିଜେ କହିଥିଲେ ।)

୧୯୭୮ ମସିହାରେ ମୋର 'ପକ୍ଷିରାଜ ଓ ଅନ୍ୟାନ୍ୟ ଗଳ୍ପ' ପୁସ୍ତକ 'ସୋଭିଏତ୍ ଦେଶ ନେହେରୁ-ପୁରସ୍କାର' ପାଇଥିଲା । ସେ ପୁସ୍ତକର ପ୍ରକାଶକ ଥିଲେ ଚନ୍ଦ୍ରମଣିବାବୁ ।

ଗୋଟିଏ ବେଦନାଦାୟକ କଥା ଆଜ ମନେପଡ଼େ । ତାହା ହେଲ 'ନବଜୀବନ'ର ଶେଷ ସଂଖ୍ୟା । ସଂଖ୍ୟାଟି ଯେତେବେଳେ ମୋର ହସ୍ତଗତ ହେଲ, ସେତେବେଳେ ସାରା ଦେଶରେ ଜରୁରୀ ପରିସ୍ଥିତିର ସମ୍ଭୂତ କଳାବତ । ସେତେବେଳେ ମୋ ନାମରେ 'ଭାରତ ରକ୍ଷା ଅନେ' ଓ 'ଅଭ୍ୟନ୍ତରୀଣ ନିରାପତ୍ତା ରକ୍ଷା ଆଇନ'ର ଓ୍ୟାରେଣ୍ଟ, ଅଉ ମୁଁ ସେତେବେଳେ ଅଜ୍ଞାତ-ବାସରେ । ବିସ୍ମିତ ଏବଂ ହତବାକ୍ ହୋଇଥିଲି ସେହି ସଂଖ୍ୟା 'ନବଜୀବନ'ର ସମ୍ପାଦକୀୟ ନିବନ୍ଧ ପଢ଼ି । 'ନବଜୀବନ', ତା'ର ସମ୍ପାଦକ ଚନ୍ଦ୍ରମଣି ମିଶ୍ରଙ୍କର ପୁଣି ଜରୁରୀ ପରିସ୍ଥିତି ସପକ୍ଷବାଦୀ ଭୂମିକା ! ଗିରଫ ହୋଇ ୧୯୭୫ ନଭେମ୍ବର ମାସରେ କାରାମୁକ୍ତ ହେବା ପରେ ଯେତେବେଳେ ଚନ୍ଦ୍ରମଣି ବାବୁଙ୍କୁ ଦେଖାକଲି ସେ ସମ୍ପର୍କରେ ପଚାରିବେ ସେ ମୋତେ ଗୁରୁଗମ୍ଭୀର ଉତ୍ତର ଦେଇ କହିଥିଲେ, "ମୋ ହାତ ଗୋଟାଏ ସଇତାନ ତାକୁ ଲେଖାଇ ଥିଲା..." ଆଉ ସେ କହି ପାରିଲେ ନାହିଁ ! ସେହି ସଂଖ୍ୟାଟି ଥିଲା 'ନବଜୀବନ'ର ଶେଷ ସଂଖ୍ୟା । ତା' ପରେ ଚନ୍ଦ୍ରମଣି ବାବୁ ଆଉ ଲେଖକର ପବିତ୍ର ମସୀ ସ୍ପର୍ଶ କରି ନଥିଲେ । ତାଙ୍କର ଆତ୍ମିକ ଅସୁସ୍ଥତାର ସେହି ସମୟ ଠାରୁ ଅସୁମାରମ୍ଭ ।

ଚନ୍ଦ୍ରମଣି ବାବୁ ୧୯୦୮ ମସିହାର ନଭେମ୍ବର ୨୫ ତାରିଖରେ ଖୋର୍ଦ୍ଧା ସବ୍‌ଡିଭିଜନର ବାଳପୁର ଗାଁରେ ଜନ୍ମ ଥିଲେ । ଛାତ୍ରାବାସୀ ବନବିଦ୍ୟାଳୟର ସେ ଥିଲେ ମେଧାବୀ ଛାତ୍ର । ରେଭେନ୍‌ସା କଲେଜରୁ ବି. ଏ. ପାସ ପରେ ପଣ୍ଡିତ ନୀଳକଣ୍ଠଙ୍କ ବ୍ୟକ୍ତିଗତ ସହକାରୀ ରୂପେ କାମ କରି "ନବଭାରତ"ର ସମ୍ପାଦନା ଓ ମୁଦ୍ରଣ ସହିତ ସମ୍ପୃକ୍ତ ଥିଲେ । ଛାତ୍ରାବସ୍ଥାରେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ କାରାବରଣ ପରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସମ୍ପାଦକ ହୋଇଥିଲେ । ୧୯୪୪ ମସିହାରେ ଓଡ଼ିଶା ସରକାରଙ୍କର ସେ ଆସିଷ୍ଟାଣ୍ଟ ଡେଭଲପିଟି ଅଫିସର ଭାବେ ତାଙ୍କର କାର୍ଯ୍ୟାରମ୍ଭ କରି ସ୍ୱରାଷ୍ଟ୍ର (ପ୍ରଚାର) ବିଭାଗର ଆସିଷ୍ଟାଣ୍ଟ ସେକ୍ରେଟାରୀ ଓ ଜାତୀୟ ସମର ସାହାଯ୍ୟର ସଙ୍ଗଠନ ସମ୍ପାଦକ ରୂପେ ଅବସ୍ଥାପିତ ହୋଇଥିଲେ । ଦ୍ୱିତୀୟ ବିଶ୍ୱ ମହାସମର ବେଳେ ସରକାରଙ୍କ ଯୁଦ୍ଧ ଉଦ୍ୟମ ପ୍ରତି ଜନମତକୁ ଆକୃଷ୍ଟ କରିବା ଲାଗି ସେ ଆଜିର 'ଉତ୍କଳ ପ୍ରସଙ୍ଗ'କୁ ଜନ୍ମ ଦେଇଥିଲେ । ତାଙ୍କର ଏହି ଅଜ୍ଞାତ ଭୂମିକା

ପାଇଁ ପରବର୍ତ୍ତୀ କାଳରେ ତାଙ୍କୁ "ପ୍ରତିକ୍ରିୟାଶୀଳ ଇଂରେଜଙ୍କ ଦଲାଲ" ବୋଲି ବହୁ ବାମପନ୍ଥୀ ଆକ୍ରମଣ କରିଥିବାର ମୋ କାନ ଶୁଣିଛି । କିନ୍ତୁ ମହାତ୍ମା ଗାନ୍ଧୀଙ୍କର ଜଘନ୍ୟ ଭୂମିକାଟିକୁ ସେମାନେ ଭୁଲିଯିବାଟା ବାସ୍ତବରେ ଅଭିନବ । "× × ପ୍ରଥମ ବିଶ୍ୱଯୁଦ୍ଧବେଳେ ଗାନ୍ଧୀଜୀ ବ୍ରିଟିଶ ସରକାରଙ୍କୁ ସକ୍ରିୟଭାବେ ସାହାଯ୍ୟ କରିଥିଲେ, ଏପରିକି ଭାରତରୁ ସୈନ୍ୟ ସଂଗ୍ରହ କରିବା ପର୍ଯ୍ୟନ୍ତ ଗଲେ । ଜଣେ ଐତିହାସିକଙ୍କ ମତରେ **Gandhi became the self-appointed recruiting sergent of the army—W. Coupland.** *

"ଏହି ମହାଯୁଦ୍ଧରେ ଭାରତରୁ କୋଡ଼ିଏ କୋଟି ଟଙ୍କା, ନଅ ଲକ୍ଷ ପଚାଶ ହଜାର ସୈନ୍ୟ ଓ ଅପର୍ଯ୍ୟାପ୍ତ ଯୁଦ୍ଧୋପକରଣ ସଂଗୃହୀତ ହୋଇଥିଲା । ଏହି ସାହାଯ୍ୟ ନେଇ ୧ମ ବିଶ୍ୱଯୁଦ୍ଧରେ ଇଂରେଜମାନେ ବିଜୟ ଲାଭ କଲେ ଏବଂ ଭାରତରେ ବ୍ରିଟିଶ ସାମ୍ରାଜ୍ୟବାଦ ଅଧିକ ଦୃଢ଼ ହେଲା । ଯୁଦ୍ଧ ପରେ ଭାରତକୁ ସ୍ୱାଧୀନତା ମିଳିବ ବୋଲି ଆଶା କରି ଦିନ ଗଣୁଥିବା ଭାରତବାସୀ ପାଇଲେ 'ରାଓଲାଟ୍ ଆଇନ' ଓ ଜାଲିଆନାୱାଲାବାଗର ଲୋମହର୍ଷଣକାରୀ ହତ୍ୟାକାଣ୍ଡ ।" *

୧୯୭୮ ମସିହା ଜୁନ୍ ମାସ ଠାରୁ ମୋର ଆଉ ଚିନ୍ତାମଣି ବାବୁଙ୍କ ସହିତ ପ୍ରାୟ ଯୋଗସୂତ୍ର ନଥିଲା । କାରଣ, ମୋତେ ଧରାପୃଷ୍ଠରୁ ନିଶ୍ଚିହ୍ନ କରିଦେବା ପାଇଁ ଜଣେ ଉଚ୍ଚ ପୁଲିସ କର୍ତ୍ତାଙ୍କ ଦ୍ୱାରା ଏକ ଜାଲ ବିସ୍ତାଯାଇଥିଲା ଓ ଏକ ଚକ୍ରାନ୍ତ ଆକ୍ରମଣର ଶିକାର ହୋଇ ମୁଁ ଓ ମୋର ପରିବାର ମୃତ୍ୟୁମୁଖରୁ ବଞ୍ଚିଯାଇଥିଲୁ ଦୈବାତ୍ । ସେତେବେଳେକୁ ଚିନ୍ତାମଣି ବାବୁ ଘୋର ଅସୁସ୍ଥ । ମନେ ପଡ଼ୁଛି, ତାଙ୍କ ଦେହାନ୍ତର ୪ଦିନ ପୂର୍ବରୁ ଅର୍ଥାତ୍ ୧୯୮୦ ମସିହା ଅଗଷ୍ଟ ୧୨ ତାରିଖ ଦିନ ମୁଁ ଏବଂ କବିବନ୍ଧୁ ଶ୍ରୀ ବ୍ରଜନାଥ ରଥ ତାଙ୍କୁ ଦେଖିବାକୁ ଯାଇଥିଲୁ । ତାଙ୍କୁ ଦେଖି ସେଦିନ ମନେ ହୋଇଥିଲା, ଧରଣୀରୁ ତାଙ୍କର ବିଦାୟ ଲଗ୍ନ ପ୍ରାୟ ଆସନ୍ନ ।

କୁହାଯାଏ, 'ନବଜୀବନ'ର ମୃତ୍ୟୁ, ପୁରାତନ ମାନବିକ ମୂଲ୍ୟବୋଧ ଗୁଡ଼ିକର ଦ୍ରୁତ ଭଙ୍ଗନ ତାଙ୍କ ମୃତ୍ୟୁର ଅନ୍ୟତମ କାରଣ ।

---

* "ଭାରତର ସଶସ୍ତ୍ର ମୁକ୍ତି ସଗ୍ରାମ"—ପ୍ରଫୁଲ୍ଲଚନ୍ଦ୍ର ଦାସ । ପୃ:୯୦

ତାଙ୍କ ମହାଯାତ୍ରାରେ ଯୋଗ ଦେବାର ବେଦନାଦାୟକ ସୁଯୋଗ ମୋର ହୋଇ ନାହିଁ, ତାଙ୍କ ପ୍ରେତକର୍ମରେ ଯୋଗ ଦେବାର ଧୈର୍ଯ୍ୟ ମୁଁ ହରାଇ ବସିଥିଲି । ତାଙ୍କ ବିଦାୟ ପରେ ଯେତେଥର ତାଙ୍କ 'ନବଜୀବନ' ଗୃହରେ ପାଦ ଦେଇଛି, ଅନୁଭବ କରିଛି ଏକ ବିଶାଳ ଶୂନ୍ୟତା, ଆଖିରେ ଟଳମଳ କରିଛି ଏକ ଲୁହର ଦରିଆ ।

ଚିନ୍ତାମଣି ବାବୁ ଥିଲେ ସ୍ଥାୟୀ ମୂଲ୍ୟବୋଧର ପଦଚିହ୍ନ ଗୁଡ଼ । ତାଙ୍କର 'ବିଦାୟ'ରେ ମୋର ଏକ ସବୁଜ ମରୁଦ୍ୟାନ ନିଶ୍ଚିହ୍ନ ହୋଇ ଗଲାଚରେ ।

ତାଙ୍କର ସ୍ମୃତି ଅମର । ସେ ସ୍ମୃତିର ବେଦୀ ତଳେ ମୋର ଅସଂଖ୍ୟ ପ୍ରଣତି ।

## ॥ ସୀମାନ୍ତ ଯାତ୍ରୀ, ଭଗ୍ନ ପ୍ରହରୀ ॥

କମ୍ୟୁନିଷ୍ଟ ପାର୍ଟି ଛାଡ଼ିବା ପରେ ନଭେମ୍ବର ୧୯୫୪ ମସିହା ଓ ୧୯୫୫ ମସିହାର ଅଧାଅଧି ପର୍ଯ୍ୟନ୍ତ ଏକ ରାଜନୈତିକ ତଥା ମାନସିକ ଶୂନ୍ୟତା ମଧ୍ୟରେ ଜୀବନ ବିତିଥିଲା । ଶ୍ରୀଯୁକ୍ତ ଦେବନାଥ ଦାସଙ୍କ ସହିତ କ୍ରମାଗତ ସାକ୍ଷାତ-ଆଲୋଚନା ହେଉଥାଏ । ସେଥି ସହିତ ନାନା ସାହିତ୍ୟିକ, ସାଂସ୍କୃତିକ ତଥା ରାଜନୈତିକ ସଭା-ସମାବେଶରେ କ୍ରମାଗତ ଯୋଗଦେବା, ପତ୍ର-ପତ୍ରିକା ପଢ଼ିବା, କ୍ଷୁଦ୍ରଗଳ୍ପ, କବିତା ଆଦି ରଚନା କରିବା କାମରେ ଲାଗି ରହୁଥିଲି । କିନ୍ତୁ ଜୀବନଯାତ୍ରା, ଆହାର- ବିଶ୍ରାମ ସବୁକିଛି ଥିଲା ଅନିଶ୍ଚିତ ।

ସେତେବେଳେ ପର୍ତ୍ତୁଗୀଜ୍ ଶାସିତ ଗୋଆର ମୁକ୍ତି ଆନ୍ଦୋଳନର ବିସ୍ଫୋରକ ସମ୍ବାଦ ମୋର ତରୁଣ ପ୍ରାଣରେ ବେଶ୍ ରୋମାଞ୍ଚ ଏବଂ ଉତ୍ସୁକତା ସୃଷ୍ଟି କରୁଥିଲା । ଭାରତଭୂମିରୁ ଔପନିବେଶିକ ପରାଧୀନତାର ଶେଷ କଳଙ୍କ-ଛିଟାକୁ ଚିରତରେ ନିଶ୍ଚିହ୍ନ କରିଦେବା ପାଇଁ ଗୋଆ, ଡାମନ୍, ଡ଼ିଉକୁ ଚତୁର୍ଦ୍ଦିଗରୁ ଛୁଟିଥିଲା ସତ୍ୟାଗ୍ରହୀଙ୍କ ସ୍ରୋତ । ସମ୍ବାଦପତ୍ରମାନଙ୍କରେ ପୃଷ୍ଠା ପୃଷ୍ଠା ବ୍ୟାପୀ ଗୋଆମୁକ୍ତି ସଂଗ୍ରାମର ଅଗ୍ରେସ୍ତ ବିବରଣୀ ସେତେବେଳେ ଥିଲା ମୋର ନିୟମିତ ପାଠ୍ୟ । ଓଡ଼ିଶାରୁ କେତୋଟି ସତ୍ୟାଗ୍ରହୀ ଦଳ ମଧ୍ୟ ଗୋଆକୁ ଯାଇ ଫେରି ଆସିଥିଲେ । "ଗୋଆ ବିମୋଚନ ସମିତି" ନାମରେ

ଓଡ଼ିଶାରେ ସେତେବେଳେ ଯେଉଁ ପାର୍ଟିଟି ଗଠିତ ହୋଇଥିଲା ତାର ହର୍ତ୍ତାକର୍ତ୍ତା ଥିଲେ ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀ ଓ ତାଙ୍କ ଦଳର ଲୋକେ। ସେମାନଙ୍କ ସହିତ ମୋର ଯାହା ସମ୍ପର୍କ, ପାଠକେ ତାହା ପୂର୍ବରୁ ଅବଗତ। ମୁଁ ସେତେବେଳେ ତେଲେଙ୍ଗା ବଜାରର ଗୋଟିଏ ଭଡ଼ାଘରେ ରହୁଥିବା ଆଡ଼ଭୋକେଟ୍ ଶ୍ରୀନିବାସ ମିଶ୍ର (କ)ଙ୍କ ଅଫିସଘରେ ଆଶ୍ରିତ ଥିଲି। ଶ୍ରୀନିବାସ ବାବୁଙ୍କ ସହିତ ମୋର ପରିଚୟ ସୋସଲିଷ୍ଟ ଦଳରେ ଥିବାବେଳ-ଠାରୁ। ସେ ମୋତେ ସେତେବେଳେ ଶ୍ରଦ୍ଧା କରୁଥିଲେ ଆଉ ମୋ ପ୍ରତି ଥିଲେ ସଦୟ।

୧୯୫୫ ମସିହା ବେଳକୁ ଗୋଆମୁକ୍ତି ଆନ୍ଦୋଳନର ଦାବାନଳ ଅଧିକ ଲେଲିହାନ ଆଉ ବ୍ୟାପ୍ତ ହୋଇ ଉଠିଥାଏ। ସତ୍ୟାଗ୍ରହୀମାନଙ୍କ ଅହିଂସ ସତ୍ୟାଗ୍ରହ ପର୍ତ୍ତୁଗୀଜ ଉପନିବେଶ-ସରକାର ଉପରେ ବିଶେଷ କୌଣସି ପ୍ରଭାବ ପକାଉ ନଥାଏ। ଓଲଟି ମେସିନ୍‌ଗନ ଗୁଳିରେ ସେମାନେ ପୋକମାଛି ପରି ମୁକ୍ତିକାମୀମାନଙ୍କୁ ଉଡ଼ାଇ ଦେଉଥାନ୍ତି। ସେତେବେଳେ ପାର୍ଲ୍ୟାମେଣ୍ଟ ଗୃହରେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ସେ ଘଟଣାକୁ "ଅସଭ୍ୟ ଏବଂ ବର୍ବରୋଚିତ" ବୋଲି ଅଭିହିତ କରି ଉଦ୍‌ବେଗ ପ୍ରକାଶ ମଧ୍ୟ କରୁଥାନ୍ତି।

୧୯୫୫ ମସିହା ଜୁଲାଇ ମାସରେ ସ୍ଥିର ସିଦ୍ଧାନ୍ତରେ ଉପନୀତ ହେଲି, ଗୋଆମୁକ୍ତି ସଂଗ୍ରାମରେ ନିଜେ ଅଂଶ ଗ୍ରହଣ କରିବ। ପୂର୍ବରୁ ପଢ଼ିଛି, ଆଉ ଶୁଣିଛି, ଗୋଆର ଏକ ପୁରାତନ ବିପ୍ଳବୀ ଚରମପନ୍ଥୀ ସଙ୍ଗଠନ "ଆଜାଦ ଗୋମନ୍ତକ ଦଳ"ର କଥା। ଯେଉଁ ଦିନଠୁ ପର୍ତ୍ତୁଗୀଜ୍‌ମାନେ ଗୋଆ ମାଟିରେ ପାଦଦେବା ଦିନ ଠାରୁ ସେମାନଙ୍କ ଉପରେ ସଶସ୍ତ୍ର ହାମଲା ଚଳାଇ ଆସୁଛନ୍ତି। "ସତ୍ୟାଗ୍ରହୀ"ର ମୁଖା ପିନ୍ଧି ସେହିମାନଙ୍କ ସହିତ ମିଳିତ ହୋଇ ପାରିଲେ ମୋର ଚରମ ଆନନ୍ଦ। ସେତେବେଳକୁ ଗାନ୍ଧୀଙ୍କର "ଅହିଂସ-ଅସହଯୋଗ" ତନ୍ତ୍ର ମୋ ପାଖରେ ହୋଇ ପଡ଼ିଥାଏ ଏକ ଅଚଳ ମୁଦ୍ରା। ସେତେବେଳକୁ ଦୁନିଆର ତଥା ନିଜ ଦେଶର ସଶସ୍ତ୍ର ବିପ୍ଳବୀମାନଙ୍କ ସମ୍ପର୍କରେ ପ୍ରକାଶିତ ତଥ୍ୟ ସବୁକୁ ମୁଁ ପଢ଼ୁଥାଏ, ଅଧିକ ପଢ଼ିବାକୁ ଆଗ୍ରହ ମଧ୍ୟ କିଛି କମ୍ ନଥାଏ। ସଦ୍ୟଜାତ ସୋସଲିଷ୍ଟ ଦଳ ଛାଡ଼ିଲା ପରେ ମଧ୍ୟପ୍ରଦେଶର ସେହି ଅଗମ୍ୟ ଜଙ୍ଗଲ ମଧ୍ୟରେ ବିପ୍ଳବୀ ଦୁଲାଲ ସେନ୍‌ଙ୍କ ଗୋପନ ଘାଟିରେ ୧୫ଦିନ କାଳ କଟାଇବା ଭିତରେ ଗଭଲଭର ଗୁଳିନା, ହାତବୋମା

ନିକ୍ଷେପର କୌଶଳ କିଛିଟା ଅଭ୍ୟସ୍ତ କରିଥିଲି । ପୁଣି ସେହି ଧରଣର ଅନ୍ୟ କୌଣସି ସୁଯୋଗ ପାଇଲେ ଜୀବନକୁ ବାଜି ଲଗାଇବା ପାଇଁ ତିଆର ଥିଲି ସବୁବେଳେ । ଗୋଆ ମୁକ୍ତିଆନ୍ଦୋଳନ, ଗୋଆ ଭିତରେ ଗୋମନ୍ତକ ଦଳର ସଶସ୍ତ୍ର "ଅଭିଯାନ" ଘଟଣାରେ ସେହିପରି ଏକ ସୁଯୋଗ ଆଜି ଥରେ ମୋ ଜୀବନରେ ସମାଗତ ବୋଲି ମନେ ହେଲା । ହେଲେବି, ଗୋଆମୁକ୍ତି ଆନ୍ଦୋଳନରେ ସାମିଲ ହେବା ପାଇଁ ମୋ ଆଗରେ ସେତେବେଳେ ଦୁଇଟି ବଡ଼ ପ୍ରତିବନ୍ଧକ ଆସି ଠିଆ ହୋଇଥିଲା । ପ୍ରଥମଟି ହେଲା, ସ୍ଥାନୀୟ "ଗୋଆ ବିମୋଚନ ସମିତି"ର ଖଣ୍ଡେ ସୁପାରିଶ ପତ୍ର । ଯାହା ନମିଳିଲେ "କେନ୍ଦ୍ର ଗୋଆ ବିମୋଚନ ସମିତି" ମୋତେ ପଞ୍ଚମବାହିନୀ ବୋଲି ଭାବିବା ଅସମ୍ଭବ ନୁହେଁ । ଦ୍ୱିତୀୟଟି ହେଲା, କଟକରୁ ଗୋଆ ସୀମାନ୍ତ ଯାଏଁ ଯିବା ପାଇଁ ଆବଶ୍ୟକ ଅର୍ଥର ଯୋଗାଡ଼ । ଜୀବନ ତମାମ ମୁଁ ମୋର ପ୍ରତିଟି ସିଦ୍ଧାନ୍ତରେ ଅଟଳ ରହି ଆସିଛି—ଏହା ମୋର ଏକ ଚାରିତ୍ରିକ ବୈଶିଷ୍ଟ୍ୟ । ତେଣୁ ଗୋଆ ମୁକ୍ତି ଆନ୍ଦୋଳନରେ ସମ୍ପୃକ୍ତ ହେବା ପାଇଁ ଯେତେବେଳେ ସିଦ୍ଧାନ୍ତ ନେଇଛି, ତାହା ନିଶ୍ଚିତ ରୂପେ କାର୍ଯ୍ୟକାରୀ ହେବାକୁ ବାଧ୍ୟ । ପ୍ରଥମେ "ଓଡ଼ିଶା ଗୋଆ ବିମୋଚନ ସମିତି"ର କର୍ତ୍ତୃପକ୍ଷ ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହିତ ସାକ୍ଷାତ କରି, ଲିଖିତ ଭାବେ ଆବେଦନ କରି ମଧ୍ୟ ଖଣ୍ଡେ ଅନୁଷ୍ଠାନିକ ପରିଚୟ ପତ୍ର ପାଇଲି ନାହିଁ - ତାହା ମୋତେ ଜାଣିଶୁଣି ଦିଆଗଲା ନାହିଁ । ଦ୍ୱିତୀୟରେ ବାଟଖର୍ଚ୍ଚ ଯୋଗାଡ଼ ଲାଗି ନାନା ଶିକ୍ଷିତ, ସମ୍ଭ୍ରାନ୍ତମାନଙ୍କ ଦ୍ୱାରସ୍ଥ ହୋଇଥିଲେ ମଧ୍ୟ ସମସ୍ତେ ମୋତେ ନିରାଶ କରିଥିଲେ । ଏପରିକି ସେତେବେଳର ମହାପ୍ରତାପୀ 'ମୁକୁଟହୀନ ସମ୍ରାଟ' ସ୍ୱର୍ଗତ ବୀରେନ ମିତ୍ର "ବ୍ୟକ୍ତିଗତ ଆତ୍ମହତ୍ୟା" ପାଇଁ କୌଣସି ସାହାଯ୍ୟ କରି ପାରିବେ ନାହିଁ ବୋଲି ସେକ୍‌ଠୋକ୍ ମନା କରିଦେଲେ । ସବୁ ସତ୍ତ୍ୱେ ମୋ ବିପ୍ଳବୀ ଉଦ୍ଦୀପନା ମୋତେ ଟିକେହେଲେ ବି ନିରୁତ୍ସାହିତ କରି ନଥିଲା ।

୧୯୫୫ ମସିହାର ସେପ୍ଟେମ୍ବର ପନ୍ଦର ।

ସମୟ ସକାଳ ସାତଟା ।

ତିନିଚାରିଦିନ ପୂର୍ବରୁ କ୍ରମାଗତ ଭାବରେ ବର୍ଷା ପଡ଼ନ୍ତ ଲାଗି ରହିଥାଏ କଟକ ସହରରେ । ଛଲୁଣି ଛିଦ୍ରରେ ପାଣି ଢାଳିଲା ପରି ଆକାଶରୁ ଚୁଲୁଥାଏ ପାଣି—ହେମାଳିଆ ପବନର ଶୀତଳ ପରଶରେ ମନ ଭିତରଟା କମିଛି ହେମାଳିଆ ହୋଇ କୋଲି ମାରିଲା ପରି ଲାଗୁଥାଏ ।

କଟକ ରେଲ ଷ୍ଟେସନରେ ସେଦିନ ଗାଡ଼ି ଚଢ଼ିଲା ବେଳେ ମନେ ପଡ଼ୁଥାଏ ଅତୀତ-ଅନାଗତ କେତେ କଥା — ନିଜ ଗାଁ ସହିତ ପ୍ରିୟ କଟକ ନଗରର ନାନା ସ୍ମୃତି । ଯେଉଁ କଟକ ସହର କୋଳରେ ଦିନେ ଅଧେ ନୁହେଁ, ବାଲ୍ୟ କାଳରୁ ଆରମ୍ଭ କରି କେତେ ହସକାନ୍ଦ, କେତେ ସୁଖଦୁଃଖ ମୋର ଅତିବାହିତ ହୋଇଛି, ସେଦିନର ସେହି ବିଦାୟ ବେଳାରେ ସେହି ସଞ୍ଚିତ ସ୍ମୃତି ସବୁ ମନେ ପଡ଼ୁଥିଲେ ଭୁହାକୁ ଭୁହା । ଭାବୁଥିଲି : ଆଉ କେଇଟା ଦିନ ପରେ କୋଉଠି ଥିବ ମୁଁ, କୋଉଠି ଥିବ ମୋର ଜୀବାତ୍ମା, କୋଉଠି ପଡ଼ିଥିବ ମୋର ଏଇ ଅବୟବ—ତାକୁ ସମ୍ବର୍ଦ୍ଧନା ଜଣାଇବ କିଏ — ପର୍ତ୍ତୁଗୀଜ ଜଳଦସ୍ୟୁ ଦଳର ସ୍ୱେଚ୍ଛାଚର୍ମାଚ୍ଛାଦିତ ଗୋଆ ପୁଲିସ, ନା ଲିସ୍‌ବନ୍‌ରୁ ପାର୍ଶଲ ହୋଇ ଆସିଥିବା ଭଡ଼ାଟିଆ ସଶସ୍ତ୍ର ନିଗ୍ରୋ ସେନାଦଳ ? ଏହି ଅମୀମାଂସିତ ପ୍ରଶ୍ନରେ ମୁଣ୍ଡଟା କେମିତି ଗୋଳମାଳିଆ ହୋଇ ଯାଉଥାଏ । ପୁଣି ଯେ କେବେ ଫେରି ପାଦ ରଖିବି ଏଇ କଟକ ଷ୍ଟେସନର ପ୍ଲାଟଫର୍ମ ବୁକୁରେ, ଏ କଥା ସେତେବେଳେ ଥିଲା ସ୍ୱପ୍ନ ।

ନାଃ, ଭୁଲ । ଏହା ଏକ ଭୀରୁଙ୍କର ଦୁଃସ୍ୱପ୍ନ । ଯିବାକୁ ହେବ··· ଆଖି ଆଗରେ ସୀମାହୀନ ଅସରନ୍ତି ପଥ ଆଉ କର୍ତ୍ତବ୍ୟ ।

ବାହାର ରାସ୍ତାରେ ମେଘକନ୍ୟାର ଅବାରିତ ଅଶ୍ରୁବର୍ଷଣ, ଷ୍ଟେସନ ପ୍ଲାଟଫର୍ମରେ ଯାତ୍ରୀମାନଙ୍କର ସାନ୍ଦ୍ର ସମାଗମ । ତିଳ ପଡ଼ିବାକୁ ଥାନ ନାହିଁ, ଗୋଡ଼ ରଖିବାକୁ ଠାବ ନାହିଁ । ଗାଡ଼ି ଆସିବାକୁ ତଥାପି ୧୫ ମିନିଟ୍ ବାକି ···। ଚା ବିକାଳିମାନଙ୍କ "ଚା ଚା" ଚିତ୍କାର, "ପାନ-ବିଡ଼ି-ସିଗାରେଟ"ର ମୁହୁର୍ମୁହୁ ଧ୍ୱନି ସହିତ ବର୍ଷାର ଘନଘୋର ଗର୍ଜନ ଭିଜା ମନରେ ସୃଷ୍ଟି କରୁଥାଏ ଅପୂର୍ବ ରୋମାଞ୍ଚ ।

ମୋତେ ବିଦାୟ ଦେବା ପାଇଁ ଷ୍ଟେସନକୁ ଆସିଥାନ୍ତି ଶ୍ରୀନିବାସ ମିଶ୍ର (କ) । ତାଙ୍କ ସହିତ ଷ୍ଟେସନ କ୍ୟାଣ୍ଟିନ୍‌ରେ ସାମାନ୍ୟ ଜଳଯୋଗ ପରେ ଗାଡ଼ିକୁ ଅପେକ୍ଷା କରି ବନ୍ଧ ଖଣ୍ଡିକ ଉପରେ ଆଖି ବୁଜିଲି ଥାଏ ।

କିଛି ସମୟ ପରେ ।

ମହାନଦୀ ରେଳ ପୋଲର ପଞ୍ଜରା ଦୋହଲାଇ ଅଦିନର ଝଡ଼ ଭଳି ଜଗତପୁର ଆଡ଼ୁ ଭୁଷ୍‌ଭୁଷ୍‌ ହୋଇ ମାଡ଼ି ଆସିଲା ଜନତା ଏକ୍‌ସପ୍ରେସ ।

ଆକାଙ୍କ୍ଷିତ ଯାତ୍ରୀଙ୍କ ଭିତରେ ଖେଳିଗଲା ଚାଞ୍ଚଲ୍ୟ, ଗାଡ଼ି ଅସି ଏକ ଶ୍ରାନ୍ତ ଯାତ୍ରୀ ପରି ଦୀର୍ଘଶ୍ୱାସ ନିର୍ଗତ କରି ଠିଆ ହେଲା ଷ୍ଟେସନରେ । କିଛି ସମୟ ପାଇଁ କୋଳାହଳ, ଚାଞ୍ଚଲ୍ୟ, ପୁରାତନ ଯାତ୍ରୀମାନଙ୍କର ପ୍ରସ୍ଥାନ, ନୂତନ ଯାତ୍ରୀଙ୍କ ଆଗମନ ଚାଲିଲା । ଶ୍ରୀନିବାସ ବାବୁଙ୍କ ସହିତ କରମର୍ଦ୍ଦନ କରି ବିଦାୟ ନେଇ ଉଠିଲି ଗୋଟିଏ ଡବାକୁ—ସୁବିଧାରେ ବସି ପାରିଲା ଭଳି ଜାଗାଟି ବି ପାଇଗଲି ।

"ଭେ...ଅଁ...ଅଁ...ଛୁକ୍ ଛୁକ୍ ଛୁକ୍" ସ୍ୱଗର୍ଭରୁ ପୁଞ୍ଜିଭୂତ କଳାଧୂଆଁ ଗୁଡ଼ାକ ଊର୍ଦ୍ଧ୍ୱକୁ ଉଦ୍‌ଗାର କରି ଗାଡ଼ିର ଗତି ଆରମ୍ଭ ହେଲା ବେଳଙ୍ଗ୍ୱାଡ଼ା ବା ବିଜୟବାଡ଼ା ପଥରେ । ଶେଷଥର ପାଇଁ ନୀରବ ତଥା ସଶ୍ରଦ୍ଧ ପ୍ରଣିପାତ ଜଣାଇଲି ପ୍ରିୟ କଟକ ନଗରକୁ । ଗାଡ଼ିର ଗତିବେଗ ବଢ଼ୁଛି—ଡବାର ମୁକ୍ତ ବାତାୟନ ଭେଦ କାଠଯୋଡ଼ୀ ରେଲପୋଲ ଉପରୁ ଦୃଷ୍ଟିଗୋଚର ହେଉଥାଏ ମଙ୍ଗଳଚଣ୍ଡିଆ ଶ୍ମଶାନ, ଖାନ୍‌ନଗର ଗାଁ, କାଠଯୋଡ଼ୀ ପଥର ବନ୍ଧ, ପୁରୁଣାଘାଟ ଦେଖାଗଡ଼ା । ମନେ ପଡ଼ୁଥାଏ, କେତେ ଜନମାନ୍ୟ ସନ୍ଧ୍ୟା, କେତେ ଜ୍ୟୋତ୍ସ୍ନାବିଧୌତ ରଜନୀରେ ଏଇ କାଠଯୋଡ଼ୀର ବିସ୍ତୀର୍ଣ୍ଣ ସୈକତ ଶଯ୍ୟାରେ ଏକୁଟିଆ ବସି ବସି ନିଜକୁ ହଜାଇ ଦେଇଛି କ୍ଲାନ୍ତ, ଅବଶ, ଉଦାସ ମନକୁ ହାଲୁକା କରିବା ପାଇଁ । ସେଇଠି ବସି ବସି କେତେ ଶତବାର ଦେଖିଛି ବାରଙ୍ଗ କାଚକାରଖାନାର ଊର୍ଦ୍ଧ୍ୱଗାମୀ ଚିମ୍ନୀ ଆଉ ତାର ଧୂଆଁ ଓ ତାର ଅସ୍ପଷ୍ଟ କ୍ଷୀଣ ଆଲୋକକୁ । ସେଇଆକୁ ଅପଲକ ଆଖିରେ ଚାହିଁ ଚାହିଁ କେତେବାର ଭାବିଛି ମୋ ଦେଶର ଶହ ନୁହେଁ, ହଜାର ନୁହେଁ, ଲକ୍ଷଲକ୍ଷ କୋଟିକୋଟି ଅନାହାରୀ ଦରପେଟା ମେହନତୀ ପାଇଟିଆଳ ଶ୍ରମିକର ବାସ୍ତବିକ ଅବସ୍ଥା ଓ ଆଗାମୀକାଳର ଭବିଷ୍ୟତ । ହେ ପ୍ରିୟ କାଠଯୋଡ଼ି ! ମତେ ଆଜ ମନ ଖୁସିରେ ବିଦାୟ ଦେ, ତୋର ଦର୍ଶନ ଲାଭ ଆଉ ଏ ଜୀବନରେ ଘଟିବ କି ନା ସନ୍ଦେହ । ତୋ'ର ତଟର ଶାନ୍ତ-ଶୀତଳ ସମୀରଣର ମୃଦୁସ୍ପର୍ଶରେ ଅଙ୍ଗ ଅବସାଦ ଦୂର କରିବା ଆଶା ମଧ୍ୟ ଖୁବ୍ କମ୍ । କାରଣ ଦୁର୍ଗମ ପଥର ଯାତ୍ରୀ ମୁଁ ଆଜ, ଆଗରେ ରକ୍ତନଦୀର ଏକ ଉଷ୍ମ ତରଙ୍ଗ ବାହୁ ।

"କେଉଁ ପର୍ଯ୍ୟନ୍ତ ଯିବ ବାବୁ ?" କାହାର ଅଙ୍ଗୁଳି ସ୍ପର୍ଶରେ ପ୍ରତିହତ ହେଲା ମୋର ସେହି ଭାବପ୍ରବଣତା । ବାସ୍ତବତା ଭିତରକୁ ଫେରି ଆସି ଦେଖିଲି, ସାମ୍ନା ସିଟ୍‌ରେ ବସିଛି ବୁଢ଼ାଟିଏ । ଅଣ୍ଟା ନଇଁ ଗଲଣି—ଆଖିର ତାରକାରେ ଜ୍ୟୋତି ନାହିଁ, ମୁହଁର ହନୁହାଡ ବାହାରିପଡ଼ୁଛି । କହିଲି, "ବହୁତ ବାଟ ଯିବ ମଉସା ? ତେବେ ଆଗ ଓହ୍ଲେଇବ ବରହମ୍‌ପୁରରେ ।"

ବୁଢ଼ା ମୋ କଥା ଶୁଣିଲା...ତା ପରେ ତଳକୁ ମୁହଁ ପୋତିଲା ମୌନବ୍ରତରେ ।

ବର୍ଷା ଚାଲିଥାଏ ବେଦମ । ତାର ଝମ ଝମ ଶବ୍ଦ ସାଥିରେ ତାଳ ଦେଇ ଚାଲିଥାଏ ଜନତା ଏକସପ୍ରେସ । କ୍ରମେ ବାରଙ୍ଗ କାଚକାରଖାନାର ସେହି ଶ୍ରମିକ-ଦୀର୍ଘଶ୍ୱାସ ଚିମ୍ନି ଅଦୃଶ୍ୟ ହେଲା ଆଖି ଆଗରୁ, ନୂଆ ରାଜଧାନୀର ଅଙ୍କିତ ମାନଚିତ୍ର ହୋଇ ଆସିଲା ଅସ୍ପଷ୍ଟରୁ ଅସ୍ପଷ୍ଟତର । ମୁଗ୍‌ଧ ନୟନରେ ଯୋଡହସ୍ତ ପୂର୍ବକ ହାଜନଙ୍କ ମୁଣ୍ଡ ନୁଆଁ ଇଲେ ପ୍ରଳୟର ସ୍ରଷ୍ଟା ଶିବଙ୍କ ଉଦ୍ଦେଶ୍ୟରେ । ଲିଙ୍ଗରାଜ ମନ୍ଦିରର ଚୂଡ଼ା ଥରେ ଥରେ ଦେଖା ଦେଇ ପୁଣି ଲୁଚି ଯାଉଥାଏ । ମନେ ହେଉଥାଏ, ଯେତେ ଯେପରି ରେଳରାସ୍ତାର ଦୁଇଧାରରେ ଥିବା ବୃକ୍ଷରାଜିଙ୍କ ସହିତ ତାର ଚାଲିଛି ଏକ ସୁନ୍ଦର ଲୁଚକାଳି ଖେଳ । ପ୍ରକାଶ ଥାଉକି, ଈଶ୍ୱରିକ ସତ୍ତା ଉପରେ ମୋର ପୂର୍ଣ୍ଣ ବିଶ୍ୱାସ ଥିଲା ସେତେବେଳେ ଏହି କାରଣରୁ ଯେ, ମୋର ବୈଜ୍ଞାନିକ ତଥା ଐତିହାସିକ ଜ୍ଞାନର ବିକାଶ ଆଜି ପରି ହୋଇ ନଥିଲା ।

ଗାଡ଼ି ଚାଲିଥାଏ ।

ମନ ଭିତରେ ଆଗପଛ କେତେ କଳ୍ପନାର ଜାଲ ବୁଣିବୁଣି ଢୁଳେଇ ପଡ଼ୁଥାଏ ମୁଁ । ଘୁଙ୍ଗଡ ଲାଗି ଆସୁଥାଏ ଗହନ କରି । ହଠାତ୍ ଗାଡ଼ିର ଘୁଙ୍ଗା ଧ୍ୱନିରେ ଭାଙ୍ଗିଗଲା ନିଦଟା ହଠାତ୍ ଭାଙ୍ଗିଗଲା । ହାତ ଘଡ଼ିକୁ ଚାହିଁ ଦେଖିଲି ବାରଟା ବାଜି ଦୁଇମିନିଟ୍ । ଆଗରେ ବରହମ୍‌ପୁର ଷ୍ଟେସନ ।

ଗାଡ଼ି ଠିଆ ହେଲା ।

ଓହ୍ଲେଇ ପଡ଼ି ଚାଲିଲି ସହର ଭିତରକୁ । କଟକରୁ ମାତ୍ର ଦଶୋଟି ଟଙ୍କା ସମ୍ବଳ ନେଇ ବାହାରିଛି । ତେଣୁ ଗୋଆ ସୀମାନ୍ତ ଯାଏଁ ପାଥେୟର ନିତାନ୍ତ ଆବଶ୍ୟକ । ବରହମ୍‌ପୁରରେ ସେଦିନ ରାତିଟି କଟେଇ, କିଛି

ପାଥେୟ ଯୋଗାଡ଼ କରି, ତହିଁ ଆରଦିନ ପୁଣି ଯାତ୍ରାରମ୍ଭ କରିବି ଭାବି ଚାଲିଛୁ । ବାଟରେ ଅନେକ ପରିଚିତ ଲୋକଙ୍କ ସହିତ ଦେଖା ହେଲା । ସେମାନେ ମୋ ଯାତ୍ରାର ସଫଳତା କାମନା କଲେ । ବରହମ୍ପୁରର ସ୍ଥାନୀୟ "ଗୋଆ ବିମୋଚନ ସମିତି"ର ସମ୍ପାଦକ ବନ୍ଧୁ ବ୍ରହ୍ମାନନ୍ଦ ପଣ୍ଡାଙ୍କୁ ଯାଇ ଦେଖା କଲି । ସେ ମୋତେ ଗଭୀର ଆନ୍ତରିକତାର ସହିତ ସ୍ୱାଗତ କରି ସେଦିନ ରାତିରେ ମୋର ରହଣିର ଏବଂ ଭୋଜନର ସୁବନ୍ଦୋବସ୍ତ କରିଦେଲେ । ବ୍ରହ୍ମାନନ୍ଦ ବାବୁ—ଆଧୁନିକ ଓଡ଼ିଆ ସାହିତ୍ୟର ଏକ ବହୁମୁଖୀ ସଫଳ ପ୍ରତିଭା କେବଳ ନୁହନ୍ତି, ଏକଦା ଜଣେ ବାମପନ୍ଥୀ ନେତାରୂପେ ଭାବରେ ତାଙ୍କର ଖ୍ୟାତି ସର୍ବଜନବିଦିତ । ଅତି ମିଷ୍ଟଭାଷୀ, ଦୟାର୍ଦ୍ର, ଅନାଡ଼ମ୍ବର ମଣିଷ ସିଏ । ଏଥି ପୂର୍ବରୁ ତାଙ୍କ ସହିତ କଟକରେ ମୋର ଥିଲା ଘନିଷ୍ଠ ସମ୍ପର୍କ । ମୋର ଅନିର୍ଦ୍ଦିଷ୍ଟ ଜୀବନଯାତ୍ରା ପଥରେ ତାଙ୍କର ଶ୍ରଦ୍ଧା ଏବଂ ସହାୟତା ମୁଁ ଭୁଲିବାର ନୁହେଁ । ତାଙ୍କ ଦ୍ୱାରା ପ୍ରକାଶିତ ଓ ସମ୍ପାଦିତ "ସ୍ୱରୂପ" ପତ୍ରିକାରେ ପରେ ମୁଁ କ୍ରମାଗତ ଲେଖିଛୁ ।

ରାତିରେ ବରହମ୍ପୁରରେ କେତେକ ସାହିତ୍ୟିକ ଓ ସାମ୍ବାଦିକଙ୍କ ସହିତ ସାକ୍ଷାତ ହେଲା—ଆଳାପ ଆଲୋଚନାରେ ମନଟା ବେଶ ହାଲୁକା ହୋଇ ଆସିଲା ।

ତହିଁ ଆରଦିନ ସକାଳ ।

ପ୍ରାତଃକର୍ମ ଶେଷ କରି, ଜଳଯୋଗ ସାରି, କେତୋଟି ଚିଠି ଲେଖି ସାରିଲା ବେଳକୁ ସମୟ ନ'ଟା । ମଧ୍ୟାହ୍ନ ଭୋଜନ ସାରି ନେଇ ପ୍ରସ୍ତୁତ ହେଲି ବରହମ୍ପୁରରୁ ବିଦାୟ ନେବା ପାଇଁ । ମୋ ପାଖେ ପାଖେ ଥାନ୍ତି ଶ୍ରୀ ବ୍ରହ୍ମାନନ୍ଦ ପଣ୍ଡା । କ୍ରମେ ଦିନ ୧୨ଟା ଆଡ଼କୁ ଘଣ୍ଟାକଣ୍ଟାର ଅଭିଯାନ । ଅଗ୍ରସର ହେଲି ଷ୍ଟେସନ ଅଭିମୁଖେ । ସ୍ଥାନୀୟ "ଗୋଆ ବିମୋଚନ ସମିତି" ତରଫରୁ ଆନୁଷ୍ଠାନିକ ଭାବରେ ମୋତେ ବିଦାୟ ଦେବା ପାଇଁ ଷ୍ଟେସନକୁ ଆସିଥାନ୍ତି ଶ୍ରୀଯୁକ୍ତ ବିନାୟକ ଆଚାର୍ଯ୍ୟ ।* ଅଳ୍ପ ସମୟ ପରେ ଗାଡ଼ି ଆସି ପହଞ୍ଚିଗଲା । ବିଶେଷ ଭିଡ଼ ନଥିଲା ସେଦିନ । ଯାଇ ବସିବା ପାଇଁ ଏକ ସ୍ଥାନ ଅଧିକାର କଲି । ଗାଡ଼ି ଛାଡ଼ିବା ଆଗରୁ ସ୍ଥାନୀୟ "ଗୋଆ ବିମୋଚନ ସମିତି" ତରଫରୁ ବିନାୟକବାବୁ ଖଣ୍ଡେ ସାର୍ଟିଫିକେଟ ଓ ବାଟ ଖର୍ଚ୍ଚ ପାଇଁ

* ଶ୍ରୀଯୁକ୍ତ ଆଚାର୍ଯ୍ୟ ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ ।

କିଛି ଟଙ୍କା ଏବଂ ଗୋଟିଏ ରେଳ ଟିକଟ (ବରହମ୍ପୁର ଠାରୁ ବେଜୱାଡ଼ା ପର୍ଯ୍ୟନ୍ତ) ମୋ ହାତକୁ ବଢାଇ ଦେଇ କରମର୍ଦ୍ଦନ କରି ବିଦାୟ ନେଲେ । ଗାଡ଼ି ଛୁଟିବାକୁ ଆରମ୍ଭ କଲା ବେଜୱାଡ଼ା ପଥରେ ।

ଦୁର୍ଦ୍ଦାନ୍ତ, ଅପରିମିତ ଗତିରେ ଦୌଡ଼ୁଥାଏ ଜନତା ଏକ୍ସପ୍ରେସ୍ । ଏକୁଟିଆ ବସି ବସି ଭାରି ଖରାପ ବି ଲାଗୁଥାଏ ।

ଆଗରେ ଆନ୍ଧ୍ର ଆଉ ଓଡ଼ିଶାର ସୀମା ।

ଓଡ଼ିଶା ଭୂଇଁକୁ ପଛରେ ପକାଇ ଗାଡ଼ିର ଚକ ଯେତେବେଳେ ଗଡ଼ିବାକୁ ଆରମ୍ଭ କଲା ଆନ୍ଧ୍ର ମାଟି ଉପରେ, ସେତେବେଳେ ସତେ ଯେପରି କାହାର ମମତାରଜ୍ଜୁ ମୋତେ ପଛକୁ ଟାଣି ଧରୁଛି—ସେଇମିତି ଲାଗୁଥାଏ । ଏକ୍ସପ୍ରେସ୍ ଠାରୁ କୋଟି କୋଟି ଗୁଣ ବେଗରେ ମନ ଧାଇଁ ଆସିଲା ଚିରପ୍ରିୟ କଟକ ନଗରକୁ । କଟକ ରେଳ ଷ୍ଟେସନ, ଦୋଳମୁଣ୍ଡାଇ ଛକ, ଟାଉନ୍‌ହଲ ବାରଣ୍ଡା, କଲ୍ଲି ପଡ଼ିଆ, ଗୃନ୍ଧମାଚୌକ ସବୁ ବୁଲିଗଲା ମନେ ମନେ ।

ଗାଡ଼ି ଚାଲୁଥାଏ । ଝିପି ଝିପି ବର୍ଷା ହେଉଥାଏ ବାହାରେ । ଗୋଟାଏ ଆଡ଼େ ଗୋଆ ମୁକ୍ତି ଆନ୍ଦୋଳନର ମର୍ମସ୍ପର୍ଶୀ ଆହ୍ୱାନ, ଅନ୍ୟ ଆଡ଼େ ଜନ୍ମମାଟିର ମମତା—ଏ ବିବଦମାନ ଅବସ୍ଥାର ଘୂର୍ଣ୍ଣି ଆସି ଆକ୍ରମଣରେ ଛଟପଟ ହେଉଥାଏ ମୁଁ । କ୍ରମେ ବିଭାବରୀର ଘନକୃଷ୍ଣ କବରୀ ଫିଟି ଫିଟି ଆସିଲା ଧରଣୀ ଉପରେ—ନୂତନ ଯାତ୍ରୀମାନଙ୍କ କୋଳାହଳରେ ମୁଖରିତ ହୋଇ ଉଠିଲା ଶୂନ୍ୟ ଡବାଟି । ଅପରିଚିତ ସହଯାତ୍ରୀ କେତେଜଣଙ୍କ ସହ ଅଳ୍ପ ସମୟ ଭିତରେ ବେଶ୍ ବନ୍ଧୁତା ଜମି ଆସିଲା । ହସ, ଖୁସି, ଆଳାପ, ଆଲୋଚନା ଭିତରେ କଟି ଯାଉଥାଏ ସମୟ । ଜଣେ ସମବୟସ୍କ ଦକ୍ଷିଣ ଭାରତୀୟ ଭଦ୍ରବ୍ୟକ୍ତିଙ୍କୁ ପଚାରିଲି, କେଉଁ ରାସ୍ତା, କେଉଁ ଗାଡ଼ିରେ ଗଲେ ଖୁବ କମ ସମୟରେ ମୁଁ ଯାଇ ବେଲଗାଁଓରେ ପହଞ୍ଚି ପାରିବି । ସେ କହିବା ମୁତାବକ ରାସ୍ତା ଓ ଷ୍ଟେସନମାନଙ୍କର ନାମ ଡାଇରୀରେ ନୋଟ କରିନେଲି । ତା'ପରେ ଧୀରେ ଧୀରେ ମୋତେ ନିଦ ଆସି ଯାଇଛି ।

ଗନ୍ତି ପାନ୍ଥ ନଥାଏ ।

ନିଦ ଭାଙ୍ଗିଗଲା । ନିଜର ସ୍ୱଭାବ ସୁଲଭ ଗତିରେ ଗାଡ଼ି ଛୁଟିଥାଏ ବେଜୱାଡ଼ା ଅଭିମୁଖେ । ହେମ ପୂର୍ବ ଦିଗ୍‌ବଳୟ ଲୋହିତ ବର୍ଣ୍ଣର ଆଭାରେ ରଞ୍ଜିତ ହେଲା ଯବନିକା ଉତ୍ତୋଳନର ଇସାରା ଦେଇ । ସତେ ଯେମିତି କିଏ ଛପି ଛପି ଯାଇ ଛୁରିବିଦ୍ଧ କଲା ପୂର୍ବାଶାର ବକ୍ଷକୁ । ତତ୍‌କ୍ଷଣାତ ଏକ କୋଷମୁକ୍ତ ତରବାରି ପରି ବଉଦ ଫାଙ୍କରୁ ବାହାରି ଆସିଲେ ସକାଳର ନବରବି । 'ଜନତା' ବେଜୱାଡ଼ା ଷ୍ଟେସନ ଧରିଲା ସେପ୍ଟେମ୍ବର ତା୩ରିଖ ସକାଳ ଛ'ଟା କେତେ ମିନିଟ୍‌ରେ । ଏଇଠୁ ଜନତା ଏକ୍‌ସପ୍ରେସର ଯାତ୍ରା ଶେଷ, କିନ୍ତୁ ମୋ ଯାତ୍ରାର ଶେଷ ନାହିଁ ।

ଗାଡ଼ିରୁ ଓହ୍ଲାଇ ବିଶ୍ରାମାଗାରରେ ସାଥିରେ ଥିବା ସାମାନ୍ୟ ଜିନିଷପତ୍ରକୁ ରଖି ଦେଇ ସକାଳର ନିତ୍ୟକର୍ମ ଶେଷ କରିନେଲି । ଷ୍ଟେସନ କ୍ୟାଣ୍ଟିନରେ ମିଳୁଥିବା 'ଇଡ଼ଲି' ଜଳଖିଆ କରି ରେଲବାଇ ଇନ୍‌କ୍ୱାରୀରୁ ବୁଝିଲି, ବେଲଗାଓଁ ଯିବା ପାଇଁ ଗାଡ଼ି ମିଳିବ ଦିନ ତିନିଟା କେତେ ମିନିଟ୍‌ରେ । ଏତେ ସମୟ ଅଯଥା ନଷ୍ଟ କରିବା ଅପେକ୍ଷା ଟିକେ ବେଜୱାଡ଼ା ସହର ଦେଖି ଯିବା ଭଲ । ଚଢ଼ିଲି 'ଓଭର୍‌ବ୍ରିଜ' ଉପରେ । ଠିଆ ହୋଇ ଆଖି ବୁଲାଇଲା ବେଳେ ମନେ ପଡ଼ିଲା ଆନ୍ଧ୍ର ପ୍ରଦେଶର ପ୍ରତିଷ୍ଠାତା ପୋଟି ଶ୍ରୀରାମୁଲୁଙ୍କ କଥା । ଶ୍ରୀରାମୁଲୁ ଆନ୍ଧ୍ରର ସାଂସ୍କୃତିକ ଅଖଣ୍ଡତାକୁ ରକ୍ଷା କରିବା ପାଇଁ ଆରମ୍ଭ କରି-ଥିଲେ ଆମରଣ ଅନଶନ । ମାସାଧିକ କାଳ ଅନଶନ ଫଳରେ ତାଙ୍କର ଅବସ୍ଥା ଅତି ଉଦ୍‌ବେଗଜନକ ହୋଇ ଉଠି ଥିଲା । ଫଳରେ ତାଙ୍କୁ ଚିକିତ୍ସା କରୁଥିବା ଡାକ୍ତର ସେତେବେଳେ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁଙ୍କୁ ଫୋନ୍ ଯୋଗେ ଜଣାଇ ଥିଲେ ଯେ, ଖାଲି ଯଦି ଶ୍ରୀ ରାମୁଲୁଙ୍କୁ ଜଣାଇ ଦିଆଯିବ "ଆନ୍ଧ୍ର ପ୍ରଦେଶ ଗଠିତ ହେଲା" ବୋଲି, ତା' ହେଲେ ସେ ତାଙ୍କ ଅନଶନ ପ୍ରତ୍ୟାହାର କରିବେ । କିନ୍ତୁ ପ୍ରଧାନମନ୍ତ୍ରୀ ଉତ୍ତର ଦେଇଥିଲେ, "ମରିବାକୁ ଦିଅ । ସରକାର କାହାରି ଅନଶନ ଧର୍ମଘଟ ଧମକରେ ମୁଣ୍ଡ ନୁଆଁଇବାର ପାତ୍ର ନୁହନ୍ତି ।"

ଶେଷରେ ସେଇଆ ହିଁ ହେଲା । ଆନ୍ଧ୍ର ଜନତାର ପ୍ରିୟତମ ନେତା, ଦେଶପ୍ରେମୀ ବୃଦ୍ଧ ପୋଟି ଶ୍ରୀରାମୁଲୁଙ୍କ ପ୍ରାଣପକ୍ଷୀଟି ପିଞ୍ଜରା ଛାଡ଼ି ଉଡ଼ିଗଲା ଦୂରରୁ ଦୂରକୁ । ଠିକ୍ ତା' ପରେ ପରେ ଦେଶବ୍ୟାପି ଜଳି ଉଠିଲା

ବିଦ୍ରୋହର ଲେଲିହାନ ବହ୍ନି । ରାମୁଲୁଙ୍କ ପ୍ରେତାତ୍ମା ଡାକ ଦେଲା ଆନ୍ଧ୍ରର ସାଂସ୍କୃତିକ ସ୍ୱାଧୀନତାକୁ ବଳପୂର୍ବକ ପ୍ରତିଷ୍ଠା କରିବା ପାଇଁ । ଲକ୍ଷଲକ୍ଷ ଆନ୍ଧ୍ରବାସୀ ଉଣ୍ଡାଭିଡ଼ ବାହାରି ପଡ଼ିଲେ ସଂଗ୍ରାମର ସମ୍ମୁଖ ରଣାଙ୍ଗନକୁ । ଚାଲିଲା ଲୁଣ୍ଠନବାଜି, ଗୃହଦାହ—ଷ୍ଟେସନ ପ୍ଲାଟଫର୍ମମାନଙ୍କରେ ପେଟ୍ରୋଲ ଢାଳି ଅଗ୍ନିସଂଯୋଗ କରାହେଲା—ତାର କାଟି ଦିଆଗଲା—ପୋଷ୍ଟ ଅଫିସ ପୋଡ଼ି ଦିଆଗଲା—ଟିଅରଗ୍ୟାସ ଓ ଗୁଳି ସ୍ରୋତରେ ବହୁ ଆନ୍ଧ୍ର ଜନତା ମୃତାହତ ହେଲେ । ତଥାପି ସେ ବିଦ୍ରୋହର ନିଆଁ ନିର୍ବାପିତ ହେଲା ନାହିଁ—ଜଳିବାକୁ ଲାଗିଲା ଆହୁରି ଦ୍ୱିଗୁଣିତ ତେଜରେ । ଶେଷରେ ସରକାରଙ୍କୁ ବାଧ୍ୟ ହେଲା ମୁଣ୍ଡ ନୁଆଁଇବାକୁ ଆନ୍ଧ୍ର ଜନତାର ସଂଘର୍ଷ ଦାବି ଆଗରେ । ଗଠିତ ହେଲା ଆନ୍ଧ୍ର ପ୍ରଦେଶ ।

ବେଜୱାଡ଼ା ସହରଟି ଏକ ଋଦ୍ଧିସମ୍ପନ୍ନ ସହର । ପଥର କଟାହୋଇ ତିଆରି ହୋଇଛି ସହରର ରାଜପଥ । ଗୋଟିଏ କଡ଼ରେ ମୁଣ୍ଡଟେକିଛି ଅତ୍ୟୁଚ୍ଚ ପର୍ବତ ଶ୍ରେଣୀ । ଓଭରବ୍ରିଜ୍ ଉପରେ ଠିଆ ହୋଇ ଏପାଖ ସେପାଖ ଯେତେ-ଦୂର ଯାଏଁ ଆଖି ପାଇଲା ଥରେ ଦେଖିନେଲି ସହରର ଦୃଶ୍ୟ—ଓହ୍ଲାଇଲି ତଳକୁ । ଭାବିଲି, ପାଦରେ ବୁଲି ବୁଲି ଗଲେ ଅନେକ କିଛି ଦେଖିବାର ସୁଯୋଗ ପାଇବି । ପାଦ ବଢ଼ାଇଲି ଆଗକୁ । ରାସ୍ତାର ଦୁଇକଡ଼ରେ ବଡ଼ ବଡ଼ କଫି ହୋଟେଲମାନ ଓ ଅତ୍ୟୁଚ୍ଚ ଅଟ୍ଟାଳିକା ସବୁ । ଲୋକେ ଦୋକାନରେ କିଣାକିଣିରେ ବ୍ୟସ୍ତ । ପୁଁ ପାଁ, ଭଁ ଭାଁ, ହୋହୋ, ଚିତ୍କାର ଲାଗି ରହିଥାଏ । ହୋଟେଲମାନଙ୍କରୁ ଭାସି ଆସୁଥାଏ ରେଡ଼ିଓର ମୂର୍ଚ୍ଛନା । କିଛି ଦୂର ଅଗ୍ରସର ହେଲା ପରେ ପଡ଼ିଲା ଗୋଟିଏ ଛକ । ପାଖରେ ବଡ଼ କଫି ହୋଟେଲଟିଏ । ପଶିଲି ତା'ର ଭିତରେ । ଟେବୁଲଟିଏ ଅଧିକାର କରି ବୟକୁ କଫି ଆଣିବା ପାଇଁ ନିର୍ଦ୍ଦେଶ ଦେଲି । କିଛି ସମୟ ପରେ କଫି ଆସିଲା । ଗରମ କଫିର ଉଷ୍ମ ସ୍ପର୍ଶ ସଙ୍ଗେ ପଛପଟୁ ପ୍ରଶ୍ନ ହେଲା, "ଆପକା ମକାନ୍ କାହାଁପର ବାବୁଜୀ ?" ବୁଲିପଡ଼ି ଅନାଇଲି ପଛକୁ । ଶିକ୍ଷିତ ତଥା ସମ୍ଭ୍ରାନ୍ତ ଲୋକ ପରି ମନେହେଲେ ପ୍ରଶ୍ନକର୍ତ୍ତା । ଆଶ୍ଚର୍ଯ୍ୟ ମଧ୍ୟ ହେଲି ହିନ୍ଦୀ ଭାଷାର ପ୍ରଶ୍ନରେ । ହିନ୍ଦୀ ଯେଉଁଠି ଘୃଣ୍ୟ, ତେଲଗୁ କିମ୍ବା ଇଂରାଜୀ ଯେଉଁଠି ଭାବପ୍ରକାଶର ମାଧ୍ୟମ, ସେଠି ହିନ୍ଦୀ ଭାଷାରେ ପ୍ରଶ୍ନ କରିବାଟା ଆଶ୍ଚର୍ଯ୍ୟ ନୁହେଁତ ଆଉ କ'ଣ ? ଉତ୍ତରରେ କହିଲି, 'ଓଡ଼ିଶା" ।

‘ ଓ ! ଆପ୍ ଓଡ଼ିଆ ?”

“ହଁ ।”

ତା ପରେ ଧୀରେ ଧୀରେ ଆଳାପ ଆଲୋଚନା ଜମିଲା । ମୁଁ ଗୋଆମୁକ୍ତି ସଂଗ୍ରାମରେ ଯୋଗ ଦେବା ପାଇଁ ଯାଉଛି ଶୁଣି ସେ ଅଧିକ ଉତ୍ସାହିତ ହେଲେ । ଭଦ୍ରବ୍ୟକ୍ତି ସାମ୍ବାଦିକ । ସ୍ଥାନୀୟ “ବିଶାଳ ଆନ୍ଧ୍ର” ତେଲଗୁ ଦୈନିକର କାର୍ଯ୍ୟାଳୟ ଥରେ ଦେଖିଯିବା ପାଇଁ ତାଙ୍କର ଅନୁରୋଧ ଏଡ଼ି ନପାରି ଗଲି । “ବିଶାଳ ଆନ୍ଧ୍ର”ର ସଂପାଦକ ଶ୍ରୀ ହନୁମନ୍ତ ରାଓଙ୍କ ସହିତ ମଧ୍ୟ ସୌଜନ୍ୟ ସାକ୍ଷାତ ହେଲା । ସେଠାରୁ ମୋର ଗୋଆ ଯାତ୍ରା ପାଇଁ ଟ୧୦୦ଙ୍କା ପାଥେୟ ସଂଗ୍ରହ ହେଲା ।

ଷ୍ଟେସନ୍ ବିଶ୍ରାମାଗାରକୁ ଫେରି କେତୋଟି ଚିଠିପତ୍ର ଲେଖି ତାକୁ ଡାକ୍‌ବାକ୍‌ସରେ ପକାଇଲି । ଆଉ ଅଳ୍ପ ସମୟ ପରେ ଗାଡ଼ିଆସି ପହଞ୍ଚିବ ।

ବେଲଗାଓଁ ପର୍ଯ୍ୟନ୍ତ ଟିକେଟ୍ କିଣି ଅପେକ୍ଷା କଲି । ପ୍ଲାଟଫର୍ମର ବୈଦ୍ୟୁତିକ ଘଣ୍ଟାରୁ ଜାଣିଲି ରେଳବାଇ ସମୟ ଦିନ ୩ଟା ବାଜି ୪୨ ମିନିଟ୍ ।

‘ଗୁଣ୍ଟାକାଲ୍ ପାସେଞ୍ଜର’ ଆସି ଠିଆ ହେଲା ଷ୍ଟେସନ୍‌ରେ । ଭୀଷଣ ଭିଡ଼ । ପାଦ ରଖିବାକୁ ଠାବ ନାହିଁ । କୌଣସି ମତେ ଠେଲାପେଲା କରି ଗୋଟିଏ ଡବାରେ ଉଠିଲି । କ୍ରମେ ଦିନମଣିଙ୍କର ଅସ୍ତରାଗ ଲୋଳା କିରଣରେ ଉଦ୍‌ଭାସିତ ହେଲା ଦେବଦାରୁ ଝାଉଁର ଆକାଶ । ଗାଡ଼ି ବେଳବୁଡ଼ା ଘୁଞ୍ଚିଲା ବେଳକୁ ଗୋଧୂଳିର ପତଳା ଅନ୍ଧକାର ଘନାଇଁ ଆସୁଥିଲା ଚଳନ୍ତି ଗାଡ଼ିର ବାତାୟନ ଭେଦି ଦୃଷ୍ଟି ଗୋଚର ହେଉଥିବା ରେଳରାସ୍ତା ଦୁଇକଡ଼ର ଶସ୍ୟକ୍ଷେତ ଉପରେ—ଜମିଥିଲା ଧବଳ ଧୂମିକାର ଅସରନ୍ତି ଧାର । କେତୋଟି ଷ୍ଟେସନ୍ ପାର ହୋଇଗଲା ପରେ ଅନୁଭବ କଲି ଶୀତ । ଡବାଗୁଡ଼ିକ ପ୍ରେସ୍, ଅଳ୍ପ ସ୍ଥାନ, ଯାତ୍ରୀମାନଙ୍କର ଚିତ୍କାର ଓ କୋଳାହଳରେ ବଡ଼ ବିବ୍ରତ ହୋଇ ପଡ଼ୁଥାଏ ମୁଁ । ପ୍ରତି ଷ୍ଟେସନରେ ଓହ୍ଲାଇ ଦେଖେଁ କୌଣସି ଡବାରେ ଅବା ଟିକିଏ ଜାଗା ପାଇଯିବ ପରା ! କିନ୍ତୁ ସବୁଆଡ଼େ ଏକା ପରି ଅବସ୍ଥା । ଯାହାଉ ରାତି ଦଶଟା ବେଳକୁ ଟିକେ ଜାଗା ପାଇଲି । ବସୁ ବସୁ ନିଦ ଲାଗି ଆସିଲା—ଶୋଇଗଲି । ପାହାଡ଼ିଆ ରେଳରାସ୍ତା, ଧୀରେ ଧୀରେ ଗାଡ଼ି ଧକେଇ ଉଠୁଥାଏ ଉପରକୁ—ପଶି ଆସୁଥାଏ ହେମାଳ ପବନ ।

ସେପ୍‌ଟେମ୍ବର ସ୍ୱରତାରିଖ ସକାଳ । ଗାଡ଼ି ସେଇମିତି ଚାଲିଥାଏ । ଛାରପୋକ ମାନଙ୍କ ଡାମୁଡ଼ାରେ ନିଦ ଭାଙ୍ଗିଗଲା । ଉଠି ବସିଲେ । ମଝିରେ ପଡ଼ିଲା ଏକ ଜଙ୍କ୍‌ସନ୍ । ସେଇଠି ଓହ୍ଲାଇ, ଏକାଳର ନିତ୍ୟକର୍ମ ସାରି ପୁଣି ସ୍ଥାନ ଅଧିକାର କଲି ପରେ ଗାଡ଼ି ଛାଡ଼ିଲା । ଦିନ ୧୨ଟାରେ ଗାଡ଼ି ଠିଆ ହେଲା 'ଗୁଣ୍ଟାକାଲ ଜଙ୍କ୍‌ସନ୍'ରେ । ଏଇଠି ମୋତେ ପୁଣି ଗାଡ଼ି ବଦଳାଇ ଧରିବାକୁ ହେବ ତ୍ରିବେନ୍ଦ୍ରମଗାମୀ ଟ୍ରେନ୍‌ଟି । ଆଗରୁ ଗାଡ଼ିଆସି ଠିଆ-ହୋଇଥାଏ । ବିଳମ୍ବ ନ କରି ଗୋଟିଏ ଡବାକୁ ଉଠିଲି । ବାରଟା କେତେ ମିନିଟ୍‌ରେ ଗାଡ଼ି ଜଙ୍କ୍‌ସନ୍ ଛାଡ଼ିଲା ।

ବୁଦୁବୁଦିଆ ଜଙ୍ଗଲ, ଛୋଟ ଛୋଟ ପାହାଡ଼, କ୍ଷୁଦ୍ର କ୍ଷୁଦ୍ର ଗିରିନଦୀ ଆଖିରେ ପଡ଼ୁଥାନ୍ତି ରେଳରାସ୍ତାର ଉଭୟ ପାର୍ଶ୍ବରେ । ମୁଁ ଯେଉଁ ଡବାରେ ଥାଏ ସେଥିରେ ଶ୍ରୀ ନମିଲ୍ଲ ନାମକ ଜଣେ ଭଦ୍ରଲୋକ ସପରିବାର ଯାଉଥାନ୍ତି ତ୍ରିଚୁର୍ । ତାଙ୍କ ସହିତ ପରିଚୟ ହେଲା । ଅତି ଅଳ୍ପ ସମୟ ମଧ୍ୟରେ ଦୁହେଁ ଅତି ଆପଣାର ହୋଇଗଲୁ । ବାଟସାରା ନାନାରକମର ଗପସପ । ମିସେସ ନମିଲ୍ଲ ମଧ୍ୟ ସେଥିରେ ଭାଗ ନେଉଥାନ୍ତି । ତାଙ୍କର ଛ' ସାତବର୍ଷର ଝିଅଟିଏ—ଅତି ସୁନ୍ଦର ଆଉ ଭାରି ଚଞ୍ଚଳ । ଶ୍ରୀ ନମିଲ୍ଲ ଚା' ମଗାଇଲେ । ଚା'ପାନ ଭିତରେ ସେ ମୋତେ ଓଡ଼ିଶା ସମ୍ବନ୍ଧରେ ନାନାକଥା ପଚାରୁଥାନ୍ତି । ଝିଅଟି ତାଙ୍କର ଗାଡ଼ି ଭିତରେ ଭାରି ଦୁଷ୍ଟାମି କରୁଥାଏ । କେଇଟି ଘଣ୍ଟା ରେଳଯାତ୍ରା ଭିତରେ ମୁଁ ତାର ବନିଯାଇଥାଏ ପୁରା ଦୋସ୍ତ । କେବେ କେବେ ସେ ତାର ମା' କୋଳରୁ ଖସିକରି ଡେଇଁ ପଡ଼େ ମୋ କୋଳକୁ, ମୋ ଉପରେ ନାଚକୁଦ ମୋତେ ଅଥୟ କରିପକାଏ ।

ଗତ ରାତିରେ ଭଲ ନିଦ ହୋଇ ନଥିବାରୁ ଆଖି ମୋର ମୁଦି ହୋଇ ଆସୁଥାଏ ଆପେ ଆପେ—ଡବାର ମୁକ୍ତ ବାତାୟନ ଭେଦ କରି ଆସୁଥାଏ ଶୀତଳ ପବନ । ରତରତ ହୋଇ ଆସୁଥାଏ ଦିନ । ବାରୁଣୀ ବିଳାସୀ ଦିଅଁ ଧୀରେ ଧୀରେ ଲୁଚି ଯାଉଥାନ୍ତି ଚରମାଚଳ କୋଳରେ । କେତେ ନଦୀ, ନିବିଡ଼ ଅରଣ୍ୟ ତଥା ପର୍ବତମାଳାର ବୁକୁ ଭେଦ କରି ଗାଡ଼ି ଛୁଟିଥାଏ ତ୍ରିଚୁର୍ ଅଭିମୁଖେ । ତ୍ରିଚୁର୍ ଆଉ କେତେବାଟ ରହିଲା ବୋଲି ଶ୍ରୀ ନମିଲ୍ଲଙ୍କୁ ପଚାରିବାରୁ ଅଳ୍ପବାଟ ଅଛି ବୋଲି ସେ କହିଲେ । ମିସେସ୍ ନମିଲ୍ଲ ଭଲ

ସ୍ୱାମୀ କଥା ପାରନ୍ତି ନାହିଁ, ହେଲେ ତାଙ୍କ କଥା ବେଶ୍ ବୁଝି ହେଉଥାଏ । ସେ ହେଉଛନ୍ତି କର୍ଣ୍ଣାଟକୀ ମହିଳା, ଆଉ ଶ୍ରୀ ନମିଲ୍ ହେଉଛନ୍ତି ମଧ୍ୟପ୍ରଦେଶର ବାସିନ୍ଦା । ଦୁହେଁ ଯାଉଥାନ୍ତି ହୁବ୍ଲି—ହୁବ୍ଲିରେ ମିସେସ୍ ନମିଲ୍ଙ୍କ ପିତୃଗୃହ ।

ଦୂରରୁ ହୁବ୍ଲି ଷ୍ଟେସନର ସିଗନାଲ୍ ଝଣ୍ଡି ଗୁଡ଼ିକ ଦେଖାଗଲା । ଗାଡ଼ି ହୁଇସିଲ୍ ଦେଲା ଷ୍ଟେସନରେ ନିଜ ଉପସ୍ଥିତିର ଇସାରା ଦେଇ । ଏଠାରେ ମୋତେ ପୁଣି ଗାଡ଼ି ବଦଳାଇ ପୁନା ଏକ୍ସପ୍ରେସ ଧରିବାକୁ ହେବ ରାତି ସାତେ ନ'ଟା ବେଳେ । ଜିନିଷପତ୍ର ଧରି ଗାଡ଼ିରୁ ଓହ୍ଲାଇଲି । ମୋ ସହିତ ମଧ୍ୟ ଶ୍ରୀ ନମିଲ୍ ସପରିବାର ଓହ୍ଲାଇଲେ । ମୋତେ ବିଦାୟ ଦେବା ପାଇଁ ସେମାନେ ଆସିଲେ ବିଶ୍ରାମାଗାର ପର୍ଯ୍ୟନ୍ତ । ବିଦାୟ ନେବା ପୂର୍ବରୁ ହସ ହସ ମୁହଁରେ ମିସେସ୍ ନମିଲ୍ ଯୋଡ଼ହସ୍ତ ସହକାରେ ନମସ୍କାର ଜଣାଇଲେ । ମୁଁ ମଧ୍ୟ ସେମାନଙ୍କୁ ପ୍ରତିନମସ୍କାର ଜଣାଇ ବିଦାୟ ନେଲି । ତା'ପରେ ବିଶ୍ରାମାଗାରର ଗ୍ଲାସଡୋର ଭିତ୍ର ଆରାମ ଚଉକି ଉପରେ ପଡ଼ିରହି ମୁଁ ଭାବୁଥାଏ ନମିଲ୍ ଦମ୍ପତି ଓ ତାଙ୍କର ସେହି ଛିଟିକି ଝିଅଟି କଥା । କେତୋଟି ଘଣ୍ଟା ପାଇଁ ମଣିଷ ମଣିଷ ଭିତରେ କି ହୃଦ୍ୟତା ସତେ ! କେଉଁ ଦୂର ଓଡ଼ିଶା ଭୂଇଁର ଜଣେ ଅଜଣା, ଅପରିଚିତ ବାଟୋଇ ମୁଁ —ମାତ୍ର କେତୋଟି ଘଣ୍ଟା ପାଇଁ ସେମାନଙ୍କ ସହିତ ମୋର ସହଯାତ୍ରା । ତା'ର ଭିତରେ ସେମାନେ ମୋ ପାଇଁ ରଖିଦେଇଗଲେ ଏକ ସ୍ମୃତି । ଗୋଆ ସୀମାନ୍ତରେ ପାଦ ଦେବା ପର୍ଯ୍ୟନ୍ତ ସେଇମାନଙ୍କ କଥା ମନ ଭିତରେ ଆନ୍ଦୋଳିତ ହେଉଥାଏ ।

ହୁବ୍ଲି ଷ୍ଟେସନର ଆସିଷ୍ଟାଣ୍ଟ ଷ୍ଟେସନ ମାଷ୍ଟରଙ୍କ ସହ ସାକ୍ଷାତ ହେଲା । ମୋର ପରିଚୟ ପାଇ ସେ ମୋତେ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ ଏବଂ ଫୋନ୍ ଯୋଗେ କେତେଜଣ ସ୍ଥାନୀୟ ସାମ୍ବାଦିକଙ୍କୁ ନିମନ୍ତ୍ରଣ କଲେ । ତାପରେ ଏକ ଘରୋଇକିଆ ସାମ୍ବାଦିକ ସମ୍ମିଳନୀ ମଧ୍ୟ ସେଠି ଅନୁଷ୍ଠିତ ହେଲା । ସମ୍ବାଦିକମାନେ ମୋର ଗୋଆ ମୁକ୍ତିସଂଗ୍ରାମରେ ଯୋଗଦେବାର କାରଣ ସମ୍ପର୍କରେ ନାନା ପ୍ରଶ୍ନ କଲେ । ସେମାନଙ୍କ ପ୍ରଶ୍ନ ମଧ୍ୟରୁ କେତୋଟି ଓ ମୋ ଉତ୍ତର ଭିତରୁ କେତୋଟି ନିମ୍ନରେ ଉଲ୍ଲେଖ କରୁଛି—

ପ୍ରଶ୍ନ — ସତ୍ୟାଗ୍ରହ ଦ୍ବାରା ଗୋଆ ଭାରତର ଅଂଶୀଭୂତ ହେବ ବୋଲି ଆପଣ ଆନ୍ତରିକ ବିଶ୍ବାସ କରୁଛନ୍ତି ?

ଉ:— ନା, ମୋର ସେ ବିଶ୍ବାସ ନାହିଁ ।

ପ୍ର:— ତାହେଲେ ?

ଉ:— ଘରେ ଚୋର ପଶିଲେ ତାକୁ ବଳ ପ୍ରୟୋଗ କରି ଘଉଡ଼ାଇ ଦେବା ପଦ୍ଧତିରେ ମୁଁ ବିଶ୍ବାସୀ ।

ପ୍ର:— ଆପଣ ତ ନିଜେ ସତ୍ୟାଗ୍ରହୀ !

ଉ:— ହିଁ, ତା ଛଡ଼ା ଅନ୍ୟ ଉପାୟ ନାହିଁ ।

ପ୍ର:— ମାନେ ?

ଉ:— ସତ୍ୟାଗ୍ରହୀ ନ ସାଜିଲେ ଗୋଆ ପ୍ରବେଶର ଆଶା ଖୁବ୍ କମ୍ । ଏ 'ସତ୍ୟାଗ୍ରହୀ' ଉପାଧି ମୋର ନାମକୁ ମାତ୍ର । ମୋର ଲକ୍ଷ୍ୟ ସମ୍ପୂର୍ଣ୍ଣ ଭିନ୍ନ । ତାହା ହେଉଛି ସତ୍ୟାଗ୍ରହୀ ଦଳରେ ମିଶି, ଗୋଆରେ ପ୍ରବେଶ କରି ସେଠାରେ ଆତ୍ମଗୋପନ କରି ରହିଥିବା ବିପ୍ଳବୀମାନଙ୍କ ସହିତ ମିଶି କାମ କରିବା ।

ପ୍ର:— ଗୋଆ ମୁକ୍ତି ଆନ୍ଦୋଳନ ପ୍ରତି ଓଡ଼ିଶାର ଜନସାଧାରଣଙ୍କ ମନୋଭାବ କି ପ୍ରକାରର ?

ଉ:— ଗତ ୧୯୫୫ ଅଗଷ୍ଟ ପନ୍ଦର ତାରିଖରେ ଗୋଆମାଟିରେ ପର୍ତ୍ତୁଗୀଜ୍ ଜଲ୍ଲାଦମାନେ ଯେଉଁ ଅମାନୁଷିକ ହତ୍ୟାଲୀଳା କଲେ, ତାହା ବିଂଶ ଶତାବ୍ଦୀର ଇତିହାସରେ ଏକ କଳଙ୍କିତ ଏବଂ ଘୃଣିତ ଅଧ୍ୟାୟ । ଭାରତର ଜନସାଧାରଣ ଆଜି ଗୋଆ ସମସ୍ୟାକୁ ଯେଉଁ ଦୃଷ୍ଟିରେ ଦେଖୁଛନ୍ତି, ଗୋଆ ମାଟିରେ ପ୍ରାଣବଳି ଦେଇଥିବା ବୀର ଶହୀଦ୍ ମାନଙ୍କ ପାଇଁ ଯେପରି ବ୍ୟଥା ଅନୁଭବ କରୁଛନ୍ତି, ଓଡ଼ିଶାର ଜନସାଧାରଣ ସେଥିରୁ ବାଦ୍ ପଡ଼ିବେ ବା କିପରି ?

ହୁବ୍ଲି ସହର ବୁଲି ଦେଖିବାକୁ ମନହେଲା ।

କର୍ଣ୍ଣାଟକର ରାଜଧାନୀ ଏଇ ସହର । ଧୀରେ ବୁଲିବୁଲି ଆଗେଇଲି ସହର ଭିତରକୁ । ଅଳ୍ପ ସମୟ ପୂର୍ବରୁ ଭଲ ଅସରାଏ ବର୍ଷା ହୋଇ ଯାଇଥାଏ । ନାନା ରଙ୍ଗର ଇଲେକ୍ଟ୍ରିକ୍ ଆଲୁଅରେ ସୁସଜ୍ଜିତ ଦୋକାନ ବଜାର, ନାନା ରଙ୍ଗର ପୋଷାକରେ ସୁସଜ୍ଜିତା କର୍ଣ୍ଣାଟକୀ ତରୁଣୀମାନେ

ଝୁଲିଥାନ୍ତି ରାଜପଥର ଧାରେଧାରେ । ଯାଉଯାଉ ରାସ୍ତାକଡ଼ର ଗୋଟାଏ ତିନିମହଲା କୋଠା ଉପରେ ମୋର ଦୃଷ୍ଟି ଅଟକି ଗଲା । ପାଖକୁ ଯାଇ ଦେଖିଲି, ସାଇନ୍‌ବୋର୍ଡ଼ରେ ଲେଖାଅଛି "କର୍ଣ୍ଣାଟକ ଜନସଙ୍ଘ" । ପ୍ରବେଶ ପଥରେ ଜଣେ ଭଦ୍ରବ୍ୟକ୍ତି ଠିଆ ହୋଇଥିଲେ । ପଚାରିଲି, "ଅଫିସ ମେ କୋଇ ହୈ ?"

ଭଦ୍ରବ୍ୟକ୍ତି ନମସ୍କାର ସହିତ ମୋର ପରିଚୟ ବୁଝିଲେ । ମୁଁ ଓଡ଼ିଶାରୁ ଆସିଛି ଆଉ ଗୋଆ ମୁକ୍ତି ସଂଗ୍ରାମରେ ଯୋଗ ଦେବା ପାଇଁ ଯାଉଛି ବୋଲି କହିବାରୁ ସେ ମୋତେ ଆଗ୍ରହର ସହିତ ଡାକି ନେଇ ଅଫିସରେ ବସାଇଲେ । ଆଳାପ ଆଲୋଚନା ଭିତରେ ଗୋଆମୁକ୍ତି ସଂଗ୍ରାମ ସମ୍ପର୍କରେ ନାନାକଥା ତାଙ୍କ ଠାରୁ ଜାଣିବାକୁ ପାଇଲି । ଭଦ୍ରଲୋକ ମୋତେ ଆମନ୍ତ୍ରଣ ଜଣାଇଲେ ତାଙ୍କ ସହିତ ରାତ୍ରିଭୋଜନ ପାଇଁ । ଦୁହେଁ ଏକତ୍ର ବସି ରାତ୍ରିଭୋଜନ ଶେଷକଲୁ । ଭୋଜନ ପରେ ତାଙ୍କ ସହିତ କିଛି ସମୟ ଅତିବାହିତ କରି ସାରିବା ପରେ ସେ ମୋତେ ଗୋଟିଏ କାର୍‌ରେ ଆଣି ହୁବ୍‌ଲି ଷ୍ଟେସନରେ ଛାଡ଼ି ଦେଇଗଲେ । ଷ୍ଟେସନ୍‌ରେ ପହଞ୍ଚି ପୁନା ଏକ୍‌ସ୍‌ପ୍ରେସ୍ ପାଇଁ ଟିକେଟ କାଟି ପ୍ଲାଟଫର୍ମ ଚଉକି ଉପରେ ଖଣ୍ଡେ ଖବରକାଗଜ ଉପରେ ଆଖି ବୁଲାଉଥାଏ ବସିବସି ।

ରାତି ସାଢ଼େ ନ'ଟା ।

ପୁନା ଏକ୍‌ସ୍‌ପ୍ରେସ ଆସି ଠିଆହେଲା ହୁବ୍‌ଲି ଜଙ୍କସନ୍‌ରେ । ବର୍ଷା ଆରମ୍ଭ ହୋଇ ଯାଇଥାଏ । ଆସିଷ୍ଟାଣ୍ଟ୍ ଷ୍ଟେସନ ମାଷ୍ଟରଙ୍କ ଠାରୁ ବିଦାୟ ନେଇ ଉଠିଲି ଗୋଟିଏ ଡବାରେ । ବାହାରେ ଝାଞ୍ଜୁଆ ପବନ ବହୁଥାଏ ଅବିଶ୍ରାନ୍ତ—ଡବା ଭିତରେ ବସି ଭୀଷଣ ଶୀତ ମୁଁ ଅନୁଭବ କରୁଥାଏ । ପାଣିଛାଟ ମାରୁଥିବାରୁ ଡବାର ଝରକାକୁ ବନ୍ଦ କରିଦେଇ ଗୋଟାଏ ବେଞ୍ଚରେ ବିଛଣା କରିନେଲି । ପୁନା-ଏକ୍‌ସ୍‌ପ୍ରେସ ଭୀମ ଗର୍ଜନରେ ହୁବ୍‌ଲି ଜଙ୍କସନ୍ ଛାଡ଼ି ଧାଇଁଲା ପୁନା ଅଭିମୁଖେ । ସେ ଡବାଟିରେ ମୋର ସହଯାତ୍ରୀ କେବଳ ଗୋଟିଏ ଗ୍ୟାଙ୍ଗ କୁଲିଦଳ । ସେମାନେ ଯାଉଥାନ୍ତି ଧାରୱାଡ଼ ପର୍ଯ୍ୟନ୍ତ । ସମୁଦାୟ ସେମାନେ ଥାନ୍ତି ଆଠଜଣ—ଅଧିକାଂଶ ସେମାନଙ୍କ ଭିତରୁ ଯୁବକ । କାଳିଆ ଭୁଷୁଣ୍ଡା ଚେହେରା, ବଳିଲ ବଳିଲ ହାତଗୋଡ଼, ଲୁଙ୍ଗି, ଦେଶାଳ

ବାସ୍ତୁ, ଆକ୍ଷିତିମାନ ସତେ ଯେମିତି ଜୀବନସଂଗ୍ରାମର ସମ୍ମୁଖୀନ ହେବା ପାଇଁ ସର୍ବଦା ଉନ୍ମୁଖ । ସେମାନେ ବସି ନିଜ ନିଜ ଭିତରେ ସୁଖ-ଦୁଃଖ ହେଉଥାନ୍ତି—କଥ୍ୟ ଗାଉଁଲି କନ୍ନଡ଼ ଭାଷାରେ । ମୋ ପକ୍ଷରେ ତା' ବୁଝିବା ଅତ୍ୟନ୍ତ ଦୁଃସାଧ୍ୟ ।

ରାତି ଅ'ଧ ।

ହଠାତ୍ ନିଦ ଭାଙ୍ଗିଗଲା । ଗାଡ଼ି ଠିଆ ହୋଇଛି । ଝରକାବାଟେ ବାହାରକୁ ଚାହିଁ ଦେଖିଲି— ଲେଣ୍ଡା ଷ୍ଟେସନ । ଏହି ଲେଣ୍ଡା ଠାରୁ ଅନେକ ଗିରିପଥ ଓ ସୁଡଙ୍ଗ ଦେଇ ଭିତରକୁ ଯାଇଛି ରେଳ ଲାଇନ୍ । ଆଗେ ଗୋଆ ସହିତ ଭାରତର ରେଳ ଯୋଗାଯୋଗ ଥିଲା ଏହି ଲେଣ୍ଡା ଠାରୁ । କିନ୍ତୁ ସମ୍ପ୍ରତି ଭାରତ ସରକାରଙ୍କ "ଅର୍ଥନୈତିକ ବାସନ" ଫଳରେ ସବୁ ଯୋଗା-ଯୋଗ ଆଜି ବିଚ୍ଛିନ୍ନ ହୋଇ ପଡ଼ିଛି । ଏହି ଲେଣ୍ଡା ବାଟେ କେତେ ଅହିଂସ ନିରସ୍ତ୍ର ଭାରତୀୟ ସତ୍ୟାଗ୍ରହୀ ଗୋଆ ମୁକ୍ତି ପାଇଁ ଆଗମନ କରିଥିଲେ ସେମାନଙ୍କର ଅଭିଯାନ; କିନ୍ତୁ ରେଳ ସୁଡଙ୍ଗ ଭିତରେ ସେମାନଙ୍କ ଉପରେ ଚାଲିଥିଲା ଆତତାୟୀ ପର୍ତ୍ତୁଗୀଜ୍ ପୁଲିସର ଅଗ୍ନିବର୍ଷୀ ଗୁଳିମାଡ଼ । ଦେଶମାତୃକାର ଅଖଣ୍ଡତା ପାଇଁ ସେମାନେ ଅମୂଲ୍ୟ ଜୀବନ ସବୁକୁ ହସି ହସି ସମର୍ପି ଦେଇଥିଲେ ଜଳଦସ୍ୟୁ ଦଳର ମେସିନ୍‌ଗନ୍ ପାଖରେ ।

ହଠାତ୍ ଗାଡିର ହୁଇସିଲ୍‌ରେ ଫେରି ଆସିଲି ବାସ୍ତବତା ଭିତରକୁ ।

ନିଜର ସ୍ୱଭାବ ସୁଲଭ ଗତିରେ ପୁନା ଏକ୍ସପ୍ରେସ ଧାଇଁଲା ପୁନା ଉଦ୍ଦେଶ୍ୟରେ ।

ଆଜି ରାତିର ଶେଷ ଭାଗରେ ମୋର ଦୀର୍ଘ ଦିନର ରେଳଯାତ୍ରାର ଅବସାନ ହେବ । ମୁହୂର୍ତ୍ତକ ମଧ୍ୟରେ ଏକ୍ସପ୍ରେସ ଠାରୁ କୋଟି କୋଟି ଗୁଣ ବେଗରେ ମନ ଧାଇଁ ଯାଉଥାଏ ଓଡ଼ିଶା ଭୂଇଁକୁ । କଟକ ଛାଡ଼ିବା ପୂର୍ବରୁ ଯେଉଁମାନେ ମତେ ବାରଣ କରୁଥିଲେ ଗୋଆ ମୁକ୍ତି ସଂଗ୍ରାମରେ ଯୋଗ ଦେବାକୁ ଓ ଯେଉଁମାନେ ବିଦ୍ରୂପ କରି କହୁଥିଲେ, "ଓଃ, ଗୋଆକୁ ଇଏ ଯାଇ ମୁକ୍ତ କରିଦେବ" ସେହିମାନଙ୍କ କଥା ମଧ୍ୟ ମନେ ପଡ଼ୁଥାଏ ।

ରାତି ୩ଟା ।

ଗୋଟାଏ ଗଭୀର ଦୀର୍ଘଶ୍ୱାସ ନିର୍ଗତ କରି ପୁନା ଏକ୍ସପ୍ରେସ ଠିଆ ହେଲା ବେଲଗାଓଁ ଷ୍ଟେସନରେ । ଶେଷ ହେଲା ମୋର ଦୀର୍ଘ ୫ଦିନର ରେଳଯାତ୍ରା ।

ଚରାଚର ବର୍ତ୍ତମାନ ସୁପ୍ତ । କଟକର ରାଜପଥ ବର୍ତ୍ତମାନ ଥିବ ଜନମାନବ ଶୂନ୍ୟ ।

ରାସ୍ତା ଉପରେ ଖାଁ ଖାଁ ବୁଲାଷଣ୍ଢ ଓ କୁକୁରମାନେ ହୁଏତ ପରିକ୍ରମା ମାରୁଥିବେ । ଶେଷ ସବାରି ନେଇ ରାଜାବଗିଚାରୁ ରିକ୍ସାବାଲାମାନେ ହୁଏତ ଫେରୁଥିବେ ଷ୍ଟେସନ ।

ଗାଡ଼ିରୁ ଓହ୍ଲାଇ, ହାତମୁହଁ ଧୋଇ, ଚା ଟିକେ ପିଇ, ବିଶ୍ରାମ ନେଲି ବିଶ୍ରାମାଗାରରେ । ଆଖିରୁ ନିଦ ଅପହରି ଯାଇଥାଏ । ମନ ମଧ୍ୟରେ ଗଭୀର ଆଲୋଡ଼ନ । କୌଣସି ମତେ ସ୍ଥିର ହୋଇ ବସି ପାରିଲି ନାହିଁ । ନା, ବସିବା ସମ୍ଭବ ନୁହେଁ । ଯିବାକୁ ହିଁ ପଡ଼ିବ । ବାହାରି ଆସିଲି ବାହାରକୁ । ବାହାରେ କେତୋଟି ଟାଙ୍ଗା ଠିଆ ହୋଇଥିଲା— ଚକଟା ଅନ୍ଧକାର ଭିତରେ କରୁଆନର ବଡ଼ଗୁଲି ଖସି ପଡ଼ୁଥିଲା ତଳକୁ । ଗୋଟାଏ ଟାଙ୍ଗାବାଲାକୁ ପଚାରିଲି 'ଥଲକବାଡ଼' ଗଲେ କେତେ ଭଡ଼ା ନେବ ? ସେ ତିନିଟଙ୍କା କହିବାରୁ ଚାଲି ଚାଲି ଯିବି ବୋଲି ସ୍ଥିର କଲି । ବର୍ଷା ଛାଡ଼ି ଯାଇଥିଲା, ଚାରିଆଡ଼େ ଅନ୍ଧକାର ଚାପି ହୋଇ ଆସୁଥିଲା ପରି ଲାଗୁଥିଲା । କେବଳ ରାସ୍ତାକଡ଼ର ବତିଖୁଣ୍ଟମାନଙ୍କର ବତିଗୁଡ଼ିକ ଯାହା ରାସ୍ତା ସମ୍ବନ୍ଧ ମୋତେ ପରିଚୟ କରାଇ ଦେଉଥାନ୍ତି । ପାଦ ବଢ଼ାଇଲି ଆଗକୁ । ମନେ ମନେ କପରି ଏକ ଶିହରଣ ଅନୁଭବ କଲି : ଏଇ ସେଇ ବେଲଗାଓଁ ନଗରୀ ! ବିଗତ କେତେମାସ ହେଲା ଏଇ ବେଲଗାଓଁ ମାଟିରୁ ଅସଂଖ୍ୟ ସତ୍ୟାଗ୍ରହୀ ଛୁଟିଛନ୍ତି ଗୋଆ ଅଭିମୁଖେ— ଏଇ ଇତିହାସ ପ୍ରସିଦ୍ଧ ବେଲଗାଓଁ ମାଟିରେ କେତେ ଶତ ସହସ୍ର ବାର ଧ୍ୱନିତ ହୋଇ ଉଠିଛି ଅସଂଖ୍ୟ ଅଜଣା ସ୍ୱାଧୀନତାକାମୀ ପାଗଳ-ଜନତାର ଗଗନଭେଦୀ ସ୍ଲୋଗାନ, ଅଜଣା ସତ୍ୟାଗ୍ରହୀଙ୍କର ଉଚ୍ଛ୍ୱସିତ ପଦଚାରଣ ।

ଅଧମାଇଲଏ ବାଟ ଯାଇଛି କି ନାହିଁ ଆରମ୍ଭ ହେଲା ମୂଷଳଧାରାର ବର୍ଷା ।

ବେଲଗାଓଁ ଷ୍ଟେସନ ରହିଲାଣି ଅଧମାଇଲଏ ଦୂରରେ, ପାଖରେ ନାହିଁ ଘରଦ୍ୱାର, ଯିବ କୁଆଡ଼େ ? ଦୁଇଆଡ଼ୁ ନିରାଶ ହୋଇ ଗୋଟିସୁଦ୍ଧା ବର୍ଷାରେ ତିନ୍ତି ଓଦା ସଡସଡ଼ ଅବସ୍ଥାରେ ସେମିତି ଚାଲିଛୁ । ନିଃଶବ୍ଦ ଚରାଚର··· କେହି କୁଆଡ଼େ ନାହିଁ । ବର୍ଷାର ଝଙ୍କାର ପବନର ହୁଙ୍କାର, ବିଜୁଳିର ଝଲକ, ଘଡ଼ଘଡ଼ିର ମନ୍ଦ୍ର ଗର୍ଜନ, ଆକାଶରୁ ଅବିଶ୍ରାନ୍ତ ଗଳୁଥାଏ ପାଣି ।

ବର୍ଷା ଟିକେ କମିଲା ।

'ଟଲକ୍ ବାଡ଼' ହୋଇ ଆସିଲା ନିକଟ । ଗୋଆ ବିମୋଚନ ସମିତି'ର ଅଫିସଟି କେଉଁ ଜାଗାରେ ତାହାତ ମୋତେ ଜଣାନାହିଁ । 'ଟଲକ୍ ବାଡ଼'ରେ ପହଞ୍ଚି ଗୋଟାଏ ବଟଗଛ ତଳେ ଠିଆହୋଇ ଭାବୁଥାଏ, ଏ ବର୍ଷାରାତି, କେହି କୁଆଡ଼େ ନାହାନ୍ତି, କାହାକୁ ବା କ'ଣ ପଚାରିବ ? ଏତେ ରାତିରେ ମୋତେ ବଟଗଛ ତଳେ ଏକୁଟିଆ ଦେଖି କୁଲିକୁକୁର ଗୁଡାକ ସମସ୍ୱରରେ ଭୁକି ଉଠିଲେ । ମାଭିବରେ କିଛି ସମୟ ଠିଆ ହେଲା ପରେ ଝାପ୍‌ସା ଆଲୁଅରେ ଗୋଟାଏ ହଳଦିଆ ରଙ୍ଗର କୋଠା ନଜରରେ ପଡ଼ିଲା । ପାଖକୁ ଯାଇ ଦେଖିଲି, ଏକ ସାଇନ୍‌ବୋର୍ଡ଼ରେ ଲେଖାଅଛି, "ଗୋଆ ଜାତୀୟ କଂଗ୍ରେସ" । ଗେଟ୍‌ଖୋଲି ପଶିଲି ଭିତରକୁ । ବାହାର ବଗିଚାରୁ ମେଞ୍ଚାଏ ଆଲୁଅ ଚେରେଚେଇ ହେଇ ପଡ଼ିଥିଲା ଉପରତାଲାକୁ ଉଠିଯାଇଥିବା ସିଡ଼ିର କେତୋଟି ସୋପାନ ଉପରେ । ସେଇ ସିଡ଼ିରେ ଉଠିଲି ଉପର ମହଲାକୁ । ବନ୍ଦଥିବା ଗୋଟାଏ ଘରର କବାଟରେ ବହୁ ଆଘାତ କଲେବି କେହି ଶୁଣିଲେ ନାହିଁ । ନିରାଶ ହୋଇ ବାହାର ବାରଣ୍ଡାରେ ଓଦା ଲୁଗାଗୁଡାକ ଗୋଟାଏ ବେଞ୍ଚରେ ଥୋଇଦେଇ ନିଜର ଅବସନ୍ନ ଦେହଟାକୁ ଲେଟାଇ ଦେଲି ଅନ୍ୟ ଏକ ବେଞ୍ଚରେ । ଭୀଷଣ ମଶା, ସେଥିରେ ପୁଣି ହେମାଳିଆ ପବନ, ନିଦ ବା ଆସନ୍ତା କେମିତି ? ବସି ବସି ଅନେକ ସମୟ ପରେ ଘୁଇନିଦ ଲାଗି ଆସିଲା ବେଳକୁ ଦୂରରୁ···କାହିଁ କେତେ ଦୂରରୁ ଭାସି ଆସିଲା ଗୋଟିଏ ସତ୍ୟାଗ୍ରହୀ ଦଳର ଗଗନଭେଦୀ ସ୍ଲୋଗାନ । ଟିକେ ପରେ ପାଖରାସ୍ତାରେ ଶୁଭିଲା—

"ଆଜାଦ୍ ଗୋମନ୍ତକ—ଜିନ୍ଦାବାଦ"

"ଲାଠି, ଗୋଲି ଖାଏଙ୍ଗେ—ଫିର୍‌ଭି ଗୋଆ ଯାଏଙ୍ଗେ ।" ଇତ୍ୟାଦି ସ୍ଲୋଗାନ ।

ମନରେ ଏକ ଶତବାର୍ଷିକ ଶିହରଣ ଖେଳିଗଲା—କ୍ରମେ ବେଲଗାଓଁ ଆକାଶରେ ଦେଖାଦେଲା ପ୍ରଭାତ—ବୃଷ୍ଟିଅନ୍ତ ପଛା ହୋଇ ଆସିଲା। ପ୍ରଭାତ ବିହଙ୍ଗମର କୂଜନରେ ଭରିଉଠିଲା ବୃକ୍ଷଦଳ। ବର୍ଷା ଚାଲିଥିଲା ଟିପିଟିପି। ଓଦା ଲୁଗାପଟା ଠିକ କରିନେଇ ଜାକି ବାହାରି ଆସିଲି ବାହାରକୁ। ଜଣେ ଲୋକ, ସ୍ଥାନୀୟ ବୋଧହୁଏ, ତାଙ୍କୁ ପଚାରି ବୁଝିଲି, 'ଗୋଆବିମୋଚନ ସମିତି' ଅଫିସ ଅଳ୍ପଦୂରରେ। ଚାଲିଚାଲି ଗଲି, ପହଞ୍ଚିଲି ବିମୋଚନ ସମିତି କାର୍ଯ୍ୟାଳୟରେ। ସଙ୍ଗେ ସଙ୍ଗେ ସାକ୍ଷାତ ମିଳିଗଲା ବିମୋଚନ ସମିତିର ବେଲଗାଓଁ ଶାଖାର ସମ୍ପାଦକ ଶ୍ରୀ ରାମ ଆପ୍ଟେଙ୍କର। ମୁଁ ମୋର ପରିଚୟ ଦେବା ସାଥେ ସାଥେ ବ୍ରହ୍ମପୁର ଗୋଆ ବିମୋଚନ ସମିତିର ସାର୍ଟିଫିକେଟ୍‌ଟି ତାଙ୍କୁ ଦେଖାଇଲି। ସେ ମୋର ରହିବାର ଆବଶ୍ୟକ ବ୍ୟବସ୍ଥା କରିବାକୁ ନିର୍ଦ୍ଦେଶ ଦେଲେ।

ପ୍ରାତଃକର୍ମ ଶେଷକରି ବିଶ୍ରାମ ନେଲି ବିମୋଚନ ସମିତି ଅଫିସରେ। ଅନ୍ୟାନ୍ୟ ପ୍ରଦେଶରୁ ଆସିଥିବା ସତ୍ୟାଗ୍ରହୀମାନଙ୍କ ସହିତ ଦେଖାସାକ୍ଷାତ, ଆଳାପ-ଆଲୋଚନା ହେଲା।

ଦିନ ୧୦ଟା।

ରୋଷେଇ ସରିଲା। ଖାଇ ବସିଲେ ସବୁ ସତ୍ୟାଗ୍ରହୀ। ମୁଁ ମଧ୍ୟ ବସିଗଲି। ତାଟିକୁ ଖାଦ୍ୟ ନେଲାବେଳେ ଲାଗୁଥାଏ, ଜୀବନ-ନାଟକର ଉପସଂହାର ବୋଧହୁଏ ପାଖେଇ ଆସିଲା। କେତେବେଳେ ଯେ ଡାକରା ଆସିଯିବ ତାହା କିଏ ଜାଣେ? ଜାଣିଥିବ ଅବା ବିମୋଚନ ସମିତି!

ସମିତି କାର୍ଯ୍ୟାଳୟର ରୋଷେଇଶାଳ। ସେଠାରେ ତିଆରି ମୋଟାମୋଟା ଦୋପଟ ରୁଟି, ହଳଦୀ ଗୁଣ୍ଡର ଚଟଣି, ଶୁଖିଲା ଅମୃତଭଣ୍ଡା ଓ କଖାରୁ ସିଝାରୁ ମେଞ୍ଚାଏ ସେତେବେଳେ ଲାଗୁଥାଏ ଅମୃତ ଭଳି। ଭୋଜନ ସାରି ଉଠିଲୁ। କଚ୍ଛରୁ ଆସିଥିବା ସତ୍ୟାଗ୍ରହୀ ଶ୍ରୀ ପ୍ରାଣଲାଲଜୀ କୋଠାରିଙ୍କ ସହିତ ଦେଖାହେଲା। ତାଙ୍କ ସହିତ ଆଲୋଚନା ଚାଲିଥିବା ବେଳେ ପାଖରେ ବସିଥିଲେ ଜଣେ ୧୮।୧୯ ବର୍ଷର ତରୁଣ। ଶୁଣିଲି, ପର୍ତ୍ତୁଗୀଜ୍ ଗୋଆର ରାଜଧାନୀ ପାଞ୍ଜିମରେ ଥିବା ଗଭର୍ଣ୍ଣର ଜେନେରାଲଙ୍କ ଅଫିସ ଉପରେ ସେ ଉଡ଼େଇଥିଲେ ଜାତୀୟ ପତାକା

ସଫଳତାର ସହିତ ଉଡ଼ାଇ ଥିବା ଯୋଗୁଁ ପର୍ତ୍ତୁଗୀଜ କର୍ତ୍ତୃପକ୍ଷ ତାଙ୍କୁ ଗିରଫ କରି ନିର୍ମମ ଦୈହିକ ନିର୍ଯାତନ ପରେ ପାଞ୍ଜିମ ବନ୍ଦୀଶାଳାରେ ରଖିଥିଲେ । ନିକଟରେ ସେ ମୁକ୍ତିଲାଭ କରି ଫେରିଛନ୍ତି । ତରୁଣଙ୍କୁ ସେଥିପାଇଁ ଅଭିନନ୍ଦନ ଜ୍ଞାପନ କଲି ।

ଦିନ ୪ଟା ବେଳେ ପଞ୍ଜାବରୁ ଶ୍ରୀ ତକ୍‌ଦିର୍ ସିଂ ଚୌଧୁରୀଙ୍କ ସମେତ ବହୁ ସତ୍ୟାଗ୍ରହୀ ଆସି ପହଞ୍ଚିଲେ ବେଲ୍‌ଗାଓଁରେ । ବିମୋଚନ ସମିତିର ସଂପାଦକ ଆପ୍ଟେ ସାହେବ ସେମାନଙ୍କ ସହିତ ଆମର ପରିଚୟ କରାଇ ଦେଲେ । ଶୁଣିଲି, ଶ୍ରୀ ତକ୍‌ଦିର ସିଂ ଚୌଧୁରୀ ହେବେ ଆମ ସତ୍ୟାଗ୍ରହୀ ଦଳର ନେତା ।

କ୍ରମେ ସନ୍ଧ୍ୟା ନଇଁ ଆସିଲା । ବର୍ଷା ନଥିଲେ ମଧ୍ୟ ଆକାଶ ଥାଏ ମେଘାଛନ୍ନ । ଜନ କୋଳାହଳରେ ମୁଖରିତ ହୋଇ ଉଠିଥାଏ ବେଲଗାଓଁ ନଗରୀ ଓ ଅଲକ୍‌ବାଡ଼ି । କେତେକ ସତ୍ୟାଗ୍ରହୀ ସାଥୀଙ୍କ ଗହଣରେ ପାଦରେ ବୁଲି ବୁଲି ବୁଲି ବାହାରିଲି ବେଲଗାଓଁ ନଗରୀ ଭିତରକୁ । କିଛି ସମୟ ବୁଲି ବୁଲି, ଚା' ପାନ ପରେ ଫେରି ଆସିଲୁ ।

ରାତି ଭୋଜନ ପରେ ସମସ୍ତ ସତ୍ୟାଗ୍ରହୀ ଜୁଣ୍ଡହେଲେ ଗୋଟିଏ ହଲ୍‌ରେ । ନିଜ ନିଜ ଭିତରେ ପରିଚୟ ଆଦାନ-ପ୍ରଦାନ ହେଲା । କଥାହେଲା ପ୍ରତ୍ୟେକ ସତ୍ୟାଗ୍ରହୀ ନିଜ ନିଜ ମାତୃଭାଷାରେ ଗୋଟିଏ କରି ଦେଶପ୍ରେମୀ ସଙ୍ଗୀତ ଗାନ କରିବେ । ଆରମ୍ଭ ହେଲା ସଙ୍ଗୀତ-ଉତ୍ସବ । ମୁଁ ମୋର ସ୍ୱରଚିତ "ହୁସିଆର" ନାମକ ଏକ ସଙ୍ଗୀତ ଗାଇଲି । ସଙ୍ଗୀତ ଉତ୍ସବ ପରେ ଆଲୋଚନା ସଭାର ଆରମ୍ଭ । ଆଲୋଚନାର ମୁଖ୍ୟ ବିଷୟବସ୍ତୁ ହେଲା : କେଉଁ ସତ୍ୟାଗ୍ରହୀ କେଉଁ ଦଳରେ ସାମିଲ୍ ହୋଇ ଗୋଆ ପ୍ରବେଶ କରିବେ, କେଉଁ ଦଳ କେଉଁ ବାଟ ଦେଇ ସୀମାନ୍ତ ଅତିକ୍ରମ କରିବେ ଇତ୍ୟାଦି । ବହୁ ସମୟ ଧରି ଆଲୋଚନା ପରେ ଏକ ସିଦ୍ଧାନ୍ତ ନିଆଗଲା । ରାତି ଏଗାରଟା । ନିଦରେ ଆଖିପତା ମୁଦିହୋଇ ଆସୁଥାଏ ଆପେ ଆପେ । ଶୋଇବାକୁ ଯିବା ପୂର୍ବରୁ ସମିତି ତରଫରୁ ସବୁ ସତ୍ୟାଗ୍ରହୀଙ୍କୁ ଜଣାଇ ଦିଆଗଲା : ଆସନ୍ତାକାଲି ସକାଳେ ଅର୍ଥାତ ସେପ୍‌ଟେମ୍ବର ତା୭ରିଖ ସକାଳ ୯ଟା ବେଳେ ଗୋଟିଏ ସତ୍ୟାଗ୍ରହୀ ଦଳ ଚୌଧୁରୀ ତକ୍‌ଦିର ସିଂଙ୍କ ନେତୃତ୍ୱରେ ଗୋଆ ଅଭିମୁଖେ ବେଲଗାଓଁ ଛାଡ଼ିବେ । ମୁଁ ମଧ୍ୟ ସେହି ଦଳର ଅନ୍ତର୍ଭୁକ୍ତ । ଏକଥା ଶୁଣି ସାରିଲା ପରେ

ଗ୍ରହିଲି, ଆସିଗଲା ଡ଼ାକରା । କେତେବେଳେ ରାତି ପାହିବ, ସକାଳ ହେବ, ଘଡ଼ିରେ ବାଜିବ ଦିନ ୯ଟା, ଆଉ ପର୍ତ୍ତୁଗୀଜ ପୁଲିସ ଆଖିର ଅନ୍ତରାଳରେ ଆମ ସତ୍ୟାଗ୍ରହୀ ଦଳ ଅତିକ୍ରମ କରିବେ ଗୋଆ ସୀମାନ୍ତ । ଠିକ୍ ସେତିକିବେଳେ ଦେଖିବାକୁ ମିଳିବ ୧୭୯୮ ସାଲରୁ ଔପନିବେଶିକ-ପରାଧୀନତାର ରଥଚକ ତଳେ ପେଷି ହେଉଥିବା ଗୋଆ-ଡାମନ ଡ଼ିଉ ଆଉ ନାଗରହାଭେଲିର ଜନସାଧାରଣଙ୍କ ଆର୍ତ୍ତନାଦ ଏବଂ ମୁକ୍ତିର ସ୍ୱପ୍ନ-ଶପଥ । ବାହାରେ ବର୍ଷାର ଝଂକାର ସହିତ ମନ ଭିତରେ ମୋର ବହୁଥାଏ ବେଗଗାମୀ ତୋଫାନ । ସବୁ ସବୁ ଗ୍ଭଇ ନିଦ ଲଗି ଆସିଲା, କ୍ରମେ ତାହା ଗଭୀର ତନ୍ଦ୍ରାରେ ପରିଣତ ହେଲା ।

ସେପ୍ଟେମ୍ବର ତାରିଖର ସକାଳ ।

ଦଳର ନିର୍ବାଚିତ ନେତା ଚୌଧୁରୀ ରଣଧୀର ସିଂଙ୍କ ଡ଼ାକରେ ଆମ ସମସ୍ତଙ୍କର ନିଦ ଭାଂଗିଗଲା । ବାହାରେ ବର୍ଷା ଗ୍ଭଲିଥାଏ ଅବିଶ୍ରାନ୍ତ । ହେମାଳିଆ ଜାଲୁଆ ପବନରେ ଦେହ ଜକଜକ ହେଉଥାଏ । ଗାଧୋଇବା ବ୍ୟକ୍ତିଗତ ସବୁ ନିତ୍ୟକର୍ମ ଶେଷ ହେଲା ।

ଠନ୍, ଠନ୍ ଠନ୍ ! ବିମୋଚନ ସମିତି ଅଫିସର କାନ୍ଥ ଘଣ୍ଟା ଘୋଷଣା କଲା ସକାଳ ସାତଟା । ଠିକ୍ ତା ପରେ ପରେ ସମିତି ତରଫରୁ ଏକ ବୁଲେଟିନ୍ ପ୍ରଚାରିତ ହେଲା ସତ୍ୟାଗ୍ରହୀମାନଙ୍କ ଉଦ୍ଦେଶ୍ୟରେ : ନିଜ ନିଜର ଜିନିଷପତ୍ରମାନ ଷ୍ଟୋର୍‌କିପରଙ୍କ ଜମା ଦେଇଦିଅ । କାରଣ, ଗୋଆ ସୀମାନ୍ତ ଅତିକ୍ରମ କଲା-ମାତ୍ରେ ପର୍ତ୍ତୁଗୀଜ ପୁଲିସ ସତ୍ୟାଗ୍ରହୀଙ୍କ ଠାରୁ ସବୁ ଜିନିଷପତ୍ର ଛଡ଼େଇ ନିଅନ୍ତି । ଯଦି ଜୀବିତାବସ୍ଥାରେ ଫେରି ଆସିବ ତ ଜିନିଷପତ୍ର ନେଇ ଘରକୁ ଯିବ, ନଚେତ୍ ତାହା ଅନ୍ୟାନ୍ୟ ଲୁଣ୍ଠିତ ସତ୍ୟାଗ୍ରହୀମାନଙ୍କ କାମରେ ଆସିବ ।

୮ଟା ୩୦ ମିନିଟ୍‌ରେ ଖେଷଇ ସରିଲା । ସମସ୍ତେ ବସିଗଲେ ଭୋଜନରେ । ମୋ ପାଖରେ ବସିଥିବା ଭୋପାଳର ଜଣେ ସତ୍ୟାଗ୍ରହୀ କହିଉଠିଲେ, "ଇଏ— ବୋଧହୁଏ ଆମର ଶେଷଖାଦ୍ୟ !"

ଖିଆପିଆ ପରେ ଜିନିଷପତ୍ରମାନ ଷ୍ଟୋରକିପରଙ୍କ ଜମା ଧରାଇ ଦେଲୁ । ଡାକ୍ତର ଆସି ସତ୍ୟାଗ୍ରହୀମାନଙ୍କ ସ୍ୱାସ୍ଥ୍ୟ ପରୀକ୍ଷା କରି ଗ୍ଭଲିଗଲେ ।

# ॥ ସୀମାନ୍ତ ଅଭିମୁଖେ ॥

ବର୍ଷଣ ମୁଖର ସକାଳ । ସେପ୍ଟେମ୍ବର ତା୭ରିଖ, ୧୯୫୫ ମସିହା ।

ଆଉ କେତେ ମିନଟ୍ ପରେ ଘଡ଼ିରେ ବାଜିବ ନଅଟା । ଥଲକବାଡ଼ର 'ଗୋଆ ବିମୋଚନ ସମିତି,' ଅଫିସ ସାମ୍ନାରେ ଲମ୍ବି ଯାଇଥିବା ଗେରୁଆ ସଡ଼କ ଉପରେ ବର୍ଷାର ନୃତ୍ୟ ଚାଲିଥାଏ ଅବିରାମ । ଡାଳିଆ ଢଙ୍ଗର ପାଣି ସବୁ ବୋହି ଯାଉଥାଏ ରାସ୍ତାର ଦୁଇ କଡ଼କୁ । ମନେ ହେଉଥାଏ, ସତେ ଯେପରି ଆମର ଏ ଅଭିଯାନ ପାଇଁ ଆମକୁ ବିଜୟର ବରମାଲ୍ୟ ପିନ୍ଧାଇ ଦେବା ପାଇଁ ଇନ୍ଦ୍ର ଦେବତାଙ୍କର ଏ ବର୍ଷାର ଆୟୋଜନ !

ନଅଟା ବାଜିଲା ।

ବେଲ୍‌ଗାଓଁ ମାଟିରୁ ଆମ୍ଭମାନଙ୍କର ବିଦାୟ ମୁହୂର୍ତ୍ତ ହୋଇ ଆସିଲା ନିକଟ । ମିଲିଟାରି ଟ୍ରକ୍ ପରି ଦୁର୍ଦ୍ଦାନ୍ତ ଗତିରେ ଅଫିସ ସାମ୍ନାରେ ଆସି ଠିଆ ହେଲା ଗୋଟାଏ ମସ୍ତବଡ଼ ଟ୍ରକ୍ । ଚୌଧୁରୀ ଚକ୍ରଧର ସିଂଙ୍କ ନେତୃତ୍ୱରେ ୩୧ଜଣ ସତ୍ୟାଗ୍ରହୀ ଉଠିଲେ ଟ୍ରକ୍ ଉପରକୁ । ଭାରତୀୟ ଜାତୀୟ ପତାକା ଧରି ମୁଁ ଉଠିଲି ସବାଶେଷରେ ।

"ଆଜାଦ୍ ଗୋମନ୍ତକ—ଜିନ୍ଦାବାଦ"
"ଭାରତ ଜନତା କରେ ପୁକାର—ଗୋଆ ଛୋଡ଼ୋ ସାଲାଜାର ।"
"ଖୁନ୍‌ସେ ପୁକାର ହୈ—ଗୋଆ ହାମାରା ହୈ ।"
"ଚଲାଓ ଗୋଲି, ଚଲାଓ ଲାଠି—ନେହିଁ ଡରେଙ୍ଗେ ଭାରତବାସୀ" ଇତ୍ୟାଦି ଧ୍ୱନି ଭିତରେ ଟ୍ରକ୍ ଚାଲିଲା ବେଲ୍‌ଗାଓଁରୁ ଗୋଆ ସୀମାନ୍ତ ବାନ୍ଦା ଅଭିମୁଖେ ।

ଟ୍ରକ୍ ଛୁଟିଥାଏ—ଘଣ୍ଟାକୁ ୬୦-୭୦ ମାଇଲ ବେଗରେ ତାର ଗତି । ଟ୍ରକ୍‌ର ଗତିବେଗ ସହିତ ବଢ଼ୁଥାଏ ବର୍ଷା ଓ ପବନର ଗତିବେଗ । ସେହି ଘୋର ବର୍ଷା ଭିତରେ ପାଖ ଗାଁମାନଙ୍କରୁ ସ୍ତ୍ରୀ-ପୁରୁଷମାନେ ରାସ୍ତାର ଧାରେ ଧାରେ ଧାଡ଼ିବାନ୍ଧି ଆମ ଟ୍ରକ୍ ଉପରକୁ ପୁଷ୍ପବୃଷ୍ଟି କରି ଅଭିନନ୍ଦନ ଜଣାଉଥାନ୍ତି । ବେଲଗାଓଁ ଉପକଣ୍ଠର ଗଗନଚୁମ୍ବୀ ଅଟ୍ଟାଳିକାଗୁଡ଼ିକ ବର୍ଷାର

ଝାପ୍‌ସା ପରଦା ଭେଦ କରି ମଝିରେ ମଝିରେ ବହୁଦୂର ପର୍ଯ୍ୟନ୍ତ ଦେଖା ଯାଉଥାନ୍ତି । ହେମାଳିଆ ପବନ ସାଙ୍ଗକୁ ମୂଷଳଧାରାର ବର୍ଷା, ସେଥିରେ ପୁଣି ଖୋଲା ଟ୍ରକ୍ । ଆମେ ସମସ୍ତେ ଠକ୍ ଠକ୍ ହୋଇ ଥରୁଥାଉଁ । ଦେହରେ କେବଳ ଖଣ୍ଡେ ସାର୍ଟ, ଲୁଗା, ପ୍ୟାଣ୍ଟ ବ୍ୟତୀତ ଅନ୍ୟ କିଛି ନାହିଁ । ସବୁ ଜମା ଦେଇ ଆସିଛୁ ବିମୋଚନ ସମିତି ଅଫିସରେ । ଆଗୁଆ ପବନ ଓ ପାଣି ମାଡ଼ରେ ଦେହର ତମ ସବୁ ଶେଷ—କେବଳ ଗୋଆମୁକ୍ତିର ଅଗ୍ନିଗର୍ଭ ସ୍ଲୋଗାନ ବ୍ୟତୀତ ଆମକୁ ଉତ୍ତପ୍ତ କରିବାର ଅନ୍ୟ କୌଣସି ଅଗ୍ନି ନଥିଲା ।

ଆଗରେ ପଶ୍ଚିମଘାଟ ପର୍ବତମାଳା । ତା'ର ପାଦଦେଶରେ କେତୋଟି ଚା ଦୋକାନ । ଆମର ଟ୍ରକ୍ ଅଟକିଲା ସେହି ଦୋକାନମାନଙ୍କ ପାଖରେ । ଟ୍ରକ୍‌ରୁ ଓହ୍ଲାଇ ଦୋକାନ ପର୍ଯ୍ୟନ୍ତ ଯିବା ମଧ୍ୟ ଅସମ୍ଭବ ହୋଇ ଉଠିଲା । କାରଣ, ଦଳଦଳ ବିଶାଳକାୟ ମେଘଖଣ୍ଡମାନ ଆସି ସ୍ପର୍ଶ କରୁଥାନ୍ତି ପର୍ବତ-ମାଳାର ସେହି ପାଦଦେଶକୁ । ସାମ୍ନାରେ କେବଳ ମେଘ ଆଉ ମେଘ—ନାକରେ, ଆଖିରେ ପାଣି ପଶି ଯାଉଛି । ଯାହେଉ, କଷ୍ଟେ ମଷ୍ଟେ ଯାଇ ପହଞ୍ଚିଲୁ ଚା ଦୋକାନରେ । ଦୋକାନୀ ଗୋଟିଏ ଗୋଟିଏ ଚା କପ୍ ବଢାଇ ଦେଲା ଆମମାନଙ୍କ ହାତକୁ । କିନ୍ତୁ ଓଠ ପାଖକୁ ତାହା ଆସିଲା ମାତ୍ରେ ଥଣ୍ଡା—ଖୁବ ଶୀତ ପଡ଼ୁଥାଏ ସେଠି ।

ପୁଣି ଟ୍ରକ୍ ଉପରକୁ ଉଠିଲୁ ସମସ୍ତେ । ଟ୍ରକ ଚାଲିଲା ଉଚ୍ଚଶୀତ ସୀମାନ୍ତ ପଥରେ ।

ପଶ୍ଚିମଘାଟ ପର୍ବତମାଳାର ପାଦଦେଶରୁ ଯେତେବେଳେ ଉପରକୁ ଉଠୁଥାଏ ଆମ ଟ୍ରକ, ସେତେବେଳେ ଊର୍ଦ୍ଧ୍ୱରେ ସହ୍ୟାଦ୍ରିର ମନମୁଗ୍ଧକର ଦୃଶ୍ୟ ମୋତେ ଅଭିଭୂତ କରି ଦେଉଥିଲା । ଧଳାଧଳା ମେଘମାଳା ସତେ ଯେପରି ଆପଣାର ପଥଶ୍ରାନ୍ତିର ଅପନୋଦନ ପାଇଁ ବିଶ୍ରାମ ନେଉଥାନ୍ତି ଗଗନ-ଚୁମ୍ବୀ ପାହାଡ଼ର ଚୂଡ଼ାରେ । ବର୍ଷା ଚାଲିଥାଏ ଛୁହାକୁ ଛୁହା—ପଶ୍ଚିମଘାଟ ପର୍ବତମାଳାର ପ୍ରତିଟି ଶୃଙ୍ଗ ଦେଖା ଯାଉଥାଏ ଗୋଟିଏ ଗୋଟିଏ ବିରାଟ ଧୂମ-କିରୀଟ ପରି···ଶିଖର ଦେଶରୁ ଝରଣାର ଅସଂଖ୍ୟ ଜଳବେଣୀ ରୂପେଲୀ ଫିତାର ଭ୍ରମ ସୃଷ୍ଟି ପୂର୍ବକ ଗଦଗଦମୁଖର କଳରୋଳରେ ଲମ୍ଫ ଦେଉଥାନ୍ତି ଅତଳ

ତଳକୁ । ଏଇତ ! ମହାକବି କାଳିଦାସଙ୍କ "ମେଘଦୂତ" ମହାକାବ୍ୟର ବାସ୍ତବ ଛନ୍ଦ । ଚକ୍ଷୁ ମୋର ପବିତ୍ର, ରୁଚି ମୋର ଧନ୍ୟ ହୋଇଛି ଏ ଦୃଶ୍ୟକୁ ଦେଖି ଓ ଅନୁଭବ କରି । ମହାନ ପ୍ରକୃତିକୁ ପ୍ରଣାମ ଜଣାଉଥିଲି ସେଦିନ ଚଳନ୍ତା ଟ୍ରେନ ଭିତରୁ । ଆମ ଗନ୍ତବ୍ୟପଥର ଦୁଇପାଖରେ ସବୁଜ ଘନଜଙ୍ଗଲ । ତାର ଅପୂର୍ବ ମହିମା, ଅତୁଳ୍ୟ ଜାଙ୍ଗଲିକ ସୁଷମା, ବାଉଳା ପବନର ସ୍ପର୍ଶରେ ତାର ସବୁଜ ଶୀର୍ଷର ଦୋଳନରେ ମୁଁ ଭୁଲି ଯାଉଥିଲି ମୋର କ୍ଲାନ୍ତି, ଅଙ୍ଗ-ଅବସାଦ । ରାସ୍ତାର ଗୋଟିଏ ପାଖ କାହିଁ କେତେ ଉଚ୍ଚତ ଗୋଟିଏ ପାଖ କାହିଁ କେତେ ଗଭୀର । ତଳକୁ ଚାହିଁଲେ ଆଖି ପାଏନା ।

ଏହିମିତି ପଶ୍ଚିମଘାଟ ପର୍ବତମାଳାକୁ ଅତିକ୍ରମ କରି ଦିନ ୩ଟା ବେଳେ ଆମ ଟ୍ରେନ୍ ପହଞ୍ଚିଲା ବାନ୍ଦା ନଦୀ କୂଳରେ । ଟ୍ରେନରୁ ଓହ୍ଲାଇବା କ୍ଷଣି ଖବର ପହଞ୍ଚିଲା, ନିଖିଳ ଭାରତ କଂଗ୍ରେସ କମିଟି ଗୋଆ ସତ୍ୟାଗ୍ରହକୁ ନାପସନ୍ଦ କରି ଏକ ପ୍ରସ୍ତାବ ଗ୍ରହଣ କରିଛି । ସେଥିପାଇଁ ଭାରତୀୟ ସତ୍ୟାଗ୍ରହୀମାନଙ୍କୁ ଗୋଆରେ ପ୍ରବେଶ କରାଇ ନଦେବା ପାଇଁ ବମ୍ବେର ମୋରାରଜୀ ସରକାର ଗୋଆ ସୀମାନ୍ତରେ କଡ଼ା ପୋଲିସ ମୁତୟନ କରିବା ମଧ୍ୟ ଆରମ୍ଭ କରି ଦେଇଛନ୍ତି ।

ଖଣ୍ଡେ ଦୁଇ ଡଙ୍ଗାରେ କେତେ ଥରରେ ୩୧ଜଣ ସତ୍ୟାଗ୍ରହୀ ନଦୀ ପାର ହୋଇ ପ୍ରବେଶ କଲୁ ବାନ୍ଦା ଗ୍ରାମ ଭିତରେ । ଗାଁ ମୁଣ୍ଡରେ ଦେବ ମନ୍ଦିରଟିଏ, ଗୋଟିଏ ଅଶ୍ୱତ୍ଥ ଗଛ ତା' ସାମ୍ନାରେ । ସେହି ମନ୍ଦିରଟି ସତ୍ୟାଗ୍ରହୀମାନଙ୍କ ବିଶ୍ରାମାଗାରରେ ପରିଣତ ହୋଇଥାଏ କିଛିଦିନ ହେଲା । ସେଇଠି ଯାଇ ବିଶ୍ରାମ ନେଲୁ । ବେଲ୍‌ଗାଓଁରୁ ବାନ୍ଦା — ଏହି ୮୭ ମାଇଲ ଦୀର୍ଘପଥ ମଟର ଉଠାପକାରେ ଅତିକ୍ରମ କରି ଆସି ଥିବାରୁ ସତ୍ୟାଗ୍ରହୀଦଳର ଅନେକେ କ୍ଲାନ୍ତ ହୋଇ ପଡିଥାନ୍ତି । କେତେକ ମଧ୍ୟ ଶୋଇ ପଡ଼ିଥାନ୍ତି । ଆମେ କେତେଜଣ କେବଳ ବସିଥାଉଁ ବାହାର ବାରଣ୍ଡାରେ । ଅପରିଚିତ ଲୋକ ସହିତ କଥା-ନକରିବା ପାଇଁ ଆମର 'ଗାଇଡ୍' * ଆମକୁ ସତର୍କ କରି ଦେଇଥିଲେ ।

---

* 'ଗାଇଡ୍'—ପର୍ତ୍ତୁଗୀଜ୍ ଗୋଆରୁ ଭାରତ ଭିତରକୁ ପଳାଇ ଆସି ଯେଉଁମାନେ ମୁକ୍ତି ଆନ୍ଦୋଳନ ପାଇଁ କାମ କରୁଥିଲେ, ସେହିମାନେ ସତ୍ୟାଗ୍ରହୀମାନଙ୍କୁ ଗୋଆ ପ୍ରବେଶ ପାଇଁ ବାଟ ଦେଖାଇ ଦିଅନ୍ତି ।

କାରଣ, ବାନ୍ଦାର ଦକ୍ଷିଣ ପଟକୁ ଗୋଆ ସୀମାନ୍ତ ମୋଟେ ଡାକେ ବାଟ । ଅନେକ ସମୟରେ ପର୍ତ୍ତୁଗୀଜ୍ ଗୁପ୍ତଚରମାନେ ସୀମାନ୍ତ ରେଖା ଟପି, ଭାରତ ମାଟିକୁ ଆସି ସତ୍ୟାଗ୍ରହୀମାନଙ୍କ ଠାରୁ ଖବରମାନ ସଂଗ୍ରହ କରି ଫେରିଯାଇ ପର୍ତ୍ତୁଗୀଜ୍ ପୁଲିସକୁ ସେଗୁଡ଼ିକ ଜଣାଇ ଦଅନ୍ତି ।

ବାନ୍ଦା ଏକ ଛୋଟ ଗାଁ । ଦୁଇଶହରୁ ଅଧିକ ହେବ ଘରମାନଙ୍କର ସଂଖ୍ୟା । ଲୋକମାନଙ୍କ ଚାଲି ଚଳନ ଅତି ସାଧାସିଧା । ଗାଁଟିକୁ ବର, ଅଶ୍ୱତ୍ଥ ଗଛମାନ ଘେରି ରହିଛନ୍ତି । ପାଖଦେଇ ବହି ଯାଉଛି ଏକ ଖର-ସ୍ରୋତା ପାହାଡ଼ିଆ ନଈ । ନଈଟି ପର୍ତ୍ତୁଗୀଜ୍ ଗୋଆର ଅଧେ ଓ ଭାରତର ଅଧେ । ନଈକୂଳକୁ ଲାଗି ଗୋଟେ ଦୋକାନଟିଏ । ଜାତୀୟ କଂଗ୍ରେସ ତରଫରୁ ସେହି ଦୋକାନରେ ଆମର ରାତି ଭୋଜନର ବନ୍ଦୋବସ୍ତ ହୋଇଥାଏ ।

ଖିଆପିଆ ସରୁ ସରୁ ରାତି ଦଶଟା ।

ଶୋଇବାକୁ ଯିବା ଆଗରୁ ଦଳର ନେତା ଚୌଧୁରୀ ଚନ୍ଦର୍ ସିଂଙ୍କ ସହିତ ବ୍ୟକ୍ତିଗତ ଆଳାପ ଆଲୋଚନା କରିବାର ସୁଯୋଗ ମୋତେ ମିଳିଥିଲା । ସିଂଜୀ ଜଣେ ମେଳାପୀ ଆଉ ଦସଖୁସିର ଲୋକ । ମୁଣ୍ଡରେ ବାଳ ନାହିଁ, ଚନ୍ଦା । ସେ ଅଞ୍ଚଳର ସେ ଜଣେ ନାମଜାଦା କଂଗ୍ରେସ ଲୋକ । ପଞ୍ଜାବର ଫିରୋଜପୁର୍‌ଠାରେ ସେ ଆଇନ ବ୍ୟବସାୟ କରନ୍ତି । ମୁଁ ତାଙ୍କୁ ପଚାରିଲି, "ନେତାଜୀ, ଏ. ଆଇ. ସି. ସି.ର କାର୍ଯ୍ୟକାରୀ କମିଟି ଗୋଆ ସତ୍ୟାଗ୍ରହକୁ ନାପସନ୍ଦ କରି ପ୍ରସ୍ତାବ ଗ୍ରହଣ କଲା ପରେ ଆପଣ କଂଗ୍ରେସ ଲୋକ ହୋଇ କେମିତି ଗୋଆ ପ୍ରବେଶ ପାଇଁ ଜିଦ୍ ଧରି ବସିଛନ୍ତି ?"

ଉତ୍ତର ପାଇଲି: "ସେ ପ୍ରସ୍ତାବକୁ ମୁଁ ଖାତିର କରେନା । ସ୍ୱାଧୀନତାର ଭିକ୍ଷା ଆଗରେ ସେ ପ୍ରସ୍ତାବ ଅତି ଅପ୍ରଧାନ, ଗୌଣ ।"

ସେପ୍‌ଟେମ୍ବର ୭ତାରିଖ ସକାଳ ୮ଟା ।

ନିତ୍ୟକର୍ମ ସାରି ଜଳଖିଆ ଖାଇ ସାରିଥାଉଁ । ଆସି ପହଞ୍ଚିଲେ ଦୁଇଜଣ ବୁଢ଼ା ଅଫିସର ଓ ଜଣେ ପୁଲିସ ଡି: ଏସ୍: ପି: । ସେମାନେ ଆମ ସମସ୍ତଙ୍କୁ ଗୋଆ ସୀମାନ୍ତ ଅତିକ୍ରମ ନକରିବାକୁ ନାନାଭାବରେ ପ୍ରବର୍ତ୍ତାଇଲେ । ଦଳର ନେତାଙ୍କ ଇଙ୍ଗିତରେ ଆମେ କେବଳ ସେମାନଙ୍କ କଥାରେ "ହାଁଜୀ" ମାରୁଥାଉ । ଶେଷରେ ସେମାନେ ନିରାଶ ହୋଇ ଫେରିଗଲେ ।

ବାରଣ୍ଟା ବାଜବା ଉପରେ ।

ଦଳର ନେତାଙ୍କ ନିର୍ଦ୍ଦେଶରେ ଆମ ସତ୍ୟାଗ୍ରହୀଦଳ ଗୋଆ ପ୍ରବେଶ କରିବାକୁ ଅଗ୍ରସର ହେଲେ 'ଦୋଦାମାର୍ଗ' ଅଭିମୁଖେ । 'ଗାଇଡ୍' ଜଣକ ଚାଲିଥାନ୍ତି ଆଗେ ଆଗେ, ଆମେ ୩୧ ଜଣ ସତ୍ୟାଗ୍ରହୀ ଚାଲିଥାଉଁ ତାଙ୍କ ପଛେ ପଛେ । ବାଂଦା ଠାରୁ ବାମକୁ ୧୦ ମାଇଲ ଦୂରରେ ଏଇ 'ଦୋଦାମାର୍ଗ' । ସବୁଠାରୁ ଦୁର୍ଗମ ହେଉଛି ଏହି 'ଦୋଦାମାର୍ଗ' ପଥ । ଏଇ ଦଶମାଇଲ ଭିତରେ ବହୁ ଖରସ୍ରୋତା ନଦୀ ନାଳ ପଡ଼େ । ଘନ ଅରଣ୍ୟ ମଧ୍ୟରେ ସର୍ପିଳ ପଥ ! ଗୋଆ ସୀମାନ୍ତ ଯେତିକ ପାଖେଇ ଆସୁଥାଏ, ବର୍ଷାର ବେଗ ସେହି ପରିମାଣରେ ବୃଦ୍ଧି ପାଉଥାଏ । ଆମେ ଗୋଆ ସୀମାନ୍ତ ଅତିକ୍ରମ କରିବାକୁ ଯାଉଛୁ, ସୀମାନ୍ତ ପୁଲିସ (ଭାରତୀୟ) ଏ ସମ୍ବାଦ ପାଇ ଆମ ପଛେ ପଛେ ଦୁଇଟି 'ଡନ୍ ଭ୍ୟାନ୍'ରେ କେତେଜଣ ପୁଲିସ ଅଫିସର ଏବଂ ସଶସ୍ତ୍ର ପୁଲିସ ଆମ ପିଛା ଧରି ଚାଲିଥାନ୍ତି । ଆମ ସତ୍ୟାଗ୍ରହୀ ଦଳ ପହଞ୍ଚିଲେ 'କଲନା' ନାମକ ଏକ ସ୍ଥାନରେ । ସେଠାରେ ଭାରତୀୟ ସୀମାନ୍ତରକ୍ଷୀ ପୁଲିସର ଗୋଟିଏ ଫାଣ୍ଡି । ସନ୍ଧ୍ୟା ନଇଁ ଆସୁଥାଏ ସୀମାନ୍ତ ଆକାଶରେ—ପବନ ଓ ବର୍ଷା । ମାତ୍ରରେ ଆମେ ସମସ୍ତେ କ୍ଳାନ୍ତହୋଇ ପଡ଼ିଥାଉଁ । ହଠାତ ଆମ ପଛରେ ଥିବା 'ଡନ୍ ଭ୍ୟାନ୍' ଦୁଇଟି ଆମ କଡ ଦେଇ ଚାଲିଗଲେ ଆଗକୁ ଓ କିଛି ଦୂରରେ ଯାଇ ଠିଆହେଲେ । ସଙ୍ଗେ ସଙ୍ଗେ ଭିତରୁ ବାହାରି ଆସିଲେ ସଶସ୍ତ୍ର ପୁଲିସ ୨୦ ଜଣ ଆଉ ବାନ୍ଦାଠାରେ ଯେଉଁ ଗୁଇନ୍ଦା ଅଫିସର ଓ ଡ଼: ଏସ୍ : ପି:ଙ୍କୁ ଦେଖିଥିଲୁ, ସେହିମାନେ । ସେତେବେଳେ ଆମେ ସେମାନଙ୍କୁ ଦେଖିଥିଲୁ ନିରସ୍ତ୍ର, ବର୍ତ୍ତମାନ ସେମାନେ ସଶସ୍ତ୍ର, କଟିବନ୍ଧରେ ଗୁଳିଭର୍ତ୍ତି ରିଭଲଭର୍, କାନ୍ଧରେ ଫଟୋ କ୍ୟାମେରା, ହାତରେ ବଡ ବଡ ଟର୍ଚ୍ଚଲାଇଟ୍, ଦେହରେ ସାମରିକ ବର୍ଷାତି । ସେତେବେଳେ ଆମେ ଗୋଟିଏ ଶାଳଗଛ ତଳେ ବିଶ୍ରାମ ନେଉଥାଉଁ । ଟିକେ ବିଶ୍ରାମ ନେଲା ପରେ ଆମେ ପୁଣି ଉଠିବୁ । ଅତି ପାଖରେ ଏକ ପାର୍ବତ୍ୟ ଝରଣା—ବହିଚାଲିଛି ଏକ ଆଦିମ ନୂପୁର-ଧ୍ୱନିରେ । ମୁଁ ସେହି ଝରଣାକୁ ଯାଇ ମୁନ୍ଦାଏ ପାଣି ପିଇଲି । ଶୋଷ ସହିତ ଭୋକ ମଧ୍ୟ ହେଉଥାଏ ପ୍ରବଳ । ସମ୍ମୁଖରେ ପ୍ରାୟ କୋଡ଼ିଏ ହାତ ଦୂରରେ ଏକ ଖରସ୍ରୋତା ପାହାଡ଼ିଆ ନଦୀ । ନଦୀଟି ପାରିହେଲେ ଗୋଆ—ଭାରତର ସୀମାନା । ଗୋଟାଏ ବାଙ୍କ ବୁଲିଲା ପରେ ଦେଖାଯାଏ ସୀମାନ୍ତ ସଙ୍କେତ ପଥର ଖୁଣ୍ଟି ଗୁଡ଼ିକ । ସତେ ଯେପରି ସେହି ପଥର ଖୁଣ୍ଟି ଗୁଡ଼ିକର

ଆମପାଖରୁ କିଏ ଆକୁଳ ଆକୁତି ପରିକାରେ କହୁଛି "ମୋତେ ମୁକ୍ତକର ଏ ପରାଧୀନତାର ଶୃଙ୍ଖଳରୁ ।"

ଜଣେ ପୁଲିସ ଅଫିସର ଆମ ଆଡ଼କୁ ଆଗେଇ ଆସିଲେ ଆଉ ଉଚ୍ଚକଣ୍ଠରେ କହିଲେ, "ଆପଣମାନଙ୍କୁ ଆଉ ଇଞ୍ଚେ ମାତ୍ର ଆମେ ଆଗେଇବାକୁ ଦେବୁ ନାହିଁ ।"

"ଆମେ ଆଉ ଇଞ୍ଚେମାତ୍ର ପଛକୁ ହଟିବୁ ନାହିଁ ।" ମୁଁ ଉଚ୍ଚକଣ୍ଠରେ କହିଲି ।

ଅଫିସର ଜଣକ ମୋ ମୁହଁକୁ ଅନାଇ ରହିଲେ ଅନେକ ସମୟ ଯାଏଁ । ସେ ସବୁକୁ ଅଗ୍ରାହ୍ୟ କରି ଆମେ ଗୋଆ ପ୍ରବେଶ ପାଇଁ ପୁଣି ଅଭିଯାନ ଆରମ୍ଭ କଲୁ ।

ରାତିର ଘନାୟମାନ ଅନ୍ଧକାର ଘନାଇଁ ଆସୁଥାଏ ।

ଭୀଷଣ ଶୀତରେ ଥରି ଉଠୁଥାଏ ଶରୀରର ପ୍ରତିଟି ତନ୍ତ୍ରୀ । ବଢ଼ିଥିବା ଗଛମୂଳରୁ ଦଶହାତ ବାଟ ଯାଇଚୁ କି ନାହିଁ, ସଶସ୍ତ୍ର ପୁଲିସ ବାହିନୀ ସହ ଅଫିସରମାନେ ଆସି ଆମର ପଥ ଅବରୋଧ କଲେ । ଆମେ ତାଙ୍କୁ ଭ୍ରୂକ୍ଷେପ ନକରି ଅଗ୍ରସର ହେବାକୁ ଚେଷ୍ଟା କଲାବେଳେ ଆମ ସମସ୍ତଙ୍କୁ ଗିରଫ କରାଗଲା । ଆମକୁ ଏକ 'ଡ଼କ୍ ଭ୍ୟାନ୍'ରେ ଆଣି ରାତି ୧୨ଟା ବେଳେ ପୁଲିସ ଛାଡ଼ି ଦେଇଗଲା ସାମନ୍ତବାଡ଼ିରେ । ଆମେ ପୁଣି ଆସି ରହିଲୁ ସୀମାନ୍ତ ଠାରୁ ପ୍ରାୟ ୧୩ ମାଇଲ ପଛରେ ।

ସେଦିନ ରାତିଟି ପୁରାପୁରି କଟିଲା ଉପବାସରେ ।

ତହିଁ ଆରଦିନ ୧୦ଟାବେଳେ ଦଳର ନେତା ଶ୍ରୀ ଚକ୍ରଧର ଫି ପୁନା ଠାରେ ଥିବା କେନ୍ଦ୍ର 'ଗୋଆ ବିମୋଚନ ସମିତି'କୁ ଏକ ତାରବାର୍ତ୍ତାରେ ଏ ସମ୍ବାଦ ଜଣାଇ ଦେଲେ ।

ସାମନ୍ତବାଡ଼ିର ସ୍ଥାନୀୟ 'ଗୋଆ ବିମୋଚନ ସମିତି' ଅଫିସ ହୋଇଥାଏ ଆମର ବାସସ୍ଥାନ । ସମିତିର କର୍ମକର୍ତ୍ତାମାନେ ଯାହା ଗଣ୍ଡେ ଗଣ୍ଡେ ଆଣି ଦିଅନ୍ତି, ସେଇଆକୁ ଖାଇ କୌଣସି ମତେ କ୍ଷୁଧା ନିବାରଣ କରୁଥାନ୍ତି ।

ଦଳକୁ ୨ଥର ଲେଖାଏଁ ରତ୍ନଗିରିର ପୁଲିସ ଡ଼: ଏସ୍. ପି: ଆସି ଆମକୁ ପୁଣି ଗୋଆ ପ୍ରବେଶ ନକରିବାକୁ ପରାମର୍ଶ ଦେଉଥାନ୍ତି ।

ସାମନ୍ତବାଡ଼ି ଏକ ମଧ୍ୟମ ଧରଣର ସହର । ଗୁରୁପାର୍ଶ୍ୱରେ ଅଛୁଚ ପର୍ବତଶ୍ରେଣୀ ଅଭ ଘନ ଶ୍ୟାମଳ ବନାନୀ । ପ୍ରାକୃତିକ ଦୃଶ୍ୟ ଅତୀବ ମନୋରମ । ସେଠା ଲୋକଙ୍କର ସାଇବାବା ହେଉଛନ୍ତି ଆରାଧ୍ୟ ଦେବତା । ବର୍ମାସେଲ୍ କମ୍ପାନୀର ଏକ ବଡ଼ ପେଟ୍ରୋଲ-ପମ୍ପ ସେଠି ଅଛି । ପୂର୍ବେ ସାମନ୍ତବାଡ଼ିରେ ଜଣେ ରାଜା ରାଜତ୍ୱ କରୁଥିଲେ । ତାଙ୍କର ମୂର୍ତ୍ତି ସହର ମଧ୍ୟଭାଗରେ ଦଣ୍ଡାୟମାନ । ସହର ମଝିରେ ଏକ ବଡ଼ ପୋଖରୀ । ସେଠା ଲୋକେ ହିନ୍ଦି ଖୁବ୍ କମ୍ କହନ୍ତି —କହନ୍ତି ବେଶୀ ମରାଠୀ ଓ କଙ୍କଣୀ ଭାଷା ।

ତା ୧୧ ରିଖ ସକାଳ ଆଠଟା ।

ପୂନାର କେନ୍ଦ୍ର ଗୋଆ-ବିମୋଚନ ସମିତି ଏକ ତାରବାର୍ତ୍ତା ଯୋଗେ ଆମ ଦଳର ନେତାଙ୍କୁ ନିର୍ଦ୍ଦେଶ ଦେଲା— "ସୀମାନ୍ତ (ଭାରତୀୟ) ପୁଲିସର ବାଧାକୁ ଉପେକ୍ଷା କରି ଗୋଆ ପ୍ରବେଶ କର !"

ବାହାରେ ବର୍ଷା ଗୁଲିଥାଏ ବେଦମ୍ ।

କେନ୍ଦ୍ର ସମିତିର ଆଦେଶ ମୁତାବକ ଆମେ ୩୧ଜଣ ସତ୍ୟାଗ୍ରହୀ ପୁଣି ଗୋଆ ପ୍ରବେଶ ପଥରେ ଅଗ୍ରସର ହେଲୁ । ସାମନ୍ତବାଡ଼ି ଠାରୁ ୩ମାଇଲ ବାଟ ଗଲା ପରେ ଆରମ୍ଭ ହେଲା ଗୁଦଗୁଦିଆ ଜଙ୍ଗଲ । ବର୍ଷାମାଡ଼ରେ ଲୁଗାପଟାରୁ ପାଣି ବୋହି ପଡ଼ୁଥାଏ । ହଠାତ୍ ଦେଖାଗଲା, କିଛି ଦୂରରେ ରତ୍ନଗିରିର ସେହି ପୁଲିସ ଡି. ଏସ୍. ପି. ପ୍ରାୟ ୪୦ଜଣ ସଶସ୍ତ୍ର ପୁଲିସଙ୍କୁ ଧରି ଆମର ଗତିପଥ ଅବରୋଧ କରି ଠିଆ ହୋଇଛନ୍ତି । ରାସ୍ତାକଡ଼ରେ ଥୁଆ ହୋଇଛି ୨।୩ଟା ପୋଲିସ୍ ଭ୍ୟାନ । ଆମକୁ ଦେଖି ପୁଲିସବାହିନୀ ଆଗେଇ ଆସିଲେ । ଡ଼: ଏସ୍: ପି: ଆମକୁ ଆଦୌ ନଆଗେଇ ପଛକୁ ଫେରିବାକୁ ଅନୁରୋଧ କଲେ । କିନ୍ତୁ ତାହାର କୌଣସି ଫଳ ହେଲା ନାହିଁ । ଯେଉଁମାନେ ଛାତିକୁ ବଜ୍ରଠାରୁ କଠୋର କରି ନିଜର ଜନ୍ମସ୍ଥାନ, ସ୍ତ୍ରୀ, ପରିବାର ମମତାକୁ ପାଦରେ ଆଡ଼େଇ ଦେଇ ଆଗେଇ ଆସିଛନ୍ତି ପର୍ତ୍ତୁଗୀଜ ଜଳଦସ୍ୟୁର ବନ୍ଧୁକମାଣକୁ ହସି ହସି ମୁକାବିଲା କରିବା ପାଇଁ, ସେମାନେ ଏଇ ସାମାନ୍ୟ ସୀମାନ୍ତରକ୍ଷୀ ଭାରତୀୟ ପୁଲିସର ଧମକ, ନାଲିଆଖିରେ ପଛକୁ ଫେରିବେ ଏହା ଏକ ହାସ୍ୟାସ୍ପଦ କଥା ।

ଆମେ ସମସ୍ତେ ଆଗେଇବାକୁ ଆରମ୍ଭ କଲୁଁ । ସଙ୍ଗେ ସଙ୍ଗେ ପୁଲିସ ବାହିନୀ କାନ୍ଧକୁ କାନ୍ଧ ମିଳାଇ, ବନ୍ଧୁକରେ ବନ୍ଧୁକ ଛନ୍ଦି ସାମ୍ନାରେ ଠିଆ ହେଲେ ଆମର ପଥ ଅବରୋଧ କରି । ଘନଘୋର ବର୍ଷା ଭିତରେ ପ୍ରାୟ ଘଣ୍ଟାଏ କାଳ ସୀମାନ୍ତରକ୍ଷୀ ପୁଲିସ ଆଉ ସତ୍ୟାଗ୍ରହୀଙ୍କ ଲୁକାଚୋରି-ଖେଳ ଚାଲିଲା ଆମ ସତ୍ୟାଗ୍ରହୀ ଦଳର । ସବୁ ପ୍ରକାର ବାଧା ଦେଇ ଯେତେବେଳେ ସେମାନେ ବିଫଳ ହେଲେ, ସେତେବେଳେ ଡ଼. ଏସ୍. ପିଙ୍କ ନିର୍ଦ୍ଦେଶରେ ଆମ ସମସ୍ତଙ୍କୁ ଗିରଫ କରାଗଲା । ଭ୍ୟାନ୍‌ରେ ପୂରାଇ ଆମକୁ ଆଣି ଛଡ଼ାଗଲା ପୁଣି ସାମନ୍ତବାଡ଼ିରେ । ଭ୍ୟାନ୍‌ରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଆମେ ପୁଣି ଅନ୍ୟ ଏକ ବାଟରେ ଆମ ଅଭିଯାନ ଆରମ୍ଭ କଲୁଁ । କିଛି ଦୂର ଅଗ୍ରସର ହେଲା ପରେ ଆରମ୍ଭ ହେଲା ନିବିଡ଼ ଜଙ୍ଗଲ ଆଉ ପାହାଡ଼ । ପାହାଡ଼ ଉପର ଦେଇ ରାସ୍ତାଟି ଲମ୍ବି ଯାଇଛି ବାନ୍ଦା ନଦୀକୂଳ ଯାଏଁ । ପାହାଡ଼ର ଶୀର୍ଷ ଦେଶ ଅତିକ୍ରମ କରି ଆମେ ପଶିଲୁ ଆହୁରି ଘନ ଜଙ୍ଗଲ ଭିତରେ । ପୁଣି ଦେଖିଲୁ କିଛି-ଦୂରରେ ସେହି ଡ଼ି. ଏସ୍. ପି ସଶସ୍ତ୍ର ପୁଲିସ ବାହିନୀ ସହିତ ଆମର ପଥରୋଧ କରି ଠିଆ ହୋଇଛନ୍ତି ।

ଏଗାରଟା ବାଜି ଯାଇଥିଲା ।

ପର୍ବତ ପାଦଦେଶର ଅନାମିକା ବୃକ୍ଷଚୂଡ଼ାରୁ ଭାସି ଆସୁଥିଲା ପକ୍ଷୀର କାକଳି । ହେମାଳିଆ ପବନ ବହୁଥିଲା ଅବିଶ୍ରାନ୍ତ । ବର୍ଷାର ବେଗ ମଧ୍ୟ ବଢ଼ୁଥିଲା । ପୁଣି ଆମ ସମସ୍ତଙ୍କୁ ଗିରଫ କରାଗଲା । ଡ଼ି. ଏସ୍. ପି. ଆମକୁ ହୁକୁମ ଦେଲେ ଭ୍ୟାନରେ ବସିବା ପାଇଁ । ଆମେ ତାର ପ୍ରତିବାଦ କରି ଭ୍ୟାନ୍‌ରେ ନବସି ବସିଗଲୁ ସେହି ପାର୍ବତ୍ୟ ରାସ୍ତାର ଦୁଇଧାରରେ । ଗୋଆ ସୀମାନ୍ତର ବର୍ଷା ଓଡ଼ିଶାର ବର୍ଷା ପରି ନୁହେଁ—ମୂଷଳଧାରର ବର୍ଷା । ରେକାରେକା ମେଘମାଳା ଆସି ମାଟିକୁ ସ୍ପର୍ଶ କରୁଥାନ୍ତି, ଅସରାଏ ପରେ ଅଉ ଏକ ଅସରା ବର୍ଷା ଆସୁଥାଏ ତାର ଭୀମକାନ୍ତ ମୂର୍ତ୍ତି ଧରି । ଆମେ ଯେଉଁ ସ୍ଥାନରେ ବସି ରହିଥାଉଁ ତାର ଅନତିଦୂରରେ 'ଇନ୍‌ସୁଲି' ନାମକ ଏକ ଛୋଟ ଗାଁ । ବାଟଚଲା, ଅନାହାର, ବର୍ଷାମାଡ଼ରେ ସମସ୍ତେ ପ୍ରାୟ ଅବସନ୍ନ । ପୁଲିସ ଆମକୁ ଗିରଫ କରି, ବସାଇ ରଖି ସେ ପର୍ଯ୍ୟନ୍ତ କିଛି ଖାଇବାକୁ ଦେଇ ନଥିବା ଖବର ପାଇ ଦିନ ଦୁଇଟା ବେଳେ 'ଇନ୍‌ସୁଲି' ଗାଁର କେତେଜଣ ଗୃହସ୍ଥ ଘୁଞ୍ଚ ଗୋଟାଏ ମସ୍ତବଡ଼ ଡ଼ମରେ କିଛି ତିଆରି ଗରମ ଚା' ଓ ବଡ଼ ଧଣି

ଆସି ଆମ ପାଖରେ ପହଞ୍ଚିଲେ । ହମସ୍ତେ ଟିକେ ଟିକେ ଗୁ' ପିଇ, ବଡ଼ଠାଣି ଉଷ୍ଣତା ଅନୁଭବ କଲୁଁ । ଝିଷଣ ତୁଳସୂଙ୍କସ୍ଥ ବର୍ଷା, ସେଥିରେ ପୁଣି ନାହିଁ ନଥିବା ଶୀତ । ତା'ର ଭିତରେ କପେ ଲେଖେଁ ଗୁ, ଆଜ ଜଳନ୍ତା ବଡ଼ ଖଣ୍ଡେ ଖଣ୍ଡେ ଆମକୁ ସ୍ୱର୍ଗର ସମ୍ପତ୍ତି ବୋଲି ମନେ ହୋଇଥିଲା ।

ହନ ଡିନଟା ।

ଆମେ ସମସ୍ତେ ଦେଇମିଶ ବସି ରହିଥାଉଁ ବସ୍ତାର କାଦୁଅ ଉପରେ । କିନ୍ତୁ ପୁଲିସମାନେ ଭ୍ୟାନ୍ ଭିତରେ ବସି ରହିଥାଆନ୍ତି ଆରାମରେ । ପୁଣି ଥରେ ପୁଲିସ ଆମକୁ କଡ଼ା ନିର୍ଦ୍ଦେଶ ଦେଲା ଭ୍ୟାନ୍‌ରେ ବସିବା ପାଇଁ । କିନ୍ତୁ ଆମେ କେହି ସେଥିରେ କର୍ଣ୍ଣପାତ କଲୁ ନାହିଁ । "ନିରସ୍ତ୍ର ସତ୍ୟାଗ୍ରହୀଙ୍କୁ ଗିରଫ କରି, ଘାବଦିନ ବସାଇ ରଖି କାହିଁକି କିଛି ଖାଇବାକୁ ଦେଉନାହଁ ?" ବୋଲି ପୁଲିସକୁ କୈଫିୟତ୍ ତଲବ କଲେ ଆମଦଳର ନେତା ଚୌଧୁରୀ ଚକ୍ରଧର ସି । ତଥାପି ପୁଲିସ ନୀରବ ।

ଆକାଶରେ ଜମାଟବନ୍ଧା କଂକ୍ରିଟମେଘ । ପଶ୍ଚିମ ଦିଗରୁ ଆରବସାଗରର ଜନ୍ମିକୁ ଅତିକ୍ରମ କରି ମାଡ଼ି ଆସିଲା ସନ୍ଧ୍ୟା । ଦିନାବସାନର ସୂଚନା ଦେଇ ନୀଡ଼ାଭିମୁଖୀ ପକ୍ଷୀକୁଳର ପଦ୍ମଆର ଆରମ୍ଭ ହୋଇ ଯାଇଥାଏ—ସେମାନଙ୍କ କୂଜନରେ ମୁଖରିତ ହୋଇ ଉଠୁଥାଏ ନିବଡ଼ ବନଭୂମି ।

ଦେଖୁ ଦେଖୁ ଘନାଇଁ ଆସିଲା ହିଯାମା ରଜନୀର ଘନୀଭୂତ ଅନ୍ଧକାର । ହେମାଳିଆ ପବନ ସହିତ ଖୁବ୍ ଯୋରରେ ବର୍ଷା ପଡ଼ିବାକୁ ଆରମ୍ଭ କଲା । ଯିବୁ କୁଆଡେ ? ସାମ୍ନାରେ ଗୋଆ ସୀମାନ୍ତ ୪ମାଇଲ ଦୂର । ପଛକୁଚ ଫେରିବୁ ନାହିଁ । ଉପରେ ଅନନ୍ତ ନିର୍ଦ୍ଦୟ ମେଘାଚ୍ଛନ୍ନ ଆକାଶ, ତଳେ ନିଘଞ୍ଚ ଅରଣ୍ୟ, ଚାରିପାଖରେ ଆମର ସଶସ୍ତ୍ର ପୁଲିସବାହିନୀ—ମଝିରେ କେବଳ ଆମେ କେଇଜଣ ପଥଶ୍ରାନ୍ତ, କ୍ଷୁଧିତ ନିରସ୍ତ୍ର ଗୋଆ ସତ୍ୟାଗ୍ରହୀ ।

ବର୍ଷା ଝିଲଥାଏ, ପବନ ପିଟୁଥାଏ, ସେହି ତମିସ୍ରାଚ୍ଛନ୍ନ କର୍ଦ୍ଦମାକ୍ତ ପାର୍ବତ୍ୟ ପଥ ଉପରେ ବସି ବସି ମୋର ମନେ ପଡୁଥାଏ ଜନ୍ମଭୂମି ଉତ୍କଳର ପ୍ରାଚୀନ ନୌବାଣିଜ୍ୟର କଥା । ପ୍ରଶ୍ନ ଉଠୁଥାଏ, କାହିଁକି ବା କିଏ

ହେଲା ସେହି ନୌ-ବାଣିଜ୍ୟ ? ଧରାଯାଉ, ସେଇଟା ସପ୍ତଦଶ କି ଚତୁର୍ଦ୍ଦଶ ଶତାବ୍ଦୀ ! ବାଲିଦ୍ୱୀପରୁ ନୌବେଳା ଚାଲିଛି ବଙ୍ଗୋପସାଗରର ବୁକୁ ଚିରି ଆଣ୍ଡାମାନ ଅତିକ୍ରମ କରି ତାମ୍ରଲିପ୍ତ ଅଭିମୁଖରେ ! ସାଧବ ମଧୁକର ବୈଶ୍ୱଶଲ ସ୍ୱର୍ଣ୍ଣ ସିଂହାସନରେ ଆସୀନ—ପରିଚାରକଗଣ ଛତ୍ରଚାମର ଧରି ଚାରି ପାଖରେ ବେଢ଼ି ରହିଛନ୍ତି, ମର୍ଦ୍ଦଳ, କାହାଳି ବାଜୁଛି, ନାବିକଗଣ ଅବିଶ୍ରାନ୍ତ ବାହୁଚାଳନା ଦ୍ୱାରା ଆହୁଲା ମାରି ଚାଲିଛନ୍ତି । ପ୍ରଭାତର ସୂର୍ଯ୍ୟ ଦିକ୍‌ଚକ୍ରବାଳର ବୁକୁ ଭେଦକରି ଧୀରେ ଧୀରେ ଉଠି ଆସୁଛି ଉପରକୁ । ହଠାତ୍ ଦୂରରୁ ଦେଖାଗଲା ୩।୪ଟି ଅଦ୍ଭୁତ ଧରଣର ନୌକା—ପାଲ ଉଡ଼ାଇ ତୀବ୍ର ଗତିରେ ତାହା ଛୁଟି ଆସୁଛି ସାଧବଙ୍କ ବୋଇତ ଆଡ଼କୁ । ସାଧବ ମଧୁକର ଭାବିଲେ, ହୁଏତ କେଉଁ ବଣିକ ବନ୍ଧୁତ୍ୱ ପାତିବା ଉଦ୍ଦେଶ୍ୟରେ ଆସୁଥାଇ ପାରେ ତାଙ୍କ ନିକଟକୁ ! ସେ ତାଙ୍କ ନାବିକମାନଙ୍କୁ ନିର୍ଦ୍ଦେଶ ଦେଲେ ବୋଇତଭେଳାର ଗତି ମନ୍ଥର କରିବାକୁ । ତା ପରେ··· ସେହି ଅଚିହ୍ନା ଅଦ୍ଭୁତ ନୌକା ୩।୪ଟି ଆସି ପହଞ୍ଚିଲା ମଧୁକରଙ୍କ ବୋଇତ ପାଖରେ । ମଧୁକର ସିଂହାସନରୁ ଉଠି ନୂତନ ବନ୍ଧୁଙ୍କୁ ସ୍ୱାଗତ କରିବା ପାଇଁ ଆସି ଠିଆହେଲେ ବୋଇତର ପାବଚ୍ଛ ନିକଟରେ । କିନ୍ତୁ ଏ କ'ଣ ! ଅଦ୍ଭୁତ ଦେହର ବର୍ଣ୍ଣ, ଅଦ୍ଭୁତ ପରିଧେୟ, ଅଦ୍ଭୁତ କଥାବାର୍ତ୍ତା, ଅଦ୍ଭୁତ ଚାହାଣି ଆଉ ବ୍ୟବହାର । ମଧୁକର ଯେଉଁମାନଙ୍କୁ ବନ୍ଧୁ ଭାବରେ ସ୍ୱାଗତ କରିବାକୁ ଉଠି ଯାଇଥିଲେ । ସେମାନେ ତାଙ୍କୁ ଅସ୍ତ୍ର ଦେଖାଇ ବନ୍ଦୀ କଲେ, ଚାଲିଲା ଖଣ୍ଡଯୁଦ୍ଧ । ଅପ୍ରସ୍ତୁତ ଓଡ଼ିଆ ନାବିକଗଣ ପରାସ୍ତ ହେଲେ, କେତେକ ବିଲୀନ ହେଲେ ସମୁଦ୍ର ଗର୍ଭରେ । ଆଗନ୍ତୁକ ନାବିକଗଣ ମଧୁକରଙ୍କ ମୂଲ୍ୟବାନ ପଣ୍ୟ-ସମ୍ଭାର ନିଜ ନିଜ ନୌକାରେ ଭରି ନେଇ ଅଦୃଶ୍ୟ ହେଲେ ସାଗର ବକ୍ଷର ଅନିର୍ଦ୍ଦିଷ୍ଟ ପଥରେ ।

ଏଇମାନେ ହେଲେ ପର୍ତ୍ତୁଗୀଜ୍ ଜଳଦସ୍ୟୁ । ସ୍ୱାଙ୍କର ବଂଶଧରଙ୍କ ମଧ୍ୟରୁ ଆସିଥିଲେ ଭାସ୍କୋଡଗାମା ଭାରତର ଦକ୍ଷିଣପଶ୍ଚିମ ଉପକୂଳକୁ ମୂଲ୍ୟବାନ ପୋଷାକ ପିନ୍ଧି ପର୍ଯ୍ୟଟକ ରୂପରେ । ରାଜା ଜାମୋରିନଙ୍କ ସହିତ ବନ୍ଧୁତ୍ୱ କଲେ ଏବଂ ଦସ୍ୟୁର ଦୈତ୍ୟକର୍ମର ସାଫଲ୍ୟ ଅର୍ଜନ କରି ଫେରିଗଲେ ନିଜ ଦେଶକୁ । ସେହି ଦିନଠାରୁ ଭାରତବର୍ଷରେ ପଡ଼ିଲା ପର୍ତ୍ତୁଗୀଜ୍ ଜଳଦସ୍ୟୁ ବୃତ୍ତିର ମୂଳଦୁଆ । ତା ପରେ ? ଚାଲିଲା ହତ୍ୟା, ଲୁଣ୍ଠନ, ଫରାସୀ ଓ ଇଂରେଜମାନଙ୍କ

ସହିତ ଯୁଦ୍ଧ ପୁଣି ମୈତ୍ରୀ। ପରିଶେଷରେ କ୍ୟାନସର ଟିଉମର ଭଳି ଭାରତ ବୁକୁରେ ରହିଗଲା ଗୋଆ, ଡାମନ, ଡ଼ିଉ ଓ ନଗରହାଭେଲି। ଦସ୍ୟୁବୃତ୍ତି ଯାର ପରମ୍ପରା, ଆଜି ସେଇ ଜାତିର "ଜନନେତା" ଡାକିଏଲେ ସାଲାଜାର ଚତୁର୍ଦ୍ଧରେ ଗୋଆରେ ଚାଲିଛି ମୁକ୍ତି ଅଭିଯାନ। ଅଜ୍ଞାତର ସେହି ମଧୁକର ବୈଷ୍ଣବଙ୍କର ଜଣେ ସୈନିକ ଏଇ କଥା ବସି ବସି କା ଭାବ ମନରେ ଏକ ଜାତୀୟତାବାଦୀ ଗର୍ବ ଅନୁଭବ କରୁଥାଏ।

ରାତି ପ୍ରାୟ ୭ଟା !

ଅନେକ ସତ୍ୟାଗ୍ରହୀ ରାସ୍ତାର କାଦୁଅ ଉପରେ ଶୋଇ ଗଲେଣି। ମୋ ପାଖକୁ ଲାଗି ବସିଥାନ୍ତି ପଶ୍ଚିମବଙ୍ଗ ଜଳପାଇଗୁଡ଼ି ଫରୱାର୍ଡ଼ ବ୍ଲକର ନେତା ଶ୍ରୀ ଏସ୍, ଏନ୍, ଚାଙ୍ଗୁଲି। ସେହି ଅନ୍ଧକାର ଆଉ କର୍ଦ୍ଦମାକ୍ତ ଅରଣ୍ୟପଥ ଉପରେ ବସି ମୁଁ ଗାଉଥାଏ ମୋ ନିଜର ଏକ ସ୍ୱରଚିତ ସଙ୍ଗୀତ ସହିତ ଗଣକବି ବାଞ୍ଛାନିଧି ମହାନ୍ତିଙ୍କ "କହକହ କେଉଁ ଜାତି ପାଇଛି ମୁକତି, କରି ହିଂସାର ହୁଙ୍କାର ··" ସଙ୍ଗୀତଟିକୁ। ହଠାତ୍ ଅନତିଦୂର ପାହାଡ଼ର ଶିଖର-ଦେଶରୁ ଦେଖାଗଲା ଏକ ମଟର ଲାଇଟ। କିଛି ସମୟ ପରେ ମଟର ଆସି ଠିଆହେଲା ଆମ ପାଖରେ। ଭିତରୁ ବାହାରିଲେ ବମ୍ବେର ପୁଲିସ ଡି· ଆଇ· ଜି. ମିଃ ନଗରବାଲା। ଗାଡ଼ିରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଡ଼ି· ଆଇ· ଜି· ଚିତ୍କାର କରି ଉଠିଲେ, **"Throw them in to the van"**

ସଙ୍ଗେ ସଙ୍ଗେ ଦୂରରେ ଥିବା ତିନିଟା ପୁଲିସ ଭ୍ୟାନ ଆସି ହାଜର ହେଲା ଆମ ପାଖରେ। ଡ଼ି: ଆଇ: ଜି: ପୁଲିସବାହିନୀକୁ ପୁଣି ନିର୍ଦ୍ଦେଶ ଦେଲେ, **"Kick them if they refuse".** ଠିକ୍ ପରେ ପରେ ପୁଲିସର ଆକ୍ରମଣ ଆରମ୍ଭ ହୋଇଗଲା ଆମ ଉପରେ। ଆମକୁ ଚକୁ ଠେଙ୍ଗା, ମାଡ଼ ଦେଇ ଜବରଦସ୍ତ ଭ୍ୟାନରେ ଭର୍ତ୍ତି କରିବା ଆରମ୍ଭ ହେଲା। ଆମେ ସେଇମିତି କାଦୁଅ ଉପରେ ଶୋଇ ରହିଥାଉ। ମୋତେ ଜଣେ ଇନ୍ସପେକ୍ଟର ଉଠିବାକୁ ଗୋଇଠା ମାରିଲେ। ସେଇମିତି ପଡ଼ି ରହିଥିବା ଅବସ୍ଥାରେ ମୁଁ କ୍ଷିପ୍ତ ହୋଇ କହିଲି, **"Why do you harass us ? You may take us to Jail."**

ମୋ ମୁହଁରୁ କଥା ନସରଣୁ ଆରମ୍ଭ ହେଲା ପ୍ରହାର । ବେଟନ୍ ପାହାର, ବୁଟ୍ ଗୋଇଠିର ମାଡ ଖାଇଲି । ତାପରେ ଦି'ଜଣ ପଣସ୍ତ ସିପାହୀ ମୋତେ ତଳୁ ଟେକି ଜବରଦସ୍ତ ଭ୍ୟାନରେ ଭର୍ତ୍ତି କରିବାକୁ ଉଦ୍ୟମ କଲେ । ମୁଁ କିନ୍ତୁ ରାସ୍ତାକଡର ଘାସକୁ ପ୍ରାଣପଣେ ଜାବୁଡ଼ି ଧରି ପଡ଼ି ରହିଥାଏ । ହଠାତ୍ କେତେଟା ବୁଟ୍‌ର ଗୋଇଠା ଓ ଗୋଟାବଡା ବେଟନ ଖୋଚା ଆସି ମୋ ଅଣ୍ଟା ଓ ପିଠିରେ ବସିବାରୁ ମୁଁ ସଂଜ୍ଞାହୀନ ହୋଇ ପଡ଼ିଲି ।

ଘଣ୍ଟାଏ ପରେ ଚେତା ଫେରିଲା ବେଳକୁ ଦେଖିଲି, ଦଳର ନେତା ଶ୍ରୀ ଟେକ୍‌ଧର ସିଂ କୋଳରେ ମୁଣ୍ଡ ରଖି ମୁଁ ଭ୍ୟାନ ଭିତରେ ଶୋଇଛି । ଚଳନ୍ତା ପୁଲିସ ଭ୍ୟାନର ଚକ ଯେତେବେଳେ ଗୋଟିଏ ଗାତରୁ ଯାଇ ଅନ୍ୟ ଏକ ଗାତରେ ପଡୁଥାଏ ସେତେବେଳେ ତୀକ୍ଷଣ ଯନ୍ତ୍ରଣାରେ ଚିତ୍କାର କରି ଉଠୁଥାଏ ମୁଁ । ଭ୍ୟାନ ଛୁଟିଥାଏ ଖାଲଢ଼ିପ ପାର୍ବତ୍ୟ ପଥ ଅତିକ୍ରମ କରି । ତା'ରି ଭିତରେ ଆମ ସତ୍ୟାଗ୍ରହୀ ଦଳ ଉପରେ ବର୍ଷୁଥାଏ ବନ୍ଧୁକ ମାଡ଼ । ତା'ରି ଭିତରେ ଧ୍ୱନି ଉଠୁଥାଏ, "ମୋରାର୍ଜୀ ସର୍କାର—ମୁର୍ଦ୍ଦାବାଦ ।"

ରାତି ଦଶଟା ।

ଭ୍ୟାନ ପହଞ୍ଚିଲା ସାମଲବାଡ଼ରେ । ପୁଲିସ ହୁକୁମ ଦେଲା, 'ନୀଚେ ଉତରେ !' କିନ୍ତୁ ଆମେ ସେଥିରେ କର୍ଣ୍ଣପାତ କଲୁ ନାହିଁ ବା ଭ୍ୟାନରୁ ବି ଓହ୍ଲାଇଲୁ ନାହିଁ । ନ ଓହ୍ଲାଇବାରୁ ପୁଣି ଆରମ୍ଭ ହେଲା ମାଡ । କେତେକଙ୍କୁ ବି ଶୂନ୍ୟେ ଶୂନ୍ୟେ ଟେକି ଭ୍ୟାନ ବାହାରକୁ ଫୋପାଡ଼ି ଦିଆଗଲା ବସ୍ତା ଭଳି । ସେତିକିବେଳେ ମୁଁ ଭାବୁଥାଏ, ପର୍ତ୍ତୁଗୀଜ୍ ପୁଲିସ ବା ଭାରତୀୟ ପୁଲିସ ଭିତରେ ତଫାତ୍‌ଟା କେଉଁଠି ? ଜଣେ ପୁଲିସ ଇନ୍‌ସପେକ୍ଟର ଆସି ମୋତେ ଭ୍ୟାନରୁ ଓହ୍ଲେଇବାକୁ ହୁକୁମ ଦେଲେ । ମୋର କିନ୍ତୁ ଉଠିବାର ଶକ୍ତି ନଥିଲା । ତାପରେ 'ଉତରେ ଶାଲେ' କହି ଦୁଇଜଣ ସିପାହୀ ମୋତେ ଟେକି ତଳକୁ ଫିଙ୍ଗି ଦେଲେ । ମୁଁ ଯାଇ କଚାଡ଼ି ହୋଇ ପଡ଼ିଲି ରାସ୍ତା ଉପରେ, ଦୁଇଜଣ ବିଶାଳକାୟ ବୁଟ୍‌ପିନ୍ଧା ସିପାହୀ ମୋ ଉପରେ ଠିଆ ହୋଇ ମୋତେ ଦଳିବାକୁ ଆରମ୍ଭ କଲେ । ମୋର ଡାହାଣ ହାତ, କଟି, ଅଣ୍ଟା ପାଖରୁ ରକ୍ତର ଧାର ଛୁଟିଥାଏ । ଫଳରେ ପୂରାପୂରି ଅଚଳ ହୋଇଗଲା ମୋର ଦକ୍ଷିଣ ଅଙ୍ଗଟି । ଏ ଘଟଣାରେ ସାମଲବାଡ଼ର ଜଣେ ସ୍ଥାନୀୟ ମହିଳା ନର୍ସ ଶ୍ରୀମତୀ ଯମୁନାବାଇ ସାମନ୍ତ ମୋତେ ତାଙ୍କ ଘରକୁ

ନେଇ କ୍ଷତ ସ୍ଥାନମାନଙ୍କରେ ଆୟୋଡ଼ିନ୍ ଦେଇ, ବ୍ୟାଣ୍ଡେଜ ବାନ୍ଧି ଆବଶ୍ୟକ ପ୍ରାଥମିକ ଚିକିତ୍ସା କଲେ । ତାଙ୍କର ଆନ୍ତରିକତା, ସମବେଦନା, ସଦ୍ଭାବନା ଭଗିନୀ ପରି ସ୍ନେହଶ୍ରଦ୍ଧା ବାସ୍ତବରେ ଅପାସୋରା । କଟକ ଫେରିଲା ପରେ ତାଙ୍କୁ ତାଙ୍କର ସେହି ସ୍ନେହଶ୍ରଦ୍ଧା ପାଇଁ ଏକ ଚିଠି ଦ୍ୱାରା ମୁଁ ଅଭିନନ୍ଦନ ଜଣାଇବାର ପ୍ରତ୍ୟୁତ୍ତରରେ ସେ ମୋତେ ଲେଖିଥିଲେ :—

Savantabadi
Dated 11th Oct. 1955

Dear Brother,

Received your letter dated the 19th Sept, on the 5th Oct. I was surprised to see your letter. You have expressed your thanks of gratitude, in your letter, but whatever we had done was our duty. We are all well here.

I pray God to enable and stengthen you to fight against the Portugese. Hoping you doing well. My best wishes for you all.

Yours faitfully
Jamuntai Savant

ସ୍ଥାନୀୟ ଗୋଆ ବିମୋଚନ ସମିତି ଅଫିସରେ ମୋତେ ନେଇ ଶୁଆଇ ଦିଆଗଲା । ଦଳର ନେତା ଶ୍ରୀ ଚକ୍ରଧର ହିଁ ଆମ ସତ୍ୟାଗ୍ରହୀ ଦଳ ଉପରେ ପୁଲିସର ଏ ଫାସିଷ୍ଟ ଆକ୍ରମଣ ସମ୍ବାଦକୁ ଏକ ତାରବାର୍ତ୍ତା ଯୋଗେ ବେଲଗାଓଁ ବିମୋଚନ ସମିତିକୁ ଜଣାଇ ଦେଲେ । ପରେ ଜଣା ପଡ଼ିଲା ଉକ୍ତ ତାରବାର୍ତ୍ତାଟିକୁ ବମ୍ବେ ସରକାର ବାଟରେ ଅଟକାଇ ଦେବାରୁ ତାହା ବେଲଗାଓଁରେ ପହଞ୍ଚିପାରି ନଥିଲା ।

ଆଜି ଅଳ୍ପ ସମୟ ପରେ ଘଡିରେ ବାଜିବ ଛଟା ।

ସେପ୍ଟେମ୍ବର ତା ୧୨ରିଖ, ୧୯୫୫ ମସିହା । ସେଦିନ ବର୍ଷା ନଥାଏ ଆକାଶ ଥାଏ ମେଘମୁକ୍ତ । ପୂର୍ବ ଦିଗ୍‌ବଳୟର ବୁକୁ ଚିରି ବହୁଦିନ ପରେ

ସାମନ୍ତବାଡ଼ି ଆକାଶକୁ ଉଠି ଆସୁଥିଲେ ପ୍ରଖରତର ସୂର୍ଯ୍ୟ । ପ୍ରାଚୀ ଗଗନ ଉପରେ ଭାସମାନ ପ୍ରସାରଶୀଳ କେତେଖଣ୍ଡ ମେଘଙ୍କ ପଛରେ ବାଳସୂର୍ଯ୍ୟର ସେହି ରକ୍ତାକ୍ତ ଉପସ୍ଥିତି ସୃଷ୍ଟି କରିଥାଏ ଏକ ଅଦ୍ଭୁତ ମାଦକତା । ଏକ ପ୍ରକାଣ୍ଡ ତେରଚ୍ଛା ଶାର୍ଯ୍ୟକ୍ ବନ୍ଧାଇଲାଭଳି ପଡ଼ୁଥାଏ ସ୍ଥାମାନ ଗୋଆ ବସ୍ତିମାନର ସମିତ ଅଫିସଘରର ସାମ୍ନା ପରଛୁଟ୍ ଦେହରେ । ଆକାଶର ଅସୀମ ବ୍ୟାପ୍ତି ଭିତରେ ଉଡ଼ିଯାଉଥିଲେ ଦଳଛଡ଼ା କୁଆ କେଇଟା । ବଛଣାରେ ପଡ଼ି ପଡ଼ି ସମ୍ମୁଖ ବାତାୟନ ପଥରେ ମୁଁ ଏକ ଅନାମନା ଦୃଷ୍ଟିରେ ଚାହିଁ ଦେଖୁଥାଏ ସେମାନଙ୍କର ସେହି ଉଡ଼ିଯିବାର ଦୃଶ୍ୟକୁ । ଆହା, କି ସ୍ୱାଧୀନ ନୃତ୍ୟନ୍ତ ଏଇ କୁଆ କେଇଟା ସତେ ! ଅନନ୍ତ ଆକାଶର ଉନ୍ମୁକ୍ତ ବୁକୁରେ ମୁକ୍ତ ମରୁତକୁ କାଟି କାଟି ନିଜ ନିଜ ଗଉଡ଼ିମାନଙ୍କରୁ ବାହାରି ଉଡ଼ି ଚାଲିଛନ୍ତି ଏମାନେ, ସମସ୍ତ ଆବିଳତାର ଦୂରକୁ···ଜୀବନକୁ ଉପଭୋଗ କରିବା ପାଇଁ ।

ଡାକ୍ତର ଆସି ପହଞ୍ଚିବାରେ ପ୍ରତିହତ ହେଲା ମୋର ଭାବପ୍ରବଣତା । ମୋତେ ପରୀକ୍ଷା କରି, କେତେଟା ଇଂଜେକ୍‌ସନ୍, ଓ କିଛି ଔଷଧ ଦେଇ ସେମାନେ ଚାଲିଗଲେ । ତା' ପରେ ମୋତେ ବେଲଗାଓଁ ପଠାଇ ଦେବାର ବ୍ୟବସ୍ଥା ଆରମ୍ଭ ହେଲା ।

ସକାଳ ଆଠଟା । ବିଦାୟ ନେଲି ସାମନ୍ତବାଡ଼ିରୁ । ବସ୍‌ରେ ମୋ ପାଇଁ ଏକ ସ୍ୱତନ୍ତ୍ର ବ୍ୟବସ୍ଥା କରାଯାଇଥିଲା । ପୁଣି ସେହି ପଶ୍ଚିମଘାଟ ପର୍ବତମାଳା ଭିତର ଦେଇ ଗତି କରୁଥାଏ ବସ୍ । ଉଠାପକା ଯୋଗୁଁ ଆଘାତ ସ୍ଥାନମାନଙ୍କରେ ତୀକ୍ଷଣ ଯନ୍ତ୍ରଣା ହେଉଥାଏ । ସହଯାତ୍ରୀମାନେ ବିସ୍ମିତ ତଥା ଦରଦୀ ଆଖିରେ ଚାହିଁଥାନ୍ତି ମୋତେ । ମୋର ସାହାଯ୍ୟକାରୀ ସତ୍ୟାଗ୍ରହୀ ସାଥୀମାନେ ତୀକ୍ଷଣ ଦୃଷ୍ଟି ରଖିଥାନ୍ତି ମୋ ଉପରେ । ଦେହର ଅଧାଅଧି ମୋର ବ୍ୟାଣ୍ଡେଜ୍-ଆବୃତ । ବସ୍‌ର ଗତି ଭିତରେ ହଠାତ୍ କାହିଁକି ମନକୁ ଆସିଲା ବିପ୍ଳବୀ "ଆଜାଦ୍ ଗୋମନ୍ତକ ଦଳ"ର କଥା । ଏହି ଦଳର ଜଣେ ଆତ୍ମଗୋପନକାରୀ ତରୁଣ ନେତାଙ୍କ ସହ ବାନ୍ଦା ଠାରେ ଦଳର ନେତାଙ୍କ ଅଗୋଚରରେ ମୋର ସାକ୍ଷାତ୍ ହୋଇଥିଲା । ମୁଁ ତାଙ୍କୁ ପଚାରିଥିଲି, ଏହି ଅହିଂସା ସତ୍ୟାଗ୍ରହ ସମ୍ପର୍କରେ ତାଙ୍କ ଦଳର ମତ ଓ ନୀତି କ'ଣ । ସେ ଗୋଟିଏ ବାକ୍ୟରେ ମୋତେ ତା'ର ଉତ୍ତର ଦେଇଥିଲେ, "ସତ୍ୟାଗ୍ରହ ବନାମ ବ୍ୟକ୍ତିଗତ ଆତ୍ମହତ୍ୟା ।"

ଏଇଥିରୁ ସେଦିନ ମୋର ଜାଣିବାକୁ ବାକି ରହି ନଥିଲା, "ଆଜାଦ୍ ଗୋମନ୍ତକ ଦଳ" କଣ୍ଠରେ କାଢ଼ିବା ମାତ୍ରେ ବିଶ୍ୱାସୀ । ପର୍ତ୍ତୁଗୀଜ୍ ଦଳଦସ୍ୟୁ ସରକାରର ପାଶବିକ ଦମନ, ନିପୀଡ଼ନ ସତ୍ତ୍ୱେ ସେ ମରିନାହିଁ' ମରି ପାରେନା । ଗୋମନ୍ତକ ଗରିଲାର ମରଣର ଘ୍ରାମ ଗର୍ଜନରେ ଦୋହଲି ଯାଇଛି ଉପନିବେଶ-ବାଦୀ ପର୍ତ୍ତୁଗାଲ ପ୍ରଧାନ ମନ୍ତ୍ରୀ ଡାକ୍ତର ସାଲଜାରର କଲିଜା । ସେ ଦାନ୍ତ ନିକୁଟି ତା'ର ଆମେରିକା ପ୍ରଭୁ ପାଖରେ ନତଜାନୁ ହୋଇ ସାହାଯ୍ୟ ଭିକ୍ଷା କରିଛି । ବିଶ୍ୱର ପୁଞ୍ଜିଜୀବୀ ବିଚ ସାମ୍ରାଜ୍ୟବାଦୀ ଆମେରିକା ଦିନେ ମହାନ୍ ଚୀନଜାତିକୁ ପଦାନତ କରି ତାକୁ ନିଜର ଉପନିବେଶରେ ପରିଣତ କରିବା ଲାଗି ନିଜର ଜାରଜ ସନ୍ତାନ ଚ୍ୟାଂ-କାଇସେକ୍‌କୁ ଆଧୁନିକ ମାରଣାସ୍ତ୍ରରେ ସଜ୍ଜିତ କରିଥିଲା ମାଓ-ସେ-ତୁଂଙ୍କର ଲାଲବାହିନୀ ବିରୁଦ୍ଧରେ । କିନ୍ତୁ ଦୁର୍ଯ୍ୟୋଧନର ପଶାକାଠି ଓଲଟି ପଡ଼ିଲା । ଚୀନ୍ ଆକାଶରେ ଦେଖାଦେଲା ମୁକ୍ତି-ସକାଳର ଭାସ୍କର । ଯୁଗାନ୍ତର ସାମନ୍ତବାଦୀ-ସାମ୍ରାଜ୍ୟବାଦୀ ଶୋଷଣ ଚୂର୍ଣ୍ଣବିଚୂର୍ଣ୍ଣ ହୋଇ ଏକ ନୂତନ ନୂଆ-ଗଣତାନ୍ତ୍ରିକ ସମାଜବାଦୀ ସମାଜର ମୂଳଦୁଆ ପଡ଼ିଲା । ଷାଠିଏ କୋଟି ଚୀନ୍ ଜନତାର ଦୁଶ୍‌ମନ୍ ଚ୍ୟାଂ-କାଇସେକ୍ ଓ ତା'ର ସ୍ତାବକମାନେ କାଖରେ ପେଡ଼ ପୁଟୁଳା ଜାକି ଲୁଚିଲେ ଫର୍ମୋଜା ଦ୍ୱୀପକୁ । ଠିକ୍ ସେହିପରି ଗୋଷ୍ପଦ ତୁଲ୍ୟ କ୍ଷୁଦ୍ର ପର୍ତ୍ତୁଗାଲକୁ ମାର୍କିନ ସରକାର ଓ ତା'ର ବୈଦେଶିକ ମନ୍ତ୍ରୀ ନିଆଁଗିଳା ଜନ୍ ଫଷ୍ଟରର ଡଲେସ୍ ଯେତେ ଅଭୟବାଣୀ ଶୁଣାନ୍ତୁ, ଯେତେ ସାମରିକ ସାହାଯ୍ୟ ଦିଅନ୍ତୁ ନା କାହିଁକି, ଗୋଆ-ଡ଼ାମନ-ଡିଉ ଓ ନଗର-ହାଭେଲିରୁ ପର୍ତ୍ତୁଗୀଜ—ଉପନିବେଶ ଦିନେ ନା ଦିନେ ନିଶ୍ଚୟ ଧ୍ୱଂସ ପାଇବ, ଏହା ଐତିହାସିକ ତଥା ବୈଜ୍ଞାନିକ ସତ୍ୟ । "ଆଜାଦ ଗୋମନ୍ତକ ଦଳ" ବହୁ ଆଗରୁ ଏକଥା ଜାଣେ—ସାତଲକ୍ଷ ଗୋଆଅଧିବାସୀ ମଧ୍ୟ ଭଲ ଭାବରେ ଜାଣନ୍ତି ଯେ ଗୋଆର ଭାଗ୍ୟ ନିଷ୍ପତ୍ତି "ଆଜାଦ ଗୋମନ୍ତକ ଦଳ" ହାତରେ ।

ସମସ୍ତ ପ୍ରାପ୍ତ ଦିନ ଦୁଇଟା । ବସ୍ ପହଞ୍ଚିଲା ବେଲ୍‌ଗାଓଁରେ । ସାଥୀ ସତ୍ୟାଗ୍ରହୀମାନେ ମୋତେ ଟେକି ଟେକି ନେଲେ ବିମୋଚନ ସମିତି ଅଫିସକୁ । ମୋର ଏ ଅବସ୍ଥାରେ ବିସ୍ମିତ ହୋଇ ହତବାକ୍ ହୋଇଗଲେ ଅଧିକାଂଶ । ହେବାଟା ସ୍ୱାଭାବିକ । କାରଣ, ଏ ସମ୍ବାଦ ଆଗରୁ କେହି ଜାଣିବାକୁ ପାଇ ନଥିଲେ ।

ପହଞ୍ଚିବା ପରେ ପରେ ମୋର ଆବଶ୍ୟକ ଚିକିତ୍ସା ଆରମ୍ଭ ହୋଇଗଲା ।

ବର୍ଷା ମୁଖରିତ ସନ୍ଧ୍ୟା । ସେପ୍‌ଟେମ୍ବର ତା୧୩ରିଖ, ୧୯୫୫ ମସିହା । ଭାରତୀୟ ସୀମାନ୍ତ ପୁଲିସଙ୍କ ଦ୍ୱାରା ଆହତ ସତ୍ୟାଗ୍ରହୀ ଦଳକୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଗୋଟିଏ ବିରାଟ ସାଧାରଣ ସଭାର ଆୟୋଜନ ହେଲା ବେଲ୍‌ଗାଓଁ ନଗରୀର ମଧ୍ୟ ଭାଗରେ । ବିରାଟ ଜନସମାଗମ । ଧ୍ୱନି ଉଠୁଥିଲା, "ମୋରାର୍ଜି ସର୍କାର—ମୁର୍ଦ୍ଦାବାଦ", "ଲାଠି-ଗୋଲି ଖାଏଙ୍ଗେ—ଫିର୍‌ଭି ଗୋଆ ଯାଏଁଗେ", "ହିନ୍ଦ୍ ନେ ପୁକାରା ହୈ—ଗୋଆ ହମାରା ହୈ," "ପର୍ତ୍ତୁ ଗାଲ୍‌ଓ—ଗୋଆ ଛୋଡ଼ୋ" । ଆହତ ସତ୍ୟାଗ୍ରହୀମାନଙ୍କୁ ନାନାଭାବେ ସଭାସ୍ଥଳକୁ ନିଆ ଯାଇଥିଲା । ମୋତେ ଏକ ଷ୍ଟ୍ରେଚର୍‌ରେ ଶବ ଶୋଭାଯାତ୍ରା ପରି ନିଆ ଯାଉଥିଲା । ଲୋକେ ଯେମିତି ମୋତେ ଦେଖି ପାରିବେ, ସେଇମିତି ଶୁଆଇ ଦିଆ ଯାଇଥିଲା ସଭାରେ । ସଭା ଆରମ୍ଭରେ ବେଲ୍‌ଗାଓଁ "ଗୋଆ ବିମୋଚନ ସମିତି" ସମ୍ପାଦକ ଶ୍ରୀ ରାମ ଆପ୍ଟେ ତାଙ୍କ ପ୍ରାରମ୍ଭିକ ଭାଷଣରେ ଭାରତୀୟ ଅହିଂସ ସତ୍ୟାଗ୍ରହୀମାନଙ୍କ ଉପରେ ବମ୍ବେ ପୁଲିସର ନଗ୍ନ ଫାସିଷ୍ଟ ଆକ୍ରମଣକୁ ଏକ ମଧ୍ୟଯୁଗୀୟ ଆକ୍ରମଣ ବୋଲି ଅଭିହିତ କରିଥିଲେ । ତା' ପରେ ସ୍ଥାନୀୟ ବହୁ ବିଶିଷ୍ଟ ନାଗରିକ ବମ୍ବେ ସରକାରଙ୍କ ଏତାଦୃଶ ଭୂମିକାର କଟୁ ସମାଲୋଚନା କରି ଏହାକୁ ଏକ "ଦେଶଦ୍ରୋହୀ ପଦକ୍ଷେପ" ବୋଲି ସୂଚାଇ ଥିଲେ । ଅନେକ ରାତି ପର୍ଯ୍ୟନ୍ତ ଏକ ଗୁରୁଗମ୍ଭୀର ପରିବେଶ ମଧ୍ୟରେ ସଭାକାର୍ଯ୍ୟ ଚାଲିଥିଲା । ହଠାତ୍ ମୋର କ୍ଷତ ସ୍ଥାନମାନଙ୍କରେ ଆରମ୍ଭ ହେଲା ଅସମ୍ଭବ ଯନ୍ତ୍ରଣା । ଆର୍ତ୍ତନାଦ ବ୍ୟତୀତ ମୋର ଅନ୍ୟ କୌଣସି ଗତ୍ୟନ୍ତର ରହିଲା ନାହିଁ । ସଭାରେ ଉପସ୍ଥିତ ଥିଲେ ବେଲ୍‌ଗାଓଁ ନଗରୀର ମହାରାଷ୍ଟ୍ରୀୟ ନାରୀକୁଳ । ସେମାନଙ୍କ ମଧ୍ୟରୁ ଜଣେ ଯୁବତୀ ମୋ ପାଖକୁ ଉଠି ଆସି ମୋର କ'ଣ ଦରକାର ହେଉଛି ପଚାରିବା ସଙ୍ଗେ ସଙ୍ଗେ ପୁଣି ପଚାରିଲେ, "କ୍ୟା ଆପ୍‌କୋ ଜ୍ୟାଦା ଚୋଟ୍ ଲଗ୍‌ଗିଁଆ ?" କିନ୍ତୁ କୌଣସି ଉତ୍ତର ଦେବା ଅବସ୍ଥାରେ ମୁଁ ନଥିଲି । ମୋର ନିହାତି ଦରକାର ଥିଲା ଯନ୍ତ୍ରଣାର ଆଶୁ ଉପଶମ ଓ ଗରମ ପାଣିର ସେକ । ଯୁବତୀଙ୍କ ଘରକୁ ଯିବାକୁ ପଡ଼ିଲା ତାଙ୍କର ଏକାନ୍ତ ଅନୁରୋଧରେ । ତାଙ୍କ ବାସଭବନରେ ପହଞ୍ଚିବା ପରେ ଡାକ୍ତରଙ୍କୁ ଡକା ହେଲା । କେତୋଟା ଇଞ୍ଜେକ୍‌ସନ ଦିଆଗଲା । ଗରମ ପାଣି ସେକ ପରେ ଯୁବତୀ ନିଜ ପରିବାର ଲୋକ ପରି ମୋତେ ପଚାରିଲେ ମୁଁ କିଛି ଖାଇବି କି ନାହିଁ । ସମ୍ମତି ଜଣାଇବା ପରେ ଯୁବତୀଙ୍କ ଯାନ ଭଉଣୀ

କେତେ ଖଣ୍ଡ ବହର୍ ବୋକା ମାଉଁରୁଟି ଆଉ କିଛି ଗରମ ଦୁଧ ଧରି ଭିତରୁ ଆସିଲେ । ହାତ ଚଳୁ ନଥିବାରୁ ସେ ଯୁବତୀ ଓ ଆନ୍ଧ୍ରର ଜଣେ ସତ୍ୟାଗ୍ରହୀ ସାଥୀ ମୋତେ ସେତକ ଖୁଆଇ ଦେଲେ । ଯୁବତୀ ଓ ତାଙ୍କ ପରିବାରର ଶ୍ରଦ୍ଧା ସଦିଚ୍ଛା ବାସ୍ତବରେ ଅତୁଳ୍ୟ । ବେଲଗାଓଁ ଛାଡ଼ିଲା ପରେ ଯୁବତୀଙ୍କ ପରିଚୟ ସଂଗ୍ରହ କରିଥିଲି ଜଣେ ମହାରାଷ୍ଟ୍ରୀୟ ସତ୍ୟାଗ୍ରହୀ ସାଥୀଙ୍କ ଠାରୁ । ଯୁବତୀଙ୍କ ନାମ ଶ୍ରୀମତୀ ମନ୍ଦାକିନୀ ପୁଲଗି । ବେଲଗାଓଁ କଲେଜରେ ସେ ଛାତ୍ରୀ । ୧୯୫୫ ଅଗଷ୍ଟ ପନ୍ଦର ତାରିଖରେ ସେ ଗୋଆ ପ୍ରବେଶ କରି ପର୍ତ୍ତୁଗୀଜ ପୁଲିସଙ୍କ ଦ୍ୱାରା ଶୋଚନୀୟ ଭାବେ ଆହତ ହୋଇଥିଲେ । ବେଲଗାଓଁ ଗୋଆ-ବିମୋଚନ ସମିତିର ସଭାପତି ଡଃ ପୁଲ୍‌ଗିଙ୍କର ସେ ଭଉଣୀ ।

ରାତି ୯।୧୦ଟା ବେଳେ ପୁଲ୍‌ଗିଙ୍କ ପରିବାର ଠାରୁ ବିଦାୟ ନେଇ ଗଲି ବେଲ୍‌ଗାଓଁ ହସ୍ପିଟାଲ୍‌କୁ ଦେଖିବା ପାଇଁ । ସେଠି ପହଞ୍ଚି ଯେଉଁ ବୀଭତ୍ସ ଦୃଶ୍ୟ ସବୁ ଆଖିରେ ପଡ଼ିଲା, ସେଥିରେ ହତଚକିତ ହୋଇଗଲି ମୁଁ । ଯେଉଁମାନେ ପୂର୍ବେ ଗୋଆ ପ୍ରବେଶ କରିଥିଲେ ସେମାନଙ୍କ ମଧ୍ୟରୁ କାହାର ହାତ ନାହିଁ, କାହାର ଆଖି ବେୟୋନେଟ୍‌ରେ ତାଡ଼ି ଦିଆ ଯାଇଛି, କାହା ପାଦତଳର ଚମଡ଼ାକୁ ବ୍ଲେଡ୍‌ରେ ଛିଲି ଦିଆ ଯାଇଛି । ଏଇମିତି ବିକଳାଙ୍ଗ ହୋଇ ସେମାନେ ପଡ଼ି ରହିଛନ୍ତି ଖଟିଆଟିମାନଙ୍କରେ । କେବଳ ଏତିକି ନୁହେଁ, ଶହ ଶହ ଭାରତୀୟ ସତ୍ୟାଗ୍ରହୀ ଆଜି ପର୍ତ୍ତୁଗୀଜ ବନ୍ଦୀଶାଳାରେ, କେତେକ ସୁଦୂର ଆଫ୍ରିକାର ପର୍ତ୍ତୁଗୀଜ ଉପନିବେଶମାନଙ୍କରେ ଭୋଗୁଛନ୍ତି ନିର୍ବାସନ ଦଣ୍ଡ ।

ଶୁଣିଲି, ୧୯୫୫ ଜୁଲାଇ ତା୨୭ରିଖରେ ଗୋଆରେ ଥିବା ପର୍ତ୍ତୁଗାଲ୍ ସେନାବାହିନୀର ଜଣେ ସର୍ଜେଣ୍ଟ ମିଃ ରେଜାରିଓ ଡୁବ୍ରମେଷ୍ଟ କୋଷ୍ଟା ନିଜ ସେନାବାହିନୀକୁ ପରିତ୍ୟାଗ କରି ଭାରତ ଭିତରକୁ ପଳାଇ ଆସିଥିଲେ । ଫଳରେ ପର୍ତ୍ତୁଗୀଜ କର୍ତ୍ତୃପକ୍ଷ ତାଙ୍କୁ ନପାଇ ତାଙ୍କ ସ୍ତ୍ରୀଙ୍କ ଉପରେ ଅମାନୁଷିକ ନିର୍ଯ୍ୟାତନା ଚଳାଇ ତାଙ୍କୁ ଅଟକ ବନ୍ଦୀ କରି ରଖିଥିଲେ । ଗୋଆର ଖ୍ୟାତ-ନାମା ସମାଜସେବୀ ତଥା ପ୍ରଖ୍ୟାତ ଦାନୀ ଶ୍ରୀ ରାଜାରାମ କୁଣ୍ଡେକର ୧୯୫୫ଜୁଲାଇ ମାସ ତା୧୮ରିଖରେ ଗୋଟିଏ କୂଅକୁ ଡେଇଁ ପଡ଼ି ଆତ୍ମହତ୍ୟା କରିଥିଲେ । ଗୋଆର ବଡ଼ ବଡ଼ କରଦାତାଙ୍କ ମଧ୍ୟରୁ ସେ ଥିଲେ ଜଣେ ବିଶିଷ୍ଟ କରଦାତା । ଯାଙ୍କୁ ଗୋଆର ପର୍ତ୍ତୁଗୀଜ ସରକାର ଲୋକଙ୍କ ଉପରେ ଅଧିକ କର ବସାଇବା

ପ୍ରସ୍ତାବରେ ଯେ ଟିଏ ଚୁକ୍ତିପତ୍ରରେ ସ୍ୱାକ୍ଷର କରିବାକୁ ବାଧ୍ୟ କରିବା ଫଳରେ ସେ ଏହାକୁ ଲଜ୍ଜା ଓ ଅପମାନକର ମନେକରି ଆତ୍ମହତ୍ୟା କରିଥିଲେ ।

ଗୋଆର ରାଜଧାନୀ ପାଞ୍ଜିମ୍ ଫ୍ରି-ପୋର୍ଟ ହୋଇଥିବା ଯୋଗୁଁ ସେଠାକୁ ଆସୁଥିବା ପଣ୍ୟମାନଙ୍କ ଉପରେ ଶୁଳ୍କ ପଡ଼େ ନାହିଁ । ଫଳରେ ସବୁ ଜିନିଷ ସେଠି ଅତି ଶସ୍ତା । ସୁନା ତୋଳା ୪୦ଟଙ୍କା, ବିଲାତି ମଦ ଅତି ଶସ୍ତା ଏବଂ ପ୍ରଚୁର । ବଡ଼ ବଡ଼ ବ୍ୟବସାୟୀମାନେ ପାଞ୍ଜିମ୍‌ରୁ ଶସ୍ତାରେ ଜିନିଷ କିଣି, ଭାରତରେ ତାକୁ ଚଢ଼ାଦରରେ ବିକି ବେଶ୍ ମୁନାଫା ଉଠାନ୍ତି । ତେଣୁ ସେମାନେ ଆନ୍ତରିକ ଭାବେ ଚାହୁଁ ନଥିଲେ ଗୋଆ ଭାରତର ଅଙ୍ଗୀଭୂତ ହେଉ ।

୧୯୫୧ ମସିହାରେ ପ୍ରକାଶିତ ପର୍ତ୍ତୁଗୀଜ-ଗୋଆର ମୋଟ ୬୩୮୦୦୦ ଜନସଂଖ୍ୟା ଭିତରୁ ୧୪୩୮ ଜଣ ଲୋକ ଖାଣ୍ଟି ଇଉରୋପୀୟ । ଭାରତର ସୀମାନ୍ତ ଅଞ୍ଚଳରେ ବାସ କରୁଥିବା ସେମାନଙ୍କ ଜାତିଭାଇଙ୍କ ଠାରୁ ଚାଲିଚଳଣିରେ ଓ ଭାଷା ଦୃଷ୍ଟିରୁ ଏମାନଙ୍କୁ ମୋଟେ ବାରିହୁଏ ନାହିଁ । ମୋଟ ଜନସଂଖ୍ୟାର ଶତକଡ଼ା ୬୧ ଭାଗ ଲୋକ ହିନ୍ଦୁଧର୍ମାବଲମ୍ବୀ । କେତେକ ମୁସଲମାନ ମଧ୍ୟ ଗୋଆରେ ଅଛନ୍ତି । ମୋଟ ଜନସଂଖ୍ୟା ଭିତରୁ ଶତକଡ଼ା ଅତିକମ୍ ଲୋକେ ପର୍ତ୍ତୁଗୀଜ ଭାଷା ଲେଖି ପଢ଼ି ପାରନ୍ତି । ଗୋଆର ସାଧାରଣ କଥିତ ଭାଷା ହେଲା, ମରାଠୀ, କଂକଣୀ ଓ ଗୁଜୁରାଟୀ ।

ଗୋଆ ଯେ ଭାରତର ଅବିଚ୍ଛେଦ୍ୟ ଅଙ୍ଗ, ଏ ପ୍ରଶ୍ନ ଏବକାର ପ୍ରଶ୍ନ ନୁହେଁ । ମହାତ୍ମା ଗାନ୍ଧୀ ଜୀବିତ ଥିଲାବେଳେ ଗୋଆ ସମସ୍ୟା ଉପରେ କହିଥିଲେ :

**"In free India 'Goa' the little Portuguese settlement cannot be allowed to exist as a separate entity in opposition to the love of the free State. To the inhabitants of Goa that they should shed fear of the Portuguese Government and assert their fundamental right.**

**( 'Harijan' : Dt : 30-4-46 )**

ସାମ୍ରାଜ୍ୟବାଦ ଓ ଉପନିବେଶବାଦ ବିରୁଦ୍ଧରେ ବିଶ୍ୱବ୍ୟାପି ଆଜି ଯେଉଁ ସ୍ୱର ଶୁଣିବାକୁ ମିଳୁଛି, ଗୋଆର ମୁକ୍ତି ସଂଗ୍ରାମ ତାର ଏକ ଅଂଶ

ବିଶେଷ । ବିଶ୍ୱ-ଇତିହାସରେ ଲିପିବଦ୍ଧ ହୋଇଥିବା କେତୋଟି ମର୍ମଭେଦୀ ଘଟଣାବହୁଳ କାହାଣୀରୁ ମହାତ୍ମା ଗାନ୍ଧୀଙ୍କର ନିମ୍ନୋକ୍ତ ବକ୍ତବ୍ୟଟି ଗୋଟିଏ—
"The hands of Imperialism are always dyed red. The sooner Imperialistic power shed their Imperialism like Asoka the good the better it will be for the groaning world. The mother country of Goans is as within geographical India is a whole, and there is very little; if anything in common between the Portuguese and the Indians of Goa"

( Harijan : Dt : 8-9-46 )

ତା ୧୮ ରିଖର ସକାଳ ।

ଡାକ୍ତରଖାନାର ଜଣେ ନର୍ସ ମୋତେ କିଛି ଗରମ ଦୁଧ ପିଇବାକୁ ଦେଲେ, ଆଉ ପାଖରେ ବସି ପଚାରିଲେ ସମସ୍ତ ଘଟଣା । ତାଙ୍କ ସହ କଥାବାର୍ତ୍ତା ହେବା ଭିତରେ ଏଗାରଟା ବାଜିଲା—ଗୋଆ ବିମୋଚନ ସମିତିର ସମ୍ପାଦକ ଶ୍ରୀ ଆପ୍ତେ ସାହେବ ମୋତେ ଦେଖିବାକୁ ଆସି ପହଞ୍ଚିଲେ ।

ଦିନ ୧୨ଟା ବେଳେ ବେଲଗାଓଁର ଜଣେ ୧ମ ଶ୍ରେଣୀ ମାଜିଷ୍ଟ୍ରେଟ୍‌ଙ୍କ କୋର୍ଟରେ ମୋତେ ନେଇ ହାଜର କରାଗଲା—ଆମ ଉପରେ ବମ୍ବେ ପୁଲିସ କରିଥିବା ଆକ୍ରମଣ ପାଇଁ ଉପଯୁକ୍ତ ଶପଥ ପାଠ ( Affidavit ) କରି ଫେରି ଆସିଲି ।

ନିରସ୍ତ୍ର, ଅହିଂସ ଭାରତୀୟ ସତ୍ୟାଗ୍ରହୀମାନଙ୍କ ଉପରେ ବମ୍ବେ ପୁଲିସର ପୈଶାଚିକ ଆକ୍ରମଣ ସାରା ବେଲଗାଓଁରେ ଏକ ଚହଳ ପକାଇ ଦେଇଥିଲା । ଗୋଆ ବିମୋଚନ ସମିତି ( ବେଲଗାଓଁର ) ସମ୍ପାଦକ ଶ୍ରୀ ରାମ ଆପ୍ତେ ଏକ ପ୍ରେସ ବିଜ୍ଞପ୍ତି ଦେଇ ଯାହା କହିଥିଲେ ତାହା ହେଲା :
"The Government of Bombay after the recent resolution of the All India Congress Committee on Goa has adopted a Policy of not allowing the entry of Indian SATYAGRAHIS into Goa territories. The

behaviour of the police with the SATYAGRAHIS for the last 5-6 days after adoption of the said policy has been highly deplorable. The shameful actions of the police make one feel that democracy in India has come to an end. The Police did not even hesitate to kick peaceful Indian SATYAGRAHIS at Insuli near Savantwadi. There are sufficient grounds to believe that the police might have brought under Pressure on State Transport, and Telegraph Office authorities for the implementation of their illegal objects. The Indian Public must come forward to condemn the shameful action of the Police."

RAM APTE

Belgaum<br>
13th, Sept., 1955<br>
G P K

Secretary,<br>
Goa Vimochan Samiti<br>
Belgaum

ପୁଣି ବମ୍ବେ ପୁଲିସର ଏ କର୍ମକାଣ୍ଡକୁ ଘୋର ନିନ୍ଦା କରି ମହାରାଷ୍ଟ୍ର ପ୍ରଜା-ସୋସଲିଷ୍ଟ ପାର୍ଟିର ଚେୟାରମ୍ୟାନ ଶ୍ରୀ ଏସ୍: ଏମ୍: ଯୋଷୀ ପୁନା ଠାରେ ଏକ ସାଧାରଣ ସଭାରେ କହିଥିଲେ :

"Sri Joshi said that the behaviour of the Bombay police with Satyagrahis at Belgaum and Savantwadi after passage of the resolution by the A. I. C. C. was 'Condemnable'. The police, he said, had shown no respect for law, and in their zeal to please their masters, they have over-stepped their limits.

( Free Press Journal; 14. 9. 1955 )

## ॥ ବିଦାୟ ବେଲଗାଓଁ ! ॥

ଡାକ୍ତରମାନଙ୍କ ଅଦମ୍ୟ ଚେଷ୍ଟା ଫଳରେ ତା୧୭ରିଖ ସନ୍ଧ୍ୟା ସୁଦ୍ଧା ସମ୍ପୂର୍ଣ୍ଣ ଠିଆ ହୋଇ ପାରୁ ନଥିଲେ ମଧ୍ୟ, ଠିଆ ହେବାକୁ ସାହସ ହେଉଥାଏ। ପରିଶେଷରେ ସମିତିର ନିର୍ଦ୍ଦେଶ ମୁତାବକ ବିଦାୟ ନେଲି ଡାକ୍ତରଖାନାରୁ।

ଆସିଥିବା ସତ୍ୟାଗ୍ରହୀମାନେ ନିଜ ନିଜ ପ୍ରଦେଶକୁ ଫେରି ଯାଉ ଥିବାରୁ, ଆପ୍ଟେ ସାହେବ ମୋତେ ପୁନା ପଠାଇ ଦେବାର ବନ୍ଦୋବସ୍ତ କଲେ ।

ମଧ୍ୟାହ୍ନ ଭୋଜନ ପରେ ଲେଟି ପଡ଼ିଲି ବେଲଗାଓଁ ବିମୋଚନ ସମିତି ଅଫିସର ବାରଣ୍ଡାବନ୍ଧା ଖଟିଆ ଉପରେ । ତା'ପରେ ଦଳ ଦଳ ସତ୍ୟାଗ୍ରହୀ ସାଥୀ ଆସିଲେ ମୋ ପାଖକୁ ବିଦାୟ ନେବା ପାଇଁ । ବଡ଼ ମର୍ମସ୍ପର୍ଶୀ ସେ ଦୃଶ୍ୟ । ପ୍ରଥମେ ଆସିଲେ ଆମ ସତ୍ୟାଗ୍ରହୀ ଦଳର ନେତା ଥିବା ଶ୍ରୀ ତକଦୀର ସିଂ ଚୌଧୁରୀ । ସେ ଫେରୋଜପୁର ପଞ୍ଜାବର ଗୋହତନଙ୍କୁ । କଥାବାର୍ତ୍ତା ଭିତରେ ମୁଁ ଲକ୍ଷ୍ୟ କଲି, ତାଙ୍କ ପାଖରେ ଏକ ଅପୂର୍ଣ୍ଣ ସଂଗ୍ରାମର ଲୁକ୍କାୟିତ ଶିଖା ଜଳୁଛି । ବହୁ ସୁଖ ଦୁଃଖ, ଆଲୋଚନା ପରେ ସେ ଉଠି ଠିଆ ହେଲେ ଆଉ ମୋ ଆଡ଼କୁ ହାତ ବଢ଼ାଇ ଦେଲେ କରମର୍ଦ୍ଦନ ପାଇଁ । ମୁଁ ତାଙ୍କୁ ଜଣାଇଲି ଭକ୍ତି ଓ ଆନ୍ତରିକ ବିଦାୟ ସମ୍ଭାଷଣ । ତା' ପରେ ଆସିଲେ ପଶ୍ଚିମବଙ୍ଗ ଜଳପାଇଗୁଡ଼ିର ଫରୱାର୍ଡ଼ବ୍ଲକର ନେତା ଶ୍ରୀ ଏସ୍. ଏନ୍. ଗାଙ୍ଗୁଲି, ହରେଣ୍ଣ ବକ୍ସୀ ଓ ନିମାଇଁ ସେନ । ଏମାନେ ସମସ୍ତେ ବିଦାୟ ନେଲେ । କେବଳ ରହିଲେ ଶ୍ରୀ ପ୍ରାଣଲାଲଜୀ କୋଠାରୀ, ଭୋପାଳର ଜଣେ ସତ୍ୟାଗ୍ରହୀ, ମହୀଶୂରର ଶ୍ରୀ ବେଙ୍କଟେଶ୍ କେ. ହେଜମାଡ଼ି—ଏଇ କେତେଜଣ ଆମେ ଥାଉଁ । ଶ୍ରୀ ହେଜମାଡ଼ିଙ୍କ ଶ୍ରଦ୍ଧା ଓ ସେବା ଜୀବନରେ ଭୁଲିବାର ନୁହେଁ । ପୁଲିସ ଆକ୍ରମଣରେ ସାରା ଦେହ ମୋର ଅଚଳ ହୋଇ ପଡ଼ିଥିବା ବେଳେ, ସେ ମୋତେ ଟେକିନେବା ଠାରୁ ଆରମ୍ଭ କରି, ମୋର କ୍ଷତ ସ୍ଥାନମାନ ପରିଷ୍କାର କରିବା ପର୍ଯ୍ୟନ୍ତ ଯାବତୀୟ କାମ କରିବାକୁ କୁଣ୍ଠାବୋଧ କରି ନଥିଲେ । ତାଙ୍କର ଜନ୍ମସ୍ଥାନ ମହୀଶୂରର ମାଙ୍ଗାଲୋର ଠାରେ । ପୂର୍ବେ ସେ ବମ୍ବେର କୌଣସି ଏକ ବଡ଼ କମ୍ପାନୀ ଅଧୀନରେ ଚାକିରି କରୁଥିଲେ । ଗୋଆମୁକ୍ତି ସଂଗ୍ରାମରେ ଯୋଗ ଦେବା ପାଇଁ ସେ ଚାକିରି ଛାଡ଼ି ୧୯୫୫ ଅଗଷ୍ଟ ତା୧୯ରିଖରେ ଶ୍ରୀ ମଧୁ ଦଣ୍ଡବତେଙ୍କ ନେତୃତ୍ୱରେ ଗୋଆ ପ୍ରବେଶ କରିଥିଲେ ।

କୁଣ୍ଡା ଝାଡ଼ୁଥାଏ ମେଘ । ସନ୍ଧ୍ୟା ନଇଁ ଆସୁଥାଏ ବେଲଗାଓଁ ନଗରୀ ଉପରେ । ବିଦାୟ ନେଲି ବେଲଗାଓଁ ମାଟିରୁ । ଗୋଟିଏ ଝଟକାରେ ମୁଁ, ମୋ ସହିତ ଶ୍ରୀ ହେଜ୍ମାଡ଼ି, ଶ୍ରୀ କୋଠାରୀ, ହାଇଦ୍ରାବାଦର ଶ୍ରୀ ଜୟପ୍ରକାଶ ପ୍ରଭୃତି ବସିଲେ । ସମିତିର ସମ୍ପାଦକ ଆପ୍ଟେ ସାହେବଙ୍କୁ ଜଣାଇଲି ବିଦାୟ-

କାଳୀନ ସମ୍ଭାଷଣ । ସେ ତା'ର ଉତ୍ତର ଦେବାକୁ ଯାଇ କହିଲେ, "ଏହି ବେଲଗାଁଓଁରୁ ମୁଁ ଶହ ଶହ ସତ୍ୟାଗ୍ରହୀଙ୍କୁ ପଠାଇଛି ପର୍ତ୍ତୁଗୀଜ ମେସିନଗନ ମୁହଁକୁ । ସେଥିପାଇଁ ସମର ପାଞ୍ଜିଆ ଶହଗୁପ୍ତର ଦୃଷ୍ଟି ମୋ ଉପରେ ସମାଗତ ରହିଛି । କାରଣ, ସେମାନଙ୍କ ମୃତ୍ୟୁ ପାଇଁ ମୁଁ ଦାୟୀ ।"

ଏଥର ଆମ ଝଟକା ଛୁଟିଲା ରେଳ ଷ୍ଟେସନ ଅଭିମୁଖେ ।

ଆମକୁ ଷ୍ଟେସନରେ ବିଦାୟ ଦେବା ପାଇଁ ଆସିଥାନ୍ତି (ସମିତି ତରଫରୁ) ଶ୍ରୀ ମାଧବ ଡ. ହେରେକର୍ । ଷ୍ଟେସନରେ ପହଞ୍ଚିଲା ବେଳକୁ ଗାଡ଼ି ଆସି ଯାଇଥିଲା । ସହଯାତ୍ରୀମାନେ ମୋତେ ଟେକିନେଇ ବସାଇଲେ ଏକ ପ୍ରଥମ-ଶ୍ରେଣୀ ଡବାରେ । ଶ୍ରୀ ହେରେକର ମୋ ପାଇଁ ବାଟରୁ କିଛି କମଳା ଆଉ ପାଉଁରୁଟି କିଣି ଆଣିଥିଲେ । ସେତକ ମୋ ଆଡ଼କୁ ବଢ଼ାଇ ଦେଇ ହସି ହସି ସେ ଆମ ଠାରୁ ବିଦାୟ ନେଲେ ।

ପୁନା ଏକ୍ସପ୍ରେସ ଭୀମ ଗର୍ଜନ କରି ପୁନା ଅଭିମୁଖେ ବେଲଗାଁଓଁ ଛାଡ଼ିଲା । ଶ୍ରୀ ହେଜ୍‌ମାଡ଼ିଙ୍କ କୋଳରେ ମୁଣ୍ଡ ଥୋଇ ମୁଁ ଶୋଇ ରହିଲି । ଷ୍ଟେସନ ପରେ ଷ୍ଟେସନ, ଅନ୍ଧକାରମୟ ସୁଦୀର୍ଘ ସୁଡ଼ଙ୍ଗର ବକ୍ଷଭେଦ କରି କ୍ଷିପ୍ର ଗତିରେ ଛୁଟିଥାଏ ପୁନା-ଏକ୍ସପ୍ରେସ ।

ରାତି ୯ଟା ବେଳେ ନିଦ ଭାଙ୍ଗିଲା । ସାଥୀ ତିଳକଧାରୀ ଜିଙ୍କୁ ପଚାରି ବୁଝିଲି, ଗାଡ଼ି ଠିକ ସକାଳ ଛ'ଟା ବେଳେ ପୁନାରେ ପହଞ୍ଚିବ ।

ସକାଳର କଅଁଳ ନରମ ସୁନେଲି ଖରା ଅଜାଡ଼ି ହୋଇ ପଡ଼ୁଥାଏ ମୁସାଫିରଖାନା ଉପରେ । ବହୁଦିନ ପରେ ମେଘମୁକ୍ତ ଆକାଶ, ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ଦେଖି ମନଟା ଧୀରେ ଧୀରେ ଉଜ୍ଜ୍ୱଳ ହୋଇ ଉଠୁଥିଲା । ସେପ୍ଟେମ୍ବର ତା୧୯ରିଖ ୧୯୫୫ ମସିହା । ଶ୍ରୀ ହେଜ୍‌ମାଡ଼ିଙ୍କ ସହାୟତାରେ ଗାଡ଼ିରୁ ଓହ୍ଲାଇ ପାଦ ଦେଲି ମହାରାଷ୍ଟ୍ରର ଅନ୍ୟତମ ଐତିହାସିକ ନଗରୀ ପୁନା ମାଟିରେ । ଗୋଟିଏ ଅଟୋରିକ୍ସା ବ୍ୟବସ୍ଥା ହେଲା । ସେଥିରେ ବସି ଆମେ ଆସିଗଲୁ କେନ୍ଦ୍ର ଗୋଆ ବିମୋଚନ ସମିତି 'କେଶରୀ' କାର୍ଯ୍ୟାଳୟକୁ । ମୁଁ ଅସୁସ୍ଥ ଥିବାରୁ ଶ୍ରୀ ହେଜ୍‌ମାଡ଼ି ଚାଳକଙ୍କୁ ଧୀରେ ଧୀରେ ଗାଡ଼ି ଚଳାଇବାକୁ କହିଲେ ।

ସମିତିର କେନ୍ଦ୍ର ଅଫିସରେ ପହଞ୍ଚି ଶୁଣିଲୁ ସମିତିର ସଭାପତି ଶ୍ରୀଯୁକ୍ତ ତିଲକ ଦିଲ୍ଲୀ ଯାଇଛନ୍ତି । ସମିତି କାର୍ଯ୍ୟାଳୟରେ ଆମର ରହିବାର ବ୍ୟବସ୍ଥା ହୋଇଗଲା ।

ତା୨୨ରିଖ ସକାଳେ ଶ୍ରୀ ହେଜ୍‌ମାଡ଼ ବିଦାୟ ନେଲେ ପୁନାରୁ ।

ପ୍ରାତଃକର୍ମ ସାରି କେତେକ ଚିଠିପତ୍ର ଲେଖି ସେଗୁଡ଼ିକୁ ଡାକରେ ପକାଇବା ପାଇଁ ପଠାଇଲି । ତା'ପରେ ବିଶ୍ରାମ । ମଧ୍ୟାହ୍ନ ଭୋଜନ ପରେ 'କେଶରୀ' କାର୍ଯ୍ୟାଳୟର ଜଣେ ସହଯୋଗୀଙ୍କୁ ସଙ୍ଗରେ ଧରି ପୁନା ରାଜଭବନକୁ ଗଲି ବମ୍ବେର ରାଜ୍ୟପାଳ ଡଃ ହରେକୃଷ୍ଣ ମହତାବଙ୍କୁ ସାକ୍ଷାତ କରିବା ପାଇଁ । ମହତାବ ବାବୁ ବମ୍ବେ ଯାଇଥିବାରୁ ତାଙ୍କ ସହିତ ସାକ୍ଷାତ ହେଲା ନାହିଁ ସତ, କିନ୍ତୁ ତାଙ୍କ ସହଧର୍ମିଣୀ ଶ୍ରୀମତୀ ସୁଭଦ୍ରା ମହତାବ ମୋ ନାମ ଶୁଣୁ ଶୁଣୁ ବାହାରକୁ ବାହାରି ଆସିଲେ, ଆଉ ସମ୍ବାଦପତ୍ରରୁ ମୋ ଉପରେ ପୁଲିସ ଆକ୍ରମଣ କଥା ପଢ଼ି ବ୍ୟଥିତ ହୋଇଥିବା କଥା କହି ମୋତେ ଜବରଦସ୍ତ ଜଳଖିଆ ଖାଇବା ପାଇଁ ବାଧ୍ୟ କରିଥିଲେ । ପ୍ରାୟ ଅନେକ ସମୟ ଧରି ମୁଁ ତାଙ୍କ ପାଖରେ ଥିଲି । ମୋର କଟକରେ ପହଞ୍ଚିବା ପର୍ଯ୍ୟନ୍ତ ଯେପରି କିଛି ଅସୁବିଧା ନହୁଏ, ତା'ର ସମସ୍ତ ବ୍ୟବସ୍ଥା କରିବା ପାଇଁ ସେ ରେଳ କର୍ତ୍ତୃପକ୍ଷଙ୍କୁ ଟେଲିଫୋନ ଯୋଗେ ନିର୍ଦ୍ଦେଶ ଦେଲେ ମୋତେ ବାଟ ଖର୍ଚ୍ଚ ପାଇଁ ନଗଦ ୫୦୦ଟଙ୍କା ଦେଇଥିଲେ ।

## ॥ ଘର ବାହୁଡ଼ା ॥

ସେପ୍‌ଟେମ୍ବର ତା ୧୩, ୧୯୫୫ ।

ବିଦାୟ ନେଲି ମହାରାଷ୍ଟ୍ରର ଦକ୍ଷିଣସ୍ଥ ବୃହତ୍ତମ ସହର ପୁନା ମାଟିରୁ । କେନ୍ଦ୍ର ଗୋଆ-ବିମୋଚନ ସମିତି ତରଫରୁ ଜଣେ ସଭ୍ୟ ଆସିଥାନ୍ତି ଷ୍ଟେସନ ପର୍ଯ୍ୟନ୍ତ ମୋତେ ବାଟେଇ ଦେବା ପାଇଁ ! କେତେଜଣ ସତ୍ୟାଗ୍ରହୀ ସାଥୀଙ୍କ ସହାୟତାରେ ଗୋଟିଏ ଡବାକୁ ଉଠିଲି । ଶରୀରର ଯନ୍ତ୍ରଣା ଟିକେ କମିଥାଏ । ସମିତି ତରଫରୁ ମୋ ପାଇଁ ୧୮ଟି କମଳା, ଗୋଟିଏ ବଟର ଡବା, କେତୋଟି ପାଉଁରୁଟି ଦିଆ ଯାଇଥାଏ । ତା' ସହିତ ପୁନା ଠାରୁ କଟକ ପର୍ଯ୍ୟନ୍ତ ଏକ ପ୍ରଥମ ଶ୍ରେଣୀ ରେଳ ଟିକଟ ଓ ରିଜର୍ଭେସନ ଦିଆ ଯାଇଥାଏ ।

ଗାଡ଼ି ଛାଡ଼ିଲା । ମୋ ସାଥିରେ ଥାଆନ୍ତି ଦୁ'ଜଣ ପୁରାତନ ସତ୍ୟାଗ୍ରହୀ ସାଥୀ ଶ୍ରୀ ପ୍ରାଣଲାଲଜୀ କୋଠାରୀ ଓ ଭୋପାଳର ସତ୍ୟାଗ୍ରହୀ ଜଣକ । ସେମାନେ ବିଦାୟ ନେବେ କଲ୍ୟାଣ ଷ୍ଟେସନରେ । ଆଉ ମୁଁ ଏକୁଟିଆ ପଡ଼ି ରହିବି "ହାଓଡ଼ା-ବମ୍ବେ ମେଲ୍'ର ଏକ ନିର୍ଜନ ପ୍ରଥମ ଶ୍ରେଣୀ ଡବାରେ । ମନ ଭାରି ଖରାପ ଲାଗୁଥାଏ । ପୁଣି ପାର୍ଘ ୮୧ ଘଣ୍ଟା ରେଳ ଯାତ୍ରା ପରେ ପାଦଦେବି କଟକ ନଗରୀ ବୁକୁରେ ।

ସୁଗଟା ବାଜିବାକୁ ବାକି ଥାଏ ଦଶ ମିନିଟ । ଦୂରରୁ ଦେଖାଗଲା କଲ୍ୟାଣ ରେଳ ଜଙ୍କସନର ଖୁଣ୍ଟ ଗୁଡ଼ିକ । ଶ୍ରୀ କୋଠାରୀ ମୋର ଜିନିଷପତ୍ର ସଜାଡ଼ି ଦେଲେ, କାରଣ 'କଲ୍ୟାଣ' ଠାରୁ ମୋତେ ଗାଡ଼ି ବଦଳାଇ ଧରିବାକୁ ହେବ "ହାଓଡ଼ା-ବମ୍ବେ ମେଲ୍" । ଗାଡ଼ି ଠିଆ ହେଲା । ଦୁଇ ସତ୍ୟାଗ୍ରହୀ ସାଥୀଙ୍କ ସାହାଯ୍ୟରେ ଗାଡ଼ିରୁ ଓହ୍ଲାଇ ଆସିଲି ବିଶ୍ରାମାଗାରକୁ । ମେଲ୍ ରାତି ୭ଟା ବେଳେ ଆସି ପହଞ୍ଚିବ 'କଲ୍ୟାଣ' ଠାରେ । ତିନି ସତ୍ୟାଗ୍ରହୀ ସାଥୀ ଏକତ୍ର ବସି ଜଳଖିଆ ଖାଇଲୁ । ମୋ ଡାହାଣ ହାତ ପ୍ଲାଷ୍ଟରିଂ ହୋଇଥିବା ଯୋଗୁ ଶ୍ରୀ କୋଠାରୀ ମୋତେ ଖୁଆଇ ଦେଲେ । ଖାଇ ସାରି ବସୁ ବସୁ ନିଦ ଲାଗି ଆସିଲା । ସାତେ ଛ'ଟା ବେଳକୁ ନିଦ ଭାଙ୍ଗିଲା । ଉପର ଓଳର ନିତ୍ୟକର୍ମ ପରେ ଚା' ଖାଇ ବସିଲୁ ସମସ୍ତେ । ତା'ପରେ ଶ୍ରୀ କୋଠାରୀଙ୍କୁ କହିଲି, ଗୋଟିଏ ବାଲକ ଡାକି ଦେବା ପାଇଁ । କାରଣ ଦାଡ଼ିଗୁଡ଼ିକ ବଢି ଯାଇଥାଏ । ବାଳକ ଆସିଲା, ଖିଅର ହେବା ଭିତରେ ଖବର କାଗଜ ପୃଷ୍ଠାରୁ ଦେଖିଲି, 'ଦଳେଇ ଘାଇ' ଭାଙ୍ଗିବାର ସମ୍ବାଦ । ମନଟା ବଡ଼ ବ୍ୟସ୍ତ ହେଲା ।

'ହାଓଡ଼ା-ବମ୍ବେ ମେଲ୍' ଆସି ଠିଆ ହେଲା 'କଲ୍ୟାଣ'ରେ । ଦେଖିଲି, କୋଠାରୀଙ୍କ ଆଖିରେ ଲୋତକର ବନ୍ୟା । କାହିଁ କେଉଁ ସୁଦୂର ଓଡ଼ିଶା ଭୂଇଁର ଏକ ଆହତ ପାନ୍ଥ ମୁଁ, କାହିଁ କେଉଁ ଦୂର ଭୋପାଳ ଓ କଚ୍ଛର ଦୁଇଜଣ ଦେଶପ୍ରେମୀ ଯୁବକ ଏମାନେ । ମାତ୍ର କେତୋଟି ଦିନ ପାଇଁ ଆମମାନଙ୍କର ସାନ୍ନିଧ ଗଢ଼ି ଉଠିଥିଲା । ହୃଦୟର ଏ ନିବିଡ଼ ବନ୍ଧନ ତୁଟିବାକୁ ଯାଉଛି । ବିଦାୟ ସାଥୀମାନେ ! ସେମାନଙ୍କ ସହିତ ଆଲିଙ୍ଗନ, କରମର୍ଦ୍ଦନ କରି ଉଠିଲି ଗାଡ଼ିକୁ, ଗାଡ଼ି 'କଲ୍ୟାଣ' ଛାଡ଼ିବାର ସଙ୍କେତ ଦେଲା ।

ଦେହର ପୀଡ଼ା, ବମ୍ବେ ପୁଲିସର ନିଷ୍ଠୁର ମାଡ଼ ଓ ଆହତ ଶରୀରକୁ ନେଇ ବର୍ତ୍ତମାନ କଟକ ପଥର ଯାତ୍ରୀ ମୁଁ । କ୍ଷଣେ ଅବସନ୍ନତା ଅନୁଭବ କରୁଥାଏ । ଅପରିଚିତ ସହଯାତ୍ରୀମାନଙ୍କ ପାଖରେ ମୁଁ ହୋଇ ଉଠିଥାଏ କୌତୁହଳର ଜଣେ ବ୍ୟକ୍ତି । ଅନ୍ଧକାରର ବୁକୁ ଚିରି, ବଣ, ସୁଦୀର୍ଘ ସୁଡ଼ଙ୍ଗ ପଥ ଦେଇ ନିଜର ସ୍ୱଭାବ ସୁଲଭ ବେଗରେ ଧାଇଁ ଥାଏ "ହାଓଡ଼ା-ବମ୍ବେ ମେଲ୍" । ଘଣ୍ଟା ପରେ ଘଣ୍ଟା ଅତିକ୍ରାନ୍ତ ହେଉଛି । ଗାଡ଼ି ଛୁଟିଛି । ଗୋଆରେ ପ୍ରବେଶ କରି ପାରିଲି ନାହିଁ—ସୀମାନ୍ତରୁ ଆହତ ହୋଇ ଫେରିଲି, ଏହି ଗ୍ଲାନି ମୋତେ ଦଂଶନ କରୁଥାଏ ଅବିରତ ।

୧୯୫୫ ସେପ୍ଟେମ୍ବର ୨୭ ତାରିଖ ପୂର୍ବାହ୍ନରେ ଖଡ଼ଗପୁରରେ ହାଓଡ଼ା-ବମ୍ବେ ମେଲକୁ ବିଦାୟ ଦେଇ ଅନ୍ୟ ଗାଡ଼ି ବଦଳାଇ ସେହିଦିନ ସନ୍ଧ୍ୟାରେ ପାଦଦେଲି ପ୍ରିୟ କଟକ ନଗର ବୁକୁରେ ।

କଟକ ମାଟିରେ ଆସି ପାଦ ଦେବା ପରେ ସାମ୍ବାଦିକମାନଙ୍କ ସହିତ ମୋର ଏକ ସାକ୍ଷାତକାର ହୋଇଥିଲା । ଗୋଆ ସୀମାନ୍ତରେ ଔପନିବେଶିକ ପର୍ତ୍ତୁଗୀଜ ପୁଲିସ ବା ସାମରିକ ବାହିନୀ ନୁହେଁ, ସ୍ୱାଧୀନ ଭାରତର ବମ୍ବେ ଅର୍ଥାତ୍ ଗାନ୍ଧିବାଦୀ ମୋରାରଜୀ ଦେଶାଇ ସରକାରଙ୍କ ପୁଲିସର ନୃଶଂସ ମୁକ୍ତି-କାମୀ ଗୋଆଗାମୀ ଭାରତୀୟ ସତ୍ୟାଗ୍ରହୀଙ୍କ ଉପରେ ବର୍ବରୋଚିତ ଆକ୍ରମଣ ଘଟଣା ମୋଠାରୁ ଶୁଣି ସାମ୍ବାଦିକମାନେ ପ୍ରଥମେ ସ୍ତମ୍ଭିତ ହୋଇ ଯାଇଥିଲେ । ୧୯୫୫ ମସିହା ସେପ୍ଟେମ୍ବର ୨୭ ତାରିଖରେ କଟକ ଠାରେ ପ୍ରଦତ୍ତ ମୋର ତତ୍କାଳୀନ ଆବେଦନକାରୀ ବିବୃତିକୁ ୟୁ. ପି. ଆଇ. ସମ୍ବାଦ ସଂସ୍ଥା ଜାତୀୟ ସ୍ତରରେ ପ୍ରଚାରିତ କରିବା ଫଳରେ ତା' ପରଦିନ ତମାମ୍ ଭାରତ ବର୍ଷରେ ଏକ ଚହଳ ପଡ଼ି ଯାଇଥିଲା । ମୋର ସେ ବିବୃତି ହେଲା :

**SHAMEFUL TREATMENT ON SATYAGRAHIS**

**Bombay Police Action Condemned.**

**Cuttack, Sept- 26: Mr. Ram Apte, Secretary, Goa Vimochan Semitv, Belgaum, has condemned "The Highly Deplorable and Shameful" treatment meted out the 31 Indian Satyagrahis who were on their way to Samantawadi to offer Satyagraha inside Goa on September 11.**

Mr. Apte's statement, wich was brought here by Mr. Rabindranath Singh, who was one of the batch, said that since the A I C C resolution on Goa, "The Govt. of Bombay has taken recourse to shameful steps" to prevent the entry of satyagrahis into Goa This shameful action of the Bombay police makes one feel that Democracy has come to an end in India The police did not even hesitate to kick the Satyagrahis at Insuli near Sawantawadi" he said

Describing the incident Mr Rabindranath Singh said that the D I G Mr Nagarwala, ordered that the Satyagrahis should be bodily thrown into the waiting police van and kicked, if necessary.

He said that he was himself a victim of Police violence. Taqdir Sing, leader of the batch, and other Satyagrahis has also issued a joint statement.

The State Transport and Telegraph authorities had also been muzzled to assist the Govt. in suppressing the movement they said ( U P I ) *

ମୋର ଏହି ବକ୍ତୃତାରେ ବମ୍ବେର ତତ୍କାଳୀନ ମୋରାରଜୀ ଦେଶାଇ ସରକାର କେବଳ ବିବ୍ରତ ହୋଇପଡ଼ିଥିଲେ ନୁହେଁ, ଏ ଘଟଣାକୁ ବାଏଁ ବାଏଁ ଉଡ଼ାଇ ଦେବା ପାଇଁ ହାସ୍ୟକର ଏକ ଭୂମିକା ଗ୍ରହଣ କରିଥିଲେ ।— "ବମ୍ବେରୁ ପ୍ରକାଶିତ ଏକ ସମ୍ବାଦରୁ ପ୍ରକାଶ ଯେ ରାଜ୍ୟ ବିଧାନ ମଣ୍ଡଳରେ ଏକ ପ୍ରଶ୍ନର ଉତ୍ତରରେ ମୁଖ୍ୟମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ କହିଲେ ଯେ, ଗୋଆ ଗମନେଚ୍ଛୁ ସତ୍ୟାଗ୍ରହୀମାନଙ୍କ ଉପରେ ଗତ ସେପ୍ଟେମ୍ବର ୧୧ ତାରିଖରେ ପୁଲିସ ଅତ୍ୟାଚାର କରିଛି ଓ ସେମାନଙ୍କୁ ଗୋଇଠା ମାରିଛି

---

* "ଦୈନିକ ଫ୍ରି-ପ୍ରେସ" ଓ "ଅମୃତବଜାର ପତ୍ରିକା"— ତା ୨୭ । ୯ । ୫୫

ବୋଲି ଯେଉଁ ଅଭିଯୋଗ ହୋଇଛି, ତାହା ଭିତ୍ତିହୀନ । ସେ ପୁଣି କହିଲେ, ଏ ଘଟଣାର ଆଉ କୌଣସି ତଦନ୍ତର ଆବଶ୍ୟକତା ଅଛି ବୋଲି ସେ ମନେ କରୁ ନାହାନ୍ତି ।" * *

ବମ୍ବେ ପୁଲିସର ଆକ୍ରମଣରେ ମୋ ଡାହାଣ ପାଖ କଟିହାଡ଼ର କିଛି ଅଂଶ ଚୂନା ହୋଇ ଯାଇଥିବାରୁ ତୀକ୍ଷ୍ଣ ଯନ୍ତ୍ରଣା ଅନୁଭବ କରୁଥାଏ । ନିଜେ ସ୍ୱଚ୍ଛନ୍ଦରେ ବୁଲାବୁଲି କରିବା ମୋ ପକ୍ଷରେ ହୋଇ ଉଠିଲା ଅସମ୍ଭବ । ମୋର ସେତେବେଳେ ଅତି ଆବଶ୍ୟକ ଥିଲା ଚିକିତ୍ସା ଆଉ ପ୍ରଚୁର ବିଶ୍ରାମ । କିନ୍ତୁ ମୋର କରୁଣ ତଥା ଶୋଚନୀୟ ଅର୍ଥାଭାବ ସେ କ୍ଷେତ୍ରରେ ଥିଲା ପ୍ରଧାନ ପ୍ରତିବନ୍ଧକ । ମନେ ଅଛି, ସେତେବେଳେ ମୋର ଚିକିତ୍ସା ପାଇଁ ଯେଉଁ ସହୃଦୟ ବନ୍ଧୁମାନେ ମୋତେ ଆର୍ଥିକ ସହାୟତା କରିବାକୁ କାର୍ପଣ୍ୟ କରି ନଥିଲେ ସେମାନଙ୍କ ମଧ୍ୟରୁ ଶ୍ରୀ ବୃନ୍ଦାବନ ନାୟକ ଏବଂ ମୋର ଆଜିର ଶ୍ରଦ୍ଧେୟ ଆଡ଼ଭୋକେଟ ଶ୍ରୀ ବିଜୟକୃଷ୍ଣ ମହାନ୍ତି ଅନ୍ୟତମ । ବିଜୟ ବାବୁଙ୍କ ସହିତ ମୋର ପ୍ରଥମ ପରିଚୟ ଘଟେ ବୋଧେହୁଏ ୧୯୫୪ ସାଲରେ କଟକ ବୋଡାଲଙ୍ଗା ଲେନ୍‌ସ୍ଥ ତାଙ୍କ ପୈତୃକ ବାସଗୃହରେ ! ସେହିଦିନ ଠାରୁ ଏ ଯାବତ୍ ସେ ମୋର ଗୁଣଗ୍ରାହୀ ଦରଦୀ ବନ୍ଧୁ ହୋଇ ରହି ଆସିଛନ୍ତି । ତାଙ୍କ-ନାମ ଉପରେ ଅନ୍ତରଙ୍ଗତାର ସ୍ମାରକ ସ୍ୱରୂପ ମୋ ନିର୍ମିତ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର କୋଣାର୍କ ଅର୍ଥାତ୍ ମୋର "ନୀଳ ପାରୋଶାର ପ୍ରେତ" ଖଣ୍ଡକାବ୍ୟ ଗ୍ରନ୍ଥକୁ ମୁଁ ତାଙ୍କୁହିଁ ନିବେଦନ କରିଥିଲି ।

## ॥ ବୃନ୍ଦାବନ ଓ ଅନ୍ୟମାନେ ॥

ଆଉ ଜଣେ ମହାନ୍ ବ୍ୟକ୍ତି ମୋ ଜୀବନର ଏକ ବିଶାଳ ସ୍ତମ୍ଭ ଏବଂ ମହାର୍ଘ ଅବଲମ୍ବନ । ସେ ହେଉଛନ୍ତି ଶ୍ରୀ ବୃନ୍ଦାବନ ନାୟକ, ଚାର୍ଟାର୍ଡ ଆକାଉଣ୍ଟେଣ୍ଟ । ପୂର୍ବ ଯୁଗରେ ଅର୍ଥାତ ୧୯୪୫ ମସିହାରେ ତାଙ୍କ ସହିତ ମୋର ପ୍ରଥମ ପରିଚୟ ଓ ସାକ୍ଷାତ । ପ୍ରାୟ ୩୭ ବର୍ଷ ତଳେ ମୋ'ର ପ୍ରଥମ ଦର୍ଶନରେ ସେ ମୋ ପ୍ରତି କାହିଁକି ଓ କେଉଁ କାରଣରୁ ସଦୟ ଏବଂ ଆକୃଷ୍ଟ ହୋଇଥିଲେ, ତାହା ଆଜିଯାଏ ମୋତେ ଅଜଣା । ସେତେବେଳେ ଏକ

---

* * ବଙ୍ଗଳା "ଦୈନିକ ସ୍ୱାଧୀନତା" : ତା ୨୮ । ୯ । ୫୫

ଅନାମଧେୟ, ଅପୋଗଣ୍ଡ ବାଳକ ମୁଁ । ଅନ୍ୟକୁ ଆକୃଷ୍ଟ କରିବାର ଯୋଗ୍ୟତା ଭିତରେ ମୋର କେବଳ ଥିଲା ଇଂରେଜ ସାମ୍ରାଜ୍ୟବାଦ ବିରୋଧୀ ସଙ୍ଗୀତମାନ ଗାଇ ଆଇନ ଭଙ୍ଗ କରିବା । ଏଇଥିରେ ସେ ମୋ ପ୍ରତି ଆକୃଷ୍ଟ ହୋଇଥିଲେ କି ନା ସେ କଥା ସେ ନିଜେ ହୁଏତ କହି ପାରିବେ ! ସେ ଯାହାହେଉ, ସେହି ସୁଦୂର ଅତୀତରୁ ଅଦ୍ୟାବଧି ସେ ମୋର ପୂଜ୍ୟ, ମାନନୀୟ, ସମ୍ମାନାସ୍ପଦ, ଦରଦୀ ହୋଇ ରହି ଆସିଛନ୍ତି । ବିଗତ ୩୭ ବର୍ଷ ମଧ୍ୟରେ ମୋର କ୍ରମ ଅବନତ୍ୟୁତ୍ଥାନ, ବିକାଶ, ଅଖ୍ୟାତିରୁ ଖ୍ୟାତି, ସାହିତ୍ୟିକ ତଥା କବି ପ୍ରତିଷ୍ଠା, ଦୁର୍ବାର ଜୀବନ-ସଂଗ୍ରାମ ସବୁ ପ୍ରାୟ ତାଙ୍କର ଆଖି ଦେଖା ଘଟଣା । ଏହି ୩୭ ବର୍ଷ ମଧ୍ୟରେ ବହୁ ଝଡ଼ଝଞ୍ଜା, ଘାତ-ପ୍ରତିଘାତ, ସଂଗ୍ରାମ-ସଂଘାତ, ହର୍ଷ ବିଷାଦ ଅଳଂକୃତ କରିଛି ମୋର ଜୀବନକୁ ନାନା ଭାବରେ । ସ୍ୱଜନ ଅପେକ୍ଷା ଦୁର୍ଦ୍ଦିନ ଏବଂ ଦୁଃଖର ମାତ୍ରାଧିକ୍ୟ କଳ୍ପନାତୀତ ଭାବରେ ଲଗାତାର ମୋତେ ନିକ୍ଷେପ କରିଛି ଯନ୍ତ୍ରଣାର ଜ୍ୱଳନ୍ତ ଅଗ୍ନିକୁଣ୍ଡରେ । ସେଥିରେ ହୃଦାନନ୍ଦବାବୁ ବ୍ୟଥିତ ହୋଇଛନ୍ତି, ନୀରବ ପଦସଞ୍ଚାରରେ ଆଗେଇ ଆସି ମୋତେ ସହାୟତା କରିଛନ୍ତି ନୈତିକ, ଆର୍ଥିକ ସବୁଦିଗରୁ । ମୋର ସୃଷ୍ଟିର ଭାଷା, ଛନ୍ଦ, ଧ୍ୱନି ସବୁକିଛିରେ ସେ ହୋଇଛନ୍ତି ମୁଗ୍ଧ । ପୁଣି ମୋର ମାନବିକ ପାପ ଏବଂ ତ୍ରୁଟିବିଚ୍ୟୁତିରେ ସେ ବେଳେ ବେଳେ ହୋଇ ଉଠିଛନ୍ତି ମୋର କଠୋର ସମାଲୋଚକ । ଏଯାବତ୍ ମୋର ପ୍ରତ୍ୟେକ ପ୍ରକାଶିତ ଗ୍ରନ୍ଥର ସେ ଗ୍ରାହକ ଆଉ ପାଠକ । ଏହି ଅନୁଚ୍ଚ ତଥା ପ୍ରଚଣ୍ଡ ମାନବିକ ଗୁଣ ସମ୍ପନ୍ନ ସୁଧୀ ମନୀଷୀଟି ସତରେ କେବଳ ମହାନ୍ ନୁହନ୍ତି, ଓଡ଼ିଆ ସାହିତ୍ୟ ତଥା ସାହିତ୍ୟିକ-କଳାକାରମାନଙ୍କର ଏକ ମହାର୍ଘ ଭରସା କହିଲେ ବି ଅତ୍ୟୁକ୍ତି ହେବନାହିଁ । ଏହି ଗ୍ରନ୍ଥକୀଟ ମହାନ ପାଠକ ତଥା ବହୁଭାଷାବିତ୍ ଦରଦୀ ମନୀଷୀଟିଙ୍କୁ ମୁଁ ଯଦି ମୋର ଗତିପଥରେ ଭେଟି ନଥାନ୍ତି ତାହେଲେ ମୋର ବିକାଶ ଆଉ ଅଗ୍ରଗତି ବାଧାପ୍ରାପ୍ତ ହୋଇଥାନ୍ତା । "ମନୀଷୀ" ନାମରେ ଦୁନିଆରେ ଅଗଣିତ ଦ୍ୱିପଦ ଅଛନ୍ତି । କିନ୍ତୁ ହୃଦୟାନନ୍ଦ ମନୀଷୀମାନଙ୍କ ସଂଖ୍ୟା ଅତି ନଗଣ୍ୟ । ଏହି ନଗଣ୍ୟମାନଙ୍କ ମଧ୍ୟରେ ଶ୍ରୀ ହୃଦାନନ୍ଦ ନାୟକଙ୍କ ଆସନ ଅତ୍ୟନ୍ତ ଶୀର୍ଷରେ । କେବଳ ମୁଁ ନୁହେଁ, ପୂର୍ବରୁ କହିଛି ବହୁ କବି-କଳାକାର-ଶିଳ୍ପୀଙ୍କର ସେ ନୀରବ ସହାୟକ । ସ୍ୱର୍ଗତ ଶିଳ୍ପୀ ବଂଶୀଧର ବର୍ମାଙ୍କ ଠାରୁ ଆରମ୍ଭ କରି ଏ ଅଧମ ରବି ସିଂ ପର୍ଯ୍ୟନ୍ତ— ଦାରିଦ୍ର୍ୟ ଯେଉଁମାନଙ୍କୁ କରିଛି ମହାନ ; ଅପମାନ, ପ୍ରତାଘାତ, ଅନାଦର, ଅବହେଳା, ସାମାଜିକ-ଅବିଚାର ତଥା ଉଦାସୀନତା ଯେଉଁମାନଙ୍କୁ କରିଛି

ଆନୁଷ୍ଠାନ ତଥା ବିଷୟବସ୍ତୁ, ସମସ୍ତଙ୍କୁ ସେ ଗାରବରେ ପ୍ରାଣ ଖୋଲି ପହଂପୂଜା କେବଳ କରି ନାହାନ୍ତି ; ସେମାନଙ୍କ ଅନ୍ତର୍ବେଦନା, ଆତ୍ମିକ ଜ୍ୱଳନ ଆଦିକୁ ଅତି ଦରଦୀ ମନ ଦେଇ ଅନୁଭବ କରିଛନ୍ତି । ତାଙ୍କର ଏହି ସାଂସ୍କୃତିକ ପୃଷ୍ଠପୋଷକତା ସମ୍ବନ୍ଧରେ ଏକ ସ୍ୱତନ୍ତ୍ର ଗ୍ରନ୍ଥ ରଚନା ଏକାନ୍ତ ଆବଶ୍ୟକ ।

## ॥ "ସତ୍ୟ କମ୍ୟୁନିଷ୍ଟ ପାର୍ଟି"ର ମରୀଚିକା ॥

ସୋସଲିଷ୍ଟ ପାର୍ଟି ଭିତରେ ଥିବାବେଳେ ଅବିଭକ୍ତ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ପ୍ରତି କୌତୁହଳ ଏବଂ ପ୍ରଚଣ୍ଡ ଏକ ବାମପନ୍ଥୀ ଝୁଙ୍କ ମୋତେ ବେଳୁ ବେଳ ଆଚ୍ଛନ୍ନ କରୁଥିଲା । ପରବର୍ତ୍ତୀ କାଳରେ କମ୍ୟୁନିଷ୍ଟ ପାର୍ଟି ସହିତ ସ୍ୱଳ୍ପକାଳର ସଂପୃକ୍ତିରେ ସେ ଝୁଙ୍କ ଆହୁରି ସ୍ପଷ୍ଟ ହୋଇ ମୋ ଆଗରେ ଏକ ନୂତନ ଦିଗ୍‌ବଳୟର ଉନ୍ମୋଚନ କରିଥିଲେ ମଧ୍ୟ ନେତାମାନଙ୍କର ଦ୍ୱିଧାବିଭକ୍ତ ଚରିତ୍ର ଏବଂ ଉଚ୍ଚମଧ୍ୟବିତ୍ତ ସୁଲଭ ବ୍ୟବହାର ମୋତେ କମ୍ୟୁନିଷ୍ଟ ପାର୍ଟିରେ ରହିବାକୁ ଦେଲା ନାହିଁ । କିନ୍ତୁ ସାମ୍ୟବାଦ, ମାର୍କସ୍‌ବାଦ, ଲେନିନବାଦ ପ୍ରତି ପ୍ରଗାଢ଼ ଅନୁରକ୍ତି ଓ ଭରସା ମୋ ଭିତରେ ଅଧିକରୁ ଅଧିକ ସଂଗୃହୀତ ହେବାକୁ ଲାଗିଥିଲା । ଗୋଆ ମୁକ୍ତି ସଂଗ୍ରାମରେ ଯୋଗ ଦେବାକୁ ଯିବା ପୂର୍ବରୁ ମାର୍କସ-ଏଙ୍ଗେଲ୍‌ସ୍‌ଙ୍କ ଲିଖିତ 'କମ୍ୟୁନିଷ୍ଟ ଇସ୍ତାହାର''ର ଭଗବତୀ ପାଣିଗ୍ରାହୀଙ୍କ ଓଡ଼ିଆ ଅନୁବାଦ "ବୈଜ୍ଞାନିକ ସାମ୍ୟବାଦ"କୁ ମୁଁ ଏକାଧିକ ଥର ପଢ଼ିବାର ସୁଯୋଗ ପାଇଥିଲି । ସେଇଟିକୁ କେଉଁଠୁ ପାଇଥିଲି, ତାହା ଅବଶ୍ୟ ମୋର ଆଜି ମନେ ନାହିଁ । ସମ୍ପ୍ରତି ତାହା ଦୁଷ୍ପ୍ରାପ୍ୟ । ଏହା ବ୍ୟତୀତ ଭଗବତୀଙ୍କ ବିପ୍ଳବୀ ଜୀବନଧାରା, ତାଙ୍କର ତ୍ୟାଗ-ତପସ୍ୟା, ତାଙ୍କ ଦ୍ୱାରା ପ୍ରତିଷ୍ଠିତ "ନବଯୁଗ ସାହିତ୍ୟ ସଂସଦ" ଓ "ପ୍ରଗତିଶୀଳ ଲେଖକ ସଂଘ"ର ଇତିହାସକୁ ମୁଁ ନାନା ଭାବରେ ଅନୁଧ୍ୟାନ କରି ଆତ୍ମସ୍ଥ ହୋଇଥିଲି ।

୧୯୫୪-୫୫ ମସିହା ।

ଆଡ୍‌ଭୋକେଟ୍ ରଘୁନାଥ ଦାସଙ୍କ ଉଦ୍ୟମରେ ଓଡ଼ିଶାରେ ସୋସଲିଷ୍ଟ ୟୁନିଟି ସେଣ୍ଟର (S. U. C. I.) ର ପ୍ରତିଷ୍ଠା ହୁଏ । ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିକୁ ଚ୍ୟାଲେଞ୍ଜ କରି ୰ ଶିବଦାସ ଘୋଷଙ୍କ ନେତୃତ୍ୱରେ ଜଣକୁ ଏକ

"ସଚ୍ଚା କମ୍ୟୁନିଷ୍ଟ ପାର୍ଟି"ଭାବେ ଏସ୍. ୟୁ. ସି. ଆଇ. ନିଜକୁ ଜାହିର କରିବାକୁ ଉଦ୍ୟମ କରିବା ଫଳରେ ରଘୁବାବୁ ସେଥିପ୍ରତି ଆକୃଷ୍ଟ ହୁଅନ୍ତି । କାର୍ଯ୍ୟାରମ୍ଭ ହୋଇ ତା'ର ମୁଖପତ୍ର ରୂପେ ପାକ୍ଷିକ "ସର୍ବହରା" ପ୍ରକାଶ ପାଏ ଆଉ ତା'ର ସମ୍ପାଦକ ହୁଅନ୍ତି ଶ୍ରୀ ରଘୁନାଥ ଦାସ । ଏସ୍. ୟୁ. ସି. ଆଇ. ର କେନ୍ଦ୍ର କମିଟି ସଚିନ୍ ବାନାର୍ଜି ନାମକ ଜଣେ ଅତି ଅହଙ୍କାରୀ ଭଦ୍ରଲୋକଙ୍କୁ ଓଡ଼ିଶା ସଙ୍ଗଠନର ଦାୟିତ୍ୱ ଦିଅନ୍ତି । ମୁଁ ଗୋଆ ସତ୍ୟାଗ୍ରହରେ ଯୋଗ ଦେବାକୁ ଯିବା ଆଗରୁ କଟକ ସହରରେ ଏସ୍. ୟୁ. ସି. ଆଇ. ର ଯୋର୍ ସୋରର କାର୍ଯ୍ୟ ଆରମ୍ଭ ହୋଇ ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟି ସହିତ ମଧ୍ୟ ହାତାହାତି ହୋଇଯାଇଥିଲା । ଏସ୍. ୟୁ. ସି. ଆଇ.ର ତତ୍ତ୍ୱ, ମତ, ଆଦର୍ଶ, ତା'ର ମୁଖପତ୍ର, ସାହିତ୍ୟ ସବୁକୁ ନିୟମିତ ପଢୁଥିଲି । କଟକ ଫେରି ଆସିଲା ପରେ ମୋତେ ଏକ ରାଜନୈତିକ ସିଦ୍ଧାନ୍ତ ନେବାକୁ ପଡ଼ିଲା । ୧୯୫୫ ମସିହା ଅକ୍ଟୋବର ତା୧୭ରିଖରେ ବିଧିବଦ୍ଧ ଭାବରେ ମୁଁ ଏସ୍. ୟୁ. ସି. ଆଇ.ର କଟକ ସିଟି ସେଲ୍‌ର ସଭ୍ୟ ହୋଇ କାର୍ଯ୍ୟ ଆରମ୍ଭ କଲି ଏବଂ ମଙ୍ଗଳାବାଗରେ ଥିବା "ବିନ୍ଦୁ ପ୍ରେସ" ଯେଉଁଠିକି "ସର୍ବହରା" ମୁଦ୍ରିତ ହେଉଥିଲା, ସେଇଠି ମୋର ରହିବାର ବ୍ୟବସ୍ଥା ହେଲା । ସୁକିନ୍ଦା, ଜଗତ୍‌ସିଂହପୁର, କେଉଁଝରର ଖଣି ଇଲାକା ମାନଙ୍କରେ ମୁଁ ଏକାକାର ହୋଇଥିଲି ଜନସାଧାରଣଙ୍କ ସହିତ । ମୋର କ୍ରମବର୍ଦ୍ଧମାନ ଜନସମ୍ପର୍କ ଓ ଲୋକପ୍ରିୟତା ଫଳରେ ଏସ୍. ୟୁ. ସି.ର ଓଡ଼ିଆ ତଥା ଅଣଓଡ଼ିଆ ନେତାମାନେ ଆତଙ୍କିତ ହୋଇ ଉଠି ମୋର ଏକ ବିରୋଧୀଚକ୍ର ଗଠନ କରିଥିଲେ । ସୋସ୍‌ଲିଷ୍ଟ ପାର୍ଟି ଭିତରେ ଯେଉଁ ଜଘନ୍ୟତାକୁ ଦେଖି ମନ ମୋର ବିଷାକ୍ତ ହୋଇ ଉଠିଥିଲା, ଏସ୍. ୟୁ. ସି. ଭିତରେ ତା'ର ପୁନରାବୃତ୍ତି ଘଟଣା ମୋତେ ଅତ୍ୟଧିକ ବିଦ୍ରୋହୀ କରି ଠିଆ କଲା । ସେଣ୍ଟର ମଧ୍ୟରେ ଉପଦଳୀୟ କାର୍ଯ୍ୟକଳାପ ଓ ଅନ୍ତର୍ଦ୍ୱନ୍ଦ୍ୱ ତୀବ୍ରତର ହେବାକୁ ଲାଗିଲା । ସଚିନ୍ ବାନାର୍ଜିଙ୍କ ହୁକୁମ ମଧ୍ୟ ବେକ୍ତୁବେଲ ହୋଇ ଉଠିଲା ଅସହ୍ୟ । ମୁଁ ଏସବୁ ଘଟଣାକୁ ଧାଲଲ ଭାବେ ପ୍ରସ୍ତୁତ କରି, ଏସ୍. ୟୁ. ସି.ର ସାଧାରଣ ସମ୍ପାଦକ ୰ ଶିବଦାସ ଘୋଷଙ୍କ ପାଖରେ ପଠାଇଲି । ଏଣେ ଶ୍ରୀ ରଘୁନାଥ ଦାସ ଓ ଅନ୍ୟ କେତେକ କର୍ମୀ ମଧ୍ୟ ଦଳତ୍ୟାଗ କରିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । ଅବସ୍ଥା ଏପରି ସୀମାକୁ ସ୍ପର୍ଶ କଲା ଯେ, ୰ ଶିବଦାସ ଘୋଷ ଘଟଣାର ଅନୁସନ୍ଧାନ ପାଇଁ କଟକ ଆସି ଝୋଲସାହିସ୍ଥ ରଘୁନାଥ ଦାସଙ୍କ ଘରେ ଆତିଥ୍ୟ ଗ୍ରହଣ କଲେ । ଶ୍ରୀ ସଚିନ୍ ବାନାର୍ଜିଙ୍କ ବିରୁଦ୍ଧରେ

ଆଗତ ଗୁରୁତର ଅଭିଯୋଗ ଗୁଡ଼ିକ ଓ ଦୋଷ ଏଡ଼ାଇ ଯିବାକୁ ବାରମ୍ବାର ଉଦ୍ୟମ କରିବା ଫଳରେ ମୁଁ ଯେପରି ଉତ୍ତ୍ୟକ୍ତ ହୋଇ ଉଠିଥିଲି । ଅବସ୍ଥା ଅସମ୍ଭାଳ ହୋଇ ଶ୍ରୀ ଘୋଷ ଓ ଶ୍ରୀ ବାନାର୍ଜିଙ୍କ କଟକ ତ୍ୟାଗ ମଧ୍ୟ ବାଧ୍ୟକର ହୋଇ ଉଠିଥିବ । ଏ ଘଟଣା ବୋଧହୁଏ ୧୯୪୭ ମସିହା ଫେବୃଆରୀ ମାସର ଘଟଣା । ପ୍ରକାଶ ଥାଉକି, ଏସ୍. ୟୁ. ସି. ରେ ଥିବାବେଳେ ମୋ ରଚିତ ଏକ ଗୀତିକବିତା ପୁସ୍ତକ "ସର୍ବହରା" ଆତ୍ମପ୍ରକାଶ କରିଥିଲା । ତା'ର ମୂଲ୍ୟ ଥିଲା ଦୁଇ ପଇସା ମାତ୍ର । * ଗୋଆ ଯିବା ଆଗରୁ ମୋର ପ୍ରଥମ ପ୍ରକାଶିତ କବିତା ଥିଲା "ଅନ୍ଧକାରର ଆଉ ଡେରି ?" ତାହା ପ୍ରକାଶିତ ହୋଇଥିଲା କଳିକତାରୁ ଶ୍ରୀ ପଦ୍ମମଣି ପରିଜାଙ୍କ ସମ୍ପାଦନାରେ ପ୍ରକାଶିତ "ସାପ୍ତାହିକ ଶ୍ରମିକ" (୧୯୪୬ ଜୁଲାଇ ୨ୟ ସଂଖ୍ୟା)ରେ ।

ବାମପନ୍ଥୀ ଦଳମାନଙ୍କର ମଞ୍ଚରେ ଅପସରି ଯାଇଛୁ ଆଗରୁ—ଆଗରେ ଅଜଣା, ଅଜଣା ଲକ୍ଷ୍ମୀଛଡ଼ା ଉଦ୍‌ଭ୍ରାନ୍ତ ଭବିଷ୍ୟତ । ପୁଣି ପୂର୍ବର ସେହି ଝଞ୍ଜାକ୍ଷୁବ୍ଧ ଅବସ୍ଥା ସହିତ ଭେଟ । ବନ୍ଧୁପ୍ରେସ, ଏସ୍. ୟୁ. ସି., ରଘୁନାଥ ଦାସଙ୍କ ବାସଗୃହ ସବୁକିଛୁ ପଡ଼ିରହିଲା ପଛରେ । ଚିନ୍ତା ହେଲା ଅଗ୍ରଗତି, ସ୍ଥିତି, ଅନ୍ନବସ୍ତ୍ର, ଆଶ୍ରୟ, ପୃଷ୍ଠପୋଷକତାର ଅନ୍ୱେଷଣ ।

ବୁଲିଲି ସାରା କଟକ ସହର ଲକ୍ଷ୍ୟହୀନ ଭାବରେ ସକାଳୁ ସନ୍ଧ୍ୟାଯାଏଁ । ମଣିଷ ଏତେ ବୁଲିପାରେ ! ଓଃ ! କି କ୍ଲାନ୍ତିକର ସତେ ! ତା ଉପରେ ପୁଣି ଅର୍ଦ୍ଧାହାର, ଅନାହାର । ଆଶ୍ରୟ ସ୍ଥଳ ଅନିଶ୍ଚିତ ।

ସ୍ୱର୍ଗତ ଜାତୀୟକବି ବୀରକିଶୋର ଦାସ ରହୁଥାନ୍ତି କାଳୀଗଳିରେ ଆଉ ତାଙ୍କର ସମ୍ପାଦନାରେ ସେତେବେଳେ 'ଶିଶୁପତ୍ରିକା "ମୋ ଦେଶ" ପ୍ରକାଶିତ ହେଉଥାଏ । ବୀରବାବୁ ମୋ ଜନ୍ମସ୍ଥାନ ନବାପାଟଣା ଗାଁର ଠିକେ

---

* "ମୋର ମନେ ପଡ଼ୁଛି, ଏହି ଶିରୋନାମାରେ ('ସର୍ବହରା'-ଲେ :) ପ୍ରକାଶିତ ୨୦ବର୍ଷ ତଳର ଏକ କବିତା ପୁସ୍ତିକା । ତା'ର ପୃଷ୍ଠପୋଷକତା କରିବା ଲାଗି ନଥିଲେ କୌଣସି ପ୍ରକାଶନ ଅନୁଷ୍ଠାନ । ଗାଇ ଶୁଣାଇ ମନୋରଞ୍ଜନ କରି ପାରିଲେ ଶ୍ରୋତା ପୁସ୍ତିକାର ମୂଲ୍ୟ ବାବଦ ଦୁଇ ପଇସା ଦେଇପାରେ । ସେହି ପୁସ୍ତିକା ଥିଲା କବିଙ୍କର କାବ୍ୟ ପ୍ରତିଭାର ପ୍ରଥମ ସ୍ୱୀକୃତି ।" (ଶ୍ରୀ ରଘୁନାଥ ଦାସ : "ଝଙ୍କାର"— ଜାନୁଆରୀ, ୧୯୬୭– 'ଗ୍ରନ୍ଥ ବିଚାର' ।

ଦୂରର ଅର୍ଥାତ ପୁନଙ୍ଗ ବା ପୂର୍ଣ୍ଣଗ୍ରାମର ଅଧିବାସୀ । ତା ଛଡ଼ା ସେ ମୋ ବାପାଙ୍କର ସ୍ୱାଧୀନତା ସଂଗ୍ରାମର ସହକର୍ମୀ । ସେ ଥିଲେ ଲୋକାଲ ବୋର୍ଡ଼ର ଚେୟାରମ୍ୟାନ ଆଉ "ପ୍ରେସ୍ ଟ୍ରଷ୍ଟ କମିଟି"ର ସମ୍ପାଦକ । ଯୁଦ୍ଧଯୁଗରେ ତାଙ୍କ ରଚିତ ସଙ୍ଗୀତ ଗାଇ ମୁଁ ଜନମତକୁ ଉତ୍ତ୍ୟକ୍ତ କରୁଥିଲି ଇଂରେଜ ସରକାର ବିରୁଦ୍ଧରେ । ଶୀତିବାବୁ ମୋର ଏପରି ଅବସ୍ଥାରେ ବ୍ୟଥିତ ହୋଇ ମୋତେ ତାଙ୍କ ବାସଗୃହରେ ଆଶ୍ରୟ ଦେଲେ । ଆଶ୍ରୟ ମିଳିଲା ସତ; କିନ୍ତୁ ଖାଦ୍ୟ, ବସ୍ତ୍ର, ଭବିଷ୍ୟତ ସଂସ୍ଥାନ ? ସେହି ଚିନ୍ତାରେ ଦିନତମାମ ବୁଲିଲି ହୋକ-ଉପବାସରେ । ଶୀତିବାବୁ ବେଳେବେଳେ ମୋତେ ସାମାନ୍ୟ ଆର୍ଥିକ ସାହାଯ୍ୟ କରନ୍ତି, କେବେ କେବେ ନିଜ ଘରେ ମଧ୍ୟ ଖାଇବାକୁ ଡାକନ୍ତି । ଏତିକି ବେଳେ ୰ ଚିନ୍ତାମଣି ମିଶ୍ର ବୁଦ୍ଧମାଚୌକ ଠାରେ ନବଜୀବନ ପ୍ରେସ୍ ପ୍ରତିଷ୍ଠା କରି 'ନବଜୀବନ' ପତ୍ରିକା ପ୍ରକାଶନ ଆରମ୍ଭ କରିଥା'ନ୍ତି । ଚିନ୍ତାମଣି ବାବୁଙ୍କ ସହିତ ମୋର ଗଭୀର ଆତ୍ମିକ ସମ୍ପର୍କ ପୂର୍ବରୁ ବର୍ଣ୍ଣିତ ହୋଇଛି । ତାଙ୍କ ଘରେ ମଧ୍ୟ ବେଳେବେଳେ ମୋର ଖାଇବାଟା ଚାଲିଯାଉଥିଲା । ମୁଁ ଭବିଷ୍ୟତରେ ଜଣେ ସାହିତ୍ୟିକ ବା କବି ହୋଇ ଠିଆ ହେବି, ଏହା ସେତେବେଳେ ମୋର କଳ୍ପନାତୀତ ଥିବାରୁ ଭବିଷ୍ୟତ ଅନ୍ନସଂସ୍ଥାନ, ସାଧାରଣ ସଂସାରୀ ମଣିଷଟିଏ ହୋଇ ବଞ୍ଚି ରହିବା ଲାଗି ମୋର ଆପ୍ରାଣ ପ୍ରଚେଷ୍ଟାର ଅନ୍ତ ନଥିଲା । ସେତେବେଳେ ୰ ବୀରେନ୍ ମିତ୍ର ଓଡ଼ିଶାର ଜନଜୀବନ ଓ ରାଜନୀତିରେ ଏକ ମହାପ୍ରତାପୀ ଭାବମୂର୍ତ୍ତି । ତାଙ୍କ 'ଦରବାର'ରୁ ମିଳେ ଅର୍ଥ, ସମ୍ମାନ, ନ୍ୟାୟ । ସେହି ଆଶାରେ ବେଳେ ବେଳେ ଯାଇ ତାଙ୍କ 'ଦରବାର'ରେ ମୁଁ ହାଜର ହୁଏ । ସେ ସେତେବେଳେ ମୋତେ କିଛି ଆର୍ଥିକ ସାହାଯ୍ୟ ଦେବା ପାଇଁ ତାଙ୍କ ଦକ୍ଷିଣହସ୍ତ ୰ କପିପୁତ୍ର ଭଲ୍ଲାଙ୍କୁ ନିର୍ଦ୍ଦେଶ ଦିଅନ୍ତି । ମୁଁ ବୀରେନଦାଙ୍କୁ କୁହେ, "ଦାଦା, ମୋ ପାଇଁ ଗୋଟାଏ କିଛି ରୋଜଗାରକାରୀ ବ୍ୟବସ୍ଥା କରିଦିଅନ୍ତୁ ନା !" ସେତେବେଳେ ସେ ତତ୍କାଳୀନ ଅତି ସୁବାସିତ କ୍ୟାପଷ୍ଟେନ୍ ସିଗାରେଟ୍‌ର ଧୂଆଁ ଗୁଡ଼ି କହନ୍ତି, "ଯାଃ, ତୁ ଗୋଟାଏ କ'ଣ ରୋଜଗାର କରିବୁ ?" ତା'ପରେ ଆର୍ଥିକ ସାହାଯ୍ୟ କିଛି ଧରି ମୁଁ ଫେରିଆସେ । ତାଙ୍କର ସେହି କ୍ରମାଗତ ଆର୍ଥିକ ସାହାଯ୍ୟ ସେତେବେଳେ ମୋତେ ଯଥେଷ୍ଟ ସାହାଯ୍ୟ କରିଥିଲା । ଏତଦ୍ ବ୍ୟତୀତ ୰ ଅଧ୍ୟାପକ ରତ୍ନାକର ପତି, ୰ ପ୍ରାଣବନ୍ଧୁ ସାହୁ, ୰ ଆଡଭୋକେଟ୍ କ୍ଷେତ୍ରମୋହନ ସ୍ୱାଇଁ, ଆଡ୍‌ଭୋକେଟ୍ ଗିରିଜା ଶଙ୍କର ବହିଦାର, ତତ୍କାଳୀନ ବିଧାନସଭାର ବାଚସ୍ପତି ୰ ଲାଲମୋହନ

ପଟ୍ଟନାୟକ, ୰ ଆଡ଼ଭୋକେଟ୍ ହେମେନ୍ଦ୍ରନାଥ କାନୁନ୍‌ଗୋ, ଆଡ଼ଭୋକେଟ୍ ଦାମୋଦର ମହାନ୍ତି, ଶ୍ରୀ ଦାମୋଦର ଶ୍ୱେଟରସ୍ଥ ଆଇ: ପି: ଏସ୍:, ୰ ଅଡ଼୍‌ଭୋକେଟ୍ ଦିଗମ୍ବର ଭୂୟାଁ, ଶ୍ରୀ ବୃନ୍ଦାବନ ନାୟକ ପ୍ରମୁଖଙ୍କ ସାମୟିକ ଆର୍ଥିକ ସହାୟତା ମୋ ଅସ୍ତିତ୍ୱ ରକ୍ଷା ପାଇଁ ଏକାନ୍ତ ଦାୟୀ ଥିଲା ।

## ।। କୁତ୍ରାଖାଇ ଗଳି ।।

ଜାଜ୍‌ପୁ-କବି ନୀତକିଶୋରଙ୍କ ଘରେ ଆଉ ମନ ଲାଗିଲା ନାହିଁ । ଏକ ସ୍ୱାଧୀନ ଆଶ୍ରୟସ୍ଥଳର ବାସନା ଜାଗିଲା । କିନ୍ତୁ ଘରଟିଏ ଭଡ଼ା ନେଇ ରହିବା ଥିଲା ମୋ ପକ୍ଷରେ ଅସମ୍ଭବ । ପାଞ୍ଚଟି ଟଙ୍କା ଦେବାର ଯେତେବେଳେ ଯାହାର ହାତରେ ପଡ଼ିଲେ ଯିଏ ।୮।୧୦ ଦିନ ଆର୍ଥିକ ଦୁଶ୍ଚିନ୍ତାରୁ ମୁକ୍ତ ରହୁଥିଲା, ସିଏ ପୁଣି ନେବ ଘର ଭଡ଼ା !

ଲକ୍ଷ୍ୟହୀନ ଭ୍ରମଣ, ଅନିଶ୍ଚିତ ଭବିଷ୍ୟତର ଅନ୍ଧକାର ବକ୍ଷ ଭେଦ କରି ବୁଲୁ ବୁଲୁ ଦିନେ କୁତ୍ରାଖାଇ ଗଳିବାଟେ ମଣି ଦରଘା ବଜାର ଆଡ଼େ ଯାଉଥିଲି । ପ୍ରକାଶ ଥାଉକି, କଟକ ଭିକ୍ଟୋରିଆ ସ୍କୁଲ ବା "ଭକ୍ତମଧୁ ବିଦ୍ୟାପୀଠ" ପାଖ ଚମାର ସାଇ ଗଳିର ଏହି ନାମ । ଏହି ଗଳି ଭିତର ଦେଇ ଗଲେ ଓଡ଼ିଆ ବଜାରରେ ବାହାରିବାକୁ ହୁଏ । ୧୯୫୬-୫୭ ସାଲରେ ଏ ଗଳିର ପରିବେଶ ଯିଏ ଦେଖିଥିବ, ସେହି କେବଳ କହିବ କଟକ ସହର ଭିତରେ ଏହା ଏକ ସ୍ୱତନ୍ତ୍ର ଦୁନିଆ । "ଭକ୍ତମଧୁ ବିଦ୍ୟାପୀଠ" ପଛ ଗଳିରେ ପ୍ରବେଶ କଲେ ଚମାର ସାଇର ଆରମ୍ଭ । ଅଣଓସାରିଆ କଚ୍ଚାରାସ୍ତାର ଦୁଇ ପାଖରେ ଧାଡ଼ି ଧାଡ଼ି ଗୃହଘର—ଗଛ ଛୁଇ ଡଙ୍କା । ସାଇ ମଝିରେ ଏକ ଗଛ ମୂଳେ ବାସେଲୀ ଠାକୁରାଣୀଙ୍କ ଆସ୍ଥାନ । ଦିନର ପ୍ରଖର ସୂର୍ଯ୍ୟାଲୋକରେ କୁତ୍ରାଖାଇ ଗଳିର ପ୍ରକୃତ ଚେହେରା ଦେଖିବାକୁ ମିଳେ ନାହିଁ । ଗଳିର ଅଧିବାସୀ ପୁରୁଷଲୋକେ କିଏ ବରଡ଼ା ଡାଟ ଭିଡ଼େ ତ କିଏ ଅନ୍ୟ କାମଧନ୍ଦାକୁ ଯାଏ । ଦିନ ତମାମ ସେମାନଙ୍କ ଦର୍ଶନ ମିଳେ ନାହିଁ । କଟକ ନଗରୀ ଉପରେ ଯେତେବେଳେ ନଇଁ ଆସେ ତ୍ରିଯାମ-ରଜନୀର ଯବନିକା, କୁତ୍ରାଖାଇ ଗଳି ତା'ର ନିଜସ୍ୱ ରୂପ ଧାରଣ କରେ । ଗଳିର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ମ୍ୟୁନିସିପାଲିଟିର କିରୋସିନ ଲାଇଟ୍ ଖୁଣ୍ଟଗୁଡ଼ିକ କେତୋଟି ଘଣ୍ଟା ପାଇଁ ହସି

ଭୂଚମନ୍ତ୍ର ଏକ ପୀଡାଭ୍ର ହସ । ତା'ପରେ ତାହା ମିଳେଇ ଯାଏ ରାତିର ଅନ୍ଧକାର ମଧ୍ୟରେ । ଅନ୍ଧାର···ଅନ୍ଧାର···ଗୁଡ଼ଆଡ଼େ ଘନଘୋର ଅନ୍ଧକାର । ତା'ର ଭିତରେ ଜୁଳ୍ ଜୁଳୁଆ ପୋକମାନଙ୍କର ଦେହଜ ଫସ୍‌ଫରସ୍ ଆଲୋକର ରୋଶଣୀ, ଝିଙ୍କାରୀମାନଙ୍କର ଗତାନୁଗତିକ ଚିତ୍କାର, ବୁଲା କୁକୁରମାନଙ୍କ ଭିତରେ ଅବିରାମ ଝଗଡ଼ା । ଓ ଚିତ୍କାର ସହିତ ଗଳିର ଅଧିଷ୍ଠାତ୍ରୀ ଦେବୀ ବାସେଳୀଙ୍କ କ୍ଷୁଦ୍ର ଆସ୍ଥାନ ସାମ୍ନାରେ ସ୍ତୂପୀକୃତ ବଗ୍ ପିଆଜ, କଞ୍ଚା ପିଆଜ, ଭକ୍ତବୃନ୍ଦଙ୍କ ବୈଠକ ମାଙ୍ଗକୁ ଗୁଣ୍ଡଳା ମଦ ବୋତଲର ଠଣ୍‌ଠାଣ୍ ଆବାଜ୍ ପରିବେଶକୁ ବିଚିତ୍ର କରି ତୋଳେ । କେବଳ ସେତିକି ନୁହେଁ, ସାରା କୁତ୍ସିଖାଇ ଗଳିଟା ସନ୍ଧ୍ୟା ପରେ ପରେ ହୋଇ ଉଠେ ମାତାଲ । ଗଳିର ଘରେ ଘରେ ବେଆଇନ ମଦ ବ୍ୟବସାୟ ଅବାଧ ବିପଣୀ ଖୋଲେ ଭୋର ପର୍ଯ୍ୟନ୍ତ । ସ୍ତ୍ରୀ ଲୋକେ ମଦ ପିଇ ମାତାଲ ହେବା ମୁଁ ଜୀବନରେ ପ୍ରଥମ ଥର ପାଇଁ ଦେଖିଥିଲି ସେହି କୁତ୍ସିଖାଇ ଗଳିରେ । ପିଟାପିଟି, ମାରଧର, ଅଶ୍ଳୀଳ କଥୋପକଥନ ଏବଂ ଚିତ୍କାର ତମାମ ରାତିଟାକୁ ସରଗରମ କରି ରଖେ । ବିଚିତ୍ର ଏହାର ନରନାରୀ, ବିଚିତ୍ର ଏହାର ଜୀବନର ଗତିଧାରା ।

ହଁ, ଏଇ ଗଳିବାଟେ ସେଦିନ ଧାଉଁ ଯାଉଁ ଗଳି ମହିର ବାସେଳୀ ଠାକୁରାଣୀଙ୍କ ଆସ୍ଥାନର ବିପରୀତ ଦିଗରେ ଥିବା ନୂଆଁଳିଆ ଗୁଳଘର ପିଣ୍ଡାରେ ଯୁବକଟିଏ ବସି ବିଡି ଟାଣୁଥିଲା । ତାକୁ ଦେଖିଦେଇ ମୋ ପାଟିରୁ ବାହାରି ପଡ଼ିଲା, "ବାବୁ, ଏଠି ଘର ଖାଲି ଅଛିକି ?"

"କିଏ ରହିବ ?" ସେ ପଚାରିଲା ।

କହିଲି, "ମୁଁ ।"

"ଏକା ରହିବ ନା ପିଲାପିଲି ନେଇ ?"

"ଏକା ।"

ଯୁବକ ମୋର ଆପାଦମସ୍ତକ ଥରେ ଚାହିଁ ଦେଇଗଲା । ଦେଖିଲି ଅଖି ଦୁ'ଟା ତା'ର ଗାଢ଼ ଲାଲ । ପାଖରେ ତା'ର ଠିଆ ହୋଇଥିଲା ଜଣେ ଗୁରୁନିତମ୍ବିନୀ ପୀନବକ୍ଷା ଶ୍ୟାମାଙ୍ଗୀ ଯୁବତୀ । ଯୁବକ ବାରଣ୍ଡାରୁ ଓହ୍ଲାଇ ଆସି କହିଲା "ଆସ !" ତା' ପଛେ ପଛେ ଗଲି । ଉତ୍ତର ଦିଗରୁ ଦକ୍ଷିଣ

ଆଡ଼କୁ ଦଶ କୋଡ଼ିଏ ହାତ ଗଲା ପରେ ଡ଼ାହାଣହାତ ଗୋଟାଏ ଘର ଦୁଆର ମୁହଁର ସେ ଏକ ବରଡ଼ା ତାଟି ଖୋଲଲା । ଭିତରକୁ ପଶି ଦେଖିଲି ଗୋଟିଏ ମାତ୍ର ଘର—ଛଅଫୁଟରେ ଆଠଫୁଟ ଲମ୍ବାଚଉଡ଼ା । ଘରର ମୁହଁ ଦକ୍ଷିଣ ଆଡ଼କୁ । ଘରର ଠିକ ସାମ୍ନାରେ ଅଳ୍ପ ଦୂରରେ ଏକ କ୍ଷୁଦ୍ର ଅଥଚ ଅବ୍ୟବହୃତ ଗମ୍ଭୀର ପୁଷ୍କରଣୀ । ଉତ୍ତର ଦିଗ ଅର୍ଥାତ୍ ଘରର ପଛପଟ ହେଉଛି ଗଳି ମଝିର ମୁଖ୍ୟ ଯାତାୟତ ପଥ । ତା’ର କଡ଼ରେ ଘରର ବାରନ୍ଦା—ଯାହା ଉପରେ କି ଘର-ମାଲିକ ଯୁବକଟି ବସିଥିଲା । ହେଲେ ଘର ଭିତରୁ ଗଳିର ପ୍ରଧାନ ରାସ୍ତାକୁ ଗୋଟିଏ ଜଳା ଜବାଟିଏ ଅଛି । ଘର ଭିତରେ ଗୋଟିଏ ଶକ୍ ପାର ଛିଣ୍ଡା ଛତା ଉଠି ଯାଇଥିବା ଗଦି କାନ୍ଥକୁ ଆଉଜା ହୋଇ ବିଶ୍ରାମ ନେଉଛି । ଉପର ପଙ୍ଗାରେ ଗୋଟାଏ ପୁରୁଣା କାଳର ଘୋଡ଼ାଗାଡ଼ି ଚକ, ତା ଉପରେ ଛିଣ୍ଡା ଅଖା ବୋଝେ । ସେଇ ଘରକୁ ଲଗି ଅନ୍ୟ ଏକ ବଖରା ଘରେ ଘର-ମାଲିକ ଯୁବକଟି ରୁହନ୍ତି । ନାମ—ଲକ୍ଷ୍ମଣ ବେହେରା, ମୁଖ୍ୟ ବ୍ୟବସାୟ—ରୈବମଦ । ପଚାରିଲି—‘ଘରର ଭଡ଼ା କେତେ ?’ ଯୁବକ କହିଲା ମାସିକ ୩ଟଙ୍କା । ପାଖରେ ଥିଲା ଗୋଟିଏ ଟଙ୍କା, ସେତକ ତାକୁ ଆଡ଼ଭାନ୍ସ ଦେଇ ଘରେ ତାଲା ପକାଇ ଫେରି ଆସିଲି ଜାଣିଥିବା ଯୁବକଙ୍କ ଘରକୁ ! ତାଙ୍କୁ ସବୁ କଥା କହିବାରୁ ସେ ଯଦିଓ ଆପତ୍ତି କଲେ ନାହିଁ; ସନ୍ତୁଷ୍ଟ ମଧ୍ୟ ହେଲେ ନାହିଁ । ମୋ ପ୍ରତି ତାଙ୍କର କିଛି ଅବହେଳା ଯୋଗୁଁ ମୁଁ ସ୍ଥାନ ତ୍ୟାଗ କରୁଛି ବୋଲି ତାଙ୍କର ଧାରଣା ହୋଇଥିଲା । ମୁଁ ସ୍ୱଇଚ୍ଛାରେ ଯାଉଛି, ତାଙ୍କର ସ୍ନେହ ଶ୍ରଦ୍ଧା ତଥା ସହାୟତା ପାଇଁ ମୁଁ ଚିରଋଣୀ ବୋଲି କହି ମୋର ଭଙ୍ଗା ଟିଣ ସୁଟ୍‌କେସ୍, ଫଟା ଆଲୁମିନିୟମ ଡ଼ାଳି, କାଗଜପତ୍ରର ବିଡ଼ା ଧରି ଗୋଡ଼ କାଢ଼ିଲା ବେଳେ ଜବର୍ଦ୍ଦସ୍ତି ମୋତେ ଦେଇଥିଲେ ପାଞ୍ଚୋଟି ଟଙ୍କା । ସେତେବେଳେ ଦିନ ରାତି ରାତି ହେଉଥାଏ ।

କୁମ୍ଭୀଖାଇ ଗଳିର ସେଇ ଘର ବଖରାକ ଭିତରେ ପଶି, ଜିନିଷପତ୍ର ରଖିଦେଇ, ରାଜବଜାର ଛକରୁ ଯାଇ କିଣିଲି ଗୋଟିଏ ଡ଼ବିରି ଓ କିରୋସିନ ଏବଂ ରାତିଭୋଜନ ପାଇଁ ମୁଢ଼ି ଆଉ ଚିନାବାଦାମ । ଯାଃ ! ଏତେଦିନକେ ଏକ ସ୍ୱାଧୀନ ଆଶ୍ରୟସ୍ଥଳର ମୁଁ ଅଧିକାରୀ । ଏଇ ଚିନ୍ତା ନେଇ ଦୀର୍ଘଶ୍ୱାସ ମୋଚନ କଲାବେଳେ ଘର ମାଲିକ ଲକ୍ଷ୍ମଣ ଅସି ପହଞ୍ଚି ଦେଖିଲା ମୋର ଶୋଇବାକୁ ବିଛଣାପତ୍ର କିଛି ନାହିଁ । ସେଇଠୁ ସେ ଅନୁମାନ କରିନେଲା

ଯେ, ମୁଁ ଜଣେ ଅତି ଦରିଦ୍ର ଲୋକ । ଅନେକ ସମୟ ବସି ମୋ ସହିତ ଗପସପ କଲା ପରେ ମୋ ସମ୍ପର୍କରେ କଳ୍ପିତ ଧାରଣା ତାର ଜନ୍ମିଲା । ସେଇ ଧାରଣା ମଧ୍ୟରେ ଥିଲା ଏକ ନୀରବ ଶ୍ରଦ୍ଧା । ସେ ତା' ଘରୁ ଦୟା ପରବଶ ହୋଇ ମୋତେ ଆଣି ଦେଇଥିଲା ଖଣ୍ଡେ ପୁରୁଣା ମସିଣା । ସେହି ମସିଣାଟିରେ ବସି ମୁଁ ମୋର ସାହିତ୍ୟ ସାଧନା କରିଥିଲି କେତେକ ମାସ ଧରି ।

ରାତି ବେଳେ, କୁଉଖାଇ ଗଳିର କୁକୁରକୁକୁରୀମାନଙ୍କର ହିଂସ୍ର ଚିତ୍କାର ସହିତ ମାତାଲ ସମଗ୍ର ଗଳିଟା ପଦାକୁ ବାହାରି ଆସେ । ମାରପିଟ୍, ଧୂମଧାମ ବୋତଲ ଭଙ୍ଗାର ଝଣ୍ ଝଣ୍ ଶବ୍ଦ ସହିତ ହଠାତ୍ ମୋର ଅବସ୍ଥାନ ଅତିଷ୍ଠ ହୋଇ ଯାଉଥିଲା । ନିର୍ବିକାର ନିର୍ବେଦ ଭାବ ମନେ କରି ମୋର ସେହି ମୌନ ବୋଧଦ୍ରୁମ କ୍ଷୁଦ୍ର ଘର ବଖରାଟି ଭିତରେ ବସି, ଡିବିରିର ନିସ୍ତେଜ ହଳଦିଆ ଆଲୁଅ, କଳା ଧୂଆଁର ମେଘ ତଳେ ମୋର ରୁଦ୍ର ସାଧନା ଚାଲିଥିଲା ବୁଦ୍ଧତ୍ୱ ପ୍ରାପ୍ତି ଆଶାରେ ନୁହେଁ, ସୃଷ୍ଟିର ସାଫଲ୍ୟ ପାଇଁ । ଆଖି ପଲକରେ ଚନ୍ଦ୍ରର ଗୁରୁଭାର ଯେତେବେଳେ ଅସହ୍ୟ ହୁଏ, ଗୋଟିଏ ଫୁତ୍କାରରେ ଡିବିରିଟାକୁ ନିଭାଇ ଦେଇ ହକ୍‌ସାର ସେହି ଛିଣ୍ଡା ଗଦିଟାକୁ ତକିଆ କରି ସେହି ପୁରୁଣା ମସିଣାଟି ଉପରେ ଲୋଟାଇ ଦିଏ ଦେହଟାକୁ । ରାତି ପାହେ, ଘର ସାମ୍ନାର ଅଣ୍ଡା ସେହି ସଜନା ଗଛ ଡାଳରେ ସକାଳର କାକ ଡାକ ଡାକ ଫେରିଯାଏ, ତଥାପି ନିଦ ଭାଙ୍ଗେନା । ହଠାତ୍ କବାଟରେ ସେବତୀର କରାଘାତରେ ମୁଁ ଉଠି ବସେ । ସେବତୀ—ପ୍ରଥମ ଦିନ ଘର ମାଲିକ ସହିତ ଦେଖା ହେଲାବେଳେ ତା ପାଖରେ ଯେଉଁ ଶ୍ୟାମାଙ୍ଗୀ ଯୁବତୀ ଠିଆ ହୋଇଥିଲା ସେଇ ହେଲା ସେବତୀ । ବରୁଣ ସ୍ୱାମୀ ପରିତ୍ୟକ୍ତା । କବାଟ ଖୋଲିଲା ପରେ ହସି ଦେଇ ସେବତୀ ପଚାରେ, "କ'ଣ ପାହାନ୍ତି ଭାଙ୍ଗିବ ନାହିଁ ?" ତା' କଥାର ତାତ୍ପର୍ଯ୍ୟକତା ମୁଁ ବୁଝି ପାରେନା, ସାଧାରଣ ଭାବରେ ତାକୁ ଗ୍ରହଣ କରି ମୁଁ ହସି ଦେଇ ମୁହଁ ଧୁଏ । ମୋର ସେହି ହସରେ ସେ ପ୍ରଶ୍ରୟ ପାଉଥିଲା, ଏକଥା ମୁଁ ପରେ ଜାଣିବାକୁ ପାଇଥିଲି ଏକ ଥରଥର ଅନ୍ଧକାର ମଧ୍ୟରେ । ଦିନ ଅତିକ୍ରାନ୍ତ ହେବା ସଙ୍ଗେ ସଙ୍ଗେ ସେବତୀ ତା'ର ୩ବର୍ଷର ପୁଅଟିକୁ ଧରି ଆସି ମୋ ଘର ଦୁଆର ମୁହଁରେ ବସେ, ପୁଅକୁ ମୋ ପାଖକୁ ଛାଡ଼ିଦେଇ ମୋତେ "ମାମୁଁ" ବୋଲି ଡାକିବାକୁ ଶିଖାଏ । ମୁଁ ବେଳେ ବେଳେ ପିଲାଟାକୁ ନେଇ ଖେଳ କରେ । ତା ହାତରେ ମୁଢ଼ି ବିସ୍କୁଟ ଯାହା ମୋ ପାଖରେ ଥାଏ ନେଇ ଦିଏ । ଏ ସବୁକୁ ଓଲଟା ବୁଝି ସେବତୀ ତାର ନୈକଟ୍ୟକୁ ଘନିଷ୍ଠତର କରେ । ମୁଁ କିନ୍ତୁ ଅନାବିଳ । ତାର

ସେ କୈଶୋର୍ଯ୍ୟକୁ ଗୁରୁତ୍ୱ ଦିଏନା । ହଠାତ୍ ଲକ୍ଷ୍ୟ କଲି, ସେ ମୋ ଦୁଆର-ମୁହଁରେ ଅନେକ ରାତ୍ରି ପର୍ଯ୍ୟନ୍ତ ବସିବାକୁ ଆରମ୍ଭ କଲା । ତାର ବସିବାର ଭଙ୍ଗି ଅସଂଯତ । ମୁଁ ତାକୁ ଚାଲି ଯିବା ପାଇଁ ବି କହି ପାରେନା । ଏହିପରି ହାବଭାବ, ତା'ର ସେଠି ବସି ରହିବା ଅନେକଙ୍କୁ କେହି ଲକ୍ଷ୍ୟ ଦିଅନ୍ତି ନାହିଁ । କାରଣ, ସେ ସବୁଠା ସେଠି ଦେହରକ୍ଷା । କ୍ଷୁଧା ଆଉ ପ୍ରେମର ଶାସନ କୁମ୍ଭୀ-ଖାଇ ଗଳାରେ ଅତି ଦୃଢ଼ । ମୁଁ ସେତେବେଳେ ୨୩।୨୪ ବର୍ଷର ସୁନ୍ଦର ସ୍ୱାସ୍ଥ୍ୟବାନ ଯୁବକ, ପୁଣି ଅବିବାହିତ । ହେଲେ ବି ନାରୀର ଭୁଜବନ୍ଧନ ମୋ ପାଖରେ ଥିଲା ନିରର୍ଥକ ।

ବର୍ଷାଦିନର କଥା । ଗର୍ଜିଲ ଝଡ଼ତୋଫାନର ରାତି । ଗୃହଦ୍ୱାର ମେଘଗର୍ଜନରେ କମ୍ପମାନ । ଚରାଚର ସୁପ୍ତ, ମନଟା ଭଲ ନଥିବାରୁ ଚଞ୍ଚଳ ଶୋଇ ପଡ଼ିଥିଲି—ଗାଢ଼ ନିଦ ଲାଗି ଆସୁଥିଲା । ହଠାତ୍ ବାହାରେ କବାଟରେ ମୃଦୁ ଅସ୍ପଷ୍ଟ ଆଘାତ ଶୁଣି ଉଠିବସି କବାଟ ଖୋଲିବା ମାତ୍ରେ ଝଡ଼ବେଗରେ ଭିତରକୁ ପଶି ଆସିଲା ସେବତୀ । ନାକରେ ତାର ଖର ନିଃଶ୍ୱାସ, ପ୍ରାୟ ଅର୍ଦ୍ଧନଗ୍ନ । ଏ ଘଟଣାରେ ମୁଁ ହତବାକ୍, ଚିତ୍କାର ବି କରିପାରୁ ନାହିଁ । ଆରଘର ଭିତରେ ଘର ମାଲିକର ତୀବ୍ର ନାସିକାଧ୍ୱନି ଶୁଣା ଯାଉଛି । ଲତା ଯେପରି ମହୀରୁହକୁ ଗୁଡ଼ିଆଉ ପ୍ରାଣପଣେ ଜାବୁଡ଼ି ଧରେ ସେବତୀ ମୋତେ ସେତେବେଳେ ସେଇମିତି ଜାବୁଡ଼ି ଧରିଛି । ତାର ଦୁଇ ଉନ୍ନତ ପୀନସ୍ତନ ମୋର ବୁକୁ ଉପରେ ଦେଇଛି ପ୍ରଚଣ୍ଡ ଅର୍ଥାତ୍ କୋମଳ ଚାପ, ଦେହ ତାର କମ୍ପମାନ । ଏହା ସ୍ୱପ୍ନ ନୁହେଁ, ବାସ୍ତବ । ଏହି ବୀଭତ୍ସ-ବାସ୍ତବତା କବଳରୁ ମୁକ୍ତପାଇବା ପାଇଁ ମୁଁ ନୀରବ ପ୍ରଚେଷ୍ଟା ଆରମ୍ଭ କରିବା ମାତ୍ରେ ସେବତୀ ମୋତେ କେତୋଟି ଚୁମ୍ବନ ବି ଦେଇ ସାରିଥିଲା । ବଡ଼ କଷ୍ଟରେ ତାକୁ ଦୂରକୁ ଘୁଞ୍ଚାଇ ଦେଇ ମୁଁ "ବେରସିକ" ତାକୁ ଅନୁନୟ କଲି ସେ ଯେପରି ମୋତେ ଦୟାକରିରେ ଆଉ ଶୀଘ୍ର ଯେପରି ସେଠୁ ଚାଲିଯାଏ । କିନ୍ତୁ ସେ ତାର ପ୍ରଜ୍ୱଳିତ କାମାଗ୍ନିକୁ ନିର୍ବାପନ କରିବା ପାଇଁ ମୋତେ ମୂହଁ ଖୋଲି ନିବେଦନ କରିବା ସାଥେ ସାଥେ ସେଇ ରାତିରେ ତାକୁ ଧରି ଅନ୍ୟତ୍ର ପଳାଇ ଯିବାକୁ ମଧ୍ୟ କହିଥିଲା । ମୁଁ ତାକୁ କୌଣସିଥିରେ ସାହାଯ୍ୟ କରିପାରିବି ନାହିଁ ବୋଲି ଠେକ୍ ଠୋକ୍ କହିଦେବା ପରେ ସେ ମୋତେ ଭର୍ତ୍ସନା ପୂର୍ବକ "ମାଇଚିଆ" କହି ସେଠୁ ଚାଲିଯିବାକୁ ବାଧ୍ୟ ହୋଇଥିଲା । ତାପରେ ସାରାରାତି ମୁଁ

ଶୋଇନାହିଁ । ବିଚିତ୍ର ଆଉ ରୋମାଞ୍ଚକର ସେଇ ରାତି ଓ ଅନୁଭୂତି । ଏ ଘଟଣା ସେହିଦିନର ଯେଉଁ କାଳସର୍ପିର ମୁଦା ଲଫାଫାରେ ରହିଲା ବନ୍ଦ ହୋଇ । ବାହାର ଦୁନିଆ ତାର ଟେର୍ ପାଇନାହିଁ । ସେଇ ଘରେ ଥିବାବେଳେ ଦିନେ ଲକ୍ଷ୍ୟକଲି ମୁଁ ସେ ଘରେ ଏକୁଟିଆ ରହୁନାହିଁ । ଅଛି ଅନ୍ୟ ଏକ ପ୍ରାଣୀ । ସିଏ ହେଲା ଗୋଟାଏ ବୁଢ଼ା ଡ଼ମଣା ସାପ । ଝଙ୍କା ଉପରେ ପୋଳ ଘୋଡ଼ାଗାଡ଼ି ଚକାଟି ଅଛି, ତା' ଉପରେ ଯୋଉ ଛିଣ୍ଡା ଅଖା ବୋଝେ ଥିଆ ହୋଇଛି ତା'ରି ଭିତରେ ତାର ଆବାସ । ସେ ବେଳେବେଳେ ରାତିରେ ବାହାରି ସଙ୍ଗାଏ ସଙ୍ଗାଏ ମୂଷା ସନ୍ଧାନରେ ଯାଏ । ତା ପେଟତଳର ଧଳା ଅଂଶଟା ଉଜ୍ଜଳ ଆଲୁଅରେ ମୁଁ ସ୍ପଷ୍ଟ ଦେଖେଁ । କ୍ରମେ ମୁଁ ଅଭ୍ୟସ୍ତ ହୋଇଗଲି । ସେ ବି ଦିନେହେଲେ ତଳେ ବା ମୋ ଉପରେ ପଡ଼ିନାହିଁ ।

ଏଠି ଅପାର୍ଟମେଣ୍ଟରେ ଭଦ୍ର ଜୀବନ ବଞ୍ଚୁଥିବା ବେଳେ ମୋର ଦୈନନ୍ଦିନ ଜୀବନଯାତ୍ରା, ପ୍ରତିଦିନ ସକାଳୁ ମୋର ପ୍ରସ୍ଥାନ ଓ କେବେ ସନ୍ଧ୍ୟା କେବେ ରାତି ଅଧିକ ବେଳେ ମୋର ନୀରବ ଆଗମନ, ମଳିନ ଚେହେରା, ବିମର୍ଷ ଅଥଚ କ୍ଳାନ୍ତ ମୁଖଛବି ସବୁ କିଛି ଗଳିର ବାସିନ୍ଦାମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଆରମ୍ଭ କରେ । ସନ୍ଦେହ ଓ ଶ୍ରଦ୍ଧା ଉଦ୍ରେକ ହୁଏ ମୋ ପ୍ରତି, ତାହା ସହିତ କୌତୁହଳ ମଧ୍ୟ । ଘର ମାଲିକ ଲକ୍ଷ୍ମଣ ମଝିରେ ମଝିରେ ମୋର ଭଲ ମନ୍ଦ ବୁଝେରେ । କୋଉ ମାସରେ ଭଡ଼ା ଦେବାକୁ ଡେରି ହେଲେ ସେ ତା ତରଫରୁ କହେ, "ବାବୁ, ଭଡ଼ା ଦେବାକୁ ବ୍ୟସ୍ତ ହେବ ନାହିଁ । ସୁବିଧା ହେଲେ ଦିବ ନହେଲେ ନାହିଁ ।" ବିଚିତ୍ର ଲକ୍ଷ୍ମଣ ! ତାର ଦୁରନ୍ତ ଯୌବନକୁ ସେତେବେଳେ କୁଷ୍ଠରୋଗର ରାହୁ ପୂର୍ଣ୍ଣଗ୍ରାସ କରି ସାରିଥିଲା । ହେଲେ, ମନଟା ତାର ଥିଲା ନିରୋଗ ଆଉ ନିର୍ମଳ । ଲକ୍ଷ୍ମଣ ଆଜି ଇହଧାମରେ ନାହିଁ । ଅଛି ତା ଭାଇ ରାମ, ସିଏ କି ଏବେ କଟକ କଲେକ୍ଟୋରିଏଟ୍‌ର ରାସ୍ତାକଡ଼ରେ ବସି ଚଶମା ଓ ଫାଉଣ୍ଟେନ୍ ମରାମତି କରେ । ତାକୁ ଦେଖିଲେ ମୋର ମନେପଡ଼ିଯାଏ ଅତୀତର ସେଇ କୁହ୍ନାଖାଇ ଗଳିର ଜୀବନ, ତାର ବିଚିତ୍ର ପରିବେଶ, ଲକ୍ଷ୍ମଣ, ସେବତୀ ଓ ମଦ୍ୟପ ମଣିଷର ଦଳ ସହିତ ଚରୁଡ ମସିଣାଟି କଥା ।

ଏଇ ଗଳିର ନିଖୁଣ ଚିତ୍ର ରହିଛି ସେତେବେଳେ ମୋ ରଚିତ କ୍ଷୁଦ୍ରଗଳ୍ପ "ବାସ୍ତୁହରା"ରେ, ଯାହାକି ସେତେବେଳେ 'ନବଜୀବନ'ରେ ପ୍ରକାଶିତ ହୋଇ ପରେ ମୋର "ପରାସ୍ତ ସୈନିକ" ଓ "ବିବୁଧ" ଗ୍ରନ୍ଥରେ ସଂଯୋଜିତ

ହୋଇଛି । ଏଇଠି ଥିବାବେଳେ ୧୯୫୭ ଏପ୍ରିଲ୍ ମାସରେ ମୋର "ଉଦ୍‌ବସ୍ତ ସୈନିକ", କ୍ଷୁଦ୍ରଗଳ୍ପ ସଂକଳନ ପ୍ରକାଶିତ ହୁଏ ଓ ତାର ପ୍ରକାଶକ ଥିଲା 'ଗ୍ରନ୍ଥମନ୍ଦିର' ପ୍ରକାଶନ ସଂସ୍ଥା । ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ମୋ ସାରସ୍ୱତ ପ୍ରତିଭାର ଗୋପନ ଅଭିସାର ସୂଚିତ ହୋଇଥିଲା । ଏହାର ପୃଷ୍ଠପୋଷକତା କରିବା ପାଇଁ ଥିଲେ ଜଣେ ମାତ୍ର ଦରଦୀ ଦ୍ରଷ୍ଟା 'ନବଜୀବନ'ର ସମ୍ପାଦକ ୰ ଚିନ୍ତାମଣି ମିଶ୍ର । ମୋର ଏକାଧିକ କ୍ଷୁଦ୍ରଗଳ୍ପ ତାଙ୍କର 'ନବଜୀବନ' ପୃଷ୍ଠା ବହନ କରିଥିଲା । ମୋ ନିତାନ୍ତ ଏକଥିଆ ଜୀବନର ପଥପାର୍ଶ୍ୱର ଅନୁଭୂତି, ତହିଁରେ ପରିପୂର୍ଣ୍ଣ ଥିଲା ମୋ ଗଳ୍ପଗୁଡ଼ିକ । ତାର ରଚନା ମୂଳରେ ନଥିଲା ଅମରତ୍ୱ, ଯଶପ୍ରାପ୍ତି ବା ପୁରସ୍କାରର ଆଶା, ଥିଲା କେବଳ ନିଜକୁ ପ୍ରକାଶ କରିବାର ଏକ ଦୁର୍ବଳ ତଥା କ୍ଷୀଣ ପ୍ରଚେଷ୍ଟା । ଏହି ପ୍ରଚେଷ୍ଟାର ବହୁ ପଛରେ ମୋ ଅଜ୍ଞାତରେ ଲୁଚି ରହିଥିଲା କାବ୍ୟର ଏକ ଗମ୍ଭୀର ତଥା ବହମାନ ମନ୍ଦାକିନୀ । ଭଗୀରଥ ପରି ମୁଁ ଯେତେ ଆଗେଇଥିଲି ସେ ଧାବିତ ହେଉଥିଲା ମୋ ପଛେ ପଛେ ଏକ ଗଦ ଗଦ ମୁଖର କଲସ୍ୱନରେ । ୧୯୫୮ ମସିହାର ପ୍ରାରମ୍ଭରୁ ସେ ଯେତେବେଳେ ମୋର ଅନୁଭୂତ ହୁଏ, ମୁଁ ଥମକି ଠିଆ ହୁଏ ଦଣ୍ଡେ । ଅପୂର୍ବ ତାର ଛନ୍ଦର ନୂପୁର ଧ୍ୱନି, ଅପୂର୍ବ ତାର ରୂପଲାବଣ୍ୟ । ମୁଁ ତାକୁ ପଚାରେ, "ଦେବୀ, ଗତି ତମର କୁଆଡ଼େ ? କେଉଁ ଦିଗକୁ ?" ସେ ହସିଦିଏ, କାହିଁକିଟେ, ମୋ ପଥରେ ଠିଆ ହୋଇ ମଥା ନତକରେ ଏକ ରମଣୀ ସୁଲଭ ନମ୍ରତାରେ । ଏହା ହିଁ ସେ କହୁତ କିଛି କହେ ମୋତେ । ତାର ସେହି ଅସଂଖ୍ୟ ନୀରବ କଥନ ଆଜି ବି ମୋ ଭିତରେ ଜମାଟବନ୍ଧା ତୁଷାର ସଦୃଶ ବିରାଜିତ । ତାହା ଯେତେ ତରଳୁଛି, ସେତିକି ଜମାଟ ବାନ୍ଧୁଛି । ଜୀବନବ୍ୟାପି ସେ ମୋର ହୋଇ ଆସିଛି ସମ୍ପଦ, ବିପଦ, ସଂଗ୍ରାମ, ଶାନ୍ତି ଓ ହତିଆର ।

ହଁ, କୁଆଖାଇ କୂଳରେ ମୁଁ ସେତେଦିନ ନବାଗତ ଥିଲି, ଯେତେଦିନ ପର୍ଯ୍ୟନ୍ତ ମୁଁ ନ୍ୟସ୍ତସ୍ୱାର୍ଥର ପ୍ରତିବନ୍ଧକ ହୋଇ ନଥିଲି । ପୂର୍ବରୁ କହିଛି, କୁଆଖାଇ କୂଳ ତାର ନିଜସ୍ୱ ରୂପ ପରିଗ୍ରହ କରେ ଠିକ୍ ସନ୍ଧ୍ୟା ପରେ ପରେ । ଦେଶୀମଦ ମନ୍ଦାକିନୀ ପ୍ରବାହ ମଧ୍ୟରେ ସମସ୍ତ ଗଳିଟା ପ୍ଲାବିତ ହୋଇ ଉଠେ । ମୁଁ ମୋର ଛୋଟ କୁଡ଼ିଆଟିକୁ ଫେରେ କେବେ ସନ୍ଧ୍ୟାରେ ତ କେବେ ଅନେକ ରାତିରେ । ବିଚିତ୍ର ସେଇ ଘଟଣାର ସ୍ମୃତି ଆଜିବି ମୋର ମନେ ରହିଛି । ଦିନେ ରାତି ପ୍ରାୟ ୧୦ଟା ବେଳେ ମୁଁ ଫେରିଥିଲି । ସାଥିହୀନ

ପ୍ରାୟ ଅନ୍ଧାରରେ ଥିଲି । କ୍ଲାନ୍ତ ଦେହ, ଶ୍ରାନ୍ତ ମନରେ ଆକାଶପାତାଳ କେତେ ଯେ ଭାବନା ! ଯେଉଁଳି ଆକାଶ ଥିଲା ମେଘାଚ୍ଛନ୍ନ । ଧୀରେ ଘର ରୁମ ଖୋଲି, ଡବଲ ଲଗାଇ, ପରୁଡ଼ ମସିଣାଟି ଉପର ସଫା କରି, ଛିଣ୍ଡା ଶଯ୍ୟା ଗଦିଟି ଉପରେ ଅର୍ଦ୍ଧଶାୟିତ ଅବସ୍ଥାରେ ବସି ଗୋଟିଏ ବିଡ଼ିରେ ନିଆଁ ଧରାଇଲି । କିଛି ଗୋଟିଏ ଲେଖିବା କଥା ଚିନ୍ତା କରିବାକୁ ଯାଉଛି, ହଠାତ୍ ବାହାର ରାସ୍ତାରେ ଶୁଭିଲା ବହୁ କଣ୍ଠର ଅଶ୍ଳୀଳ ଚିତ୍କାର, ଦୁମ୍ ଦାମ ଓ ଗାଁ ଗାଁ ଶବ୍ଦ । ଗୋଟାଏ ବାଉଁଶ ଯେପରି ଫାଟି ଯାଉଛି ସେଇମିତି ଗୋଟାଏ ଶବ୍ଦ ବି ହେଲା । ମୁଁ ଝରକାକବାଟି ବାଟେ ଅନାଇଁ ଦେଖିଲି ଗଳିର ଅଧିଷ୍ଠାତ୍ରୀ ବାସେଳୀ ଠାକୁରାଣୀଙ୍କ ସାମ୍ନାରେ ଆରମ୍ଭ ହୋଇଛି ମଦୁଆମାନଙ୍କର ଦଣ୍ଡଯୁଦ୍ଧ । ଅନ୍ଧକାର ଭିତରେ ଛାୟାମୂର୍ତ୍ତିମାନଙ୍କର ମୂର୍ତ୍ତି ରେଖା ଦେଖା ଯାଉଛି ଝାପ୍‌ସା । ହଠାତ୍ ଶୁଣିବାକୁ ପାଇଲି, ଜଣେ କିଏ ଶୁଦ୍ଧ କଟକୀ ଭାଷାରେ କହିଲା, "ଚାଲ ବେ, ବାବୁ ପାଖରେ ଲ୍ୟାୟ କରିବା ।"

ଅପର ଲୋକଟା କହିଲା, "କୋଉ ବାବୁ ବେ ?"

"ଯୋଉ ବାବୁ ଶଳା ଆମ ସାଇରେ ଅଛି ।"

ସେ "ବାବୁ ଶଳାଟି" ଯେ ଖୋଦ୍ ମୁଁ, ଏ କଥା ମୋ ପକ୍ଷରେ ଆଉ ବୁଝିବାକୁ ବାକି ରହିଲା ନାହିଁ । ମୁଁ ସାଥେ ସାଥେ ଭିତରୁ କବାଟ କିଳି ଘଟଣାର ପରିଣତିକୁ ଲକ୍ଷ୍ୟ ଆଉ ଅପେକ୍ଷା କଲି । ଯୋଉ ଲୋକଟା କହୁଥିଲା ମୋ ପାଖରେ ଆସି "ଲ୍ୟାୟ" ଅର୍ଥାତ୍ ନ୍ୟାୟ କରିବ, ତାକୁ ଆଉ ଲୋକଟା କହୁଥିବା ଶୁଣିଲି, "କୋଉ ବାବୁ ଶଳା ବେ ? ଆବେ, ମାରି ତା' ଥୋମଣା ଫଟେଇ ଦେବ ?"

"ମାରିବୁ ? ଚାଲିଲୁ କେମିତି ମାରିବୁ ! ତୋ ସିନା ଖସେଇ ଦେବ ବେ ! ବାବୁ ବି କଳା ଷେଣ୍ଢମାର୍କା ଟୋକା । ତା ମୁଚ୍ଛ ଦେଖିଛୁ ? ଶଳା ପୁରା ଚୋଖଡ଼ମାର୍ । ଏମିତିଆ ବାବୁ ଶଳା ଆମ ସାଇରେ ରହିବା ଦର୍କାର । ଚାଲ୍‌ବେ, ଲ୍ୟାୟ କରିବା ଚାଲ୍ !"

ତିନିଟା ମଦୁଆ ଧରାପରା ହୋଇ ଆସୁଛନ୍ତି ମୋ ପାଖରେ ଫେରାଦ ହେବେ, ନ୍ୟାୟ କରିବେ । ବଡ ମୁସ୍କିଲ କଥା ତ ! ସେଠି ରହିବା ଭିତରେ ମୁଁ ସେମାନଙ୍କର ଏପରି କର୍ମକାଣ୍ଡରେ ଅଭ୍ୟସ୍ତ ହୋଇ ଯାଇଥାଏ ।

ହଠାତ୍ କବାଟରେ କରାଘାତ, "ବାବୁ ଅଜ୍ଞା, ଖୋଲ !"

କବାଟ ଖୋଲିଲି, "କ'ଣ କରେ ? କୁଆଡେ ସବୁ ଆସିଲ ?" (ତିନିଜଣଯାଚକଙ୍କର ପାଦ ଟଳମଳ, ହାକୁଟି ପରେ ହାକୁଟି, ମୁହଁରୁ ମଦର ଝାଞ୍ଜ ଗନ୍ଧ ।) 'ସନା' ନାମକ ଲୋକଟାକୁ ମୁଁ ଜାଣେ । ଦିନବେଳେ ସେ ମୋତେ ୨।୩ ଥର ନମସ୍କାର କରେ । ସେଇ ସନା କହିଲା, "ବାବୁ ସ୍ୱାକୁ ଆମେ ପଚାରିଲୁ, କୋଇଲିଲେ କେଶବ ଯେ ମଥୁରାକୁ ଗଲେ—କୋଇଲି ଶାଳୀ କୋଉଠି ରହିଲା ? ଶଳା ମଦୁଆ ମତେ କହୁଚି କୋଇଲି ରହିଲା ଆମ୍ବ ଟାକୁଆରେ ।" (ମୁଁ ହସ ସମ୍ଭାଳି ପାରିଲି ନାହିଁ । ଗୋଟାଏ ମଦୁଆ ଆଉ ମଦୁଆକୁ କହୁଚି "ମଦୁଆ" । ପୁଣି କୋଇଲି ମଥୁରାକୁ ଯାଇ ତା'ପରେ କୋଉଠି ରହିଲା ସେଥିପାଇଁ ତା'ର ଏତେ ଶିରୋବ୍ୟଥା ! ଧନ୍ୟ ସୁରା, ଧନ୍ୟ ତୁ କାଳିପାଣି, ଧନ୍ୟ ତୋର ମହିମା । )

ମୁଁ କହିଲି, "ହଉ ଯାଅ, କାଲି ସକାଳେ ସବୁ ବୁଝିବା ।"

"ଅଭି ଲ୍ୟାପ୍ସୁ ନହେଲେ ବାବୁ, ତମେ ସାଇରେ ରହିପାରିବ ନାହିଁ ।"

ପଛ ଲୋକଟା ଶାନ୍ତ ଶିଶୁଟି ପରି ଠିଆ ହୋଇଥିଲା—ଏଥର ସିଏ ତା'ର ରାୟ ଦେଲା, "ଆବେ, ଏମିତି କ'ଣ କହୁଚୁ ? ବାବୁ ଶଳା ଅଲବତ୍ ସାଇଟରେ ରହିବ । ବାବୁ ତ କହୁଚି କାଲି ସକାଳେ ଶଳା ପୁରା ଲ୍ୟାପ୍ସୁ କରି – ପଠେଇ ଦେବ । ଆସବେ, କାଲି ଆସିବା !"

ସନା କିନ୍ତୁ ନଛୋଡ଼ ବନ୍ଦା, ତା'ର "ଲ୍ୟାପ୍ସୁ" ଦରକାର । ସେ କହିଲା, 'ଯା'ବେ, ଅଭି ଲ୍ୟାପ୍ସୁ ହବ । ଲ୍ୟାପ୍ସୁ ନକଲେ ବାବୁ ଶଳା ଅଭି ଏଠୁ ଯିବ ।"

ପଛଲୋକ : 'ଆଚ୍ଛା, ଆମେ ବି ଦେଖି ଲବା । ବାବୁ ଶଳା ଅଲବତ କ୍ଷେଣ୍ଟେନଖା ସାଇଟରେ ରହିବ । ତା' ପାଇଁ ଆମେ ଜାନ୍ ଦେଇଦେବା । ଶଳା ମଦୁଆ, ଘରେ ଶଳା ମା-ଭଉଣୀ ନାହାନ୍ତି ? ବାବୁ ଶଳା ବଡ଼ଭାଇ ନେଖା···ବଡ଼ଭାଇ ମାନେ ଶଳା ମା' ସମାନ···"

ତିନିଟାଯାକ ମଦୁଆ ସେଠୁ ଧରାପରା ହୋଇ ଯାଇ ବାସେଲୀ ଠାକୁରାଣୀଙ୍କ ସାମ୍ନା ରାସ୍ତାରେ ବସି ସ୍ତ୍ରୀଲୋକଙ୍କ ପରି ବାହୁନିଲେ ବହୁ ସମୟ ଧରି । ମୁଁ

ଏଣେ ମୋ ଘର ଭିତରେ ମନକୁ ମନ ହସି ହସି ବେଦମ ହୋଇଗଲି, ବଡ଼ଭାଇ ମାନେ ମା' ସମାନ ! ହାୟରେ କପାଳ ! ଧନ୍ୟ ମୁଁ ଲୋକୁମୁହାଁଖାଇ ଗଲି, ଧନ୍ୟ ତୋର ସନ୍ତାନଗଣ ।

ମୋର ଦୁର୍ଭାଗ୍ୟ, ତା' ପରଦିନ ଜଣେ ଅବକାଶ ଅଫିସରଙ୍କୁ ସେଠାର ଯ୍ବେଚ୍ଛାମତ କାରବାର କଥା କହିବା ଫଳରେ ତା'ର ଫଳଶ୍ରୁତି ହୋଇଥିଲା ଲୋକଦେଖାଣିଆ ଏକ ତଲାସୀ । ସେଦିନ ଦେହରେ ସାମାନ୍ୟ ଜ୍ୱର ଥିବାରୁ ସନ୍ଧ୍ୟାବେଳୁ କବାଟ ଦେଇ ଶୋଇ ପଡ଼ିଲି । ଭୋର୍‌ବେଳକୁ ପ୍ରଚଣ୍ଡ ଚିତ୍କାର । ମୋ ଘରକୁ ଯାଇର ମଦୁଆ ତଳ ଦୌଡ଼ଯାଇ ଡ଼େଲା ବୃଷ୍ଟି କରୁଛନ୍ତି । "ମାର୍ ଶଳାକୁ, ଧର ଶଳାକୁ, ଭୋଷାଡ଼ ଥାଣ" ଇତ୍ୟାଦିରେ କମ୍ପିତ ହୋଇ ଉଠିଛି ସମଗ୍ର ଗଳିଟା । ହା ଭଗବାନ, ଏ ନୈତିକ କୁଷ୍ଠରୋଗୀ-ମାନଙ୍କ ସନ୍ତ୍ରସ୍ତବ୍ୟବହାରରେ ମୁଁ ଧିଳ ଦେବାର ଉଦ୍ୟମ କରି ନଥିଲେ ଏ ଅବସ୍ଥାରେ ପଡ଼ି ନଥାନ୍ତି । ଦୁନିଆରେ ନାନା ଧରଣର ପାପ ଅଛନ୍ତି । ସେମାନଙ୍କୁ ମାରିବାର ଦାୟିତ୍ୱ ଗ୍ରହଣ କର୍ମିଟି ଯେ ମୋର ନିପଟ ମୂର୍ଖତା, ତାହା ଉପଲବ୍‌ଧି କରିବା ପୂର୍ବରୁ ମୋତେ ନିର୍‌ପଦରେ ସେଠୁ ଅନ୍ୟତ୍ର ପଳାଇ ଯିବାକୁ ହେବ । ଚିତ୍କାର, ଡେଲା ବର୍ଷଣର ପ୍ରାବଲ୍ୟ ଟିକେ କମିଲା ପରି ମନେ ହେଲା । ସେତେବେଳକୁ ମୋର ଚେପା ଟିଣ ସୁଟକେଶ, ଫୁଟା ଡ଼ାଲ ଓ କାଗଜପତ୍ର ବନ୍ଧାକୁ ଏକାଠି ବାନ୍ଧ ଅନ୍ଧାର ଭିତରେ ଧୀରେ କବାଟ ଖୋଲି ଦେଖିଲି ମଦୁଆମାନେ ବାସେଲୀ ଠାକୁରାଣୀଙ୍କ ଆସ୍ଥାନରେ ଜମି ପୁଣି ପିଇବାକୁ ଆରମ୍ଭ କରିଛନ୍ତି । ସେଇ ମଉକାରେ ମୁଁ ସନ୍ତର୍ପଣରେ ପାଦ ଚିପିଚିପି କଳାକନ୍ତା ଫେରନ୍ତା ଚଟକଳ କୁଲିଙ୍କ ପରି ମୋର ସେ ବୋଝଟିକୁ ମୁଣ୍ଡାଇ ପାଖ ଅଗମ୍ୟ ପୋଖରୀ ବନ୍ଧେ ବନ୍ଧେ ଗୋଟିଏ କଣ୍ଟାବାଡ଼ ଭିତରେ ନେଇ ଭାଙ୍ଗାବଜାର ଛକରେ ବାହାରି ବାଙ୍କାବଜାର ଧର୍ମଶାଳା ବାରେଣ୍ଡାରେ ଯାଇ ଆଶ୍ରୟ ନେଲି ।

## ।। 'ପାର୍ବ୍ୱୋନିସ୍ପର କ୍ଲିନିକ୍' : ସେଇ ଅଲମିରା ଦୁଇଟି ।।

ହଁ, ରାତି ପାହିଲା ପରେ ବାଙ୍କାବଜାର ଧର୍ମଶାଳା ରଖୁଆଳକୁ ନେହୁରା ନମିତ ହୋଇ, ମୋ ଜିନିଷପତ୍ର ତକ ତା' ଜମା ଦେଇ, ଦିନ ପ୍ରାୟ ୧୦ଟା ବେଳେ ଯାଇ ପହଞ୍ଚିଲି ଦରଘା ବଜାର ସାରସ୍ୱତ ପ୍ରେସ ସାମ୍ନା "ପାର୍ବ୍ୱୋନିସ୍ପର

କ୍ଲିନିକ୍"ରେ । ଏଇଟି ଏକ ହୋମିଓ ଔଷଧ ଦୋକାନ ଓ ଚିକିତ୍ସାଳୟ । ଏହା ଶ୍ରୀଧର ଦାସ ନାମକ ଜଣେ ଲୋକଙ୍କ ଘର ଭଡ଼ା ନେଇ ଖୋଲି ଯାଇଥିଲା । ଏହାର ପ୍ରୋପ୍ରାଇଟର ହେଲେ ଡାକ୍ତର ପି. ପରିଜା ବା ପୂର୍ଣ୍ଣଚନ୍ଦ୍ର ପରିଜା । ଡାକ୍ତର ପରିଜା ହେଲେ ଅବିଭକ୍ତ ସୋସିଆଲିଷ୍ଟ ପାର୍ଟିରେ ମୁଁ ଥିବା ବେଳେ ମୋର ସହକର୍ମୀ । ତିର୍ତ୍ତୋଲ ଅଞ୍ଚଳର ଲୋକ ସେ । ୧୯୪୮-୪୯ ମସିହାରେ ହୋଇଥିବା ତିର୍ତ୍ତୋଲ-ଏର୍ସମା ଉପନିର୍ବାଚନ ବେଳୁ ତାଙ୍କର ମୋର ସମ୍ପର୍କ ଗଢ଼ି ଉଠିଥିଲା । ସୋସିଆଲିଷ୍ଟ ଦଳ ମଧ୍ୟରେ ମୋର ଅବସ୍ଥା, ଅନାଦର, ଅବହେଳା ଆଦି ସବୁ ତାଙ୍କର ଆଖିଦେଖା ଘଟଣା । ସେହି ଅଜ୍ଞାତ କାଳରୁ ସେ ମୋ ପ୍ରତି, ମୋ ଚିର ସଂଗ୍ରାମୀ ଜୀବନ ପ୍ରତି ଅନାସକ୍ତ ଭାବେ ଦରଦୀ ଓ ସମ୍ବେଦନଶୀଳ । ଅତି ଉତ୍ତମ ସ୍ୱଭାବର ମଣିଷ ଡାକ୍ତର ପରିଜା । ସବୁବେଳେ ହସ ହସ ମୁହଁ, ଅନବରତ ପାନ ଖାଆନ୍ତି । ଧୋତି ପଞ୍ଜାବୀ ପିନ୍ଧା ଏହି ଅନୁଚ୍ଚ ଖର୍ବାକୃତି ମଣିଷଟିର ପରିଚୟ କେବଳ ଏତିକି ନୁହେଁ, ସେ ଜଣେ ଗଣକବି ମଧ୍ୟ । ତାଙ୍କ ରଚିତ ରାଜନୈତିକ ସଙ୍ଗୀତମାନ ଏକଦା ଓଡ଼ିଶାର ଜନଜୀବନ ମଧ୍ୟରେ କମ୍ପନ ସୃଷ୍ଟି କରିଥିଲା । ମୁଁ ଥିଲି ସେହିମାନଙ୍କର ବିଶ୍ୱସ୍ତ ଗାୟକ— ତା'ର ମାଧ୍ୟମରେ ଜନାରଣ୍ୟର ଅଭ୍ୟନ୍ତରରେ ମୁଁ ପ୍ରବେଶ କରିବାକୁ ସକ୍ଷମ ହୋଇଥିଲି । ସମୟର ପରିସ୍ଥିତିରେ ଡଃ ପରିଜା ସକ୍ରିୟ ସୋସିଆଲିଷ୍ଟ-ରାଜନୀତିରୁ ବିଦାୟ ନେଇ ହୋମିଓ ଚିକିତ୍ସକ ଭାବେ ବେଶ ଖ୍ୟାତି ଅର୍ଜନ କରି "ପାପ୍ଲୋନିପୁର କ୍ଲିନିକ୍" ପ୍ରତିଷ୍ଠା କରିଥିଲେ । ଏବେ ହରିପୁର ରୋଡ଼ସ୍ଥ ତାଙ୍କ ନିଜସ୍ୱ ବାସଗୃହକୁ ତାହା ସ୍ଥାନାନ୍ତରିତ ହୋଇଛି ।

ମୋର ସୋସିଆଲିଷ୍ଟ ଦଳତ୍ୟାଗ, ଅବିଭକ୍ତ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦାନ, ଗୋଆ ମୁକ୍ତି ସଂଗ୍ରାମରେ ଅଂଶ ଗ୍ରହଣ, ସୋସିଆଲିଷ୍ଟ ୟୁନିଟି ସେଣ୍ଟର ସହିତ ସମ୍ପୃକ୍ତି, ଅର୍ଦ୍ଧାହାର-ଅନାହାର ତଥା ଉଦ୍‌ଭ୍ରାନ୍ତ ଜୀବନଯାତ୍ରାର ସେ ଥିଲେ ଆନ୍ତରିକ ଜଣେ ବ୍ୟଥୀ ମଣିଷ । ମୋର ଲକ୍ଷ୍ୟହୀନ ଚଲାପଥରେ ଯେବେ, ଯେଉଁଠି ତାଙ୍କ ସହିତ ଦେଖା ହୋଇଛି, ସେ ଥମକି ଠିଆ ହୋଇ ମୋର ଭଲମନ୍ଦ ଖବର ନେଇଛନ୍ତି, ଚିନ୍ତିତ ହୋଇ ପଡ଼ିଛନ୍ତି ମୋର ଅନ୍ଧକାରମୟ ଭବିଷ୍ୟତ କଥା ଚିନ୍ତା କରି ।

ହଁ "ପାପ୍ଲୋନିପୁର କ୍ଲିନିକ୍"ରେ ପହଞ୍ଚି ଦେଖିଲି ପରିଜା ମହାଶୟ ବସି ବହି ପଢ଼ୁଛନ୍ତି । ମୋତେ ଦେଖିଦେଇ "ଆରେ' ରବି !" କହି

ବନ୍ଧୁଟିକୁ ବନ୍ଦ କରି ମୋର ଆପାଦମସ୍ତକ ଥରେ ଦେଖି ନେଲେ । ମୁଁ ଗୋଟିଏ ଚଉକିରେ ବସିଲି । ସେ କିଛି ପଚାରିବା ଆଗରୁ ଗତ ରାତିର କୁତ୍ସିତ ଖାଇ ଗଳିର ଘଟଣା ବର୍ଣ୍ଣନା କରନ୍ତେ ସେ ହସି ହସି ଗଡ଼ିଗଲେ । ତା' ପରେ ମୁଁ ତାଙ୍କୁ ତାଙ୍କର ସେହି 'କ୍ଲିନିକ'ରେ ଆଶ୍ରୟ ମାଗିବାରୁ ସେ ବିନା ଆପତ୍ତିରେ ସମ୍ମତି ଜଣାଇବାରୁ ମୁଁ ତତ୍କ୍ଷଣାତ ବାଙ୍କାବଜାର ଧର୍ମଶାଳାକୁ ଫେରିଯାଇ ଜିନିଷପତ୍ର ତକ ଧରି ପୁଣି ସେଠି ଆସି ହାଜର ହେଲି । 'କ୍ଲିନିକ'ର ସେହି ଦୁଇଟି ଆଲମିରା, ଯେଉଁମାନେ କି ରାସ୍ତାକୁ ମୁହଁକରି ଥୁଆ ହୋଇଥିଲେ, ତା'ର ପଛପଟ କାନ୍ଥ ଆଉ ଆଲମିରା ମଝିର କେତେହାତ ଜାଗା ସେହିଦିନ ଠାରୁ ହେଲା ମୋ ରାତି ଆଶ୍ରୟସ୍ଥଳ ।

ଦିନ ତମାମ ମୁଁ ଏଣେ ତେଣେ ବୁଲେ । ବୁଲିବା ଭିତରେ ଯାହା ପାଏ ପଢ଼େ—କାନ୍ଥବାଡ଼ର ସିନେମା ବିଜ୍ଞାପନ ଠାରୁ ଆରମ୍ଭ କରି ପୁରୁଣା ପତ୍ରପତ୍ରିକା, ଦୈନିକ ସମ୍ବାଦପତ୍ର ଇତ୍ୟାଦି । ଉପାସ, ଭୋକରେ କଳର ଥଣ୍ଡାପାଣି, ବିରି ପିଆଜ, କିଛି ଚିନାବାଦାମ ହୁଏ ମୋର ଆହାର । କେବେ ଦିନ ଥାଉଁ ଥାଉଁ ତ କେବେ ସନ୍ଧ୍ୟା ବେଳକୁ ମୁଁ 'କ୍ଲିନିକ'କୁ ଫେରି ଆସେ । ରୋଗୀ ଭିଡ଼ ଥିଲେ ଆଲମିରା ପଛ ପଟକୁ ଯାଇ ନୀରବରେ ବସେ । ନାନା କଥା ଭାବେ—କାଲି କୁଆଡ଼େ ଯିବି, କାହାକୁ ଭେଟିବି, କ'ଣ ଖାଇବି ଇତ୍ୟାଦି । ରୋଗୀମାନଙ୍କ ଭିଡ଼ କମିଲେ ଡଃ ପରିଜା ମୋତେ ପାଖକୁ ଡାକନ୍ତେ ମୁଁ ଯାଇ ତାଙ୍କ ପାଖରେ ବସେ । ମୋର ଶୁଖିଲା ମୁହଁ ଦେଖି ସେ ପଚାରନ୍ତି, "ତୁ କିଛି ଖାଇନୁ କି ଆଜି ?" "ହଁ, ଖାଇଛି" ବୋଲି ମିଛ କହିବା ସତ୍ତ୍ୱେ ସେ ବିଶ୍ୱାସ ନକରି ମୋ ହାତରେ ଟଙ୍କାଏ-ଆଠଣା ଗୁଞ୍ଜିଦେଇ ମୋତେ ବାଧ୍ୟ କରନ୍ତି ଯାଇ କିଛି ଖାଇ ଦେଇ ଆସିବା ପାଇଁ । ମୁଁ ତାଙ୍କୁ କୃତଜ୍ଞତା ଭରା କଣ୍ଠରେ କୁହେ, "ପୂର୍ଣ୍ଣବାବୁ ଆଶ୍ରୟ ଟିକେ ଦେଇଛ, ତାହା ମୋର ଯଥେଷ୍ଟ । ମୋର ତ ଜୀବନ ଏଇଆ, ଅଧିକ ଋଣ କାହିଁକି ନେଉଛ, ମୋତେ ଏଠୁ ବିଦା କରିବା ପାଇଁ ଯେୁ କ'ଣ ଯୋଗାଡ଼ ନା କ'ଣ ?"

"ଧେତ୍ ! ତୁ ପାଉନୁ କାହିଁକି ମ !" କହି ସେ ମୋତେ ଠେଲିଠେଲି ଖାଇବାକୁ ପଠାନ୍ତି ।

ଡଃ ପରିଜା ରାତିରେ ଘରକୁ ଯିବା ପରେ ମୁଁ ଭିତରୁ କବାଟ ଦେଇ ତାଙ୍କ ଟେବୁଲ୍ ଉପରେ ମୋର ଗଳ୍ପ-କବିତା ରଚନାରେ ମନ ଦିଏ । ଦିନେ ଦିନେ ରାତିରେ ସେଇମିତି ଗିଲାସେ ପାଣି ପିଇ ଆଲମିରା ପଛପଟେ ଯାଇ ଶୋଇପଡେ ।

କହିବା ବାହୁଲ୍ୟ, ଭୋକକୁ ସହ୍ୟ କରିବାର ଶକ୍ତି ମୋ ଠାରେ ଏତେ ପ୍ରଚଣ୍ଡ ଯେ, ତାହା କେବେ କେବେ ନିଜ ଭାବିଲେ ମୁଁ ବିସ୍ମିତ ହୋଇପଡେ । ପାଠକେ ବିଶ୍ୱାସ କରନ୍ତୁ, ଟିକିଏ ମାତ୍ର ଅତିରଞ୍ଜିତ ନକରି ମୁଁ କହିବାକୁ ଚାହେଁ ଯେ, ଜନ୍ମ ପରଠାରୁ ଏଯାବତ୍ ମୋ ଜୀବନର ଅଧାଅଧି କଟିଛି ସମ୍ପୂର୍ଣ୍ଣ ଅନାହାରରେ, ବାକି ଅର୍ଦ୍ଧ ଜୀବନର ଅର୍ଦ୍ଧେକ କଟିଛି ଅର୍ଦ୍ଧାହାର, ବାକିତକ ମୋର ବିତିଛି ଉତ୍ତମ ଭୋଜନ, ସୁଖଶାନ୍ତି, ବିଶ୍ରାମରେ । ପରିବାର ଗଠନ ପରେ ମୋର ସହଧର୍ମିଣୀ, ପୁତ୍ରକନ୍ୟାମାନେ ମଧ୍ୟ ଏହି ଦୁର୍ବିପାକର ଶିକାର ହୋଇ ଆସିଛନ୍ତି ଓ ଆସୁଛନ୍ତି ମଧ୍ୟ । ଖାଦ୍ୟ ପ୍ରତି ବାଲ୍ୟକାଳରୁ ମୋର କୌଣସି ଲୋଭ ବା ଆକର୍ଷଣ ନଥିଲା—ଆଜି ମଧ୍ୟ ନାହିଁ । ସାରା ଦିନ ଭିତରେ କିଛି ଉଦରସ୍ଥ ହେଲେ ହେଲା । ମୁଁ ପିଲାଦିନରୁ ମାଛ ମାଂସର ସ୍ୱାଦ ଜାଣେନା । ପ୍ରୋଟିନ୍, ଖାଦ୍ୟସାର ଅଭାବରେ ଏ ଦେହର ମିନାର କିପରି ତିଷ୍ଠିଛି, ତାହା ଆଉ ଏକ ବିସ୍ମୟ । ତା' ଉପରେ ପୁଣି ଚା ଏବଂ ସିଗାରେଟ, ପୋଡ଼ା ତମାଖୁର ଅହିଫେନ ସବୁକୁ ମୁଁ ବିଷକଣ୍ଠ ପରି ବେପରୁଆ ଭାବେ ପାନ କରିଛି, କରୁଛି ।

ଡାକ୍ତର ପରିଜା ଯେତେବେଳେ କ୍ଲିନିକରୁ ରାତିରେ ଘରକୁ ଚାଲିଯାଆନ୍ତି ମୁଁ ଭିତରୁ କବାଟ ବନ୍ଦ କରି ଦିନେ ଦିନେ ତାଙ୍କ ଔଷଧ ଆଲମିରା ଖୋଲି ବଡ଼ ବଡ଼ ବୋତଲରେ ଭର୍ତ୍ତି ହୋଇ ଥିଆ ହୋଇଥିବା, ଔଷଧ ପଡ଼ି ନଥିବା ହୋମିଓପ୍ୟାଥି 'ଗ୍ଲୋବ୍ୟୁଲ' (ବଟିକାରୁ) ଅଞ୍ଜୁଳାଏ ପାଟିରେ ପକାଇ, ପାଣି ଗିଲାସେ ପିଇ ଶୋଇ ପଡ଼େ । ତହିଁ ଆରଦିନ ମୋ କ୍ଷୁଧାର ଏହି "ଅପରାଧ" ପାଇଁ ଡାକ୍ତର ପରିଜା କ୍ଲିନିକ୍‌କୁ ଆସି ଯେତେବେଳେ ଦେଖନ୍ତି ବୋତଲରୁ 'ଗ୍ଲୋବ୍ୟୁଲ' ସବୁ ଅଧାଅଧି ସାଫ୍, ସେତେବେଳେ ସେ ମୋତେ ପଚାରନ୍ତି, "ହଇରେ ରବି, ଗ୍ଲୋବ୍ୟୁଲ ଗୁଡ଼ାକ ବୋତଲରୁ କୁଆଡ଼େ ଗଲା ?"

"ପୂର୍ଣ୍ଣବାବୁ, ଦିନ ସାରା କାଲି କିଛି ଖାଇ ନଥିଲି । ରାତିରେ ଜ୍ୱର ଭୋଗ ହେବାରୁ ଗ୍ଲୋବ୍ୟୁଲ ଆଞ୍ଜୁଳାଏ ପାଟିରେ ପକେଇ ପାଣି ପିଇ ଶୋଇ ପଡ଼ିଲି···" ମୋ ମୁହଁରୁ କଥା ନସରୁଣୁ ଡାକ୍ତର ପରିଜା ମୁଣ୍ଡରେ ହାତଦେଇ ବସିପଡ଼ି ହସି ହସି ଗଡ଼ିଯାଇ କହନ୍ତି, "ଆରେ, ମୁଁ ରୋଗୀଙ୍କି ଔଷଧ ଦେବ କମିତି ?"

ଏହିପରି ବିଚିତ୍ର ତଥା ଲକ୍ଷ୍ମୀଛଡ଼ା ମୋର ସେତେବେଳର ଜୀବନଯାତ୍ରା । ଏଠାରେ କହିରଖେ, କୁହୁଖାଇ ଗଳିରେ ଥିବାବେଳେ ମୋର ଲକ୍ଷ୍ୟହୀନ ଗତିପଥରେ ବେଳେ ବେଳେ ଡାକ୍ତର ପରିଜାଙ୍କ କ୍ଲିନିକକୁ ଯାଇ ବହୁ ସମୟ ଧରି ବସୁଥିଲି । ସେହି ବସିବା ଭିତରେ ପୂଜ୍ୟକବି ତଥା "ନଅାଁଖୁଣ୍ଟା"ର ସମ୍ପାଦକ ଗୋଦାବରୀଶ ମହାପାତ୍ରଙ୍କ ସହିତ ମୋର ହୋଇଥିଲା ପ୍ରଥମ ପରିଚୟ । ମୋର ଅଜାଣତରେ ମୋ ସମ୍ପର୍କରେ ଜାଣିବା ପାଇଁ ସେ ଅସୀମ ଆଗ୍ରହ ପ୍ରକାଶ କରିଥିଲେ ଡାକ୍ତର ପରିଜାଙ୍କ ନିକଟରେ । ଡାକ୍ତର ପରିଜା ମୋର ସମସ୍ତ ଇତିବୃତ୍ତ କେବଳ ତାଙ୍କୁ କହି ନଥିଲେ, ମୋ ଭିତରେ ଥିବା ସାହିତ୍ୟିକ ପ୍ରତିଭାର ସଦୁପଯୋଗ ତଥା ତାକୁ ଆଗେଇ ନେବାରେ ସାହାଯ୍ୟ କରିବା ପାଇଁ ତାଙ୍କୁ ନିବେଦନ ମଧ୍ୟ କରିଥିଲେ ବାରମ୍ବାର । ଏ କଥା ବହୁ ପରେ ପୂର୍ଣ୍ଣବାବୁ ଏବଂ ଗୋଦାବରୀଶ ବ.ବୁଙ୍କ ଠାରୁ ମୁଁ ଜାଣିବାକୁ ପାଇଥିଲି । ସେତେବେଳକୁ ମୋର କେତୋଟି କ୍ଷୁଦ୍ରଗଳ୍ପ ଚିନ୍ତାମଣି ମିଶ୍ରଙ୍କ ସମ୍ପାଦିତ 'ନବଜୀବନ'ରେ ପ୍ରକାଶିତ ହୋଇସାରିଥାଏ । ସେଗୁଡ଼ିକ ଗୋଦାବରୀଶ ବାବୁ ମନଦେଇ ପଢ଼ିଛନ୍ତି ମୁଁ ସେ କଥା ଜାଣିଲି ସେହିଦିନ, ଯେଉଁଦିନ କି ଅତି ସତର୍କରେ ତାଙ୍କୁ ମୋର ଏକ ଗଳ୍ପ ଦେଖାଇ ତା'ର ଭୁଲ ତ୍ରୁଟି ସମ୍ପର୍କରେ ପଚାରିଥିଲି । ( ସେତେବେଳକୁ ତାଙ୍କ ସହିତ ମୋର ଘନିଷ୍ଠତା ବେଶ ଜମି ସାରିଥାଏ । ) ସେହି ହସ ହସ ମୁହଁ, ସେ ମୁହଁରେ ଜଳନ୍ତା ସିଗାରେଟ୍ । "ପାୟୋନିଅର କ୍ଲିନିକ"ରେ ଏକୁଟିଆ ବସିଥିଲି, ସେ ଆସି ପହଞ୍ଚିଲେ, ଡାକ୍ତର ପରିଜାଙ୍କୁ ଖୋଜିଲେ । ତା' ପରେ ବସି ଖବରକାଗଜ ଲେଉଟାଇବା ଅବକାଶରେ ମୁଁ ତାଙ୍କୁ ଦେଖାଇଥିଲି ମୋର ସେହି ଗଳ୍ପଟି । ସେ କହିଥିଲେ, "ତମ ଗପ ସବୁ ମୁଁ ପଢ଼ୁଛି । ପରିବେଶର ବର୍ଣ୍ଣନା, ଚରିତ୍ର, ଭାଷା ଭାରି ଭଲ ହେଉଛି । ଓଡ଼ିଆରେ ଭଲ ଗପର ଭାରି ଅଭାବ । ଲେଖ, ଲେଖିଯାଅ । ଲେଖି ଲେଖି ସବୁ ଠିକ୍ ହୋଇଯିବ ।"

ତାଙ୍କର ଏ କଥା, ଅନ୍ତରଙ୍ଗତାରେ ମୁଁ ଆନ୍ଦୋଳିତ, ଉଲ୍ଲସିତ, ଆଶାନ୍ୱିତ ହୋଇ ଉଠିଥିଲି ସେଦିନ । ମୋର ସାରସ୍ୱତ ପ୍ରତିଭାର ଅଂକୁରକୁ ତାଙ୍କର ଏଇ କଥା କେତେପଦ ମହାଦ୍ରୁମର ପ୍ରେରଣା ଦେଇଥିଲା ।

ଗୋଦାବରୀଶ ବାବୁ କଟକରେ ଥିଲେ ପ୍ରତିଦିନ ସନ୍ଧ୍ୟାରେ ତାଙ୍କ ନାତି-ନାତୁଣୀ ଓ ନିଜ ପାଇଁ ଔଷଧ ନେବାକୁ କ୍ଲିନିକ୍‌କୁ ଆସନ୍ତି, ବସନ୍ତି, ନାନାକଥାର ଆସର ଜମିଉଠେ । ତାଙ୍କର ସେଠି ଉପସ୍ଥିତି ଦେଖି ରସଗ୍ରାହୀ କେତେକ ବ୍ୟକ୍ତି ମଧ୍ୟ ଯୁଟନ୍ତି । ରାତି ୯ । ୧୦ଟା ହୋଇଯାଏ । ଆସର ଭାଙ୍ଗେ, ଏଇମିତି ସେଠି ମୋ ସହିତ ଗୋଦାବରୀଶ ବାବୁଙ୍କ ଘନିଷ୍ଠତା, ଆତ୍ମୀୟତାର ମୂଳଦୁଆ ଦୃଢ଼ୀଭୂତ ହୁଏ ।

ଏପରି ଲଗ୍ନ ମୋ ଭାଗ୍ୟରେ ଘନାଇଁ ଆସିଲା ଯେ, ଗୋଦାବରୀଶ ବାବୁ ଦିନେ ମୋତେ ନଦେଖିଲେ ବ୍ୟଥିତ ହୋଇଉଠି ଡାକ୍ତର ପରିଜାଙ୍କୁ ପଚାରି ବୁଝନ୍ତି, "ରବି ନାହିଁକି ? କୁଆଡେ ଯାଇଛି ? କେତେବେଳେ ଆସିବ ?" ମୁଁ ଦିନେ ଦିନେ ଅତର୍କିତ ଭାବେ ଯେତେବେଳେ ତାଙ୍କ "ନଆଁଖୁଣ୍ଟା" ଅଫିସକୁ ପଶିଯାଇ ଚୁପ୍ କରି ତାଙ୍କ ସାମ୍ନାରେ ଠିଆ ହୁଏ, ସେତେବେଳେ ସିଏ ମୁହଁ ଉଠାଇ ଅମାୟିକ ହସରେ କହନ୍ତି, "ଆରେ, ବସ, ବସ ! କୁଆଡେ ଯାଇଥିଲ ? ହେ, କିଏ ଅଛରେ, ଗୃ ଢ଼' କପ୍ ଆଣିଲ ।" ମୁଁ ତାଙ୍କ ସାମ୍ନା ଚଉକିରେ ବସେ । ସେ ନୂଆ କବିତା ଲେଖିଥିଲେ ମୋତେ ଆବୃତ୍ତି କରି ଶୁଣାନ୍ତି । ତାଙ୍କର ଉଚ୍ଚାରଣ, ଆବୃତ୍ତିର ଢଙ୍ଗ, ଅଙ୍ଗଭଙ୍ଗୀକୁ ମୁଁ ବସିବସି ଆକଣ୍ଠ ପାନକରେ, ମୋର ନାବାଳକ କାବ୍ୟପୁରୁଷ ତାଙ୍କ ସରି ହିମାଳୟର ପାଦ-ଦେଶରେ ବସି ତାଙ୍କୁ ଆପାଦମସ୍ତକ ଚାହେଁ—ଥରେ ନୁହେଁ ବାରବାର । କେତେ ବିଶାଳ, କି ପ୍ରାଣମୟ ଶାଶ୍ୱତ ଅଗ୍ନିରେ ପ୍ରଜ୍ୱଳିତ ସେହି ମୁଣ୍ଡରେ କେବେ ପାନିଆଁ ବାଜୁ ନଥିବା ହାସ୍ୟମୁଖର ମହାନ ମଣିଷଟି ସତେ ! ମନ୍ତ୍ରମୁଗ୍ଧବତ୍ ମୁଁ ତାଙ୍କ କଥା, ତାଙ୍କ ଆବୃତ୍ତି, ତାଙ୍କ ସାମ୍ବାଦିକ ଲେଖା, ବ୍ୟଙ୍ଗବିଦ୍ରୂପ, ଶିଶୁ କବିତା ସବୁକୁ ଶୁଣେ, ପଢ଼େ, ଆତ୍ମସ୍ଥ କରେ, ଭୁଲିଯାଏ ମୋର ନିତିଦିନିଆ ଜୀବନର ଅନାହାର, ଅନିଶ୍ଚିତତାକୁ । ତାଙ୍କର ଘନିଷ୍ଠତମ ବନ୍ଧୁ ଯଥା: ସାମ୍ବାଦିକ ଶ୍ରୀ ରଘୁନାଥ ପାଠୀ ଶାସ୍ତ୍ରୀ, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଅଦ୍ୱୈତ ବଲ୍ଲଭ ରାୟ, ବସନ୍ତକୋକିଳ ଶ୍ରୀ ଭଗବାନ ପତି ପ୍ରମୁଖଙ୍କ ସହିତ ସେ ଯେତେବେଳେ ମିଳିତ ହୁଅନ୍ତି ସେତେବେଳର ହାସ୍ୟମୁଖର ପରିବେଶକୁ ସିଏ ନଦେଖିଛି ସିଏ

କେବେ ତାହା କଳ୍ପନା କରିପାରିବ ନାହିଁ । ଗୌରୀଶଙ୍କର ପାର୍କ ପାଖ "ଦେ ହୋଟେଲ" ଥିଲା ସମସ୍ତଙ୍କର ସକାଳୁଆ ଗୁ' ଖଟି । ସେ ଖଟିକୁ ମୋତେ ସେ ଜବରଦସ୍ତ ଟାଣି ଟାଣି ନନେଲେ ଯା'ନ୍ତି ନାହିଁ । ସନ୍ଧ୍ୟାରେ ଚୌଧୁରୀ ବଜାର ଛକ ନଟପାତ୍ରଙ୍କ ଜଳଖିଆ ଦୋକାନ, ବିନୋଦବିହାରୀର ପୁସ୍ତକ ବିପଣୀ ମାନଙ୍କରେ ତାଙ୍କ ସହିତ ମୁଁ ଥାଏ । କେବେ ରିକ୍ସାରେ ତ କେବେ ଆମେ ପାଦରେ ଚାଲି ଚାଲି ଯାଉଁ । ବେଳେ ବେଳେ ସେ ମୋ କାନ୍ଧରେ ହାତ ପକାଇ ରାସ୍ତାକଡ଼ରେ ଚାଲି ଚାଲି ଯିବା ଅନେକ ଲୋକ ଦେଖିଛନ୍ତି । ମୁଁ କେତେବେଳେ ତାଙ୍କର ବନ୍ଧୁ, କେତେବେଳେ ସାଥୀ କେତେବେଳେ ଆୟୁଷ୍ମାନ ପୁତ୍ର ଥିଲିତ କେତେବେଳେ ଥିଲି ଏକାନ୍ତ ଆପଣାର । ପରବର୍ତ୍ତୀ କାଳରେ ମୋର ବିଦ୍ରୋହୀ ତଥା ବିପ୍ଳବୀ କାବ୍ୟଲୋକ ଉପରେ ତାଙ୍କ ଛନ୍ଦର ଐନ୍ଦ୍ରଜାଳିକ ପ୍ରଭାବ ପ୍ରକାଣ୍ଡ ଛାୟା ବିସ୍ତାର କରି ମୋର କାବ୍ୟିକ ସାଫଲ୍ୟର ପଥକୁ ଅଧିକ ସୁଗମ କରିଥିଲା । ମୋର କବିତା, ଗଦ୍ୟ, ପ୍ରବନ୍ଧ, ଭାଷଣ ଆଦିରେ ତାଙ୍କର ବ୍ୟଙ୍ଗ, ତାଙ୍କର ସାହାଯ୍ୟର ଆଜି ମଧ୍ୟ ପ୍ରଭାବ ବିସ୍ତାର କରି ରହିଛି । *

ଗୋଦାବରୀଶ ବାବୁ କିମିତି କେଜାଣି ଜାଣିପାରିଥିଲେ ମୋର ଭବିଷ୍ୟତ ଅତି ଖ୍ୟାତିମୟ, ମୋ ଭିତରେ ଅଛି ଏକ ବିବଦମାନ ବ୍ୟକ୍ତିତ୍ୱ । ସେଥିପାଇଁ ବୋଧହୁଏ ଏବଂ ତାଙ୍କର ପୁଅପାଙ୍ଗ ନଥିବାରୁ ହୁଏତ ସେ ମୋ ପ୍ରତି ସ୍ନେହ, ଶ୍ରଦ୍ଧା, ଦରଦ, ଆନ୍ତରିକତା ସବୁକୁ ଅକୁଣ୍ଠିତ ଭାବେ ଅଜାଡି ଦେଇଥିଲେ । ସେତେବେଳକୁ ୨୪ । ୨୫ ବର୍ଷର ତରୁଣ ମୁଁ—ସେ ବୟସରେ ତାଙ୍କର ସାମୟିକ ସହକାରୀ ହେବାର ମହାଭାଗ୍ୟ ମୋର ହୋଇଥିଲା । ସେତେବେଳେ ତାଙ୍କ "ନଆଁଖୁଣ୍ଟା" ଅଫିସ ଥାଏ ଦରଘାବଜାର ହାତୀପୋଖରୀ ପାଖ ହୁମାୟୁନ୍ କାଦର ବେଗ୍ଙ୍କ ଭଡ଼ାଘରେ । ମୁଁ ଅନେକ ସମୟରେ

---

* "କବି ତାଙ୍କର ଧ୍ୱଂସଜିଜ୍ଞାସା ଲାଗି ଯେଉଁ କାବ୍ୟଧାରାର ଅନୁସରଣ କରିଛନ୍ତି, ତହିଁରେ ଓଡ଼ିଆ ବ୍ୟଙ୍ଗ ସାହିତ୍ୟରେ ତାଙ୍କର ପୂର୍ବସୂରୀ ଗୋଦାବରୀଶଙ୍କ ପ୍ରଭାବ ଅନେକାଂଶରେ ଦେଖିବାକୁ ମିଳେ । × × କବି ଗୋଦାବରୀଶ ବ୍ୟଙ୍ଗ ବିଦ୍ରୂପକୁ ବ୍ୟବହାର କରିଥିଲେ ସମାଜର ସଂସ୍କାର ଲାଗି । କବି ରବି ସିଂ ଏହାକୁ ଅଧିକ ତୀବ୍ର ଓ ଶାଣିତ କରି ପ୍ରଚଳିତ ବ୍ୟବସ୍ଥାର ସ୍ୱାର୍ଥ ଓ ସଙ୍କୀର୍ଣ୍ଣ ଚେତନାର ମୂଳଭିତ୍ତିକୁ ଆଘାତ କରିଛନ୍ତି—ତାକୁ ସମୂଳେ ଧ୍ୱଂସ କରିବା ଲାଗି ।"

(ଶ୍ରୀ ରଘୁନାଥ ଦାସ—"ଝଂକାର", ଜାନୁଆରୀ, ୧୯୬୭)

ଉପବାସରେ ରହୁଛି—ଏଇଟାକୁ ଗୋଦାବରୀଶ ବାବୁ ପସନ୍ଦ କରି ପାରୁନଥିଲେ ଓ ବ୍ୟଥିତ ହେଉଥିଲେ ଏବଂ କ୍ରମାଗତ ମୋତେ ଆର୍ଥିକ ସାହାଯ୍ୟ ମଧ୍ୟ କରୁଥିଲେ । ଦିନେ ଦିନେ ଖାଇବେଳେ, ସନ୍ଧ୍ୟାରେ, ନିର୍ଜନ ରାତିରେ ସେ ମୋତେ ତାଙ୍କ ଅଫିସରେ ବସାଇ 'ଡ଼ିକ୍‌ଟେସନ୍‌' ଦେଉଥିଲେ । ବର୍ଷ ବର୍ଷ ଧରି ତାଙ୍କ ଠାରୁ 'ଡ଼ିକ୍‌ଟେସନ୍‌' ଗ୍ରହଣରେ ସୌଭାଗ୍ୟ ମୋର ହୋଇଛି । ଫଳତଃ ମୋର ବର୍ଣ୍ଣଗତ ତ୍ରୁଟି କେବଳ ସଂଶୋଧିତ ହୋଇନାହିଁ, କବିତାରେ ଭାଷାର ସଂଯୋଜନ, ଛନ୍ଦର ପ୍ରୟୋଗ, ଆବେଗ ସହିତ ଶାବ୍ଦିକ ନିଖୁଣତା, ଧ୍ୱନିସାମ୍ୟ ସବୁକିଛିକୁ ଆୟତ୍ତ କରିଛି । ସୁଦୀର୍ଘ ବର୍ଣ୍ଣନାବହୁଳ, ପ୍ରାଣଭରି ଗଣିଗଣି ସ୍ମୃତି ମୋର ବିଜଡ଼ିତ ତାଙ୍କ ସହିତ । ଦିନେ ଦିନେ ସେ ମୋର ମାନସିକ ଅବସ୍ଥା ଠଉରାଇ ମୋତେ "ପାଇୟୋନିୟର କ୍ଲବ୍‌"ରୁ ସାଙ୍ଗରେ ନେଇ ଜଳଖିଆ ଦୋକାନକୁ ଯାଆନ୍ତି, ନିଜ ପାଇଁ ଚା' ମଗାଇ ମୋ ପାଇଁ ଜଳଖିଆ ମଗାନ୍ତି । ମୋତେ ଜବରଦସ୍ତ ପେଟଭରି ଖୁଆଇ ଫେରନ୍ତି ଅଫିସକୁ । ନିଜର ଘରି ଭୋଜନ ପାରି ଖୋଲାଦେହରେ ମୋ ସାମ୍ନା ଚଉକିରେ ବସି ରସରସିଆ କଥା କହି ଆରମ୍ଭ କରନ୍ତି 'ଡ଼ିକ୍‌ଟେସନ୍‌' ଦେବା । ରାତି ବଢେ, କଟକ ସହରର ପଥଘାଟ ନିର୍ଜନ ହୋଇଉଠେ । ସିଗାରେଟ୍‌ର ଘନଘନ ଶୋଷଣ ଭିତରେ ଅନର୍ଗଳ ତାଙ୍କର 'ଡ଼ିକ୍‌ଟେସନ୍‌'—ପୁଣି କବିତାର, ପୁଣି ମାତ୍ରାବୃତ୍ତ ଛନ୍ଦୋମୟ କବିତାର ! କବିତା କ୍ଷେତ୍ରରେ ଅନ୍ୟକୁ 'ଡ଼ିକ୍‌ଟେସନ୍‌' ଦେବା ଏକ ଦାରୁଣ ବିସ୍ମୟକର ବ୍ୟାପାର । ୧୭ଶ ଶତକର ଇଂରେଜ ମହାକବି ଅନ୍ଧ ଜନ୍ ମିଲ୍‌ଟନ ଅନ୍ୟକୁ 'ଡ଼ିକ୍‌ଟେସନ୍‌' ଦେଉଥିବା କଥା ମୁଁ ବହିରୁ ପଢ଼ିଥିଲି, ବଙ୍ଗଳାର ମାଇକେଲ ମଧୁସୂଦନ ତାଙ୍କ 'ମେଘନାଦ ବଧ' ମହାକାବ୍ୟର ବିଭିନ୍ନ ଅଂଶକୁ ଏକାଧିକ ଲୋକଙ୍କୁ ଏକା ସାଙ୍ଗରେ 'ଡ଼ିକ୍‌ଟେସନ' ଦେଉଥିବା ସର୍ବବିଦିତ । କିନ୍ତୁ ନିଜ ଆଖିରେ, ମନରେ, ପ୍ରାଣରେ, କଲମରେ ଦେଖିଛି, ଅନୁଭବ କରିଛି ୭ କବି ଗୋଦାବରୀଶ ମହାପାତ୍ର କବିତାରେ 'ଡ଼ିକ୍‌ଟେସନ' ଦେବା । ଏହି ମହାନ କାବ୍ୟ-ତାରକା ସହିତ ଏକାତ୍ମ ହେବାର ମହାନ ସୌଭାଗ୍ୟ ମୋର ନ ହୋଇ-ଥିଲେ ମୋ କବିତ୍ୱର କଳିଟି ଅଦିନରେ ପ୍ରେରଣା, ଉତ୍ତରାଧିକାର ଅଭାବରୁ ମଉଳି ଯାଇଥାନ୍ତା । ମୋର କବି ଜୀବନର-ପ୍ରାରମ୍ଭରେ ତାଙ୍କର ସାନ୍ନିଧ୍ୟ ମୋତେ ଦେଇଥିଲା ଆଶା-ଆଶ୍ୱାସନା ଓ ପ୍ରଚଣ୍ଡ କାବ୍ୟିକ ଉପାଦାନ । ମନେ ପଡ଼ୁଛି ତାଙ୍କର ମୋ ପ୍ରତି ଏହି ସ୍ନେହ ଶ୍ରଦ୍ଧା ପାଇଁ ତାଙ୍କର କେତେକ

ନ୍ୟସ୍ତସ୍ୱାର୍ଥ ଆତ୍ମୀୟ ଅସୁଖୀ ହୋଇ ଉଠିଲେ । ସେମାନଙ୍କର ଆଶଙ୍କା ଥିଲା, କାଳେ ଗୋଦାବରୀଶ ବାବୁ ମୋତେ 'ନଅାଁଖୁଣ୍ଟା'ର କୌଣସି ଦାୟିତ୍ୱ ଦେଇ ଦେବେ କି ?

ଆଜି ଏକ ମଜା ଘଟଣା ଏଠି ମନେପଡୁଛି । ସେତେବେଳେ "ନଅାଁଖୁଣ୍ଟା"ରେ 'ଗାଣ୍ଡି ହଜଇଛି' ଶିରୋନାମାରେ ଏକ ଲେଖା ବେଳେ ବେଳେ ପ୍ରକାଶ ପାଉଥାଏ । ସେହି ଶିରୋନାମ । ଥିବା ବ୍ୟଙ୍ଗ ଲେଖାଟିର ଲେଖକ ଥିଲେ ୨ଜଣ । ଜଣେ ହେଲେ 'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥ, ଅନ୍ୟ ଜଣକ ହେଲେ ସାମ୍ବାଦିକ ଶ୍ରୀ ଶ୍ରୀହର୍ଷ ମିଶ୍ର । ଦିନେ ଏକାନ୍ତରେ ତାଙ୍କ ଠାରୁ 'ଡିକ୍‌ଟେସନ' ନେଉଥିବା ବେଳେ ମୁଁ ତାଙ୍କୁ ପଚାରିଲି, 'ଏ ଗାଣ୍ଡି ହଜଇଛି' ଶିରୋନାମାର ମାନେ କ'ଣ ?"

ସେ ଟିକେ ରହିଗଲେ । ଫେଁକିନା ହସି ଦେଇ ସନ୍ତର୍ପଣରେ ଚାରିଆଡ଼କୁ ଅନାଇ କହିଲେ, "ଶୁଣିବ ? ଭାରି ଅଶ୍ଳୀଳ ।"

ମୁଁ କହିଲି, "କୁହନ୍ତୁ ।"

ସେ କହିଲେ-"ଦିନେ ଗୋଟିଏ ଝିଅ ଆଉ ଗୋଟିଏ ପୁଅର ଏକାଥରକେ ଗାଣ୍ଡି ହଜିଗଲା । ସଂଧ୍ୟା ହୋଇଗଲା, କେହି କାହାର ଗାଣ୍ଡି ପାଇଲେ ନାହିଁ । ଗାଣ୍ଡି ଖୋଜି ଖୋଜି ଯୁବକ ଯୁବତୀ ଦୁଇଜଣଯାକ ଗୋଟିଏ ପୁରୁଣାକାଳିଆ ଜମିଦାରଙ୍କ ଭଙ୍ଗା କଚେରି ଘରେ ପହଞ୍ଚିଲେ ବେଳକୁ ବର୍ଷା ହେଲା । ଦୁହେଁ ସେଠି ଆଶ୍ରୟ ନେବା ଭିତରେ ଦୁହିଁଙ୍କ ଭିତରେ ପ୍ରେମର ଅବସ୍ଥା ସୃଷ୍ଟି ହେଲା । ଶେଷରେ ତାହା ଦୈହିକ ମିଳନ ସ୍ତରରେ ପହଞ୍ଚିଲା । ତା'ରି ଭିତରେ ଯୁବତୀକୁ ଯୁବକ ପଚାରିଲା, ସେ କି ପ୍ରକାର ଆନନ୍ଦ ଅନୁଭବ କରୁଛି । ଯୁବତୀ କହିଲା, ତାକୁ ତ୍ରିଭୁବନ ଦେଖା ଯାଉଛି । ସଙ୍ଗେ ସଙ୍ଗେ ଯୁବକ ପଚାରିଲା, ତା ହେଲେ ମୋ ଗାଣ୍ଡିଟା କୋଉଁଠି ଅଛି କହିଲୁ ?"

ମୁଁ ହସି ହସି ଗଡ଼ି ଯାଇଥିଲି ସେଦିନ ।

୧୯୫୬ ମସିହା···ଠିକ ମନେ ନାହିଁ ।

ହଠାତ୍ ଗୋଦାବରୀଶ ବାବୁ ଆକ୍ରାନ୍ତ ହେଲେ କର୍କଟ ରୋଗରେ । ତାଙ୍କ ଅଫିସ ସାମ୍ନା ରାସ୍ତାର ଆରପଟରେ ଥିବା ଏକ ମୁସଲମାନ ଭଦ୍ରଲୋକଙ୍କର ଏକ ଖୁଲ ଘରକୁ ସେ ମଧ୍ୟ ଭଡ଼ାରେ ନେଇଥିଲେ । ସେଇ ଘରେ ସେ ଥିଲେ

ଶଯ୍ୟାଶାୟୀ । ଚିକିତ୍ସା ବା ଅନ୍ତରଙ୍ଗିତ ନିକଟର କହୁଛି, ତାଙ୍କ ଆତ୍ମୀୟ ତଥା ପରିବାର ଲୋକ ତାଙ୍କ ପାଖରୁ ସେତେବେଳେ ଦୂରେଇ ରହିବା ନିଗଦେ ମଣିଲେ । ମୁଁ ତାଙ୍କ ଶେଯପରେ ନାଡ଼ି ଧରି ବସିଥିଲି କେବଳ ନୁହେଁ, ଦିବାରାତ୍ର ତାଙ୍କ ପାଖେପାଖେ ରହି ତାଙ୍କର ସେବା ଶୁଶ୍ରୂଷା ଠାରୁ ଝାଡ଼ା ପରିଷ୍କାର ପର୍ଯ୍ୟନ୍ତ କରିଥିଲି । ଏହାର ଜୀବନ୍ତ ସାକ୍ଷୀ ଡାକ୍ତର ସୁଧାକର ଆଗ୍ରୱାଲ ।

ଗୋଦାବରୀଶ ବାବୁ ସୁସ୍ଥ ହୋଇ ଉଠିବା ପରେ ମୋ' ପ୍ରତି ତାଙ୍କର ଆନ୍ତରିକତା ବହୁ ପରିମାଣରେ ବଢ଼ି ଯାଇଥିଲା । ତାର ସ୍ମାରକ ସ୍ୱରୂପ ସେ ଦିନେ ଏକ କ୍ଷୁଦ୍ର କବିତା ନିଜ ହାତରେ ଲେଖି, ତା' ତଳେ ଦସ୍ତଖତ କରି, ତାରିଖ ଦେଇ ମୋ ହାତକୁ ବଢ଼ାଇ ଦେଇଥିଲେ । କବିତାଟି ପରେ ତାଙ୍କ "ନିଆଁଖୁଣ୍ଟା"ରେ ପ୍ରକାଶିତ ହୋଇଥିଲା । ତାର ପ୍ରଥମ ଦୁଇଧାଡ଼ି ହେଲା ଏହିପରି—ଯଥା: "ତମ ପାଇଁ କି ଲେଖିବି କବିତା ବନ୍ଧୁ ହେ / ତମେତ କବିତା ଏକ ଏହି ମୋ ମନରେ ।" ତାଙ୍କ ସ୍ୱହସ୍ତ ଲିଖିତ ଏହି କବିତାଟିର ମହାର୍ଘ ପାଣ୍ଡୁଲିପିଟିକୁ ମୋ ଜୀବନର ପ୍ରଚଣ୍ଡ ଘୂର୍ଣ୍ଣିଝଡ଼ କୁଆଡ଼େ ଉଡ଼ାଇ ନେଇଛି ।

## ॥ କମିତ ଏପରି କଲ ॥

ଯେଉଁଠି ଯେତିକି ଆଲୋକ, ସେଇଠି ସେତିକି ଅନ୍ଧକାର ! ଯେଉଁଠି ଯେତିକି ମହାନତା, ସେଇଠି ସେତିକି କ୍ଷୁଦ୍ରତା ! କି ବିଚିତ୍ର ଏ ଘଟଣା ! ଏ କଥାଟି ମୋର ଯୁକ୍ତିବାଦୀ ମନକୁ ବହୁକାଳ ଯାଏ ଆଲୋଡ଼ିତ କରିଥିଲା ୧୯୫୭ ମସିହାରୁ । ଘଟଣାଟି ହେଲା, ଗୋଦାବରୀଶ ବାବୁ କଲେଜରେ ଶଯ୍ୟାଶାୟୀ ଥିବାବେଳେ ମୋର ଏକ କ୍ଷୁଦ୍ରଗଳ୍ପ "ମେଲେଏ" ମୁଁ ତାଙ୍କୁ ଦେଇଥିଲି ତାଙ୍କର ମତାମତ ଜାଣିବା ପାଇଁ । ପୂର୍ବରୁ ଗଳ୍ପଟିର ପାଣ୍ଡୁଲିପିକୁ ପଢ଼ିଥିଲେ ୰ ଜାନ୍ତ୍ରପୁ-କତ ବୀରକିଶୋର ଦାସ, ୰ 'ନବଜୀବନ' ସମ୍ପାଦକ ଚିନ୍ତାମଣି ମିଶ୍ର । ଚିନ୍ତାମଣି ବାବୁ ଗଳ୍ପଟିକୁ "ନିଆଁଖୁଣ୍ଟା"ରେ ପ୍ରକାଶ କରିବାକୁ ପରାମର୍ଶ ଦେବାରେ ମୁଁ ସେଟିକୁ ଗୋଦାବରୀଶବାବୁଙ୍କ ହାତରେ ଦେଇଥିଲି ।

ଗୋଦାବରୀଶବାବୁ ଗଳ୍ପଟିକୁ ନିଜ ଦେଖା ତଳେ ରଖି ପରେ ପଢ଼ି ମୋତେ କହିବେ ବୋଲି କହିଥିଲେ । ଦିନ ଅତିବାହିତ ହେଲା । ଦିନେ ଦେଖିଲି ମୋର ସେହି "ମେଲେଏ" ଗଳ୍ପଟି ଅବିକଳ "ନିଆଁଖୁଣ୍ଟା"ରେ

ପ୍ରକାଶିତ ହୋଇଛି । ସେଦିନ ଖୁବ୍ ଆନନ୍ଦିତ ହୋଇଥିଲି । ହଠାତ୍ କେତେ ମାସ ପରେ ପୁଣି ଦେଖିବାକୁ ପାଇଲି 'ଗ୍ରଂଥମନ୍ଦିର' ପ୍ରକାଶନ ସଂସ୍ଥା କର୍ତ୍ତୃକ ଗୋଦାବରୀଶ ବାବୁଙ୍କର ସମ୍ପାଦିତ "ଜନ୍ମାଷ୍ଟମୀ" ପ୍ରକାଶ ପାଇଛି ଓ ତହିଁରେ ସନ୍ନିବେଶିତ ହୋଇଛି ମୋର ସେହି "ମେନେଲେଏ" ନାମକ ଗଳ୍ପଟି । ଯେତିକି ବିସ୍ମିତ ହୋଇଥିଲି, ସେତିକି ହତବାକ୍ ହୋଇଥିଲି ଏ ଘଟଣାରେ । ଅନ୍ୟର ସୃଷ୍ଟିକୁ ବିନା ଦ୍ୱିଧାରେ ଆତ୍ମସାତ୍ କରିପାରନ୍ତି ପୁଣି ଗୋଦାବରୀଶ ମହାପାତ୍ରଙ୍କ ପରି ପ୍ରତିଭା ! କାହାକୁ କହିବି, କିଏବା ବିଶ୍ୱାସ କରିବ ମୋ କଥାରେ ? ବରଂ ମୋତେ ଲୋକେ "ପାଗଳ" ବୋଲି କହିବେ ସିନା ! ମନରେ ଦୁଃଖ, କ୍ଷୋଭ, ଅଭିମାନ ଜମାଟ ବାନ୍ଧିବାକୁ ଆରମ୍ଭ କଲା । ତା'ର ଫଳଶ୍ରୁତି ହୋଇଥିଲା ତା୧୭।୧। ୧୯୫୯ରିଖରେ ରଚିତ ଓ ପରେ ମୋ ଦ୍ୱାରା ସମ୍ପାଦିତ "ଗ୍ଳଷ୍ଟ" ନାମକ ପତ୍ରିକାରେ ପ୍ରକାଶିତ "ଅଭିଯୋଗ" ନାମକ ଏକ କବିତା । ସେଥିରେ ନଥିଲା ଆକ୍ରମଣ, ଥିଲା ଅଭିମାନ, ଅନୁଯୋଗ, ଦୁଃଖ । ପରେ କବିତାଟି ମୋର "ଶିଥିଳ ବଲ୍‌ଗା" ନାମକ କାବ୍ୟଗ୍ରଂଥରେ ସଂଯୋଜିତ ହୋଇଛି । କବିତାଟି "ଗ୍ଳଷ୍ଟ"ରେ ପ୍ରକାଶିତ ହେଲା ପରେ ସାହିତ୍ୟ ଜଗତରେ ଏକ ତୁମୁଳ ଆଲୋଚନା ଆରମ୍ଭ ହୋଇଥିଲା । ଗୋଦାବରୀଶ ବାବୁ ବି ଅତି ମନଦୁଃଖ କରିଥିଲେ । ଏ ଘଟଣା ପରେ ମୁଁ ଜାଣିଶୁଣି ତାଙ୍କ ଠାରୁ କିଛିପଦ ଦୂରତ୍ୱକୁ ଅପସରି ଆସିଥିଲି । ସେଥିରେ ସେ ଆହୁରି ଦୁଃଖ ପାଇଥିଲେ । ୧୯୫୯ ମସିହା ବେଳକୁ ଓଡ଼ିଆ ସାହିତ୍ୟରେ ମୋର କ୍ରମବର୍ଦ୍ଧମାନ ଖ୍ୟାତି । ସେତେବେଳକୁ 'ଝଙ୍କାର' ଅଫିସ ଗୋଦାବରୀଶ ବାବୁଙ୍କ ହରିପୁର ରୋଡସ୍ଥ ନିଜସ୍ୱ ଗୃହରେ । ମୁଁ ତାର ଅନତିଦୂରରେ ମାଧିକ ଟଙ୍କା ଭଡ଼ାରେ ଆଡଭୋକେଟ୍ ଦାମୋଦର ମହାନ୍ତିଙ୍କ ପ୍ରାସାଦ ପାଖରେ ଗୋଟିଏ ମୋହରିର ଘରେ କାମଳ ରୋଗରେ ପୀଡ଼ିତ ଥାଏ । ମୋହରିରଟି ବୃଦ୍ଧ । ତାର ମେଦବହୁଳ ରକ୍ଷିତାର ମଧ୍ୟ ଡାହାଣ ଆଖିଟି କଣା, ବୁଢ଼ାର ଜ୍ୱାଇଁର ମଧ୍ୟ ଡାହାଣ ଆଖିଟି କଣା । ରକ୍ଷିତାର ସକାଳୁ ମୋହରିର ଉପରେ ଗାଳିବର୍ଷଣ ଶୁଣି ମୋର ନିଦ ଭାଙ୍ଗେ । ସେଇଠି ଆପାଦମସ୍ତକ ହଳଦିଆ କାମଳ ରୋଗରେ ଶଯ୍ୟାଶାୟୀ ଥିବାବେଳେ ଗୋଦାବରୀଶ ବାବୁ ଘନ ଘନ ମୋ ପାଖରେ ଉପସ୍ଥିତ ଥିଲେ । ପୂର୍ବର ସେହି ସ୍ନେହ, ବ୍ୟବହାର । ସେଥିରେ ନିଜେ ମୁଁ ଲଜ୍ଜିତ ହୋଇ ପଡ଼ିଥିଲି ।

ତାପରେ ୧୯୬୦ରେ ମୋର ବିବାହ । ବନ୍ଧନ ସ୍ଥାନରେ ମୁଁ ଘରଲୋକ ନେଇ ରହିବା ଭିତରେ ଗୋଦାବରୀଶ ବାବୁ ମୋ ପାଖକୁ ଯାଉଥାନ୍ତି, ପାଖରେ

ବସି ଗପ୍ ଖାଉଛନ୍ତି, ମୋ ପିଲାଙ୍କୁ ପିତାମହ ସଦୃଶ ଆଶୀର୍ବାଦ କରୁଛନ୍ତି ।

ସେ କର୍କଟ ରୋଗରେ ପୀଡ଼ିତ ହୋଇ ଶଯ୍ୟାଧୀନ ଥିଲାବେଳେ ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରଚଣ୍ଡ ତରୁଣ-ପ୍ରବୀଣ ସଂଘର୍ଷ ଆରମ୍ଭ ହୋଇଥିଲା । ସେ ସଂଘର୍ଷରେ ମୋର ସାରସ୍ୱତ ସହଯୋଦ୍ଧା ଶ୍ରୀ ରବିନାରାୟଣ ମହାପାତ୍ରଙ୍କୁ ଥରେ ଗୋଦାବରୀଶ ବାବୁ ଦୁଃଖରେ କହିଥିଲେ—ତାଙ୍କ ଅନ୍ତେ "ନଅାଁ ଖୁଣ୍ଟା"ର ଅଭାବ ମୁଁ କେବଳ କିଛି ପୂରଣ କରିବାକୁ ସମର୍ଥ । ହେଲେ, ମୁଁ ତାଙ୍କ ଠାରୁ ଦୂରେଇ ଯାଉଛି ତାଙ୍କୁ ଭୁଲ୍ ବୁଝି । ଏକଥା ରବି ମୋତେ ନିଜେ କହିଛି ।

ମୋର କାବ୍ୟିକ ସିଦ୍ଧି ଓ ପ୍ରତିଷ୍ଠା ଗୋଦାବରୀଶ ବାବୁ ନିଜେ ଦେଖି ଯାଇଛନ୍ତି । ତାଙ୍କ ଦେହାନ୍ତର ୯ମାସ ପୂର୍ବେ ଅର୍ଥାତ ତା ୧୭ । ୩ । ୭୫ ରିଖରେ ମୋର "ଚରମପତ୍ର" କାବ୍ୟଗ୍ରଂଥ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲା । ମୋ ସହିତ ତାଙ୍କ "ଜଠ କଙ୍କାଳ" ପୁସ୍ତକ ଏକାଡେମୀ ପୁରସ୍କାର ଲାଭ କରିଥିଲେ ମଧ୍ୟ ସେ ତାହା ଗ୍ରହଣ କରିବାକୁ ଯାଇ ପାରିନଥିଲେ ।

୧୯୭୫ ନଭେମ୍ବର ତା୨୫ରିଖରେ ସେ ଜୀବନ ପାଖରୁ ବିଦାୟ ନେଲେ । ତାଙ୍କର ଶବଯାତ୍ରା ଯେତେବେଳେ କଟକର ପ୍ରଧାନ ରାସ୍ତାରେ "ସଖୀଚଉରା" ଅଭିମୁଖେ ଅଗ୍ରସର ହେଉଥିଲା, ମୁଁ ସେଥିରେ ଯୋଗ ଦେବାର ଧୈର୍ଯ୍ୟ ହରାଇ ବସି ରହିଥିଲି ଜଗନ୍ନାଥ ବଲ୍ଲଭର କାଳୀଚରଣ ପଟ୍ଟନାୟକଙ୍କ ଦୁଆର ଅଗଣାରେ । ତାଙ୍କ ସ୍ମୃତିରେ ଦୁଇଟି କବିତା ମୁଁ ଲେଖିଥିଲି । ଗୋଟିଏ କବିତାର ଦୁଇଧାଡ଼ି ହେଲା, "ଗାଡ଼ିଏ କାଗଜ ଲେଖି ଛାଡ଼ିଗଲେ ନେଲେ ନାହିଁ ସାଥେ / ନେଇଗଲେ 'ନଅାଁ ଖୁଣ୍ଟା' ଶୋଇ ଶୋଇ ପଢ଼ିବାକୁ ହାତେ" ।

ଗୋଦାବରୀଶ ବାବୁ ! ଆପଣ ଏ ଅଭାଗୀ ଓଡ଼ିଶାର ଅଘଟନ ଘଟନ-ପଟିୟସୀ ଧ୍ରୁବତାରା । ଆପଣଙ୍କ ହୃଦୟର ଅତି ପାଖାପାଖି ଏକଦା ଥିଲା ମୋର ସ୍ଥାନ । ଆପଣଙ୍କ ଗଦ୍ୟ-ପଦ୍ୟ, ବ୍ୟଙ୍ଗ, କାବ୍ୟ-କବିତାର ଛନ୍ଦ, ଭାଷା, ଯମକ, ଅନୁପ୍ରାସ, ବକ୍ରୋକ୍ତି, ଆତ୍ମୀୟତା, ସ୍ନେହଶ୍ରଦ୍ଧା ମୋର ଆଜିର ବହୁଳ କାବ୍ୟପୁରୁଷକୁ କରିଛି ପ୍ରଚଣ୍ଡ ବଳଶାଳୀ । ଆପଣଙ୍କୁ, ଆପଣଙ୍କ ସ୍ମୃତିକୁ

ନିଜର ହୃଦୟ-ଜବା ଛିନ୍ନ କରି ଅର୍ଘ୍ୟଦେବା ଯଥେଷ୍ଟ ନୁହେଁ, କାରଣ-ଆପଣ ଆକାଶରୁ ବଳି ପରିବ୍ୟାପ୍ତ, ହିମଗିରିରୁ ବଳି "ଉନ୍ନତଶିର", ବିଶାଳ ଏକ ମହୀଳହ୍ରଦ ଆପଣ, ଆପଣଙ୍କ ସ୍ମୃତିର ସୁମହାନ ବେଦୀମୂଳେ, ଆପଣଙ୍କ ଛତ୍ରଦେଶରେ ଅର୍ବୁଦ ଅର୍ବୁଦ ପ୍ରଣତି।

## ।। ମହିଷାପାଟ ବିଦ୍ରୋହ ।।

ସେଟାଏ ଆଡ଼େ ପ୍ରଗତି ଓ ବିପ୍ଳବୀ ମୂଲ୍ୟବୋଧର କଲ୍ଲୋଳିତ ପାରାବାର ଏବଂ ତା'ର ନୀରବ ଆମନ୍ତ୍ରଣ, ଯାହା ସେତେବେଳେ ଥିଲା ମୋର ଅଜଣା—ଅନ୍ୟଆଡ଼େ ଜଣେ ସାଧାରଣ ସଂସାରୀ ମଣିଷ ପରି ଦୁନିଆରେ ଅଖ୍ୟାତ, ଅଜ୍ଞାତ ଭାବେ ବଂଶ ରକ୍ଷା ପାଇଁ ପ୍ରବଳ ମୋହ। ଏହି ମୋହର ମାୟାମୃଗ ମୋତେ ମୋର ଚଳନ୍ତିପଥରୁ ବିଚ୍ୟୁତ କରି ୧୯୫୭ ମସିହା ମଇମାସରେ ଟାଣି ନେଇଥିଲା ଢେଙ୍କାନାଳର ମହିଷାପାଟ ମୌଳିକ କୃଷି-ବିଦ୍ୟାଳୟ, ଗ୍ରାମସେବକ ତାଲିମ କେନ୍ଦ୍ରକୁ। ସେଠି ତାଲିମ ପାଇ ଉତ୍ତୀର୍ଣ୍ଣ ହୋଇଥିଲେ ସମାଜରେ ଆଜି ମୋର ପରିଚୟପତ୍ର ହୋଇଥାନ୍ତା ମୁଁ ଜଣେ ଗ୍ରାମସେବକ ମାତ୍ର—ଜନସାଧାରଣଙ୍କର ଏକ ନିକଟତମ ବନ୍ଧୁ। କୌଣସି ବ୍ଲକ୍‌ର ବି.ଡି.ଓ, ରେଭିନ୍ୟୁ ଇନ୍‌ସ୍ପେକ୍ଟର, କୃଷି ବିଭାଗର ଅଫିସରମାନଙ୍କ ପରିମଣ୍ଡଳ ମଧ୍ୟରେ ନିର୍ଦ୍ଦିଷ୍ଟ ବା ସୀମିତ ଥାନ୍ତା ମୋର ଚିନ୍ତା, ଚେତନା ଓ ଜୀବନର ଧାରା। କିନ୍ତୁ ସେ "ଯୋଗ୍ୟତା" ମୋର ନଥିବାରୁ ମୋର ଦୁର୍ଦ୍ଦୈବ ସେଦିନ ତାର ପ୍ରଚଣ୍ଡ ଭୀମକାନ୍ତ ମୂର୍ତ୍ତି ଧରି ଅଟ୍ଟହାସ କରି ମୋତେ କହିଥିଲା—ଆରେ ମୂଢ଼! ଆରେ ପାଗଳ! ଏତେ ଅଗ୍ନିଦାହ, ଝଡ଼ ଝଞ୍ଜା, ଏତେ ଅନାହାର ଅନଶନ, ଏତେ ଅନାଦର-ଅବହେଳା, ଏତେ ସାମାଜିକ-ଅତ୍ୟାଚାର ଓ ସଂଗ୍ରାମ ସଂଘାତରୁ କ'ଣ ତୋର କିଛି ଶିକ୍ଷା ହେଲା ନାହିଁ? ସଂସାରୀ ହେବୁ? ନୀଡ଼ ରଚନା କରି ବଂଶ ବୃଦ୍ଧି କରିବୁ? ମୋହଗ୍ରସ୍ତ ଦିବାନ୍ଧ! ବୃଥା ଆଜି ଅଳୀକ ତୋର ଏଇ ସ୍ୱପ୍ନ ଏବଂ ଆଶା। ତୋର ଏଇ ଅବାସ୍ତବ ସ୍ୱପ୍ନ ଏବଂ ଆଶାକୁ ତାସ୍‌ର ପ୍ରାସାଦ ପରି ମୁଁ ଧୂଳିସାତ କରିଦେବି। ମୋର ଧ୍ୱଂସଣ ଶକ୍ତିକୁ ମୁକାବିଲା କରିବା ପାଇଁ ତୋର ତାକତ ଅଛି ତ? ନା, ନାହିଁ? ଥରେ ପଛକୁ ବୁଲି ଦେଖ୍, ତୋ ପାଇଁ ଯେଉଁ ପଥ ନିର୍ଦ୍ଦିଷ୍ଟ ହୋଇ ରହିଛି, ତାହା ହେଲା ସ୍ଥିତାବସ୍ଥା, ଅସତ୍ୟ, ଅମଙ୍ଗଳ ଅଶିବ ବିରୁଦ୍ଧରେ ବିଦ୍ରୋହ ଏବଂ ବିପ୍ଳବର ପଥ। ଶିକ୍ଷା-ସଭ୍ୟତା, ଏ ଅର୍ଥସର୍ବସ୍ୱ ପୃଥିବୀର ତୁ ନାଗରିକ ନୋହୁଁ।

ତୋ ପୃଥିବୀ ହେଉଛି ବ୍ୟଥା ବେଦନା, ଘୃଣା-ଦ୍ୱନ୍ଦ, ଶୋକ-ଦୁଃଖ, ହର୍ଷ-ବିଷାଦମୟ । ସେଇ ପୃଥିବୀରେ ତୋର ମାତ୍ର ରଚନା ସମ୍ଭବ, ସେଇ ପୃଥିବୀରେ ତୋତେ ଅପେକ୍ଷା କରିଛି ଚରମ ସାଫଲ୍ୟ ।

ଏହାର ତାତ୍ପର୍ଯ୍ୟ ମୁଁ ସେତିକିବେଳେ ବୁଝିଥିଲି, ଯେତେବେଳେ କି ମୁଁ ଢେଙ୍କାନାଳର ମହିଷାପାଟ ଗ୍ରାମସେବକ ତାଲିମ କେନ୍ଦ୍ରରେ ଶିକ୍ଷାନବିସ୍ ହୋଇ ସେଠାକାର କାଏମୀ ସ୍ୱାର୍ଥବାଦୀ ଚକ୍ର ବିରୁଦ୍ଧରେ ବିଦ୍ରୋହ ଘୋଷଣା ପୂର୍ବକ ସପ୍ତାହକରୁ ଊର୍ଦ୍ଧ୍ୱକାଳ ଅନଶନ ଧର୍ମଘଟ କରି ଗିରଫ ହୋଇ, କାରାବରଣ କରି ପୁନର୍ବାର ମୋର ଚଳନ୍ତା ପଥକୁ ଫେରିଆସେ ।

ମୋ ସେହି ଏକକ "ମହିଷାପାଟ ବିଦ୍ରୋହ" ସେତେବେଳେ ଥିଲା ଢେଙ୍କାନାଳ ଜିଲ୍ଲାକର୍ତ୍ତୃପକ୍ଷ, ଓଡ଼ିଶା ସରକାରଙ୍କ କୃଷିବିଭାଗ ପକ୍ଷରେ ଏକ "ସମସ୍ୟା" । ତା'ଛଡ଼ା ଜନସାଧାରଣଙ୍କ ମହଲରେ ତାହା କମ୍ ଆଲୋଡ଼ନ ସୃଷ୍ଟି କରିନଥିଲା । ଯେଉଁ କାଏମୀ ସ୍ୱାର୍ଥବାଦୀଚକ୍ରଟି ବିରୁଦ୍ଧରେ ମୋର ସେ ବିଦ୍ରୋହ ସେତେବେଳେ ଉଦ୍ଦିଷ୍ଟ ଥିଲା, ସେ ଚକ୍ରର ମଣିଷଟିମାନଙ୍କୁ ଇତିହାସ ମନେରଖିବାର କୌଣସି କାରଣ ନାହିଁ । କିନ୍ତୁ ସେମାନେ ମୋ ବିଦ୍ରୋହୀ-ବ୍ୟକ୍ତିତ୍ୱ, ଇସ୍ପାତି ନୈତିକତାକୁ କାଦୁଅ ଫିଙ୍ଗି ଆଜି ଇତିହାସର ପୃଷ୍ଠାକୁ ଆସିଛନ୍ତି । ହେଲେବି ସେମାନଙ୍କ ପ୍ରତି ମୋର କୌଣସି ଦ୍ୱେଷ ବା ଅସୂୟା ନାହିଁ । ଦୀର୍ଘ ୨୫ ବର୍ଷ ତଳର ସେହି ଆଲୋଡ଼ନକାରୀ ସମସ୍ତ ଓ ଘଟଣାକୁ ନିଜର ସ୍ମୃତିକୋଷ ଘିଣ୍ଟାଇ ଯେତେବେଳେ ରୂପାୟିତ କରିବାକୁ ବସିଛି ସେତେବେଳେ ମନେପଡୁଛି ବହୁ ସ୍ମୃତି, ବହୁ ମଣିଷର ସ୍ନେହଶ୍ରଦ୍ଧା ।

* * * *

ଗୋଟିଏ ଚା ଦୋକାନରେ ବସି ଚା ପିଉଥିବା ବେଳେ ଖବରକାଗଜରେ ପ୍ରକାଶିତ ଏକ ବିଜ୍ଞାପନ ଦେଖିଲି । ଗ୍ରାମସେବକ ନିଯୁକ୍ତି ପାଇଁ ବିଜ୍ଞାପନ । ସେଥିରେ ଥିଲା ଆବେଦନକାରୀମାନଙ୍କ ସହିତ ସାକ୍ଷାତକାର ପରେ ନିର୍ବାଚିତ ପ୍ରାର୍ଥୀମାନଙ୍କୁ ମାସିକ ଆର୍ଥିକ ଷ୍ଟାଇପେଣ୍ଡ ସହ ଏକବର୍ଷ କାଳ ମହିଷାପାଟ ମୌଳିକ କୃଷିବିଦ୍ୟାଳୟରେ ତାଲିମ ନେବାକୁ ହେବ । ତାଲିମ ସମସ୍ତ ଶେଷ ହେବା ଆଗରୁ ଯଦି କେହି ତାଲିମ କେନ୍ଦ୍ର ଛାଡି ଚାଲିଯା'ନ୍ତି, ତାହେଲେ ତାଙ୍କ ପିଛା ବ୍ୟୟିତ ହୋଇଥିବା ସରକାରୀ ଅର୍ଥକୁ ସରକାର ଫେରେଠ କରିବେ । ଏଥିପାଇଁ ତାଲିମ କେନ୍ଦ୍ରରେ ଭର୍ତ୍ତି ହେବା ଆଗରୁ ଓଡ଼ିଶାର ରାଜ୍ୟପାଳ ଏବଂ

ପ୍ରାର୍ଥୀମାନଙ୍କ ଭିତରେ ଏକ ଚୁକ୍ତି ବା ବଣ୍ଡ ସ୍ୱାକ୍ଷରିତ ହେବ । ତାଲିମ ପରେ ପ୍ରାର୍ଥୀଙ୍କୁ ଗ୍ରାମସେବକ ଭାବେ ନେଭମାସ୍ଥ ଦରମାରେ ନିଯୁକ୍ତି ମିଳିବ, ତାପରେ ପଦୋନ୍ନତି ଆଦି ରହିଛି ।

ଏହି ସୂଚନାର ସ୍ୱପ୍ନରେ ବିଭୋର ହୋଇ ମୁଁ ଆବେଦନ କଲି । କିଛିଦିନ ପରେ ଡାକରା ଆସିଲା ସାକ୍ଷାତକାର ପାଇଁ । ସାକ୍ଷାତକାରରେ ମୁଁ ସିଲେକ୍ଟ ହେଲି । ତା'ପରେ ଓଡିଶାର ରାଜ୍ୟପାଳ ଆଉ ମୋ ଭିତରେ ଚୁକ୍ତିନାମା ବଣ୍ଡ ସ୍ୱାକ୍ଷରିତ ହେଲା । ଏଥର ଢେଙ୍କାନାଳର ମହିଷାପାଟ ଯିବା ପାଇଁ ପ୍ରସ୍ତୁତ । ଯିବାକୁ ହେଲେ ଦରକାର ବିଛଣା, ବାସନକୁସନ ଇତ୍ୟାଦି । ତାହାତ ମୋର ନଥିଲା । ତାକୁ କିଣିବାକୁ ହେଲେ (ଓ ମହିଷାପାଟ ଯାଇ ମାସେ ନଯିବା ଯାଏଁ ଷ୍ଟାଇପେଣ୍ଡ ମିଳିବ ନାହିଁ, ତେଣୁ ହାତରେ ମାସେ ଚଳିବା ମୁତାବକ ପଇସା ଥିବା ଦରକାର) ଟଙ୍କା ଦରକାର । କୋଉଠୁ ପାଇବି ? ମନେ ଅଛି ପୂଜ୍ୟକବି ତଥା 'ନଅାଁଖ ଣ୍ଣା'ର ସମ୍ପାଦକ ୰ ଗୋଦାବରୀଶ ମହାପାତ୍ର ଯେତେବେଳେ ଏ ଘଟଣା ଶୁଣିଲେ, ସେତେବେଳେ ସେ ଏକ ଦୀର୍ଘଶ୍ୱାସ ନିର୍ଗତ କରି କହିଲେ, "ଏତେଦିନେ ତୁମେ ଗୋଟିଏ ରୋଜଗାର ପାଇଛ । ଆଗ ଲାଗି ଯାଅ, ପରେ ଦେଖାଯିବ ।" ତାପରେ ମୋତେ ଟ୧୦୦ଙ୍କା ସାହାଯ୍ୟ ସ୍ୱରୂପ ଦେଇଥିଲେ । ସେଥିରୁ ଟ୫୦ଙ୍କା ଖର୍ଚ୍ଚ କରି ଗୋଟିଏ ଆଲ୍‌ମୋନିୟମ୍ ଥାଳି, ଗିନା, ଡାଳ, ଖଣ୍ଡେ ସତରଞ୍ଜି, ଗୋଟିଏ ବିଛଣା ଚଦର କିଣିବାକୁ ଟ୫୦ଙ୍କା ହାତରେ ଧରି ମୋର ଯାତ୍ରା ଆରମ୍ଭ କରିଥିଲି ।

କେତେ ତାରିଖ ଠିକ୍ ମନେ ନାହିଁ । କିନ୍ତୁ ୧୯୫୭ ମସିହାର ମଇମାସ । ଯାଇ ଭର୍ତ୍ତି ହେଲି ମହିଷାପାଟ ମୌଳିକ କୃଷି ବିଦ୍ୟାଳୟରେ ଗ୍ରାମସେବକ ହେବା ପାଇଁ ତାଲିମ ନେବାକୁ ।

ମହିଷାପାଟ : ଢେଙ୍କାନାଳ ସହର ଠାରୁ କେତେ କି· ମି· ଦୂରରେ ଏଇ ସ୍ଥାନଟି । ଚାରି ପାଖରେ ଛୋଟ ପାହାଡ଼ ଆଉ ଜଙ୍ଗଲ । ତା'ରି ଭିତରେ ଦୀନଦରିଦ୍ର ଗ୍ରାମୀଣ ମଣିଷମାନଙ୍କର ଛୋଟ ଛୋଟ ଗାଁ । ପୂର୍ବେ ରାଜୁଡ଼ା ଅମଳରେ ସେଠି ଥିଲା ରାଜାଙ୍କର ଏକ ଖମାର । ତାଙ୍କରି କେତେକ ରକ୍ଷିତା ମଧ୍ୟ ସେଠି ରହୁଥିଲେ ବୋଲି ଶୁଣିଲି । ଅପୂର୍ବ ମାଳମା ସାଙ୍ଗକୁ

ଚମତ୍କାର ଏକ ଜାଙ୍ଗଲିକ ସୁଷମା ମହୁଆପାଟ୍ଣାର ବୈଶିଷ୍ଟ୍ୟ । ତା'ର ଭିତରେ ଏକ ବଡ଼ଛ ଇଲାକାକୁ ନେଇ ମୁଣ୍ଡ ଟେକିଛି ମୌଳିକ କୃଷି ବିଦ୍ୟାଳୟ ବା ଗ୍ରାମସେବକ ତାଲିମ କେନ୍ଦ୍ର । ଏହି କୃଷି ବିଦ୍ୟାଳୟର କର୍ତ୍ତୃପକ୍ଷ ବୋଇଲେ ପ୍ରଧାନ ଶିକ୍ଷକଙ୍କ ସହିତ ଅନ୍ୟ ଦୁଇ ତିନିଜଣ ଶିକ୍ଷକ ଓ ଷ୍ଟାଫ୍ ଭାବେ କେତେକ କିରାଣୀ ଅମଲା, ପିଅନ । ପ୍ରଧାନଶିକ୍ଷକ ଶ୍ରୀ ପି· ଏନ୍. ମିଶ୍ର ବା ପୂର୍ଣ୍ଣାନନ୍ଦ ମିଶ୍ର, ଦେଶୀୟ ରାଜ୍ୟ ଅମଳରେ ସେ ମୟୂରଭଞ୍ଜ ରାଜ୍ୟସରକାର ଅଧୀନରେ ଜଣେ ଦେଶ୍ଟ ବ୍ୟକ୍ତି ଥିଲେ । ଗଡ଼ଜାତ ମିଶ୍ରଣ ପରେ ତାଙ୍କ ଗୃହକାର ଧାରାବାହିକତା ଚାଷା ହୋଇ ଶେଷରେ ସେ ସ୍ୱାଧୀନ ସରକାରଙ୍କର ଓ: ଏ: ଏସ: ଡାକ୍ତାର ଅଫିସର ଭାବେ କାର୍ଯ୍ୟ କରି ଆସିଛନ୍ତି । ସବୁବେଳେ ପାନ ଖାଆନ୍ତି, ପରିଧାନ ଡ୍ରିଲ୍ ଫୁଲପ୍ୟାଣ୍ଟ, ଫୁଲସାର୍ଟ । ସାଇକେଲରେ ଚଢ଼ିଲା ବେଳେ ପଛପଟ କୁଦାମାରି ଚଢ଼ନ୍ତି । ଟିକେ ଖିରୁ ସ୍ୱଭାବର ମଣିଷ ସିଏ । ବୟସ ୫୦ ପାଖି ହେବ । ସାଧାରଣ ବ୍ୟବହାର ଉତ୍ତମ ନହେଲେ ବି ମନ୍ଦ ନୁହେଁ । ମନରେ ପ୍ରାଣରେ ସେ ଅମଲାତାନ୍ତ୍ରିକ । ଉପରିସ୍ଥ ହାକିମ ହୁକୁମାଙ୍କୁ ତାଙ୍କର ଭାରି ଭୟ । ଅନ୍ୟର କଥାରେ ଶୀଘ୍ର ପ୍ରଭାବିତ ହୋଇ ଯାଆନ୍ତି । ସେ ବିଦ୍ୟାଳୟ ଛାତ୍ରାବାସର ସୁପରିନ୍‌ଟେଣ୍ଡେଣ୍ଟ । ଅନ୍ୟ ଜଣେ ଶିକ୍ଷକ ଶ୍ରୀ ରଘୁନାଥ ମହାପାତ୍ର । ଲୋକଟିର ମୁହଁ ସବୁବେଳେ ଶୁଷ୍କ ଆଉ ଗମ୍ଭୀର । ହୁଲୁସ୍ଥୂଳୀ । ସେ ହେଲେ ଛାତ୍ରାବାସର ସହକାରୀ ସୁପରିନ୍‌ଟେଣ୍ଡେଣ୍ଟ । ତାଙ୍କର ପରାମର୍ଶରେ ପ୍ରଧାନଶିକ୍ଷକ ମହାଶୟ ପରିଚାଳିତ ହୁଅନ୍ତି । ଅନ୍ୟ ଶିକ୍ଷକ ଜଣକ ଶ୍ରୀ କୃଷ୍ଣଚନ୍ଦ୍ର ମିଶ୍ର । ଅନୁଚ, ତରତର ହୋଇ କଥା କହନ୍ତି । ସର୍ବଦା ହାସ୍ୟମୟ, ଭଦ୍ର । ବ୍ୟବହାର ଉତ୍ତମ । ମହୁଆପାଟ୍ଣା କୃଷି ବିଦ୍ୟାଳୟରେ ମୁଁ ଛାତ୍ରତ୍ୱ ଗ୍ରହଣ କଲା ପରେ ଆମ 'ବ୍ୟାଚ'ର ତାଲିମ କୋର୍ସ ଆରମ୍ଭ ହୋଇଗଲା । କୃଷି, ପଶୁପାଳନ, ଫସଲ ଓ ବୃକ୍ଷ ସଂରକ୍ଷଣ, ସାର ପ୍ରୟୋଗ, କୀଟପତଙ୍ଗମାନଙ୍କ ବିନାଶ ପାଇଁ ବ୍ୟବସ୍ଥାଦି କୋର୍ସର ବିଷୟବସ୍ତୁ । 'ଥିଓରି' ଅପେକ୍ଷା 'ପ୍ରାକ୍‌ଟିକାଲ୍' କ୍ଲାସଟା ପ୍ରଥମେ ଆରମ୍ଭ ହେଲା । ସେ 'ପ୍ରାକ୍‌ଟିକାଲ୍' କ୍ଲାସଟା ହେଲା ଘନ ମଜୁରିଆଙ୍କ ପରି ସକାଳ ୧୦ଟା ଠାରୁ ଦିନ ୧୨ଟା ଯାଏ ବିଦ୍ୟାଳୟ ପରିସର ଅଧୀନ କ୍ଷେତ ଓ ବଗିଚାର ମାଟି ହାଣିବା । ଦୁଇଘଣ୍ଟା ଖାଇବା ଛୁଟି ପରେ ଦିନ ତିନିଟାରୁ ପୁଣି ମାଟିହଣା । ୨।୩ ଦିନ ଧରି ଏଇ ଘଟଣା । ଆମ କେହି ସେପରି କାମରେ ଅଭ୍ୟସ୍ତ ନୋହୁ । କୋଦାଳ ବେଣ୍ଟର ଘର୍ଷଣ ଯୋଗୁଁ ହାତ ତଳ ଚମଡ଼ା ଛୁଡ଼ି ରକ୍ତସ୍ରାବ ଆରମ୍ଭ

ହେଲା । ତା' ଛଡ଼ା ଦେହର ପ୍ରତି ଗଣ୍ଠି, କଟିଦେଶରେ ଅସମ୍ଭବ ବ୍ୟଥା । ଖବର ମିଳିଲା, ଏଣୁ 'ପ୍ରାକ୍‌ଟିକାଲ କ୍ଲାସ' ନାମରେ ଶିକ୍ଷାନବୀସମାନଙ୍କ ଦ୍ୱାରା କ୍ଷେତ ଓ ବଗିଚାର ମାଟି ହଣାଇ ତାହା ମୂଲିଆମାନଙ୍କ ଦ୍ୱାରା ହୋଇଛି ବୋଲି ଦର୍ଶାଇ ସେ ବାବଦ ମୂଲକୁ ଦେକେ ସେଠି ଅତ୍ମସାତ କରିଥାନ୍ତି । ଏ ସମ୍ବାଦ ପାଇଲା ପରେ ମୋ ସମେତ କେତେକ ଶିକ୍ଷାନବୀସ ଉତ୍ସାହିତ ହୋଇ ଉଠି ପ୍ରଧାନଶିକ୍ଷକଙ୍କ ପାଖରେ ଆପତ୍ତି କରି କୌଣସି ଫଳ ହେଲା ନାହିଁ । ଶ୍ରୀ ରଘୁନାଥ ମହାପାତ୍ରଙ୍କ ଇଙ୍ଗିତରେ ଆମକୁ ଧମକ ମିଳିଲା, ତମେ ସବୁ ଚୁକ୍ତିପତ୍ରରେ ଆବଦ୍ଧ । ସବୁ କାମ ଏଠି କରିବାକୁ ବାଧ୍ୟ । ନକଲେ ଜୀବନ ମାଟି ହୋଇଯିବ । ଏଠୁ ମଧ୍ୟ ଯାଇ ପାରିବ ନାହିଁ ଇତ୍ୟାଦି । ଏତଦ୍‌ବ୍ୟତୀତ ଦେଖାଗଲା ବିଦ୍ୟାଳୟର କାଳକ୍ଷେପକ ଯଥା ସିଲେଇ ମେସିନ, କ୍ୟାରମ ବୋର୍ଡ ଆଦିକୁ ନେଇ ଶିକ୍ଷକ ଶ୍ରୀ ମହାପାତ୍ର ତାଙ୍କ କ୍ୱାର୍ଟରରେ ରଖି ବ୍ୟବହାର କରୁଛନ୍ତି । କେତେକ ଶିକ୍ଷାନବୀସଙ୍କୁ ମଧ୍ୟ ସେ ନାନା ଧମକ ଦେଖାଇ ତାଙ୍କ କ୍ୱାର୍ଟର ସଂଲଗ୍ନ ବଗିଚା କାମରେ ବ୍ୟବହାର କରୁଛନ୍ତି । ତା' ଛଡ଼ା ସେ କୃଷି ସମ୍ବନ୍ଧୀୟ କେତେକ ପୁସ୍ତକ ରଚନା କରି, ତାକୁ ନିଜ ନିଜ ଖର୍ଚ୍ଚରେ ପ୍ରକାଶ କରି ଜଣେ ଉଚ୍ଚପଦସ୍ଥ କୃଷି ବିଭାଗ କର୍ମଚାରୀଙ୍କ ଜାଣତରେ ସେହି ପୁସ୍ତକମାନ ଶିକ୍ଷାନବୀସମାନଙ୍କୁ କିଣିବାକୁ ବାଧ୍ୟ କରୁଛନ୍ତି । ନ କିଣିଲେ କମ ନମ୍ବର ଦେବାର ଧମକ ମଧ୍ୟ ଅନ୍ୟ ଦ୍ୱାରା ଦିଆଉଛନ୍ତି । କେତେକ ଚୋରାଣିଆ ଶିକ୍ଷାନବୀସଙ୍କୁ ହାତରେ ରଖି, ଗୋଷ୍ଠୀ ଗଠନ କରି ସେମାନଙ୍କୁ ଅନ୍ୟମାନଙ୍କ ବିରୁଦ୍ଧରେ ଲଗାଇ 'ବିଭକ୍ତ କରି ଶାସନ କରିବା ନୀତି' ଧରିଛନ୍ତି । ଛାତ୍ରାବାସରେ ମାସିକିଆ ସଭାପତି ତାଙ୍କର ତତ୍ତ୍ୱାବଧାନରେ ଖାଦ୍ୟ ନେଉଛନ୍ତି ଏବଂ ଅତି କଦର୍ଯ୍ୟ ଖାଦ୍ୟ ଛାତ୍ରାବାସରେ ଛାତ୍ରମାନଙ୍କୁ ଦିଆଯିବା ଫଳରେ ସାଧାରଣ ସ୍ୱାସ୍ଥ୍ୟହାନି ମଧ୍ୟ ଘଟୁଛି । ଏ ଘଟଣାରେ ଅଧିକାଂଶ ଶିକ୍ଷାନବୀସ କ୍ଷୁବ୍ଧ ହେଲେ ମଧ୍ୟ ସଂଗଠିତ ଭାବରେ ଏହି ଦୁର୍ନୀତିର ପ୍ରତିରୋଧ କରିବାକୁ କେହି ପ୍ରସ୍ତୁତ ନଥିଲେ । କାରଣ, ବେକାର ସେମାନେ । କୌଣସିମତେ ମାତ୍ର ମଙ୍ଗଳ ଗୋଟିଏ ବର୍ଷ କଟାଇ ଦେଲେ ଗ୍ରାମସେବକଟିଏ ହେବେ । ସବୁ ସତ୍ତ୍ୱେ ମୋ ପକ୍ଷରେ ସେହି ମନମୁଖୀ କାର୍ଯ୍ୟକଳାପ ହୋଇ ଉଠିଲା ଅସହ୍ୟ । ଜମ୍ମ'ମ ଏବଂ କଠିଣ ଦୈହିକ ପରିଶ୍ରମ କରିବା ମୋ ପକ୍ଷେ ସମ୍ଭବ ହେଲା ନାହିଁ । ପରିଣତିକୁ ଭ୍ରୂକ୍ଷେପ ନକରି ମୁଁ ଏକକ ଭାବରେ ପ୍ରତିବାଦର ସ୍ୱର ଉତ୍ତୋଳନ କରିବାକୁ ଆରମ୍ଭ କଲି । ପ୍ରଥମେ ଧମକଚମକ, ତା'ପରେ

ମୋତେ ଦବାଇ ଦେବା ପାଇଁ ଚେଷ୍ଟା, ତା'ପରେ ମୋ ଉପରେ ଦୈହିକ ଆକ୍ରମଣ ପାଇଁ ମସୁଧା ଚାଲିଲା ଶ୍ରୀ ମହାପାତ୍ର ଓ ତାଙ୍କ କାଏମୀ ସ୍ୱାର୍ଥବାଦୀ ଦଳ ତରଫରୁ । କ୍ରମେ ଦିନ ଅଶାନ୍ତ ହେବାକୁ ଲାଗିଲା । ନାଜୀ ଜର୍ମାନୀର ଲୋମହର୍ଷଣକାରୀ 'କନ୍‌ସେଣ୍ଟ୍ରେସନ କ୍ୟାମ୍ପ' ଓ କ୍ରୀତଦାସ ପ୍ରଥା କଥା ବହିରୁ ପଢ଼ିଥିଲି । ତାର ଜୀବନ୍ତ ଦର୍ଶନ ମୋତେ ଯେତେବେଳେ ସେଠି ମିଳିଥିଲା, ତାକୁ ନୀରବରେ ମାନିନେବା ଥିଲା ମୋ ପକ୍ଷରେ ଅସମ୍ଭବ । କର୍ତ୍ତୃପକ୍ଷଙ୍କ ବକ୍ରଦୃଷ୍ଟିର ଠିକ ସାମ୍ନାରେ ରହି ସୁଦ୍ଧା ମୁଁ ଥିଲି ଅବିଚଳ । ମନରେ ଦୁଃଖ ଆସିଲା । ଆତ୍ମ-ସମାଲୋଚନା କରି ବୁଝିପାରିଲି, ଭୁଲଟା ମୋର । ଏକ ଉଗ୍ର ସ୍ୱାଧୀନତାକାମୀ ମଣିଷ ମୁଁ, ମୋ ରକ୍ତରେ ଅଛି ସ୍ୱାଧୀନତା-ସଂଗ୍ରାମର ଆଗ୍ନେୟ ଜୀବନସ୍ୱାଦ । ମୋର ଅନୁଚିତ ହୋଇଛି ଏହି ସତ୍‌ଦୁର୍ନୀତିଖୋର ମାନସିକ ଦାସମାନଙ୍କ ମେଳକୁ ଆସିବା । ଏଠୁ ମୁକ୍ତ ହେବାକୁ ହେଲେ ପଳାୟନ ଶୋଭନୀୟ ନୁହେଁ । ବରଂ ଏହି କାଏମୀ ସ୍ୱାର୍ଥର ବ୍ରହ୍ମରନ୍ଧ୍ରକୁ କଣ୍ଟା ଘାଏଲ କରି ମୋର ଏ ସ୍ଥାନ ତ୍ୟାଗ କରିବା ଦରକାର । ଏହି ସିଦ୍ଧାନ୍ତ ନେଇ ମୁଁ ସର୍ବଦା ସତର୍କ ସହକାରେ ରହୁଥାଏ । କ୍ରମେ ଏକ ଗୁମ୍‌ସରା ଅବସ୍ଥା ବେଳୁ ବେଳ ଘନୀଭୂତ ହେଲା । କଥା କଥାକେ କର୍ତ୍ତୃପକ୍ଷଙ୍କ ସହିତ ମୋର ମୌଳିକ ସଂଘର୍ଷ ଘଟେ । ଗ୍ରାମସେବକଟିଏ ହୋଇ ବଞ୍ଚି ରହିବାର ସ୍ୱନାହରଣ ଯେହି ମହିଷାପାଟର ଜାଙ୍ଗଲିକ ପରିବେଶରେ ମୃତ୍ୟୁବରଣ କଲା । ସେହି ଆନ୍ତରିକ ଦୁଃଖମୟ ଦିନଗୁଡ଼ିକରେ ମୁଁ ରାତିରେ ଗଳ୍ପ କବିତା ଲେଖେ, ତାକୁ ସହଶିକ୍ଷାନବୀସମାନଙ୍କୁ ପଢ଼ି ଶୁଣାଏ, ଏକ ସାଂସ୍କୃତିକ ବାତାବରଣ ଜନ୍ମ ଲଭେ । ତା ସହିତ ସମ୍ବାଦପତ୍ର ଅଧ୍ୟୟନ, ଜାତୀୟ ଓ ଆନ୍ତର୍ଜାତିକ ପରିସ୍ଥିତିର ଆଲୋଚନା ଚାଲେ । ତାହା କର୍ତ୍ତୃପକ୍ଷଙ୍କୁ ଅଧିକ ଆତଙ୍କିତ କରେ । କ୍ରମେ ସେଠାକାର ଦୁର୍ନୀତି, ଶିକ୍ଷକ ଶ୍ରୀ ମହାପାତ୍ରଙ୍କ ମନମୁଖୀ ଶାସନ, ପ୍ରଧାନଶିକ୍ଷକଙ୍କ ଅପାରଗତାର ଠିକଣା ତଥ୍ୟ ମୁଁ ସଂଗ୍ରହ କରି ଏକ ସ୍ମାରକପତ୍ର ରଚନା ଆରମ୍ଭ କରିଥାଏ ଗୋପନରେ ।

ଦିନ ପରେ ଦିନ ବିତି ଆସିଲା । ୧୯୫୭ ମସିହାର ଜୁଲାଇ ମାସ ୨ରଖ । ସେହିଦିନ ଦିନ ୧୧ଟା ବେଳେ ମୋର ଦୀର୍ଘ ସ୍ମାରକପତ୍ରଟିକୁ ମୁଁ ଯାଇ ଅର୍ପଣ କଲି ପ୍ରଧାନଶିକ୍ଷକଙ୍କ ହାତରେ, ଆଉ ତାର ନକଲ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ, କୃଷିମନ୍ତ୍ରୀ, ଓଡ଼ିଶା ସରକାରଙ୍କ ସେକ୍ରେଟାରୀ, P. S. (Community) ବିଭାଗ, କୃଷି ବିଭାଗ ଡାଇରେକ୍ଟର ପ୍ରମୁଖଙ୍କୁ ଦେଇ ବିଦ୍ୟାଳୟର ଦୁର୍ନୀତିର ତଦନ୍ତ

ସହ ମୋର ଦାବି ପୂରଣ, ଅଭିଯୁକ୍ତ ଶିକ୍ଷକ ଶ୍ରୀ ରଘୁନାଥ ମହାପାତ୍ରଙ୍କ ପ୍ରତି ଦଣ୍ଡ ବିଧାନ ଆଦି ସେଥିରେ ଉଲ୍ଲେଖ ଥିଲି । ଏହା ଆରମ୍ଭ ନହେବା ଯାଏ ମୁଁ ଅନଶନ ଧର୍ମଘଟ ଆରମ୍ଭ କଲି ବୋଲି ପରେ ସେଥିରେ ଜଣାଇଥିଲି । ସ୍ମାରକପତ୍ରଟିକୁ ପ୍ରଧାନଶିକ୍ଷକଙ୍କ ହାତରେ ଦେବା ପରେ ତାଙ୍କର ଅଫିସ ବାରଣ୍ଡାରେ ମୁଁ ବସି ରହିଲି ଅନଶନ ଧର୍ମଘଟର ଅସୁମାରମ୍ଭ କରି । ତହିଁ ଆରଦିନ କୃଷି ବିଭାଗ ଡାଇରେକ୍ଟରଙ୍କ ତରଫରୁ ମୋତେ ଲିଖିତ ଅନୁରୋଧ ଆସିଲା, ମୋ ସ୍ମାରକପତ୍ର ସମ୍ପର୍କୀୟ ଦାବି ଓ ଅଭିଯୋଗର ତଦନ୍ତ ଶୀଘ୍ର ହେଉଛି । ସେଥିରେ ସାହାଯ୍ୟ କରିବା ପାଇଁ ଓ ତଦନ୍ତ ଶେଷଯାଏ ଅନଶନ ସ୍ଥଗିତ ରଖ । (ପ୍ରକାଶ ଥାଉକି, ମୋ ସ୍ମାରକପତ୍ର ପାଇବା ସଙ୍ଗେ ସଙ୍ଗେ ପ୍ରଧାନଶିକ୍ଷକ ତାରବାର୍ତ୍ତା ଯୋଗେ ଘଟଣା କୃଷିବିଭାଗ ଡାଇରେକ୍ଟରଙ୍କୁ ଜଣାଇ ଥିଲେ । ) ମୁଁ ଅନଶନ ସ୍ଥଗିତ ରଖି ତଦନ୍ତକୁ ଅପେକ୍ଷା କଲି । ଇତ୍ୟବସରେ ବିଭାଗୀୟ ଡାଇରେକ୍ଟର ଆସି ଢେଙ୍କାନାଳରେ ପହଞ୍ଚି ପ୍ରଧାନଶିକ୍ଷକଙ୍କୁ ସଙ୍ଗରେ ଧରି ଢେଙ୍କାନାଳର ଜିଲ୍ଲାପାଳଙ୍କୁ ସାକ୍ଷାତ କରି ପରାମର୍ଶ କଲେ । ତାପରେ ମୋ ଉପସ୍ଥିତିରେ ନିଜେ ଜିଲ୍ଲାପାଳ ଆରମ୍ଭ କଲେ ତଦନ୍ତ । ପ୍ରଧାନଶିକ୍ଷକ ତାଙ୍କ ପରାମର୍ଶଦାତାଙ୍କ ଗୋପନ ପରାମର୍ଶରେ ଜିଲ୍ଲାପାଳଙ୍କୁ ଏକ ଗୁପ୍ତ ରିପୋର୍ଟ ଦେଇ ସୁପାରିସ୍ କରିଥିଲେ ଯେ, ମୋ ପରି ଜଣେ ବିଦ୍ରୋହୀ, ସ୍ପଷ୍ଟବାଦୀ, ରାଜନୈତିକ ସଚେତନ ତଥା ସ୍ୱାଧୀନଚେତା ଯୁବକକୁ ଅଧିକ କାଳ କୃଷି ବିଦ୍ୟାଳୟରେ ରହିବାକୁ ଦିଆଗଲେ ଭାବୀ ଗ୍ରାମସେବକମାନଙ୍କର କ୍ଷତିହେବ ଓ ସରକାରଙ୍କର ଉଦ୍ଦେଶ୍ୟ ସିଦ୍ଧି ହେବ ନାହିଁ । ଜିଲ୍ଲାପାଳ ସେଥି ସହ ସହମତ ହୋଇ କୃଷି ବିଭାଗ ଡାଇରେକ୍ଟରଙ୍କୁ ତାଙ୍କ ମତାମତ ଦେବା ପରେ ଡାଇରେକ୍ଟର ପ୍ରଧାନଶିକ୍ଷକଙ୍କୁ ନିର୍ଦ୍ଦେଶ ଦେଲେ ମୋତେ ବିଦ୍ୟାଳୟରୁ ବହିଷ୍କାର (expell) କରିବା ପାଇଁ । ଡାଇରେକ୍ଟରଙ୍କ ଏହି ନିର୍ଦ୍ଦେଶ ତା୨୯।୫।୫୭ ରିଖରେ ପାଇଲା ପରେ ପ୍ରଧାନଶିକ୍ଷକ ମୋ ଉପରେ ଲିଖିତ ନିର୍ଦ୍ଦେଶ ଜାରିକଲେ ବିଦ୍ୟାଳୟ ଏବଂ ଛାତ୍ରାବାସ ତ୍ୟାଗ (ଅବିଳମ୍ବେ) କରିବା ପାଇଁ । ଏହି ନିର୍ଦ୍ଦେଶ ପାଇବା ସଙ୍ଗେ ସଙ୍ଗେ କାଳ ବିଳମ୍ବ ନକରି ମୁଁ ପ୍ରଧାନଶିକ୍ଷକଙ୍କୁ ଲିଖିତ ଆବେଦନ କଲି ଯେ, ମୋତେ ୭ଦିନ ସମୟ ଦିଆଯାଉ । କାରଣ ଥିଲା, ସେହି ଆବେଦନ ଭିତରେ ମୋର ସଂଗ୍ରାମର ପଦ୍ଧତି ସମ୍ପର୍କରେ ଅଧିକ ଚିନ୍ତା କରିବା ପାଇଁ ସମୟ ପାଇବି । ତା' ଛଡ଼ା ମୋତେ ବିଦ୍ୟାଳୟରୁ ବହିଷ୍କାର କରାଯିବା ନିର୍ଦ୍ଦେଶ

ଥିଲା ନିମ୍ନମତଃ ଦେଖାଦେବ । ଉଦାହରଣ ସ୍ୱରୂପ, ମୁଁ ଏକବର୍ଷ ପାଇଁ ରାଜ୍ୟପାଳଙ୍କ ସହିତ ଚୁକ୍ତିବଦ୍ଧ । ତା' ଛଡ଼ା ଛାତ୍ରାବାସର ବିଧାନ ପ୍ରଣେତା ପ୍ରଧାନଶିକ୍ଷକ ନିଜେ । ଆଉ ସେ ବିଧାନ ଉଚ୍ଚ କର୍ତ୍ତୃପକ୍ଷଙ୍କ ଦ୍ୱାରା ଅନୁମୋଦିତ ନୁହେଁ । ପରେ ଢେଙ୍କାନାଳର ୧ମ ଶ୍ରେଣୀ ମାଜିଷ୍ଟ୍ରେଟ୍ ଖଣ୍ଡାୟତଙ୍କ ଇଜଲାସରେ ତା ୨୮।୧୨।୬୭ ତାରିଖରେ ପ୍ରଧାନଶିକ୍ଷକଙ୍କ ସ୍ୱୀକାରୋକ୍ତି ଦ୍ରଷ୍ଟବ୍ୟ :

"I framed the rules of the hostel in consultation with Education Code. I can furnish a copy of such rule. This rule has not been approved by the higher authorities. I can not speak any authority under which I am empowered to frame rules for hostel. The rule provide for imposition or fine and for expeltion from the hostel. × ×"

ବିଦ୍ୟାଳୟ ବା ଛାତ୍ରାବାସ ତ୍ୟାଗ ପାଇଁ ମୋର ଆବେଦନ ସମୟ ପ୍ରାର୍ଥନା ପ୍ରଧାନଶିକ୍ଷକଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେବା ପରେ ଆରମ୍ଭ ହେଲା ପୁଣି ମୋର ଅନଶନ ଧର୍ମଘଟ ମୋ ପ୍ରତି ହୋଇଥିବା ବହିଷ୍କାର ଆଦେଶ ବିରୁଦ୍ଧରେ । ଫଳରେ ବିଦ୍ୟାଳୟର ପ୍ରଶାସନ ଅଚଳ ହୋଇ ପଡ଼ିଲା, ସମ୍ବାଦପତ୍ରମାନଙ୍କରେ ମୋ ଅନଶନ ଧର୍ମଘଟର ସମ୍ବାଦ ସହିତ ବିଦ୍ୟାଳୟର ଦୁର୍ନାମ ସମ୍ବାଦ ପ୍ରକାଶିତ ହୋଇ ଏକ ଗୁରୁତର ସମସ୍ୟା ସୃଷ୍ଟି କଲା । ଏ ସମ୍ପର୍କରେ ମାଜିଷ୍ଟ୍ରେଟ୍‌ଙ୍କ ଇଜଲାସରେ ତା ୨୯।୧୨।୬୭ ତାରିଖରେ ପ୍ରଧାନଶିକ୍ଷକଙ୍କ ବକ୍ତବ୍ୟ : "...The accused then prayed for eight days time to vacate, I refused him to grant time. Ext. 3 is the orders to my refusal which bears a signature of the accused on the reverse, Ext 3 (1) He started hunger strike on the next day lying on the varendah just in front of a window of my office-room with all his belongings. Inspite of my repeated requests & instruction he did not refrain from the strike. The students became requistive and started gathering around him. It affected the smooth running of the school administration and it was too embarassing to me."

ଘଟଣା ଏତେ ଦୂର ଆଗେଇବ ବୋଲି ମହିଷାପାଟର ନ୍ୟସ୍ତସ୍ୱାର୍ଥ ଚକ୍ରର କଳ୍ପନାତୀତ ଥିଲା । ଢେଙ୍କାନାଳ ସହରରୁ ମୋତେ ଦେଖିବାକୁ ଜନସ୍ରୋତ ଛୁଟିଲା ମହିଷାପାଟ । ମୋତେ ଅନଶନରୁ ନିବୃତ୍ତ କରାଇବା

ପାଇଁ ଢେଙ୍କାନାଳର ତତ୍କାଳୀନ ଜିଲ୍ଲା ଲେବର୍-ସର୍ଭେ ବିଭାଗ ଅଫିସର ଶ୍ରୀ ଆର୍ତ୍ତତ୍ରାଣ ଗଜପତି, ଅବଭକ୍ତ. କଂଗ୍ରେସ ନେତା "ଫୁଚାବାବୁ" ଉଦ୍ୟମ କରି ବ୍ୟର୍ଥ ହେଲେ । ପ୍ରଧାନଶିକ୍ଷକ ଅସହାୟ ଭାବେ ଶରଣାପନ୍ନ ହେଲେ ପୁଲିସ ଥାନାର, ଆଉ ବୋକାଙ୍କ ପରି FIR ଦାଖଲ କଲେ ଯେ' ମୁଁ ବେଆଇନ ଭାବରେ ତାଂକ ବିଦ୍ୟାଳୟରେ ପଶିଛି । ତାଙ୍କର ସେହି FIR ମୁତାବକ ମୁଁ ଗିରଫ ହୋଇଥିଲି ଭାରତୀୟ ପିଙ୍ଗଲକୋର୍ଡର ୪୪୮ ଦଫାରେ ଅଜ ବର୍ଷାଧିକ କାଳ ମୋ ନାମରେ ମକଦ୍ଦମା ଚାଲି ମୁଁ ଶେଷରେ ସମ୍ମାନର ସହ ଖଲାସ ହୋଇଥିଲି । (GR, case no. 191/ 28Tr/ 56Tr/ 1957)

ପ୍ରଧାନଶିକ୍ଷକ କୋର୍ଟରେ ସ୍ୱୀକାର କରିଥିଲେ ଯେ, "Lastly I had to take recourse to the P. S. and lodge information thereon on 1. 8. 57."

ପ୍ରକାଶ ଥାଉକି, ମହୁଷାପାଟ ଗ୍ରାମସେବକ ତାଲିମ କେନ୍ଦ୍ରରେ ଭର୍ତ୍ତିହେବା ଆଗରୁ କଟକ ଗ୍ରହଣ ବେଳେ ପୂଜ୍ୟ ଗୋଦାବରୀଶ ମହାପାତ୍ର ମୋତେ କହିଥିଲେ "ନିଆଁଖୁଣ୍ଟା" ପାଇଁ କିଛି କିଛି ସମ୍ବାଦ ପଠାଇବାକୁ । ମୋର ଗିରଫ ଆଗରୁ ବହୁ ସମ୍ବାଦ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଥିଲା କେବଳ ନୁହେଁ "ମହୁଷାପାଟ" ଶୀର୍ଷକ ରଚିତ ମୋର ଏକ କବିତା ସେତେବେଳେ "ନିଆଁଖୁଣ୍ଟା"ରେ ପ୍ରକାଶିତ ହୋଇ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ।

୧୯୫୭ ମସିହା ଅଗଷ୍ଟ ମାସର ପହିଲା ।

ମୋର ଅନଶନ ଧର୍ମଘଟ ଆରମ୍ଭ ହୋଇଥିଲା ଜୁଲାଇ ତାଂ ୧୩ ରୁ । ମୋ ଶୁଶ୍ରୂଷାକାରୀ ସହ-ଶିକ୍ଷାନବୀସମାନଂକର ଭିଡ଼ । ମୋ ତଳପେଟ ଏବଂ ଗୁଣ୍ଡରେ ଯନ୍ତ୍ରଣା ଆରମ୍ଭ ହୋଇଛି । ପ୍ରଧାନଶିକ୍ଷକ ଓ ତାଂକ ପରାମର୍ଶଦାତା ଶ୍ରୀ ମହାପାତ୍ର ସ୍କୁଲରୁ ଅଦୃଶ୍ୟ ହୋଇଛନ୍ତି—ସେମାନଂକ ଦେଖା ଦର୍ଶନ ନାହିଁ । ମହୁଷାପାଟର ଅପ୍ରତିମ ଜାଙ୍ଗଲିକ ପରିବେଶ, ଶ୍ରେଣୀବଦ୍ଧ ପାହାଡ଼, ତରୁଲତା ଓ ବନାନୀ ଉପରେ ଧୀରେ ଧୀରେ ଅଜାଡ଼ି ହୋଇ ପଡ଼ୁଥାଏ ଶ୍ରାବଣର ବର୍ଷାମାନ ଅନ୍ଧକାର । ଶୁଭିଆସେ ଏକ ବର୍ଷାବଉଳ ଦୁଃଖର ଆବହାଓ୍ୱା । ବିଦ୍ୟାଳୟ

ପରିସର ମଧ୍ୟରେ ଥିବା କର୍ମଚାରୀମାନଙ୍କ ପରିବାରବର୍ଗ ମୋଠାରୁ ଅନତି ଦୂରରେ ସ୍ଥାଣୁ ପରି ଠିଆ ହୋଇଛନ୍ତି, କେହିକେହି ଆଖିରୁ ବି ଲୁହ ପୋଛୁଥାନ୍ତି । ରାତି ପ୍ରାୟ ଏଗାରଟା । ହଠାତ୍ ପ୍ରଧାନଶିକ୍ଷକଙ୍କ ଅଫିସ ସାମ୍ନା ରାସ୍ତାରେ ଗାରଦର୍ପରେ ଆସି ଠିଆହେଲା ଏକ ପୁଲିସ ଭ୍ୟାନ୍ ଓ ଗୋଟିଏ ଜିପ୍ । ସେଥିରୁ ବାହାରି ଆସିଲେ କେତେଜଣ ପୁଲିସ ଅଫିସର ଓ ସିପାହୀ । ପରିବେଶ ଅଧିକ ଶୃଙ୍ଖଳାକର ହୋଇ ଉଠିଲା । ମୋତେ ଘେରି ବସିଥିବା ସତ୍ର-ଶିକ୍ଷାନବୀସମାନେ ଉଠି ଠିଆ ହେଲେ । ପୁଲିସର ଲୋକେ ମୋ ପାଖରେ ଆସି ମଧ୍ୟ ଠିଆ ହେଲେ । କିଛି ସମୟ ପରେ ଜଣେ ପୁଲିସ-ଅଫିସର ମୋତେ ଆଦେଶ ଦେବା ଭଙ୍ଗୀରେ କହିଲେ, "ଏଠୁ ଏଇକ୍ଷଣି ଚାଲିଯିବ ନା ଜେଲ୍‌ଖାନା ଯିବ ? ମୁଁ ତମକୁ ପାଞ୍ଚମିନିଟ୍ ସମୟ ଦେଲି । .."

ମୁଁ ସେଇମିତି ଶୋଇ ରହିବା ଅବସ୍ଥାରେ ତାଙ୍କ ମୁହଁକୁ ଟିକେ ଚାହିଁ ଦେଇ ଟିକେ ବଦ୍ରୂପର ହସ ହସିଦେଲି । ତଦ୍ୱାରା ଅଫିସର ଜଣକ ନିଜକୁ ଅପଦସ୍ତ ମନେକଲେ, ତାଙ୍କର ଖାକି-ଦମାକ୍ ଏବଂ ଅହଂ ଉପରେ ଆଞ୍ଚ ଆସିବା ପରି ସେ ମନେକଲେ । କହିଲେ, "ତମର ତ ସାହସ କମ୍ ନୁହେଁ !"

"ଆପଣ କ'ଣ ନିଜକୁ ଆଗର ସେହି ଢେଙ୍କାନାଳ ରାଜା ବୋଲି ମନେ କରୁଛନ୍ତି ?"

"ଅଲ୍ ରାଇଟ, ୟୁ ଆର୍ ଅଣ୍ଡର୍ ଆରେଷ୍ଟ । ଉଠ, ଚାଲ !"

"କୁଆଡ଼େ ?"

"ଭ୍ୟାନକୁ ।"

"ମୁଁ ଉଠି ଯାଇ ପାରିବ ନାହିଁ । ଟେକି ନେବାର ବନ୍ଦୋବସ୍ତ କରନ୍ତୁ ।"

କେତେଜଣ ସିପାହୀ ମୋତେ ଟେକି ଭ୍ୟାନ୍ ଭିତରକୁ ନେବାବେଳେ ସତ୍ର-ଶିକ୍ଷାନବୀସମାନେ ସେମାନଙ୍କୁ ବାଧା ଦେଇ ମୋତେ ଭ୍ୟାନ୍ ଯାଏଁ ନେଇ ଯିବାର ବ୍ୟବସ୍ଥା କଲେ । ରାତି ୧୨ଟା ପାଖାପାଖି ପର୍ଯ୍ୟନ୍ତ ଏ ଅଭିନୟ ଚାଲିଲା ପରେ ପୁଲିସ ଭ୍ୟାନ୍‌ର ଚକଗୁଡ଼ିକ ବୁଲିବାକୁ ଆରମ୍ଭ କଲେ । ପଛରୁ ମୋତେ ନୀରବ ଚାହାଣିରେ ଚାହିଁଥିଲା ରାତିର ଅନ୍ଧକାରରେ ବୁଡ଼ି ରହିଥିବା ମହିଷାପାଟର ବନଭୂମି, ଛୋଟ ଛୋଟ ପାହାଡ଼, କୃଷିବିଦ୍ୟାଳୟର

ଜ୍ୱଳନ୍ତ ଇଲେକ୍ଟ୍ରିକ ବଲବ୍‌ଗୁଡ଼ିକ । ବିଦାୟ ସାଥୀଗଣ ! ମୁଁ ଚାଲିଲି । ଏ ବିଦ୍ରୋହୀ ରବି ଫି ଏଠି ତୋଷା ମାନ ପାଇଲା ନାହିଁ । ଯେଉଁମାନେ ମାନ ପାଉଛ, ଥାଅ । ଭ୍ୟାନ୍ ଭିତରେ ମୁଁ ଶୋଇ ରହିଲି । ଭ୍ୟାନ୍ ଚକ ରାସ୍ତାର ଗୋଟିଏ ଗାଡ଼ରୁ ଉଠି ଯେତେବେଳେ ଆଉ ଏକ ଗାଡ଼ରେ ପଡ଼େ, ସେତେ-ବେଳେ ଗୋଟାଏ ଯନ୍ତ୍ରଣାର ଧକ୍କା ଆସି ବାଜେ ଛାତିରେ । ଧୀରେ ଗାଡ଼ି ଚଳାଇବାକୁ କହି ଶୁଣିଲି, "ଶୁଅ, ପାଟି କରନା ।"

ପ୍ରାୟ ୧୦ ମିନିଟ୍ ପରେ ।

ଭ୍ୟାନ୍ ଯାଇ ଠିଆ ହେଲା କୌଣସି ଜଣେ ମାଜିଷ୍ଟ୍ରେଟ୍‌ଙ୍କ ବାସଭବନ ସାମ୍ନାରେ । ପରେ ଜାଣିଲି, ତାହା ହେଉଛି **S. D. O.**ଙ୍କ ବାସଭବନ । ଖୋଦ **S. D. O.** ଘରୁ ବାହାରି ଆସିଲେ । ପୁଲିସବାଲାମାନଙ୍କ ସହ ଅଫିସର-ମାନେ ତାଙ୍କୁ ସାଲ୍ୟୁଟ୍ କଲେ । ବିଧି ମୁତାବକ **S. D. O.** ମୋତେ ପଚାରିଲେ, ପୁଲିସ ମୋତେ ଗିରଫ କରି ଆଣିବା ଭିତରେ କିଛି ଖରାପ ବ୍ୟବହାର କରିଛି କି ନାହିଁ, ମୁଁ ସେହି ପୁଲିସ ଅଫିସରଙ୍କ ବିରୁଦ୍ଧରେ ମୋର ଅଭିଯୋଗଗୁଡ଼ିକ ଲିପିବଦ୍ଧ କରିବାକୁ ଅନୁରୋଧ କଲି । ଯଦି ସେ ତାହା ନକରନ୍ତି, ତାହେଲେ ମୁଁ ଜେଲ୍‌ଭିତରୁ ଲିଖିତ ଅଭିଯୋଗ କରି ଘରୋଇ ବିଭାଗକୁ ପଠାଇବି କହିବାରୁ ସେ ଆଉ ଥରେ ଗୋଟି ଗୋଟି କରି ମୋର ଅଭିଯୋଗଗୁଡ଼ିକ ଲିପିବଦ୍ଧ କଲେ ଓ ତହିଁରେ ମୋର ସ୍ୱାକ୍ଷର ନେଲେ । ପରେ ଜାଣିବାକୁ ପାଇଥିଲି, ମୋର ସେ ଅଭିଯୋଗ ପ୍ରତି ଢେଙ୍କାନାଳର ପୁଲିସ **S. P.**ଙ୍କ ଦୃଷ୍ଟି ଆକର୍ଷିତ ହୋଇଥିଲା ଓ ସମ୍ପୃକ୍ତ ପୁଲିସ ଅଫିସରଙ୍କୁ କୈଫିୟତ୍ ମଧ୍ୟ ତଲବ୍ କରାଯାଇଥିଲା । ତା' ପରେ ଭ୍ୟାନ୍ ଯାଇ ପହଞ୍ଚିଲା ଢେଙ୍କାନାଳ ଜେଲ୍ ଫାଟକରେ । ଭ୍ୟାନ୍‌ରୁ ଯତ୍ନ ସହକାରେ ୩ଜଣ ସିପାହୀ ମୋତେ ନେଇ ଜେଲରଙ୍କ ଅଫିସରେ ଶୁଆଇ ଦେଲେ । ପୁଲିସର ବ୍ୟବହାର ଟିକେ ବଦଳିବା ଲକ୍ଷ୍ୟ କଲି । ୫/୧୦ ମିନିଟ କଟିଲା ପରେ ଆସି ପହଞ୍ଚିଲେ ଜେଲର୍ । ମନେ ପଡ଼ୁଛି, ପତଳା, ଶ୍ୟାମଳ ବର୍ଣ୍ଣର ମଣିଷଟିଏ ସେ । ଅଫିସରେ ପଶୁ ପଶୁ ଶାୟିତ ଅବସ୍ଥାରେ ମୋତେ ଦେଖି ଦେଇ ଓ ମୋ ପାଖରେ ପୁଲିସବାଲାଙ୍କୁ ଦେଖି ଦେଇ ବୋଧହୁଏ ହଠାତ୍ ଭାବିନେଲେ ଗୋଟାଏ ବଡ଼ 'କ୍ରିମିନାଲ' ମୁଁ । ନିଜ ଟେବୁଲ ଆଡ଼କୁ ଆଗେଇ ଯାଉ ଯାଉ ମୋତେ ତାଙ୍କର ପ୍ରଶ୍ନ : "କେବେ ? କି ଧନ୍ଦା ? ଆଗରୁ କେବେ ଏଠିକି ଆସିଥିଲୁ ନା ଆଜି ନୂଆ ? ... ..."

ମୁଁ ସୁସ୍ଥ ଥିଲେ ତାଙ୍କର ଦାନ୍ତ କେତୋଟାକୁ ଅନ୍ତତଃ ଝଡ଼ାଇ ଦେଇଥାନ୍ତି । ମୁଁ ସେତେବେଳେ ପଚିଶବର୍ଷର ଯୁବକ । ଅନଶନ ଫଳରେ ଦୁର୍ବଳ । କିନ୍ତୁ ସ୍ୱାସ୍ଥ୍ୟ ସମ୍ପଦ ମୋର ଚମତ୍କାର । ଉଠି ଠିଆ ହେବାର ଶକ୍ତି ନଥିବାରୁ ଶୋଇ ରହି ଏକ ତୀବ୍ର କଟାକ୍ଷ ହାଣି ଦାନ୍ତ କାମୁଡ଼ି କହିଲି, "ବ୍ଲଡ଼ି ବାଷ୍ଟାର୍ଡ଼୍......" ଜେଲର ରାଗି ତାତି ଲାଲ ହୋଇଗଲେ । ମୋତେ ଗିରଫ କଲାବେଳେ ଶକ୍ତିମାନର ପ୍ରଦର୍ଶନ କରିଥିବା ସେହି ପୁଲିସ ଅଫିସରଟି ତାଙ୍କୁ ଆଖିର ଇଙ୍ଗିତରେ କ'ଣ ଇସାରା ଦେଲା ପରେ ଜେଲର ମହାଶୟ ନିଜ ଆସନରେ ବସି ମୋ କାଗଜପତ୍ର ଉପରେ ନଜର ପକାଇବା ପରେ ତାଙ୍କ ମୁହଁର ଭଙ୍ଗୀ ବଦଳିଲା । ସେ କହି ଉଠିଲେ, "ଓ ! ଆଇ ଆମ ସରି । ୟୁ ଆର୍ ଦ୍ୟାଟ୍ ଫାୟାର ବ୍ରାଣ୍ଡ୍ ଷ୍ଟୁଡେଣ୍ଟ !!"

ମୋର "ଶ୍ରୀମନ୍ଦିର" ପ୍ରବେଶ ପାଇଁ ଆନୁଷଙ୍ଗିକ ବ୍ୟବସ୍ଥା ସରିଲା । ଖୋଲିଲା "ଶ୍ରୀମନ୍ଦିର"ର କବାଟ । ଏକ ଷ୍ଟ୍ରେଚରର ସାହାଯ୍ୟରେ ୨ଜଣ ଜେଲ୍‌ରକ୍ଷୀ ମୋତେ ନେଇ ଚାଲିଲେ ଭିତରକୁ । ଫାଶୀଖୁଣ୍ଟ ପାଖରେ ଥିବା ଏକ ସ୍ୱତନ୍ତ୍ର କୋଠରୀ ଯେଉଁଥିରେ କି ପ୍ରଜାମଣ୍ଡଳ ଆନ୍ଦୋଳନ ବେଳେ ବହୁ ନାମଜାଦା ନେତାଙ୍କୁ ରଖାଯାଇଥିଲା, ମୋର ସେଇଠି ରହିବାର ବ୍ୟବସ୍ଥା ହେଲା । ବିଛଣା ଧରୁ ଧରୁ ତଳପେଟରେ ମୋର ଆରମ୍ଭ ହେଲା ଯନ୍ତ୍ରଣା । ଜେଲ୍ କର୍ତ୍ତୃପକ୍ଷ ଡାକ୍ତର ଡାକିବାକୁ ବାଧ୍ୟ ହେଲେ । ଡାକ୍ତର ଆସିଲେ । ରାତି ସେତେବେଳକୁ ୨ଟା ହେବ । ଭଦ୍ରଲୋକ ଏପରି ନମ୍ର ଆଉ ଭଦ୍ର ଯେ, ମୁଁ ମୁଗ୍ଧ ହୋଇଥିଲି ତାଙ୍କ ବ୍ୟବହାରରେ । ଗତ ୩୦ ତାରିଖରୁ ମୋର ଅନଶନ ଧର୍ମଘଟ ପ୍ରତି ସେ ସହାନୁଭୂତି ଜଣାଇ ମୋତେ ହସିହସି କହିଲେ, "ଏଥର ଆପଣଙ୍କୁ ଏଠି ସରକାର ଅନାହାରରେ ରହିବାକୁ ଦେବେ ତ ?" ମୁଁ ତାଙ୍କୁ ଅସ୍ପଷ୍ଟ ସ୍ୱରରେ କହିଲି, "ଦେଖନ୍ତୁ, ଜୋର- ଜବରଦସ୍ତ କରି ମୋର ସିଦ୍ଧାନ୍ତ ପରିବର୍ତ୍ତନ ପାଇଁ ଚେଷ୍ଟା ହେଲେ ପରିଣତି ତ ଭଲ ହେବ ନାହିଁ···" କହୁ କହୁ ଯନ୍ତ୍ରଣା ଅତି ମାତ୍ରାରେ ବଢ଼ିଗଲା । ତାପରେ ମୁଁ ଆଉ କିଛି ଜାଣିନାହିଁ । ଯେତେବେଳେ ଆଖି ଖୋଲେ ସେତେବେଳେ ପ୍ରଭାତର ଶାନ୍ତ ସମୀରଣ ସହ କେତୋଟା ଶାର୍ଯ୍ୟିକ୍ ସୂର୍ଯ୍ୟ ରଶ୍ମି ବାତାୟନର ରେଲିଂ ବାଟେ କୋଠରୀ ଭିତରେ ପଶି ହୋଇଛନ୍ତି । ଚାହିଁ ଦେଖିଲି, ମୋ ପାଖରେ ବସିଛନ୍ତି ଜଣେ କଳା ମୁଗୁନି ପଥର ପରି ଏକ ଆଦିବାସୀ ଯୁଆନ୍ ଓ ଜଣେ ଦାଢ଼ିବାଲା ଧର୍ମପ୍ରାଣ ବ୍ୟକ୍ତି । ଦେହରେ ସେମାନଙ୍କର କଇଦୀର ପୋଷାକ । ଆଦିବାସୀ

ଯୁବକଟିର ନାମ 'ପେଦା'। କୋରାପୁଟ ଜିଲ୍ଲାର ଲୋକ ସିଏ। ୨୬ ବର୍ଷ ହେଲା ବିଭିନ୍ନ ଜେଲଖାନାରେ ଗଡ଼ି ଗଡ଼ି ସେ ଆସିଛି ଢେଙ୍କାନାଳ ଜେଲକୁ। ଏକ ସାହୁକାର ହତ୍ୟାଜନିତ ଆଜୀବନ କାରାଦଣ୍ଡରେ ଦଣ୍ଡିତ 'ପେଦା'। ତାକୁ ନିଯୁକ୍ତ ମିଳିଛି ମୋର ଦେଖାଶୁଣା କରିବ ଓ ରାତିରେ ମୋ ପାଖରେ ଶୋଇବ। ଦାଢ଼ିବାଲା ଲୋକଟି ମଧ୍ୟ ଆଜୀବନ କାରାଦଣ୍ଡରେ ଦଣ୍ଡିତ ଆସାମୀ। ନାମ—ରଘୁନାଥ ପରମାଣିକ। ସେ ପୁଲିସ କନେଷ୍ଟବଲ ଥିଲା କୋରାପୁଟ ଜିଲାର କୌଣସି ଥାନା ଅଧୀନରେ। କାନ୍ଧରେ ଗୁଳିଭର୍ତ୍ତି ବନ୍ଧୁକ ପକାଇ ଦୁର୍ଗମ ଅରଣ୍ୟ ପଥରେ ଯିବେ ଗସ୍ତକଲା ବେଳେ ଜଣେ ଆଦିମ ଅଧିବାସୀ ତାଂକ ପରବ ପାଳି, ହାଣ୍ଡିଆ ଖାଇ ମାତାଲ ଅବସ୍ଥାରେ ରଘୁନାଥଙ୍କୁ ପଇସା ମାଗିବା ପାଇଁ ଯୋରଯାଇ ବନ୍ଧୁକକୁ ଟଣାଓଟରା କରିବା ଫଳରେ ବନ୍ଧୁକ ଫୁଟି ପଡ଼ରେ ୨ ଜଣ ଲୋକ ମରିଗଲେ। [illegible] ନରହତ୍ୟା ଅପରାଧରେ ମକଦ୍ଦମା ଚାଲି ଶେଷରେ ତାକୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାହେଲା। ସେଇ ରଘୁନାଥ ପରମାଣିକ ବର୍ତ୍ତମାନ ଠାକୁର ପୂଜାରେ ନିଜକୁ ବ୍ୟସ୍ତ ରଖେ, ଦେହସାରା ଚନ୍ଦନ-ଚର୍ଚ୍ଚିତ। ମାଛ ମାଂସ ଖାଏନା। ଜେଲଖାନାର କଏଦୀମାନଙ୍କ ମଧ୍ୟରେ ସେ ଅତି ପ୍ରିୟ। ଏଇ ରଘୁନାଥ ଓ 'ପେଦା' ଥିଲେ ମୋର ଦିନରାତିର ବନ୍ଧୁ।

ସକାଳ ୯ଟା ହେବ। ଜେଲ୍ ଗେଟ୍‌ରୁ ଖବର ଆସିଲା କୃଷି ବିଦ୍ୟାଳୟର ପ୍ରଧାନଶିକ୍ଷକ ମୋତେ ଦେଖା କରିବାକୁ ଆସିଛନ୍ତି। ଗେଟକୁ ଯିବା ମୋ ପକ୍ଷରେ ଅସମ୍ଭବ ଥିବାରୁ ଜେଲ୍ ଭିତରକୁ ଆସିବା ପାଇଁ ତାଙ୍କୁ ଖବର ପଠାଇଲି। ସେ ଆସିଲେ, ମୋ ବିଛଣା ପାଖରେ ଠିଆ ହେଲେ ଅପରାଧୀଙ୍କ ପରି। ମୁଁ ଅପ୍ରସ୍ତୁତ ଭାବେ ପଚାରିଲି, "କ'ଣ ସାର୍? କୁଆଡେ ଆସିଲେ?" ଦେଖିଲି, ସେ କିଛି କହିପାରୁ ନାହାନ୍ତି। ତାଂକ ଆଖି ଛଳଛଳ ହୋଇ ଉଠିଛି। କଷ୍ଟରେ ସେ ଯାହା ମୋତେ କହିଲେ ତାର ସାରମର୍ମ ହେଲା—ତମେ ଅନଶନ ଭାଙ୍ଗ, ମୁଁ ତମ ବିରୁଦ୍ଧରେ ଥାନାରେ ଦେଇଥିବା FIRକୁ ପ୍ରତ୍ୟାହାର କରିନେବି—ବହିଷ୍କାର ଆଦେଶ ମଧ୍ୟ ପ୍ରତ୍ୟାହୃତ ହେବ। ଏକ ସ୍ୱାଧୀନ ମୂଲ୍ୟବୋଧ ପାଇଁ ଯେଉଁଠି ମୋର ସେ ବିଦ୍ରୋହ, ସେଠି ତାହା ଅସମ୍ଭବ। ମୁଁ ତାଙ୍କ ପ୍ରସ୍ତାବକୁ ଗୋଟିଏ ବାକ୍ୟରେ ପ୍ରତ୍ୟାଖ୍ୟାନ କରିବାରୁ ସେ ଫେରିଗଲେ। ଦିନ ୧୧ଟା ବେଳକୁ ମୋତେ ଦେଖିବାକୁ ଆସିଲେ କୃଷି ବିଦ୍ୟାଳୟର ଅନ୍ୟତମ ଶିକ୍ଷକ ଶ୍ରୀ କେ. ସି. ମିଶ୍ର। ମୋତେ ସେ ଅନ୍ତରଙ୍ଗ

ଶ୍ରଦ୍ଧା ଭକ୍ତି ପାଉଥିଲେ । ମୁଁ ମଧ୍ୟ ତାଙ୍କୁ ଭକ୍ତି ଓ ଶ୍ରଦ୍ଧା କରୁଥିଲି । ତାଙ୍କର ପ୍ରଭାବ ଯଦି କିଛି କାମ ଦିଏ, ସେହି ଆଶାରେ ପ୍ରଧାନ ଶିକ୍ଷକ ତାଙ୍କୁ ପଠାଇଥିଲେ । ମୋର ଦୃଢ଼ତା ଏବଂ ମନୋବଳ ସମ୍ପର୍କରେ ସେ ଅବହିତ ଥିବାରୁ ମୋ ଉପରେ ଅଧିକ ଚାପ ସୃଷ୍ଟି ନକରି ସେ ମଧ୍ୟ ଫେରିଲେ । ପ୍ରଧାନଶିକ୍ଷକ ଜଣକ କେତେ ଡରୁଆ, ତାର ଏକ ଦୃଷ୍ଟାନ୍ତ ଏଠି ଦିଆଯାଉ । ସେ ନିଜେ ଆସି ମୋତେ ଜେଲ୍‌ରେ ଦେଖାକରିବା ସଙ୍ଗେ ସଙ୍ଗେ ଅନ୍ୟତମ ଶିକ୍ଷକ ଶ୍ରୀ କେ. ସି· ମିଶ୍ରଙ୍କୁ ଲିଖିତ ନିର୍ଦ୍ଦେଶ ଦେଇଥିଲେ—ମୋତେ ଶ୍ରୀ ମିଶ୍ର ଜେଲ୍‌ରେ ଭେଟି ଅନଶନ ଭଙ୍ଗ କରିବାକୁ ପ୍ରବର୍ତ୍ତାଇବା ପାଇଁ । କିନ୍ତୁ GR case No, 191/28Tr/56Tr/1957 ମକଦ୍ଦମାରେ ଜମାନବନ୍ଦୀ ଦେଇ ପ୍ରଧାନଶିକ୍ଷକ ମାଜିଷ୍ଟ୍ରେଟ୍‌ଙ୍କ ଇଜଲାସ୍‌ରେ କହିଥିଲେ, "... I have never expressed to see him in the jail. I do not remember if I sent any teacher to see the accused in the jail."

ଏହି ଡିସେମ୍ବର ତା ୨୮ ରିଖରେ କୃଷିବିଦ୍ୟାଳୟର ଅନ୍ୟତମ ଶିକ୍ଷକ ଶ୍ରୀ କେ· ସି. ମିଶ୍ର ତାଂକ ଜେରାରେ ପ୍ରଧାନଶିକ୍ଷକଙ୍କ ବକ୍ତବ୍ୟକୁ ମିଥ୍ୟା ପ୍ରତିପାଦିତ କରି କହିଥିଲେ, "... I attended the jail to see the accused, under the direction of the Headmaster, This is the letter of the Headmaster, ..."

୧୯୫୭ ଅଗଷ୍ଟ ତା୨ରିଖର ମଧ୍ୟାହ୍ନ ।

ଢେଙ୍କାନାଳର ପ୍ରଖ୍ୟାତ ଆଇନଜ୍ଞ ତଥା ଅବିଭକ୍ତ କଂଗ୍ରେସ ନେତା ଶ୍ରୀଯୁକ୍ତ ସୁରେନ୍ଦ୍ର ମହାନ୍ତି ପଟ୍ଟନାୟକ ଏବଂ ଜିଲ୍ଲା ଲୋକସମ୍ପର୍କ ବିଭାଗ ଅଫିସର ଶ୍ରୀ ଆର୍ତ୍ତତ୍ରାଣ ରାଉତ ଏମାନେ ଆସି ମୋତେ ଜେଲ୍‌ରେ ଦେଖା କରି ମୋତେ ଅନଶନ ପ୍ରତ୍ୟାହାର କରିବା ପାଇଁ ଆନ୍ତରିକ ଅନୁରୋଧ ଜଣାଇଲେ । ଆଉ ନ୍ୟସ୍ତସ୍ୱାର୍ଥ ଚକ୍ର ଉପରେ ମୋର ଆଘାତ ଯଥେଷ୍ଟ ହୋଇଛି ଏବଂ ଭବିଷ୍ୟତରେ ଆଇନ-ଅଦାଲତରେ ସେମାନଂକ ମୁଖା ଖୋଲିବ ବୋଲି ପ୍ରତିଶ୍ରୁତି ଦେବାରୁ ମୁଁ ମୋର ଅନଶନ ଭାଙ୍ଗି ଲୁଣପାଣି ପିଇଥିଲି । ତା ପରେ ସୁରେନ୍ଦ୍ର ବାବୁ ମୋତେ ଜାମିନ୍‌ରେ ଜେଲରୁ ଖଲାସ କରିବାକୁ ଚାହିଁବାରୁ ମୁଁ ତାଙ୍କୁ ପରେ ଜଣାଇବି ବୋଲି କହିଲି । ସର୍ବମୋଟ୍ ମୁଁ ୧୭ ଦିନ ଢେଂକାନାଳ ଜେଲ୍‌ରେ ବିଚାରାଧୀନ ବନ୍ଦୀ ଭାବେ ରହିଥିଲି ।

ଜାମିନ୍‌ରେ ଜେଲ୍‌ରୁ ଖଲାସ ହେବା ପରେ ମୋର ଆଶ୍ରୟସ୍ଥଳୀ ହୋଇଥିଲା ଶ୍ରୀ ସୁରେନ୍ଦ୍ର ମୋହନ ପଟ୍ଟନାୟକଂକ ବାସଗୃହ । ସୁରେନ୍ଦ୍ରବାବୁ ଅତି ସାଧୁପ୍ରକୃତିର ଅମାୟିକ ବୁଦ୍ଧିଜୀବୀ ମଣିଷ । ତାଙ୍କର ମାନବିକତା ଓ ତାଙ୍କ ପରିବାରର ସ୍ନେହଶ୍ରଦ୍ଧା ମୋତେ ବର୍ଷାଧିକ କାଳ ଅସୀମ ମମତାରେ ଆଚ୍ଛନ୍ନ କରିଥିଲା କହିବା ବାହୁଲ୍ୟ । ମୋ ନାମରେ ଆଗତ ପୁଲିସ କେସ୍‌ର ବିଚାର ଆରମ୍ଭରୁ ଶେଷଯାଏଁ ଶ୍ରୀ ପଟ୍ଟନାୟକ ହିନାଖର୍ଚ୍ଚରେ ମୋର କେବଳ କ୍ଷମତାପ୍ରାପ୍ତ ଓକିଲ ଥିଲେ ତାହା ନୁହେଁ, ମୋତେ ଆର୍ଥିକ ସହାୟତା କରିବା, ନିଜ ଘରେ ମୋର ଖାଦ୍ୟପେୟ ଏବଂ ରହଣିର ବ୍ୟବସ୍ଥା ମଧ୍ୟ ସେ କରିଥିଲେ । କହିବାକୁ ଗଲେ ଏକବର୍ଷକାଳ ତାଙ୍କ ସହିତ ଓ ତାଙ୍କ ପରିବାର ସହିତ ମୋର ଏକ ପାରିବାରିକ ଆତ୍ମୀୟତା ଗଢ଼ି ଉଠିଥିଲା । ଢେଙ୍କାନାଳରେ ତାଙ୍କର ବାସଗୃହକୁ ମୋର ଅନ୍ୟତମ ଆଶ୍ରୟସ୍ଥଳ କରି ମୁଁ କଟକ ଫେରିଯାଉଥିଲି ଓ ମକଦ୍ଦମା ତାରିଖର ପୂର୍ବଦିନ ଯାଇ ତାଙ୍କ ପାଖରେ ହାଜର ହେଉଥିଲି । ପହଞ୍ଚିବା ପରେ 'ଡଲି' ଆସି ଅଳି କରୁଥିଲା ମୁଁ ପୁରୁଣା ଡାକଟିକଟ ତା'ପାଇଁ ଆଣିଛି ନା ନାହିଁ । 'ଡଲି' ସୁରେନ୍ଦ୍ର ବାବୁଙ୍କ ଆଦରର ଦୁଲାଳୀ । ତାର ସେହି ଅନାବିଳ ପିଲାଳିଆ ଆବେଦନ, ଡାକଟିକଟ ସାଇତି ରଖିବାର ଝୁଂକ୍ ମୋର ମନକୁ ସେତେବେଳେ ଆନ୍ଦୋଳିତ କରିଥିଲା । ୧୯୫୮ ମସିହା ଏପ୍ରିଲ୍ ମାସରେ ପ୍ରକାଶିତ ମୋର କ୍ଷୁଦ୍ରଗଳ୍ପର ଏକ ସଂକଳନ "ଚନ୍ଦ୍ରିକା" ମୁଁ ସେହି 'ଡଲି'କୁ ଉତ୍ସର୍ଗ କରିଥିଲି । ସେତେବେଳେ ସେ ଥିଲା ଫ୍ରକ୍ ପିନ୍ଧା ଛୋଟିଆ ଚଗଲୀ ଝିଅଟିଏ । ଆଜି ସିଏ ବଧୂ, ସ୍ୱାମୀ, ସନ୍ତାନ, ସଂସାର ନେଇ ବ୍ୟତିବ୍ୟସ୍ତ । ମନେ ପଡ଼ୁଛି, ସାହିତ୍ୟିକ ପ୍ରତିଷ୍ଠା ପରେ ଥରେ ଢେଂକାନାଳର କୌଣସି ଏକ ସାଂସ୍କୃତିକ ଉତ୍ସବକୁ ମୁଖ୍ୟଅତିଥି ଭାବେ ଯୋଗ ଦେବାକୁ ଯାଇଥିବା ବେଳେ 'ଡଲି' ସହିତ ସେଠି ଭେଟ ହୋଇଥିଲା । ସେତେବେଳକୁ ସେ ବିବାହିତା, ଗୃହବଧୂ । ସେ ନିଜ ଆସି ଯେତେବେଳେ ନିଜର ପରିଚୟ ଦେଇ ମୋତେ ନମସ୍କାର ଜଣାଏଁ, ମୁଁ ତତ୍‌କ୍ଷଣାତ୍ ଫେରିଯାଏ ସେହି ୧୯୫୭-୫୮ ମସିହାର ଦିନଗୁଡ଼ିକ ଭିତରକୁ ।

ହଁ, କଟକରୁ ଢେଂକାନାଳ, ଢେଂକାନାଳରୁ କଟକ ଯିବା ଆସିବା ବେଳେ ଥରେ ଏକ ଘଟଣା ଘଟିଥିଲା । ସେତେବେଳେ ରାଣୀହାଟ ପୋଲ ପାଖ 'ଏସିଆନ୍ ହୋଟେଲ' ପାଖରୁ ମହାନଦୀର ଖରବଦନିଆ ରାସ୍ତାରେ ପଶ୍ଚିମ ଓଡ଼ିଶାକୁ ବସ୍ ଚଳାଚଳ ହେଉଥିଲା । ମୁଁ ମକଦ୍ଦମା ତାରିଖ ଥିବା ଯୋଗୁଁ

ସେଦିନ ଢେଙ୍କାନାଳ ଯିବା ପାଇଁ 'ଏସିଆନ୍ ହୋଟେଲ୍' ପାଖରେ ବସ୍‌କୁ ଅପେକ୍ଷା କରିଥାଏ । ହଠାତ୍ ଦେଖିଲି ଶ୍ରୀ ନବକୃଷ୍ଣ ଗୋଟିଏ ଧୂସର ଏକ ବେଡ଼ିଂ କାନ୍ଧରେ ଥୋଇ ଆସି ସେଠି ପହଞ୍ଚିଲେ । ପାଦରୁ ଆଣ୍ଠୁ ଯାଏ ନାଲି ଧୂଳି । ବହୁତବାଟ ବୋଧହୁଏ ଚାଲି ଚାଲି ଆସିଛନ୍ତି । ଅତି ଅଳ୍ପଦିନ ହେବ ସେ ମୁଖ୍ୟମନ୍ତ୍ରୀ ଆସନରୁ ମହତାବଙ୍କ ଦ୍ୱାରା ଚ୍ୟୁତ ହୋଇଥାନ୍ତି । ତାଙ୍କୁ ସେଦିନ ସେଠି ଦେଖି ତାଙ୍କୁ ଭଦ୍ରଭାବେ ଅପମାନିତ କରିବା ପାଇଁ ମୋର ଏକ ପ୍ରବଳ ଇଚ୍ଛା ଜାଗି ଉଠିଥିଲା । କାରଣ, ତାଙ୍କର ପାଇଁ ମୋର ଜୀବନ ହୋଇଛି ଦୁର୍ବିସହ, ତାଙ୍କର କ୍ଷମତାରେ ଥିଲାବେଳର ନାଲିଆଖି, ବ୍ୟବହାର ସବୁ ମୋର ମନେ ପଡ଼ିଗଲା । ଆଜି ପରି ସେତେବେଳେ ମୋର ଏତେ ଉଦାରତା ନଥିବାରୁ ମୁଁ ତାଙ୍କୁ ପ୍ରଥମେ ଏକ ନମସ୍କାର ହେଲି ! ସେ ମୋତେ ଦେଖିଦେଇ ପଚାରିଲେ, "କରେ, କୁଆଡ଼େ ଯିବୁ ?"

"ଢେଙ୍କାନାଳ ଯିବି ।" କହିଲି ।

"କାହିଁକି ?" ସେ ପଚାରିଲେ ।

"ମକଦ୍ଦମା ତାରିଖ ଅଛି । ଆପଣ ?..."

"ମୁଁ ଅନୁଗୋଳ ଯିବି ।"

ବାସ୍ । ସେ ଓ ମୁଁ ନୀରବ ହେଲୁ । ମୁଁ ତାଙ୍କର ଆଗରେ ଗୋଟାଏ ସିଗାରେଟ୍‌ରେ ନିଆଁ ଧରାଇ ତାଙ୍କୁ ଏକ ସିଗାରେଟ୍ ଜାଣିଶୁଣି ଯାଚିଲି । ସେ କହିଲେ, "ମୁଁ ସିଗାରେଟ୍ ଛାଡ଼ି ଦେଇଛି ।"

ମୁଁ ପଚାରିଲି, "କେବେଠୁଁ ?"

"ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବା ପରେ ।"

"ଆଚ୍ଛା, ଆପଣଙ୍କ ସେ ଗାଡ଼ିଟା ?..."

"ତାକୁ ବି ତା' ଘରେ ବନ୍ଦ ଦେଇଛି ।"

ତା' ପରେ ବସ୍‌ରେ ବସିଲୁ । ସେ ଅନୁଗୋଳ ଗଲେ, ମୁଁ ଢେଙ୍କାନାଳରେ ଓହ୍ଲାଇଗଲି—ବାଟରେ ଆଉ ପରସ୍ପରଙ୍କ ଭିତରେ କଥାବାର୍ତ୍ତା ହୋଇନାହିଁ ।

୧୯୫୮ ମସିହା ସେପ୍‌ଟେମ୍ବର ମାସର ତା୨୦ରିଖ ।

ମହିଷାପାଟ ମୌଳିକ କୃଷି ବିଦ୍ୟାଳୟର ପ୍ରଧାନଶିକ୍ଷକଙ୍କ FIR ମୁତାବକ ମୋ ନାମରେ ଆଗତ ପୁଲିସ ମକଦ୍ଦମାର ପରେ ରାୟ ଦେଇ ସେଦିନ ଢେଙ୍କାନାଳର ୨ୟ ଶ୍ରେଣୀ ମାଜିଷ୍ଟ୍ରେଟ ବାଇଜ୍‌ଜତ ମୋତେ ଖଲାସ କରିଦେବା ସମ୍ବାଦ ସମ୍ବାଦପତ୍ରମାନଙ୍କରେ ପ୍ରକାଶିତ ହେଲା । ମୋ ସହିତ ଫରିଆଦୀ ସଙ୍ଗରେ ଯୋଗ ଦେଇ ପାରି ନଥିବାରୁ କୃଷି ବିଦ୍ୟାଳୟର ଛାତ୍ରମାନେ ମୋତେ ଆସି ଦେଖା କରି ନିଜର ଅପାରଗତା ଓ ଖୁରୁନ୍ଦାକୁ ସ୍ୱୀକାର କଲେ ।

ଢେଙ୍କାନାଳ ମାଟି, ମହିଷାପାଟ, ଢେଙ୍କାନାଳ ଜେଲ୍, ସୁରେନ୍ଦ୍ର ବାବୁ ଓ ତାଙ୍କ ପରିବାରର ସ୍ନେହଶ୍ରଦ୍ଧା, 'ଉଳ'ର ଡାକଟିକେଟ ପାଇଁ ଅଳି ଏସବୁର ସ୍ମୃତିକୁ ବହନ କରି ଫେରି ଆସିଥିଲି ମୋର ପୂର୍ବତନ କର୍ମଭୂମି କଟକ-ନଗରୀ କୋଳକୁ ।

—o—

ଲିପିକାର : ବିଶ୍ୱଶ୍ରୀ ପ୍ରେସ, ଫକୀରମୋହନ ସେନାପତି ରୋଡ଼, ବାଲେଶ୍ୱର ।

''ଦଳିତ, ନିଷ୍ପେଷିତ ଜନଗଣର ଅନ୍ତଃସ୍ଥାୟୀ ଅତୀତ ଗର୍ଭରୁ ଆଧୁନିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବର୍ଦ୍ଧିଷ୍ଣୁ ଭଳି ଯେଉଁ ମଣିଷଟି ପାଇଁ ଗଣିଗଣି ଆଲୋଡ଼ନ, ଗୁଞ୍ଜନ, ପ୍ରଚାର-ଅପପ୍ରଚାର, ନିନ୍ଦା-ପ୍ରଶଂସା, ଯାହାଙ୍କର କାବ୍ୟ ତଥା ସାହିତ୍ୟ ସାଧନା ଏବଂ ସୃଷ୍ଟି ପାଇଁ କାଏମୀ-ସ୍ୱାର୍ଥବାଦୀ ସାହିତ୍ୟିକ-ସାହୁକାର ମାନଙ୍କର ମୂଳଦୁଆ ତଳେ ଶତ ସହସ୍ରବାର ପ୍ରଚଣ୍ଡ ଭୂମିକଂପ ସୃଷ୍ଟି ହୋଇଛି— ୯ କବି ମାୟାଧର ମାନସିଂହଙ୍କ ଭାଷାରେ ସିଏ କି ଜଣେ ଅଗ୍ନିମାନ ପ୍ରତିଭା ଓ 'ଖର୍ବାକୃତ ବୁଦ୍ଧିଜୀବୀ'—ଯାହାଙ୍କ ଚଷମା ଭିତରର ସେହି ବହ୍ନିମାନ ଦୁଇଟି ଆଖିରେ ଅଗ୍ନିର ଉଚ୍ଛଳ ବନ୍ୟା; ସେ ଲୋକଟି ହେଲେ ଆପଣମାନଙ୍କର ପ୍ରିୟ ବିଦ୍ରୋହୀ କବି ରବି ସିଂ । ତାଙ୍କର ଜୀବନ ଇତିହାସର ପ୍ରତିଟି ପୃଷ୍ଠାରେ ଅଛି ଲୁହ, ଲହୁ, ସଂଗ୍ରାମ-ସଂଘାତ, ଜୟ-ପରାଜୟ ସହିତ ସୃଷ୍ଟି ଏବଂ ଧ୍ୱଂସ ।

''ଏକ ନୟାନ୍ତ ପଥିକର ଏହି ଜୀବନାଲେଖ୍ୟ ବହୁ ତୀବ୍ର ସତ୍ୟ, ବହୁ ଅପ୍ରୀତିକର, ବହୁ ଝଡ଼-ଝଞ୍ଜା ଏପରିକି ବହୁ ହତ୍ୟା-ଷଡ଼ଯନ୍ତ୍ରରେ ଜର୍ଜରିତ'' । ( ଜୁନ : ୧୯୭୯ 'ଆସନ୍ତାକାଲି'ରେ ପ୍ରକାଶିତ ସଂପାଦକ ମଣ୍ଡଳୀର ଟିପ୍ପଣୀ )

କବି ରବି ସିଂଙ୍କର ବିଚିତ୍ର ଜୀବନ ବୃତ୍ତାନ୍ତର ପ୍ରଥମ ଖଣ୍ଡ ହେଲା ଏଇ 'ନିଃସଂଗ ପଦାତିକ'